# ବନଫୁଲ



ସମ୍ପାଦକ—ଉପେନ୍ଦ୍ର ମିଶ୍ର

ସମ୍ପାଦକ—ଶ୍ରୀ ଉପେନ୍ଦ୍ର ମିଶ୍ର

ରାଜାବଗିଚ୍ଚ, କଟକ-୧

ଫୋନ—

ମୁଦ୍ରଣ—

ଶ୍ରୀମା’ ପ୍ରେସ

ରାଜାବଗିଚ୍ଚ, କଟକ-୧

୧୯୬୦

ମୂଲ୍ୟ—ଦଶଟଙ୍କା ମାତ୍ର

# ସୂଚୀ

| ବିଷୟ | | ପୃଷ୍ଠା |
|---|---|---|
| ୨୮ । ଦାରୁବ୍ରହ୍ମ ଜଗନ୍ନାଥ (ଶବର ସଂସ୍କୃତିର ଏକ ରୂପାନ୍ତର) | ଶ୍ରୀ ଅର୍ଜ୍ଜୁନ ସିଂହ, ବିଧାନସଭା ସଦସ୍ୟ | ...୨୨୧ |
| ୨୯ । ଆଦିବାସୀଙ୍କ ଅର୍ଥିକ ଅବସ୍ଥା | ଶ୍ରୀ ନେତ୍ରାନନ୍ଦ ଭୋଇ, ବଲାଙ୍ଗୀର ଆଦିବାସୀ ଗ୍ରୁପ | ...୨୨୯ |
| ୩୦ । ଆଦିବାସୀ ଧର୍ମ ଓ ଧର୍ମବିଶ୍ବାସ | ଅଧ୍ୟାପକ ଆନନ୍ଦକନ୍ଦ ପତି | ...୨୩୬ |
| ୩୧ । ଆଦିବାସୀ ଉନ୍ନୟନର କେତୋଟି ଦିଗ | ଶ୍ରୀ ଦାମୋଦର ବଉଡ଼, ଡି. ଭି. ଏସ୍. ସି. ଆଣ୍ଡ ଏ. ଏଚ୍. | ...୨୪୫ |
| ୩୨ । ଓଡ଼ିଶାରେ ଆଦିବାସୀଙ୍କ ଜୀବନଧାରା | ଅଧ୍ୟାପକ ନୂତନଚରଣ ଦୃଣିଆ, ଏମ୍. ଏ. ବି. ଇଡ୍ | ...୨୫୬ |
| ୩୩ । ଆଦିବାସୀ ଉନ୍ନୟନର କାର୍ଯ୍ୟକ୍ରମରେ ଶିକ୍ଷା | ଶ୍ରୀ ପ୍ରଫୁଲ୍ଲ କୁମାର ସ୍ୱାଇଁ, ଓ. ଏ. ଏସ୍. (୧) | ...୨୬୫ |
| ୩୪ । ସେମାନେ ଏବେ କେଉଁଠି | ଶ୍ରୀ ହରିହର ପଟେଲ, ଶିଳ୍ପମନ୍ତ୍ରୀ ଓଡ଼ିଶା | ...୨୭୩ |
| ୩୫ । ସମ୍ବଲପୁରୀ ପଲ୍ଲୀ ସଂଗୀତ | ଶ୍ରୀ ମୁରାରୀପ୍ରସାଦ ମିଶ୍ର, ମନ୍ତ୍ରୀ ସ୍ୱାସ୍ଥ୍ୟ ଓ ସମବାୟ | ...୨୯୬ |
| ୩୬ । ଆଦିବାସୀ ପିଲାଙ୍କ ଶିକ୍ଷାର ମୂଳକଥା | ଶ୍ରୀ ଚନ୍ଦ୍ରାମଣି ମିଶ୍ର; ସମ୍ପାଦକ ନବଜୀବନ | ...୩୦୨ |
| ୩୭ । ଆଦିବାସୀ ସମାଜ ଓ ସଂସ୍କୃତି ନୃତତ୍ତ୍ୱ ଦୃଷ୍ଟିକୋଣରୁ | ଡକ୍ଟର ଲକ୍ଷ୍ମଣକୁମାର ମହାପାତ୍ର ବାଣୀବିହାର | ...୩୦୬ |
| ୩୮ । ଆଦିବାସୀ—ଏକ ଦୃଷ୍ଟିକ୍ଷେପ | ଗୋପୀନାଥ ମହାନ୍ତି | ...୩୧୩ |



ମୁଖ୍ୟ ମନ୍ତ୍ରୀ

'ବନଫୁଲ'ର ଉଦ୍ୟମ ସଫଳ ହେବ ବୋଲି ମୋର ଆଶା ।

ରାଜେନ୍ଦ୍ର ନାରାୟଣ ସିଂହଦେଓ



## ଶିକ୍ଷା ମନ୍ତ୍ରୀ

'ବନଫୁଲ' ଏକ ଶିକ୍ଷଣୀୟ ପତ୍ରିକା ।

ବନମାଳୀ ପଟ୍ଟନାୟକ



ଅବକାରୀ ଓ ଗ୍ରାମମଙ୍ଗଳ ବିଭାଗ ମନ୍ତ୍ରୀ

ବନଫୁଲ' ଘରେ ଘରେ ଆଦୃତ ହେଉ ବୋଲି,
ମୋର ଦେଶବାସୀଙ୍କୁ ଅନୁରୋଧ ।

—ମନମୋହନ ଟୁଡ଼ୁ—



ହାସ୍ୟରସ ଲେଖକ—ଫତୁରାନନ୍ଦ          ଉପମନ୍ତ୍ରୀ—ଶ୍ରୀ ଗୋବିନ୍ଦ ମୁଣ୍ଡା

ତା ୪-୭-୭୯ ଦିନ ରବୀନ୍ଦ୍ର ମଣ୍ଡପରେ ଆଦିବାସୀ ନେତା ତଥା ଉପମନ୍ତ୍ରୀ ଶ୍ରୀ ଗୋବିନ୍ଦ ମୁଣ୍ଡା ଓଡ଼ିଶାର ବରିଷ୍ଠ ହାସ୍ୟରସ ଲେଖକ ଶ୍ରୀ ଫତୁରାନନ୍ଦଙ୍କୁ 'ବନଫୁଲ' ଅନୁଷ୍ଠାନ ତରଫରୁ ସ୍ମୃତି ପଦକ ପ୍ରଦାନ କରୁଛନ୍ତି ।

'ବନଫୁଲ' ଆଦିବାସୀ ସଂସ୍କୃତିର ବାର୍ତ୍ତାବହ ।

— ଗୋବିନ୍ଦ ମୁଣ୍ଡା —



ଶ୍ରୀ ରାଧାନାଥ ରଥ, ସମ୍ପାଦକ 'ସମାଜ'

# ମୁଖବନ୍ଧ

'ବନଫୁଲ' ମାସିକ ସାହିତ୍ୟ ପତ୍ରିକା ଦୀର୍ଘ ଦୁଇବର୍ଷ ଧରି ଧାରାବାହିକ ଭାବରେ ପ୍ରକାଶ ପାଇବା ପରେ ବର୍ତ୍ତମାନ ତୃତୀୟ ବର୍ଷରେ ପଦାର୍ପଣ କରିଛି । ଏହି ସୀମିତ ସମୟ ମଧ୍ୟରେ ଏହି ପତ୍ରିକା ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଆଦିବାସୀ ଓ ହରିଜନମାନଙ୍କର ମଙ୍ଗଳ ତଥା ସଂସ୍କୃତି ସମ୍ପର୍କରେ ଯେଉଁ ତଥ୍ୟ ପରିବେଷଣ କରିଛି, ତାହା ପ୍ରଣିଧାନ ଯୋଗ୍ୟ । ବିଶେଷ କରି ଆଦିବାସୀ ଲେଖକ ଲେଖିକା ମାନଙ୍କୁ ଲୋକ-ଦୃଷ୍ଟିକୁ ଆଣି ଆଦିବାସୀ ଶିକ୍ଷାର ସଞ୍ଚାର ସହ ବହୁ ତଥ୍ୟ ପ୍ରକାଶ କରି ଏ ଅନୁଷ୍ଠାନ ଏକ ନୂତନ ସୂତ୍ରପାତ କରିଛି । ଆଦିବାସୀ ଓ ହରିଜନ ପରମ୍ପରା ଓ ସଂସ୍କୃତିର ସଂରକ୍ଷଣ ପାଇଁ 'ବନଫୁଲ' ପତ୍ରିକାର ଏହି ବିଶେଷ ସଂଖ୍ୟା ଏକ ଅଭିନବ ଉଦ୍ୟମ । ଯେଉଁ କେତେକ ଓଡ଼ିଆ ଗବେଷକ ତଥା ଲେଖକ ଏ ଦିଗରେ ଯତ୍ନଶୀଳ ଚେଷ୍ଟା କରିଥିଲେ ତାହା ପ୍ରାୟତଃ ଏକମୁଖୀ । ଠିକ୍ ସେହିପରି ଯେଉଁ ଅଣଓଡ଼ିଆ ଗବେଷକମାନେ ଆଦିବାସୀ ଜୀବନ ଉପରେ ଆଲୋକପାତ କରି ଯାଇଥିଲେ, ତାହା ଥିଲା ବହୁ ପୁରାତନ ଆଦିବାସୀ ଜୀବନର ତଥ୍ୟ ମାତ୍ର । ଏବେ 'ବନଫୁଲ' ଅନୁଷ୍ଠାନ ଏ ସବୁର ଅପୂର୍ବ ସମାବେଶରେ ଏକ ନୂତନ ଆତ୍ମମୂଲ୍ୟପୂର୍ଣ୍ଣ ଗ୍ରନ୍ଥ ପ୍ରକାଶ କରି ଏ ଅଭାବ ପୂରଣ ଦିଗରେ ଯେଉଁ ଚେଷ୍ଟା କରିଛି, ତାହା ଆଦିବାସୀ ତଥା ହରିଜନ ଗବେଷଣା, ଜୀବନ, ଚଳଣି ସଂସ୍କୃତି ଜାଗରଣ, ଶିକ୍ଷା, ସଭ୍ୟତା ଓ ଐକ୍ୟବଦ୍ଧତାକୁ ସାହାଯ୍ୟ କରିବ ବୋଲି ଆଶା କରେ । 'ବନଫୁଲ' ଅନୁଷ୍ଠାନ ଅଧିକରୁ ଅଧିକତର ସେବା କରୁ ଏହାହିଁ ମୁଁ କାମନା କରୁଛି ।

କଟକ
ତା ୧୮-୧-୭୦

ରାଧାନାଥ ରଥ
ସମ୍ପାଦକ 'ସମାଜ'



ଶ୍ରୀ କାଳନ୍ଦୀ ଚରଣ ପାଣିଗ୍ରାହୀ

# ମୁଖବନ୍ଧ

'ବନଫୁଲ' ମାସିକ ସାହିତ୍ୟ ପତ୍ରିକା ଦୀର୍ଘ ଦ୍ୱିବର୍ଷ ଧରି ସଫଳତାର ସହିତ ପ୍ରକାଶ ପାଇବା ପରେ ବର୍ତ୍ତମାନ ତୃତୀୟ ବର୍ଷରେ ପଦାର୍ପଣ କରିଛି । ଏହି ସୀମିତ ସମୟ ମଧ୍ୟରେ 'ବନଫୁଲ' ପତ୍ରିକା ଓଡ଼ିଶାର ଅଗଣିତ ଆଦିବାସୀ ଓ ହରିଜନମାନଙ୍କର ମଙ୍ଗଳ ତଥା ସଂସ୍କୃତି ସମ୍ପର୍କରେ ଯେଉଁ ତଥ୍ୟ ପରିବେଷଣ କରିଛି ତାହା ପ୍ରଣିଧାନ ଯୋଗ୍ୟ । ବିଶେଷ କରି ଆଦିବାସୀ ଲେଖକ ଲେଖିକାମାନଙ୍କୁ ଆଲୋକକୁ ଆଣି

ଆଦିବାସୀ ଭାଷାର ସଂସ୍କାର ସହ ଗଭୀର ତଥ୍ୟ ପ୍ରକାଶ କରି ଏ ଅନୁଷ୍ଠାନ ଏକ ଅଭିନବ ବିପ୍ଳବର ସୂତ୍ରପାତ କରିଛି । ଆଦିବାସୀ ଓ ହରିଜନ କଲ୍ୟାଣ ତଥା ସଂସ୍କୃତିର ପରିପ୍ରକାଶ ପାଇଁ 'ବନଫୁଲ' ପତ୍ରିକାର ଏହି ବିଶେଷ ସଂଖ୍ୟା ଏକ ଚମକପ୍ରଦ ଅଭିଯାନ କହିଲେ ଅତ୍ୟୁକ୍ତି ହେବନାହିଁ । ତଥାକଥିତ ଓଡ଼ିଆ ପତ୍ର ପତ୍ରିକା କାହିଁକି ପୁସ୍ତକାକାରରେ ମଧ୍ୟ ଏପରି ଚେଷ୍ଟା ପୂର୍ବରୁ ଓଡ଼ିଆ ଭାଷାରେ ସମ୍ଭବ ହୋଇ ନ ଥିଲା । ଯେଉଁ କେତେକ ଓଡ଼ିଆ ଗବେଷକ ତଥା ଲେଖକ ଏ ଦିଗରେ ଯତ୍ନକୃତ ଚେଷ୍ଟା କରିଯାଇଥିଲେ ତାହା ଥିଲା କେବଳ ଏକମୁଖୀ । ଠିକ୍ ସେହିପରି ଯେଉଁ ଅଣଓଡ଼ିଆ ଗବେଷକମାନେ ଆଦିବାସୀ ଜୀବନ ଉପରେ ଆଲୋକପାତ କରିଯାଇ ଥିଲେ ତାହା ଥିଲା ବହୁ ପୁରାତନ ଆଦିବାସୀ ଜୀବନର ତଥ୍ୟ ମାତ୍ର । କିନ୍ତୁ ବନଫୁଲ ଅନୁଷ୍ଠାନ ଏ ସବୁର ଅପୂର୍ବ ସମାବେଶରେ ନୂତନ ଆଭିମୁଖ୍ୟପୂର୍ଣ୍ଣ ଗ୍ରନ୍ଥ ପ୍ରକାଶ କରି ଏକ ବିରାଟ ଅଭାବର ପରିପୂର୍ତ୍ତି ଦିଗରେ ଉଦ୍ୟମ କରିଛି । ଏହା ଆଦିବାସୀ ତଥା ହରିଜନଗବେଷଣା, ଜୀବନ, ଚଳଣି, ସଂସ୍କୃତି, ଜାଗରଣ, ଶିକ୍ଷା, ସଭ୍ୟତା ଓ ଐକ୍ୟବଦ୍ଧତାକୁ ଯେ ସାହାଯ୍ୟ କରିବ ଏଥିରେ ସନ୍ଦେହ ନାହିଁ । ସ୍ୱାଧୀନତାର ପୂର୍ବ ଯୁଗରେ ଓଡ଼ିଶାର ଦେଶୀୟ ରାଜ୍ୟମାନଙ୍କରେ ଆଦିବାସୀମାନଙ୍କ ଜୀବନ ନିର୍ବାହର ବିଷୟ ସମ୍ପର୍କରେ ମୁଁ ଆସିଥିଲି । ସେହିମାନଙ୍କ ଉନ୍ନୟନ ଉପରେ ଯେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ସମ୍ପୂର୍ଣ୍ଣ ନିର୍ଭର କରେ, ଏହି ଧାରଣା ମୋର ଦୃଢ଼ୀଭୂତ ହୁଏ । ଏ ଗ୍ରନ୍ଥଟି ସେ ଦିଗରେ ଏକ ସକ୍ରିୟ ପଦକ୍ଷେପ । ବହୁ ପ୍ରବୀଣ, ନବୀନ ଓଡ଼ିଆ ସାହିତ୍ୟିକ ତଥା ଗବେଷକ ଗ୍ରନ୍ଥଟିକୁ ଋଦ୍ଧିମନ୍ତ କରିଛନ୍ତି ଏବଂ ବହୁ ତରୁଣ ଓ ପ୍ରବୀଣ ଆଦିବାସୀ ଲେଖକ ନିଜ ଜୀବନର ଅନୁଭୂତି ସହିତ ତାଙ୍କ ସମାଜର ଆଙ୍ଗିକ ଓ ଆତ୍ମିକ ପ୍ରକାଶ ପାଇଁ ଲେଖନୀ ଚାଳନା କରିଥିବାରୁ ଏହା ଅଧିକ ମୂଲ୍ୟବାନ୍ ହୋଇ ପାରିଛି । ଏହାଛଡ଼ା ଓଡ଼ିଶାର ପାହାଡ଼ୀ ଆଦିବାସୀ ଅଞ୍ଚଳରେ ବୁଲି, ଅଭିଜ୍ଞତା ଅର୍ଜନ କରି, ନିଜେ ସମ୍ପାଦକ ବହୁ ତଥ୍ୟ ସଂଗ୍ରହ କରିଥିବାରୁ ଏବଂ ଅଦମ୍ୟ ଉତ୍ସାହ ସାଧନାର ସହିତ ବିଭିନ୍ନ ଲେଖକଙ୍କ ଠାରୁ ଉଚ୍ଚକୋଟିର ଲେଖା ସଂଗ୍ରହ କରିଥିବାରୁ ସେ ମଧ୍ୟ ଧନ୍ୟବାଦର ପାତ୍ର । ଏ ଗ୍ରନ୍ଥ ପ୍ରକାଶ ଦ୍ୱାରା

ଓଡ଼ିଶାର ଗ୍ରନ୍ଥପ୍ରେମୀ, ଶିକ୍ଷକ, ଗବେଷକ ଏବଂ ଆଦିବାସୀ ତଥା ହରିଜନ ବ୍ୟକ୍ତିମାନେ ଯେ ଅନେକାଂଶରେ ଉପକୃତ ହେବେ ଏଥିରେ ସନ୍ଦେହ ନାହିଁ । ଏ ପର୍ଯ୍ୟନ୍ତ ଓଡ଼ିଆ ଭାଷା ଓ ସାହିତ୍ୟରେ ବହୁ ଅଭାବ ରହିଛି । ତା'ର ପରିପୂର୍ତ୍ତି ପାଇଁ ବନଫୁଲ ଅନୁଷ୍ଠାନ ଉଦ୍ୟମରେ ମଧ୍ୟ ସନ୍ଦୀପ୍ତ ହେଉ, ଏହା ମୋର କାମନା ।

କାଳିନ୍ଦୀ ଚରଣ ପାଣିଗ୍ରାହୀ

*Reprinted from "The Indian P.E.N." November 1969*

# THE LITERARY SCENE IN INDIA

## ORIYA

*Banafula*, an Oriya monthly edited by Shri Upendra Misra and published from Cuttack, has proved to be one of the good literary monthlies of Orissa. This is its second year of publication. Recently the editor organized a function in Rabindra Mandap at Bhubaneswar to hononr its writers. A gold medal was presented to Shri Faturananda, an eminent humorist of Orissa. The editor has dedicated his journal as a link of literary good will between the Adivasis and Non-Adivasis of the state. The printing, get-up and contents of the journal are admirable.

—*—

# ଆଜିର 'ବନଫୁଲ'

ବହୁ ଦିନରୁ ଆଦିବାସୀ ଭାଇଭଉଣୀଙ୍କ ପାଇଁ ଗୋଟିଏ ପତ୍ରିକା ବାହାର କରିବାର ଚେଷ୍ଟା କରୁଥିଲି । ସେମାନଙ୍କ ହସ୍ତରେ ଲେଖି ସେହିମାନଙ୍କୁ ଉପହାର ଦେବା ମୋର ଉଦ୍ଦେଶ୍ୟ ଥିଲା । ଯେଉଁମାନେ ବନରେ ଫୁଟି ବନରେ ମଉଳି ଯାଉଛନ୍ତି ସେମାନଙ୍କୁ ସମାଜର ଦୃଷ୍ଟିକୁ ଆଣିବା ଏହାର ଉଦ୍ଦେଶ୍ୟ । ସେହିମାନେ ଯଦି ଏହାଦ୍ୱାରା ପ୍ରକୃତରେ ଉପକୃତ ହୁଅନ୍ତି ତାହାହେଲେ ଜଣେ ଅଣଆଦିବାସୀର ଶ୍ରମ ସାର୍ଥକ ହେବ ।

ଏହି ସ୍ୱପ୍ନ ସତ୍ୟରେ ପରିଣତ ହେଲା । ଗତ ୯-୫-୬୮ ଦିନ । ଆଦିବାସୀ ନେତା ତଥା ହସ୍ତଶିଳ୍ପ ମନ୍ତ୍ରୀ ଶ୍ରୀ ମନ ମୋହନ ଟୁଡ଼ୁ ଏହି ବନଫୁଲକୁ ଉଦ୍‌ଘାଟନ କଲେ ସୁନାବେଡ଼ାର ଆଶ୍ରମ ସ୍କୁଲ ପ୍ରାଙ୍ଗଣରେ ।

ବନଫୁଲ ସେହି ଦିନରୁ ବଣରେ ଫୁଟି ଭୁବନେଶ୍ୱର ରାଜଧାନୀରେ ମହକ ଦେବାକୁ ସକ୍ଷମ ହୋଇଛି । ଏଥିରେ ଅଂଶ ଗ୍ରହଣ କଲେ ଆଦିବାସୀ ଯୁବକ ଶ୍ରୀ ଶ୍ରୀମନ୍ତ ମାଣ୍ଡି, ଶ୍ରୀ ଜୟରାମ ପଡ଼ିଆମି, ଆଦିବାସୀ ଶିକ୍ଷକ ଶ୍ରୀ ଲୋକନାଥ ପରଜା, ଶ୍ରୀ ସୁବଳଚନ୍ଦ୍ର ହଷୋଇ, ଶିକ୍ଷୟିତ୍ରୀ ଶ୍ରୀମତୀ ଉମାଦାସ ଓ ଅନ୍ୟାନ୍ୟମାନେ ।

ସାହିତ୍ୟ କ୍ଷେତ୍ରରେ ଏହାର ଶିଳାନ୍ୟାସ ଦେଲେ ଓଡ଼ିଶାର ବରିଷ୍ଠ ସାହିତ୍ୟିକ ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଡକ୍ଟର ମାୟାଧର ମାନସିଂହ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଡକ୍ଟର ରାଧାନାଥ ରଥ, ଶ୍ରୀମତୀ ସରଳା ଦେବୀ, କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ଓ ଶ୍ରୀ ଅନିରୁଦ୍ଧ ଦାଶ ଆଇ. ଏ. ଏସ୍. ଇତ୍ୟାଦି । ଏହି ବନଫୁଲ ବଗିଚାରେ ମୁଁ ରହିଲି ମାଳି ।

ଆସ୍ତେ ଆସ୍ତେ ମହକ ଓଡ଼ଶାର ପ୍ରଚିପଲ୍ଲୀରୁ ସହର ଆଡକୁ ପ୍ରସରଣ ହେଲା । ଓଡ଼ିଶାରୁ ୪୩ ଜଣ ଏଜେଣ୍ଟ ବାହାର 'ଏହାର ପ୍ରଚାର ଓ ପ୍ରସାର ଦାୟିତ୍ୱ ନେଲେ । ଡି. ପି. ଆଇ.ଙ୍କ ମଞ୍ଜୁରୀ ପାଇବା ଦ୍ୱାରା ସରକାରୀ ସ୍କୁଲ, କଲେଜରେ ପ୍ରଚଳଣ କଲା । ଏ ପତ୍ରିକା ପାଇଁ ଗତ ଦୁଇବର୍ଷ ହେଲା କଟକ ଜିଲ୍ଲା କଲେକ୍ଟରଙ୍କ ଆର୍ଥିକ ସାହାଯ୍ୟ ଲାଗି ଆଦିବାସୀ ଗ୍ରାମମଙ୍ଗଳ ବିଭାଗକୁ ସୁପାରିଶ ପଠାଇଥିଲେ ମଧ୍ୟ ଉକ୍ତ ବିଭାଗ ଆଜିପର୍ଯ୍ୟନ୍ତ କୌଣସି ପଦକ୍ଷେପ ନେଇ ନାହାନ୍ତି ।

ବନଫୁଲ ଅନୁଷ୍ଠାନ ତରଫରୁ ଗତ ୪-୬-୭୬ ଦିନ ରବୀନ୍ଦ୍ର ମଣ୍ଡପରେ ଏକ ସ୍ୱତନ୍ତ୍ର ଉତ୍ସବରେ ଆଦିବାସୀ ଛାତ୍ର ଓ ଶିକ୍ଷକମାନଙ୍କୁ ପୁରସ୍କାର ଆଦିବାସୀ ନେତା ତଥା ଉପମନ୍ତ୍ରୀ ଶ୍ରୀ ଗୋବିନ୍ଦ ମୁଣ୍ଡା ପ୍ରଦାନ କରିଥିଲେ । କନ୍ଧମାଳର ଆଦିବାସୀ ଜୀବନ ଉପରେ ଏକ ନାଟକ ପରିବେଷଣ ହୋଇ ରାଜଧାନୀର ହଜାର ହଜାର ଦର୍ଶକଙ୍କୁ ମୁଗ୍ଧ କରିଥିଲା । ବନଫୁଲର ଶାରଦୀୟ ସଂଖ୍ୟା ଉତ୍କଳ ସାହିତ୍ୟ ସମାଜର ସଭାପତି ଶ୍ରୀ ଅନନ୍ତ ପଟ୍ଟନାୟକ ଗତ ତା୫-୧୦-୭୬ ଦିନ ଶ୍ରୀ ରାମଚନ୍ଦ୍ର ଭବନରେ ଉଦ୍‌ଘାଟନ କରିଥିଲେ । ଏଥିରେ ଆଦିବାସୀ ଜୀବନ, ଜୀବନୀ ଉପରେ ମୂଲ୍ୟବାନ ପ୍ରବନ୍ଧମାନ ଦେଇଥିଲେ ଡକ୍ଟର ବଂଶୀଧର ମହାନ୍ତି, ଡକ୍ଟର କୃଷ୍ଣପ୍ରସାଦ ମିଶ୍ର, ଶ୍ରୀ ସୁରେନ୍ଦ୍ର ମହାନ୍ତି, ଶ୍ରୀ ସତ୍ୟାନନ୍ଦ ବେହୁରା ଏହା ଆଦିବାସୀମାନଙ୍କୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ କଲେଜ ଛାତ୍ର, ଗବେଷକମାନଙ୍କୁ ମଧ୍ୟ ସାହାଯ୍ୟ କରି ପାରିବ ବୋଲି ଆଶା କରାଯାଉଛି ।

ଗତ ଦୁଇବର୍ଷ ମଧ୍ୟରେ ଆଦିବାସୀ ଅଞ୍ଚଳରେ ବୁଲି ବୁଲି ଆଦିବାସୀମାନଙ୍କ ସହିତ ମିଶି ତଥ୍ୟମାନ ସଂଗ୍ରହ କରି ଯାଇଛି । ସେହି ସ୍ଥାନମାନଙ୍କ ମଧ୍ୟରୁ ଯଶୋବନ୍ତ ପୁର (କୋରାପୁଟ) ଲେଫ୍ରିପଡ଼ା, ହେମଗିରି (ସୁନ୍ଦରଗଡ଼) ତେଲକୋଇ ଓ ଗୋନାସିକା (କେନ୍ଦୁଝର) ବୃନ୍ଦୁଆ, ଶିମିଳିପାଳ (ମୟୂରଭଞ୍ଜ) ବେଲଘର ଓ ଦାରିଙ୍ଗିବାଡ଼ି (ଫୁଲବାଣୀ) ରାମପୁର ମଦନପୁର (କଳାହାଣ୍ଡି) ସ୍ଥାନମାନ ଉଲ୍ଲେଖ ଯୋଗ୍ୟ ।

ଆଦିବାସୀ ତଥ୍ୟ ସଂଗ୍ରହ କରିବାରେ ସୁନାବେଡ଼ା ମିଗ୍ କାରଖାନାର ମୁଖ୍ୟମନ୍ତ୍ରୀ ଶ୍ରୀ ଆନନ୍ଦଚନ୍ଦ୍ର ପାତ୍ରୀ ଏବଂ ରାଉରକେଲା ଇସ୍ପାତ କାରଖାନାର ଜେନେରାଲ ମେନେଜର ଶ୍ରୀ ଆର୍. ପି. ସିହ୍ନାଙ୍କ ସାହାଯ୍ୟ ଓ ସହାନୁଭୂତି ପାଇଁ ଆମେ ଋଣୀ । ଆଦିବାସୀ ଶ୍ରମିକମାନଙ୍କ ଉନ୍ନତି ପାଇଁ ଏମାନଙ୍କ ଦାନ ଯଥେଷ୍ଟ ।

ଯେଉଁଠାକୁ ଯାଇଛୁ ଆଦିବାସୀ ଘରେ ରହିଛୁ ସେମାନଙ୍କ ସହିତ ମିଶିଛୁ ଓ ମହୁଆ ପିଇଛୁ । ଏହି ମହୁଆ ନିଶା ମୋତେ ଘାରିଛି । ଯଦି ଏ ଗ୍ରନ୍ଥ ସେମାନଙ୍କର ଉପକାରରେ ଆସେ ତାହାହେଲେ ମୋ ନିଶା ଛାଡ଼ିବ ଓ ଶ୍ରମସାର୍ଥକ ହେବ ।

ତେଣୁ ଆଜ ଏହି ପବିତ୍ର ସାଧାରଣତନ୍ତ୍ର ଦିବସରେ ବନଫୁଲର ଆଦିବାସୀ ବିଶେଷ ସଂଖ୍ୟା ସେହି ଆଦିବାସୀ ସମାଜ ହାତରେ ଉତ୍ସର୍ଗ କଲି ।

ଉପେନ୍ଦ୍ର ମିଶ୍ର

—୦—

Approved by the D. P. I. Orissa.

Vide letter No. 533 (58)-S. Dt- 6-6-1969.

Chief Minister, Orissa:—

I hope, the efforts of the Banaful will be crowned with success.

R. N. Singh Deo

Education Minister :—

Banafula has great educative value.

Banamali Patnaik.

Cultural Affairs Minister :—

The articles in the Banafula are pleasant reading. Both the old and the new writers contribute to this Magazine.

Nityananda Mohapatra

T. R. W. Minister :—

I request the countrymen to make the Banafula popular in every home.

Manmohan Tudu

Sri Arjun Singh, M. L A. :—

The Carrier of Adivasi culture Banafula shows a new path by combinding the old and the new.

Sri Kalindi Charan Panigrahi :—

Banaful does pioneering work in depicting different facts of Adivasi life and culture. It also publishes new type of articles to the need of the general readers.

Professor Dr. S. C. Dash :—

Banafula is a quality-magazine. It is unique in its get up, printing and the choice of articles.

Kavi-chandra Kali Charan Patnaik :—

Banafula succeeds in the blossoming of flowers in the minds of its readers. This is a novel attempt in Oriya literature.

Dr. Mayadhar Mansingh :—

As an apostle of Adivasi culture, Sri Upendra Misra's Banafula is an welcome adventure. This is a new venture in Oriya literature.

Professor Pranabandhu Kar :—

Banafula has Ushered in a new era by presenting Adibasi language in Oriya Literature.

Professor Dr. Radhanath Rath :—

The language and the article of Banafula are simple but unique. It is very useful for the students and the teachers in the Adivasi schools of the state. There is no doubt that this Magazine is the first of its kind in oriya literature and has a bright and prosperous future.

Professor Dr. Gopal Chandra Mishra :

There are many flowers in the forests rich in their fragrance Banafula has been serving that sweet smell to its readers. Let its path be studed with flowers only.

Professor N. K. Rath :—

Banafula is the first of its kind to carry the massage of culture of the Harijans and the Adivasis and to bring about an unified sensibility in Oriya literature by presenting the myths and legends prevalant among them.

The Samaja,Kalinga,Prajatantra,Matrubhumi,Swaraj:—

Banafula provides pleasant reading as a Magazine.



# THE ROLE OF TEACHING IN TRIBAL EDUCATION.

S. K. Palit, I. A. S.
*Director, T. R. W.*



Since independence, during the last 22 years several schemes have been furmulated by the different State Governments for the economic and educational advancement for the S. C. and S. Ts. A very large part of the public revenues has been devoted for the development of these under developed classes in pursuance of the Constitutional provisions A review of all these various schemes which have been undertaken during the last 22 years, not only in this State but also in other States with a sizeable tribal population, would indicate that ultimately education has to be given the highest priority. In the long run, it is not possible to achieve any significant economic development or social development without raising the educational standards of these backward classes. It has also been realised that even reservations in the services would not secure the ultimate objective unless the standards of the boys and belonging to these backward classes are raised to a level where they would be able to compete in the open market for better jobs

with other boys and girls. Prescribing a minimum percentage of reservation in the different grades of services is only an interim arrangement.

The proportion of the outlay on the educational schemes *vis-u-vis* economic and welfare schemes in Orissa is one of the highest in the whole of the country. A very large percentage of our outlay is devoted to the grant of prematric scholarship, running of the 87 Ashram Schools and High School, the 1200 Sevashrams, and Chatasalis, grants for hostels etc. But the extent to which the level of education can be raised cannot be measured from the quantum of the outlay only. The success of our efforts would depend entirely on the ability of our teachers to impart the right education and foster the necessary qualities of body and mind. This depends on the sense of dedication among the unique opportunity to develop the mental faculties of these boys and girls in our residential institutions. In nonresidential institutions, the scope is very much limited as the contact between the teacher and the students is only in the class room. But the series of residential institutions that have been set up in Orissa is in a way unique and have been appreciated by visitors from outside. Any system of education with residential facilities offers greater scope to the teachers to develop the right qualities among the students by influencing their conduct both inside and outside the class room. The teachers no douht work under various hardships in out-of-the-way places with very little amenities of life and sometimes without number of

quarters for their residential accommodation. But in this respect the teaching profession comes very near the missionary profession. The United Kingdom have sent the largest number of missionaries and teachers to the different African countries. In course of my tours throughout the State, sometimes. I have felt that the attention of the visitors and the teachers is very often devoted exclusively to such administrative matters as buildings, garden, management of the mess etc. These are all very imporant things but a school is primarily an educational institution and therefore in the assessment of such an institution the first priority should be given to the quality of teaching in the class room and the results in the examination.





## A TIPSY FOR A WORKER IN THE TRIBAL AREAS

R. N. Patnaik, O. A. S.
Under Secretary, ( Home )

One day I was going on tour from Balliguda to Belghar, the abode of Kutia Kondhs. the most primitive tribes of our State. The village Belghar is situated on a hill top at a height of about 2000 feet. A part of the route to Belghar is over a steep hill terrian. At the foot of the hill, there is one tribal village. When I just crossed this village I found 5 tribals sitting underneath a mango tree in serene mood. Out of these five, two are ladies, one old and the other young and the rest are males. One of the males appeared to me to be the Janni or the priest of the village. So I suspected that all of them are indulged in solving some difficulty. I stopped my vehicle and called them nearer to me. They were very hesitant. But when I accosted them in their tribal language and hinted that I might be of some use to them in their difficulty, one old tribal among them, in reluctant mood approached me I introduced myself to him as an officer appointed by Govt. to look after their welfare. I further narrated some instances of the sufferences of the adibasis and also how I assisted them in solving their problems. So if he would tell me about his present difficulty I might be of some help to him. I also suggested him to call the other four to the roadside where I was standing. Unwillingly he signed them to come and at last all reached the spot where we were talking.

At the first I ascertained their relationship. The old man told me that the old woman was his wife, the young girl was his daughter and the young man was his son-in-law. The other tribal as rightly suspected by me was his village Janni.

The young adibasi girl covered her body with a wrapper though it was summer. Some unusual bad smell was coming from her. She was also not able to stand and so after a few minutes she alone sat down which is an unusual feature with them. So I suspected that she might be suffering from some disease. On this assumption I advanced by asking the old woman to tell me the truth as to what was sheir difficulty. Among adibasis the women enjoy priority over men. She was looking at her husband for consent to ease and discharge the swellings of her heart. My driver who is also a tribal gave them courage by saying that I was their welwisher and that I was indeed assisting all tribals. This some what emboldened her to starte her narration. She told that her daughter, while breaking a log into pieces got her injured on the leg. Inspite of sacrifices like fish, fowls and pigs, the injury could not be healed up. Now the Janni says that the diety is demanding one buffalo, a couple of cows and a couple of goats. As they have no money to invest for such a heavy demand they have been seriously pondering over a solution.

I asked the girl to show me the injury. With much reluctance she removed her wrapper and showed me the injury on the left calf. The wound became

septic. The entire calf was swollen and puss was woosing from one point. I aid the wound was very big and naturally, therefore, the diety was justified in asking for such a heavy demand. But, however, I told them not to worry. I said on Wednesday i. e. two days later, I would visit a shandy near by, purchase their requirement at Govt. cost and send all the cattle they require for offerring sacrifice to their village by Saturday so that they could perform their puja on Sunday, if it would suit their Janni. They need not pay he cost immediately but could be spread over 5 years. Both the old man and his son-in-law who has got lands could easily redeem the debt without much difficulty. I also, added, if further concessions are necessary, they could also be considered. The son-in-law told me that he had not yet cleared his marriage debt and so wanted me to give some more ime to clear this debt for which I agreed This fully satisfied them and they showed signs of easiness.

When they could thus compose of themselves, I said that to send all these cattle, it would take some time, but in the meanwhile, if they would so like, I might give a slight medicine which I always carried for me for application to the wound externally. The old woman said if I so liked I might give. When thus they yielded, I asked the old man to boil water. By this time all the tribals of the village joined us. in the presenee of all, I boiled water and with linen in my first aid box supplied by Govt. to me, I got the wound cleaned all round and also made fomentation

to relief the pain. As the girl was feeling relieved of the pain she was laughing. I had only pencilin oint-ment with me. After dressing the wound I applied this. I gave some linen, some Boric powder and this pencillin tube to them to repeat this process twice daily till I returned on Saturday. Then I left the place.

On Saturday when I returned at the scheduled time, the entire village was in a colourful mood. All were happily waiting to receive me. The young girl dressed in clean clothes was at the beginning of the row to greet me. Normally she had a light smiling face. But due to the great relief she got, she displayed a very happy mood. As soon as I got down from my jeep, I told them that the cattle were on their way would arrive there on the same day. But the girl showed me the scar mark of the wound. The leg is very healthy and there was only a scar left. Her husband came close to me and enquired on my ears whether it would be still necessary to give sacrifice as the wound was healed up I replied that it was for them. In fact they should not. The Janni was con-sulted and he could not but say that it was not necessary because there was no wound. So I gave a chit to him to carry immediately to my staff at Belghar so that they might stop sending cattle.

The poor fellow thought that it was all truth and carried the letter to my staff. They all laughed for the trick I played. This was how I made them to take recourse to alopathy medicines. Therefore, the demand for medicines gradually increased and the belief for sacrifices declined.

# ପୃଥିବୀର ସୃଷ୍ଟି

( ଆଦିବାସୀ ଲୋକକଥା ଓ ବିଭିନ୍ନ ମତବାଦ )

ଅଧ୍ୟାପକ—ଶ୍ରୀ ଗୌରାଙ୍ଗ ଚରଣ ରାୟ
ଭୂଗୋଳ ବିଭାଗ, କଳାହାଣ୍ଡୀ କଲେଜ

ପୃଥିବୀର ସୃଷ୍ଟି ସମ୍ବନ୍ଧରେ ବିଭିନ୍ନ ଦେଶରେ ଭିନ୍ନ ଭିନ୍ନ ଲୋକ କଥା ଏବଂ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଭିନ୍ନ ମତବାଦ ପ୍ରଚଳିତ ଅଛି । ଅଦ୍ୟାବଧି ସଠିକ୍ ଭାବରେ ପୃଥିବୀର ଜନ୍ମସମ୍ବନ୍ଧରେ ବୈଜ୍ଞାନିକମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଦେଖାଯାଏ । ପୃଥିବୀର ସୃଷ୍ଟି ସମ୍ବନ୍ଧରେ ବିଭିନ୍ନ ଆଦିବାସୀ ଲୋକକଥା ପ୍ରଚଳିତ ଅଛି । ଭେରିୟର ଏଲୱିନ୍ ଓଡ଼ିଶାର ବିଭିନ୍ନ ଆଦିବାସୀମାନଙ୍କର ଭିନ୍ନ ଭିନ୍ନ ବିଷୟରେ ଲୋକକଥା ସଂଗ୍ରହ କରି ପ୍ରକାଶ କରିଛନ୍ତି । ସେଥି ମଧ୍ୟରୁ ପୃଥିବୀର ସୃଷ୍ଟି ସମ୍ବନ୍ଧରେ କିଛୋଟି ଲୋକକଥା ନିମ୍ନରେ ପ୍ରଦତ୍ତ ହେଲା ।

ବିନ୍‌ଝୱାର ଆଦିବାସୀମାନଙ୍କ ମଧ୍ୟରେ ଏକ ଲୋକକଥା ପ୍ରଚଳିତ ଅଛି ଯେ ବିଭିନ୍ନ ଦେବତାମାନେ ସଭାରେ ପୃଥିବୀର ସୃଷ୍ଟି ନିମିତ୍ତ ଆଲୋଚନା ଆରମ୍ଭ କଲେ । ପ୍ରତ୍ୟେକ ଦେବତା ସ୍ୱୀୟ ଶରୀରରୁ ଏକ ବିନ୍ଦୁ ରକ୍ତ ଏବଂ କିଞ୍ଚିତ ମଇଳା ବାହାର କରି ଏକତ୍ର ନିକ୍ଷେପନ ଦ୍ୱାରା ପୃଥିବୀର ସୃଷ୍ଟି ହେଲା ।

କୁଟିଆ କନ୍ଧ ଆଦିବାସୀମାନଙ୍କ ମତରେ ପୃଥିବୀ ଜଳଦ୍ୱାରା ଆଚ୍ଛାଦିତ ହୋଇଥିଲା । କୌଣସି ଜୀବଜନ୍ତୁ ସୃଷ୍ଟି ହୋଇ ନ ଥିଲେ ।

ଟେନଟେଙ୍ଗା ଏବଂ ଗାଟେଙ୍ଗା ( ପ୍ରଥମ ଜନ୍ମ ଜାତିର ସୃଷ୍ଟି କର୍ତ୍ତା ) ଦ୍ୱୟ ଜଳ ମଧ୍ୟରୁ ନିର୍ଗତ ହୋଇ ସନ୍ତରଣ ଦ୍ୱାରା ଏକ ବୃହତ୍ ପ୍ରସ୍ତର ନିକଟରେ ଉପନୀତ ହୋଇ ସେଠାରେ ବସବାସ ଆରମ୍ଭ କରିଲେ । ତତ୍ପରେ ମୃତ୍ତିକା ସଂଗ୍ରହ କରି ବିଭିନ୍ନ ଦିଗକୁ ନିକ୍ଷେପନ ଦ୍ୱାରା ଜଳରାଶୀ ନିମଗ୍ନ ହୋଇ ସ୍ଥଳରେ ପରିଣତ ହେଲା । ଏହି ସ୍ଥଳକୁ କଠିନ୍ କରିବା ନିମିତ୍ତ ମଇଁଷି, ଗାଈ ଏବଂ ଘୁଷୁରି ଇତ୍ୟାଦି ପଶୁମାନଙ୍କୁ ବଳି ଦିଆଯାଇଥିଲା । ଏହି ପଶୁମାନଙ୍କର ଅସ୍ଥିଗୁଡ଼ିକ ପ୍ରସ୍ତରରେ ପରିଣତ ହେଲା ଏବଂ କେଶଗୁଡ଼ିକ ବୃକ୍ଷଲତାରେ ପରିଣତ ହୋଇ ଏକ ପୂର୍ଣ୍ଣାଙ୍ଗ ପୃଥିବୀର ସୃଷ୍ଟିହେଲା ।

ସାଓରା ଆଦିବାସୀମାନଙ୍କ ମଧ୍ୟରେ ଏକ ଲୋକକଥା ପ୍ରଚଳିତ ଅଛି ଯେ ପ୍ରଥମେ ପୃଥିବୀ ଜଳମଗ୍ନ ଥିଲା । ତେଣୁ ରାମ ଓ ଶ୍ୟାମ ପ୍ରଥମ ଦୁଇଜଣ ଗଗନରେ ଆଶ୍ରୟ ନେଲେ । ତାଙ୍କର ପାଳିତ କୁକୁଡ଼ା ନିୟମିତ ଅଣ୍ଡା ଦେଉଥିଲା । ସମୁଦାୟ ସାତୋଟି ଅଣ୍ଡା ଦେବା ପରେ ଅଷ୍ଟମ ଅଣ୍ଡା ଦେବା ସମୟରେ ଉକ୍ତ ଅଣ୍ଡାଟି ହଠାତ୍ ଆକାଶ ମାର୍ଗରୁ ସମୁଦ୍ରରେ ପଡ଼ି ଭାଙ୍ଗିଗଲା । ଉକ୍ତ ଅଣ୍ଡାର ଧଳା ଅଂଶଟି ଶୁଖିଯାଇ କଠିନ୍ ପୃଥିବୀରେ ପରିଣତ ହେଲା ଏବଂ ଅଣ୍ଡାର ଖୋଳପାଟି ପଥରରେ ପରିଣତ ହେଲା ।

ଆଦିବାସୀଙ୍କ ବ୍ୟତୀତ ପୃଥିବୀର ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଲୋକକଥାମାନ ପ୍ରଚଳିତ ଅଛି । ମିଶର ଦେଶରେ ପୃଥିବୀର ସୃଷ୍ଟି ସମ୍ବନ୍ଧରେ ଏକ ଲୋକକଥା ପ୍ରଚଳିତ ଅଛି । ପ୍ରଥମେ ସୂର୍ଯ୍ୟଦେବତା ଆମନ୍‌ରା ସମୁଦ୍ର ମଧ୍ୟରେ ଏକ ପଦ୍ମଫୁଲ ମଧ୍ୟରେ ଜନ୍ମଗ୍ରହଣ କରିଥିଲେ । କାଳକ୍ରମେ ଆମନ୍‌ରାଙ୍କର ଗୋଟିଏ ଝିଅ ନଟ୍ ଏବଂ ଦୁଇଟି ପୁଅ ସୁ ଓ କେବ୍ ଜନ୍ମଗ୍ରହଣ କଲେ । ଦିନେ ସୁ ତାହାର ଭଉଣୀ ନଟ୍ ହିତ ଭାଇ କେବ୍‌ର ଅନ୍ତରଙ୍ଗ ସମ୍ପର୍କ ଦେଖି ନଟ୍‌କୁ ଉର୍ଦ୍ଧ୍ୱଗାମୀ ଏବଂ କେବ୍‌କୁ ନିମ୍ନଗାମୀ କଲେ । ଏହା ଫଳରେ ନଟ୍ ଆକାଶରେ ଏବଂ କେବ୍ ପୃଥିବୀରେ ପରିଣତ ହେଲେ । ସୁ ଏହି ଦୁଇଙ୍କ ମଧ୍ୟରେ ବାୟୁରୂପେ ବିଦ୍ୟ-ମାନ ହୋଇ ଉଭୟଙ୍କୁ ବିଚ୍ଛିନ୍ନ କରି ରଖିଲେ ।

ହେ ଗ୍ରନ୍ଥରେ ଏକ ଲୋକକଥା ପ୍ରଚଳିତ ଅଛି ଯେ ଦେବତା ଯେହେତୁ ବା ବିଭିନ୍ନ ଉପାୟରେ ପୃଥିବୀ ଏବଂ ଅନ୍ୟାନ୍ୟ ଗ୍ରହମାନଙ୍କର ସୃଷ୍ଟି କରିଛନ୍ତି ।

ଏହି ଲୋକକଥା ବ୍ୟତୀତ ପୃଥିବୀର ସୃଷ୍ଟି ସମ୍ବନ୍ଧରେ କେତେକ ବୈଜ୍ଞାନିକ ଓ ଦାର୍ଶନିକ ମତବାଦ ମଧ୍ୟ ଅଛି । ପ୍ରଥମେ ଦାର୍ଶନିକ କାଣ୍ଟ (୧୭୫୫) ପୃଥିବୀର ସୃଷ୍ଟି ସମ୍ବନ୍ଧରେ ଆଲୋକପାତ କରିଥିଲେ । ବିଭିନ୍ନ କଠିନ ପଦାର୍ଥ ଗୁଡ଼ିକ ମାଧ୍ୟାକର୍ଷଣ ଶକ୍ତି ଫଳରେ ପରସ୍ପର ସହିତ ସଂଘର୍ଷ ଲାଗି ଏକ ଉତ୍ତପ୍ତ ଘୂର୍ଣ୍ଣିୟମାନ ବାଷ୍ପରେ ପରିଣତ ହେଲା । ତତ୍ପରେ ଏହି ଘୂର୍ଣ୍ଣିୟମାନ ବାଷ୍ପର କେତେକାଂଶ ବିକ୍ଷିପ୍ତ ହୋଇ ପୃଥିବୀ ଇତ୍ୟାଦି ଗ୍ରହରେ ପରିଣତ ହେଲା ଏବଂ ଅବଶିଷ୍ଟ ସୂର୍ଯ୍ୟ ଗ୍ରହରେ ପରିଣତ ହେଲା । ଏହି ମତବାଦକୁ ବୈଜ୍ଞାନିକ ଲାପ୍ଲା କେତେକ ସଂଶୋଧନ ସହିତ ବିଷଦ ଭାବେ ଆଲୋଚନା କରିଥିଲେ ତାଙ୍କ ମତରେ ଏହି ଘୂର୍ଣ୍ଣିୟମାନ ଉତ୍ତପ୍ତବାଷ୍ପ ତରଳ ହୋଇ ଶୀତଳ ଅବସ୍ଥାକୁ ପ୍ରାପ୍ତ ହେବା ସମୟରେ କଠିଣ ହୋଇଥିଲା । ଏହି ମତବାଦରେ ବିଶେଷ ତ୍ରୁଟି ପରିଲକ୍ଷିତ ହୁଏ ଯଥା ଘୂର୍ଣ୍ଣିୟମାନ କ୍ଷେତ୍ରର ଆବର୍ତ୍ତକ କିପରି ସମ୍ଭବ ହେଲା ତାହା ଆଲୋଚନା କରାଯାଇ ନାହିଁ । ବୈଜ୍ଞାନିକ ଚ୍ୟାମ୍ବରଲିନ୍ ଏବଂ ମୋଲଟନ୍ (୧୯୦୪) ଏକ ନୂତନ ମତବାଦ ପ୍ରଦାନ କଲେ । ସେମାନଙ୍କ ମତରେ ପୃଥିବୀ ଏବଂ ବିଭିନ୍ନ ଗ୍ରହଗୁଡ଼ିକର ସୃଷ୍ଟି ସୂର୍ଯ୍ୟ ଏବଂ ଏକ ବିରାଟ ତାରକାର ସଂଘର୍ଷରେ ସମ୍ଭବ ହେଲା । ଏକ ବିରାଟ ତାରକା ସୂର୍ଯ୍ୟଙ୍କ ନିକଟ ଦେଇ ଗତି କରିବା ସମୟରେ ଆକର୍ଷଣ ଦ୍ୱାରା ସୂର୍ଯ୍ୟର କେତେକାଂଶ ବିକ୍ଷିପ୍ତ ହୋଇ ବିଭିନ୍ନ ଗ୍ରହରେ ପରିଣତ ହେଲା । ବୈଜ୍ଞାନିକ ଜିନ୍ସ୍ ଜେଫ୍ରିଙ୍କ ମତରେ ଦୁଇଟି ବିରାଟ ତାରକାର ଆକର୍ଷଣ ଫଳରେ ସୂର୍ଯ୍ୟ ଏବଂ ଉକ୍ତ ତାରକା ମାନଙ୍କର ବିକ୍ଷିପ୍ତ ଅଂଶଗୁଡ଼ିକ ପୃଥିବୀ ଏବଂ ବିଭିନ୍ନ ଗ୍ରହମାନଙ୍କରେ ପରିଣତ ହେଲା । କିନ୍ତୁ ବୈଜ୍ଞାନିକ ହଏଲଙ୍କ ମତରେ ସୂର୍ଯ୍ୟ ମଧ୍ୟରେ ଥିବା ଉଦ୍‌ଯାନବାଷ୍ପ ତାପ ବିକୀରଣ ପ୍ରକ୍ରିୟା ଦ୍ୱାରା ଶେଷ ହୋଇଯିବା ଫଳରେ ଏକ ବିରାଟ ବିସ୍ଫୋରଣ ସୃଷ୍ଟି

ହୋଇଥିଲା । ଯାହା ଫଳରେ ପୃଥିବୀ ଏବଂ ଅନ୍ୟାନ୍ୟ ଗ୍ରହମାନଙ୍କର ସୃଷ୍ଟି ହେଲା ।

ଉପରୋକ୍ତ ମତବାଦ ଗୁଡ଼ିକରେ ମଧ୍ୟ ବିଶେଷ ତ୍ରୁଟି ପରିଲକ୍ଷିତ ହୁଏ । କାରଣ ସୂର୍ଯ୍ୟ କେତେକ ଲଘୁ ମୌଳିକ ଉପାଦାନ ଯଥା ଉଦ୍‌ଜାନ ଏବଂ ହିଲିୟମ୍ ଦ୍ୱାରା ଗଠିତ ହୋଇଥିଲେ ମଧ୍ୟ ଅନ୍ୟ ଗ୍ରହଗୁଡ଼ିକ ବିଭିନ୍ନ ମୌଳିକ ଉପାଦାନ ଦ୍ୱାରା ଗଠିତ ହୋଇଅଛି । ଯଦି ସୂର୍ଯ୍ୟଠାରୁ ପୃଥିବୀ ସମେତ ଅନ୍ୟ ଗ୍ରହଗୁଡ଼ିକର ସୃଷ୍ଟି ହୋଇଥାଆନ୍ତା ତେବେ ସୂର୍ଯ୍ୟସ୍ଥିତ ମୌଳିକ ଉପାଦାନ ଗୁଡ଼ିକ କେବଳ ସେହି ଗ୍ରହମାନଙ୍କରେ ପରିଲକ୍ଷିତ ହୁଅନ୍ତା । ଏଣୁ ପୃଥିବୀର ସୃଷ୍ଟି କେବଳ ସୂର୍ଯ୍ୟଙ୍କଠାରୁ ହୋଇଛି ଏହା ସନ୍ଦେହ ଜନକ ।

ସରଳ ଆଦିବାସୀମାନଙ୍କର ପୃଥିବୀର ସୃଷ୍ଟି ସମ୍ବନ୍ଧରେ ଲୋକକଥା ଏବଂ ଅନୁସନ୍ଧିତ୍ସୁ ବୈଜ୍ଞାନିକମାନଙ୍କର ଗବେଷଣାତ୍ମକ ବିବରଣୀ ଭବିଷ୍ୟତରେ ଅନେକ ଲୋକକଥା ଏବଂ ମତବାଦ ସୃଷ୍ଟି କରିବ ଏଥିରେ ସନ୍ଦେହର ଅବକାଶ ନାହିଁ ।



# ଆଦିବାସୀ ଶିକ୍ଷା ସମସ୍ୟା

ଶ୍ରୀ ଅମୃତଲାଲ ବ୍ୟାସ
କାର୍ଯ୍ୟକାରୀ ସଂପାଦକ
ଉତ୍କଳ ଆଦିବାସୀ ମଙ୍ଗଳ ସମିତି

ଆଦିବାସୀ ଉନ୍ନୟନକୁ ଏକ ମୁଖ୍ୟ କର୍ତ୍ତବ୍ୟ ରୂପେ ଗ୍ରହଣ କରି ପ୍ରଥମେ ଦେଶ ସେବକ ଠକ୍କର ବାପା ଏ ଦିଗରେ ତାଙ୍କ ଚେଷ୍ଟା ଆରମ୍ଭ କରିଥିଲେ । ମୁଖ୍ୟତଃ ଏ ଉଦ୍ୟମ ଥିଲା ବେସରକାରୀ ଉଦ୍ୟମ, ୧୯୨୨-୨୩ ମସିହାରୁ ଠକ୍କର ବାପା ଗୁଜୁରାଟ, ମହାରାଷ୍ଟ୍ର, ରାଜସ୍ଥାନ, ବିହାର ଓ ମଧ୍ୟପ୍ରଦେଶ ଆଦିରେ ଆଦିବାସୀ ମଙ୍ଗଳ କାର୍ଯ୍ୟ ଆରମ୍ଭ କରିଥିଲେ, କିନ୍ତୁ ୧୯୪୬ ମସିହାରେ ଉତ୍କଳର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ମନ୍ତ୍ରୀ ମଣ୍ଡଳ ଗଠିତ ହେବା ପରେ, ସେ ଆଦିବାସୀ ମଙ୍ଗଳ ପାଇଁ ଏକ ସ୍ୱତନ୍ତ୍ର ବିଭାଗ ଖୋଲିଲେ । ଏହି ବିଭାଗହିଁ ଠକ୍କର ବାପାଙ୍କ ପରିକଳ୍ପନାକୁ କାର୍ଯ୍ୟକାରୀ କରିବା ପାଇଁ ପଦକ୍ଷେପ ନେଲା ।

୧୯୪୭ ମସିହା ଜୁଲାଇ ମାସ ଦଶ ତାରିଖ ଦିନ ପ୍ରଥମେ ଫୁଲବାଣୀ ଜିଲାର ନୂଆ ଗାଁ ଠାରେ ଗୋଟିଏ ଆଶ୍ରମ ସ୍କୁଲ ପ୍ରତିଷ୍ଠିତ ହେଲା ଓ ପରେ ପରେ ରାୟଗଡ଼ା, ପାରଳାଖେମଣ୍ଡି, ଗଞ୍ଜାମ, ନୂଆପଡ଼ା ଓ କୁଜେନ୍ଦ୍ରି ଇତ୍ୟାଦି ସ୍ଥାନରେ ଅନ୍ୟାନ୍ୟ ବହୁ ଆଶ୍ରମ ସ୍କୁଲ ମଧ୍ୟ ପ୍ରତିଷ୍ଠିତ ହେଲା । ସେ ଦିନର କ୍ଷୁଦ୍ର ବୀଜ-ବପନ ଆଜି ବିରାଟ ବୃକ୍ଷରେ ପରିଣତ ହୋଇ ପାରିଛି, ଆଦିବାସୀ ମଙ୍ଗଳ ଦିଗରେ ଏକ ନବ ଦିଗନ୍ତର ସୂଚନା ମିଳି ପାରିଛି ।

ଆଶ୍ରମ ସ୍କୁଲରେ ପାଠ ପଢ଼ିବା ପାଇଁ ସେ ସମୟରେ ଆଦିବାସୀ ଛାତ୍ରମାନଙ୍କର ଦରମା ଛାଡ଼ କରାଯାଇ ଥିଲା ଓ ମାଗଣାରେ ଖାଇବାକୁ ଦିଆଯାଉ ଥିଲା, ତଥାପି ଅଭିଭାବକମାନେ ସେମାନଙ୍କ ପିଲା ମାନଙ୍କୁ ସ୍କୁଲକୁ ପଠାଇବା ପାଇଁ ରାଜି ହେଉ ନ ଥିଲେ,

ପିତାମାତା ପିଲା ମାନଙ୍କୁ ମୁଖ୍ୟତଃ କୃଷିବାସ, ଗୋରୁ ଚରା, ଓ ପିଲାଧରା କାମରେ ନିଯୁକ୍ତ କରୁଥିଲେ । ସାଧାରଣତଃ ପରିବାରର ବଡ଼ ପୁଅମାନେ କୃଷି କାମରେ, ତା ତଳ ପୁଅ ଗୋରୁ ଛେଳି ମାନଙ୍କୁ ଚରାଇବା କାମରେ ଓ ତୃତୀୟ ପୁଅ ଛୋଟ ଛୋଟ ପିଲାମାନଙ୍କୁ ଧରିବା କାମରେ ନିଯୁକ୍ତ ରହୁଥିଲେ, ଶିକ୍ଷକମାନେ

ଯଦି ଦଶଟି ଛାତ୍ରଙ୍କୁ ସ୍କୁଲକୁ ଆଣୁଥିଲେ, ତେବେ ତାହା ମଧ୍ୟରୁ ଛଅ ସାତ ପୁଣି ଗାଁକୁ ଫେରି ପଳାଇ ଯାଉଥିଲେ, ବାରମ୍ବାର ପିତାମାତାଙ୍କୁ ବୁଝାଇ ପିଲମାନଙ୍କୁ ସ୍କୁଲକୁ ଆଣିବା ଥିଲ ଶିକ୍ଷକଙ୍କର ପ୍ରଧାନ କାର୍ଯ୍ୟ । ଏହା ଦ୍ୱାରା କିଛି ଟଙ୍କା ଓ ଏହି ଟଙ୍କାକୁ ସମସ୍ତ ବିଶେଷରେ ପିତାମାତାଙ୍କୁ ଜନସମ୍ପର୍କ ପୁରସ୍କାର ରୂପେ ଦିଆ ଯାଉଥିଲ ।।

ଆଦିବାସୀ ଛାତ୍ରମାନେ କାଠ ବନଆଁ କାର୍ଯ୍ୟ ନିର୍ଘଣ୍ଟ ବା ଶୃଙ୍ଖଳା ଗତ ଜୀବନ ସହିତ ଅଭ୍ୟସ୍ତ ନ ଥିଲେ, ବେଶୁ ଜମିବାଡ଼ି, ଆଦିବାସୀ ଗୀତ ନାଚ, ଗପ ଆଡ଼ାକୁ ସେମାନେ ସମସ୍ତ ବିଶେଷରେ ପଳାଇ ଯାଉଥିଲେ, ଏଥିପାଇଁ ଛାତ୍ରମାନେ କିପରି ଆଶ୍ରମ ସ୍କୁଲରେ ରହି ପାରିବେ ତାହାର ଯତ୍ନ କରିବାକୁ ହେଉଥିଲ ।

କିନ୍ତୁ ଦୀର୍ଘ ୨୩ ବର୍ଷ ବିତିଯିବା ପରେ ଆଜି ଅବସ୍ଥା ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇ ଯାଇଛି, ପୂର୍ବେ ଛାତ୍ରମାନେ ଶିଶୁ ଶ୍ରେଣୀରୁ ପଠନ ଆରମ୍ଭ କରୁଥିଲେ । କିନ୍ତୁ ୮।୧୦ ବର୍ଷ ମଧ୍ୟରେ ବହୁ ଗ୍ରାମ୍ୟ ପାଠଶାଳା ପ୍ରତିଷ୍ଠିତ ହୋଇ ପାରିଛି, ତେଣୁ ତଳ ଶ୍ରେଣୀଗୁଡ଼ିକ କ୍ରମେ ଉଠାଇ ଦିଆଯାଇ ନିମ୍ନ ପ୍ରାଥମିକ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନଙ୍କୁ ଗ୍ରହଣ କରାଯାଉଛି, ବର୍ତ୍ତମାନ ଛାତ୍ରମାନଙ୍କର ଜ୍ଞାନ ପରୀକ୍ଷା କରାଯାଇ ସ୍କୁଲରେ ନାମ ଲେଖା ଯାଉଛି, ପଞ୍ଚମ ଶ୍ରେଣୀ ପାସ୍ କରିଥିବା ଛାତ୍ରମାନଙ୍କୁ ପରୀକ୍ଷା କରି ସ୍କୁଲରେ ଉଚ୍ଚ ଶିକ୍ଷା ପାଇଁ ଗ୍ରହଣ କରିବାର ବ୍ୟବସ୍ଥା ହୋଇଛି ।

ଦିନେ ଶିକ୍ଷାପାଇଁ ଆଦିବାସୀଙ୍କ ମନରେ ମୋଟେ ଆଗ୍ରହ ନ ଥିଲ । ଆଜି କିନ୍ତୁ ଅବସ୍ଥା ସମ୍ପୂର୍ଣ୍ଣ ବଦଳି ଯାଇଛି । ଯେଉଁମାନେ ମେଧାବୀ ଛାତ୍ର ନୁହନ୍ତି— ସେମାନଙ୍କୁ ପାଠ ପଢ଼ିବା ପାଇଁ ଗ୍ରହଣ କରାଯାଉ ନାହିଁ ।

ଆଦିବାସୀ ଅଞ୍ଚଳରେ ଏ ପର୍ଯ୍ୟନ୍ତ ନାରୀ ଶିକ୍ଷା ବିବର୍ତ୍ତିତ ହୋଇନାହିଁ । ସ୍ତ୍ରୀଅମାନେ ଏପର୍ଯ୍ୟନ୍ତ ଶିକ୍ଷିତା ହୋଇ ପାରି ନାହାନ୍ତି, ତାହା ଛାଡ଼ି । ଜୁଆଙ୍ଗ ପ୍ରଭୃତି କେତେକ ଆଦିବାସୀ ମଧ୍ୟ ଶିକ୍ଷା ଦିଗରେ ବିଶେଷ ଅଗ୍ରସର ହୋଇ ପାରି ନାହାନ୍ତି । ସେହିପରି ପାଟଣ ଭୂମିଜ, ଲଞ୍ଜିଆ ସଉରା, କୁଟିଆ, ଡଙ୍ଗରିଆ କନ୍ଧ, କୋୟା ଓ ବଣ୍ଡୋ ପରଜା ଆଦି ମଧ୍ୟ ବିଶେଷ ପରିମାଣରେ ଶିକ୍ଷିତ ହୋଇ ପାରି ନାହାନ୍ତି ।

ଆସନ୍ତା ବର୍ଷମାନଙ୍କରେ ଆଦିବାସୀ ମଙ୍ଗଳ ବିଭାଗ ଯେ ନାରୀ ଶିକ୍ଷା ଓ ଅଶିକ୍ଷିତ ଆଦିବାସୀ ଗୋଷ୍ଠୀମାନଙ୍କର ଶିକ୍ଷା ଦିଗରେ ଯତ୍ନବାନ୍ ହେବେ ଏଥିରେ ସନ୍ଦେହ ନାହିଁ । ଆଦିବାସୀ ବାଳିକାମାନଙ୍କର ଉଚ୍ଚ ଶିକ୍ଷାପାଇଁ ଅଧିକ ବାଳିକା ଛାତ୍ରୀନିବାସ ସୃଷ୍ଟି କରିବା ଦରକାର । ଏହି ଶିକ୍ଷିତ-ଶିକ୍ଷିତା ଛାତ୍ର-ଛାତ୍ରୀମାନେ କିପରି ଅଧିକ ଇଞ୍ଜିନିୟର, ଡାକ୍ତର ହୋଇ ପାରିବେ—ସେ ଦିଗରେ ମଧ୍ୟ ଯତ୍ନ ହେବା ଉଚିତ ।

ଆଦିବାସୀ ଛାତ୍ରମାନେ ସେମାନଙ୍କ ପିତା ମାତାଙ୍କ ଠାରୁ ଉପଯୁକ୍ତ ପରିମାଣରେ ଆର୍ଥିକ ସାହାଯ୍ୟ ପାଉ ନ ଥିବାରୁ ଅସୁବିଧା ଦେଖା ଦେଉଛି । ତେଣୁ ପ୍ରଥମେ ସେମାନଙ୍କୁ ଆର୍ଥିକ ସାହାଯ୍ୟ ଦିଆଯିବା ଆବଶ୍ୟକ । ବେସରକାରୀ ବଦାନ୍ୟ ବ୍ୟକ୍ତିମାନେ ମଧ୍ୟ ଆଦିବାସୀ ଛାତ୍ରମାନଙ୍କୁ ଆବଶ୍ୟକୀୟ ଆର୍ଥିକ ସାହାଯ୍ୟ ଦେବା ଦରକାର ।

ପ୍ରାଥମିକ ଅବସ୍ଥାରେ କେନ୍ଦ୍ର ଓ ରାଜ୍ୟ ସରକାର ଆଦିବାସୀ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ ଦେବା ଦିଗରେ ଓ ସେମାନଙ୍କୁ ଶିକ୍ଷିତ କରାଇବା ଦିଗରେ ଅନୁକୂଳ ମତ ପୋଷଣ କରୁଥିଲେ, କିନ୍ତୁ ବର୍ତ୍ତମାନ ଶିକ୍ଷା ପାଇଁ ଆଦିବାସୀ ଛାତ୍ରଙ୍କ ମଧ୍ୟରେ ଆଗ୍ରହ ବୃଦ୍ଧି ପାଉଥିବା ସମୟରେ କେନ୍ଦ୍ର ଓ ରାଜ୍ୟ ସ୍ତରରୁ ଆର୍ଥିକ ସାହାଯ୍ୟ ସୀମିତ ହୋଇ ଯାଉଛି,

ବିଗତ ଦଶ ବର୍ଷ ମଧ୍ୟରେ ଆଦିବାସୀ ଛାତ୍ରଙ୍କ ଶିକ୍ଷାର ଯଥେଷ୍ଟ ପରିବର୍ତ୍ତନ ହୋଇ ପାରିଛି, କିନ୍ତୁ ଅଧିକ ଚେଷ୍ଟା ନ ହେଲେ ଏ ଛାତ୍ରମାନେ ଅନ୍ୟାନ୍ୟ ଉଚ୍ଚ ଜାତିର ଛାତ୍ରମାନଙ୍କ ସହିତ ସମାନ ହୋଇ ପାରିବା ସମ୍ଭବ ହେବନାହିଁ । ସରକାର ଏବଂ ବେସରକାରୀ ଭଦ୍ରବ୍ୟକ୍ତିମାନେ ଏକତ୍ରିତ ହୋଇ ଏ ଦିଗରେ ଏକ ସଫଳ ସମାଧାନ କରିବା ଆବଶ୍ୟକ, ତା' ହେଲେ ଆଦିବାସୀ ଛାତ୍ରମାନଙ୍କର ଶିକ୍ଷା ଉନ୍ନତ ହୋଇ ପାରିବ । ଆଶ୍ରମ ସ୍କୁଲର ଶିକ୍ଷା ପ୍ରଥମେ ବୈଷୟିକ ଶିକ୍ଷାରେ ପର୍ଯ୍ୟବେଶିତ ଥିଲା । ଏଠାରେ ଅଧ୍ୟୟନ କରିବା ପରେ କାର୍ଯ୍ୟ କରିବାର ଦକ୍ଷତା ଜାତ ହେଉଥିଲା । କୃଷି, ହସ୍ତକର୍ମକୁ ଶିକ୍ଷାର ମାଧ୍ୟମ ରୂପେ ଗ୍ରହଣ କରାଯାଉଥିଲା । ଆଶ୍ରମ ସ୍କୁଲ ଗୁଡ଼ିକୁ ଅନ୍ୟୁନ ଦଶ ଏକର ଜମି ଏହିସବୁ କାର୍ଯ୍ୟ ପାଇଁ ଦିଆଯାଉଥିଲା । ଏହି ଜମିରୁ ଛାତ୍ରମାନେ ନିଜ ଚଳିବା ପାଇଁ ପରିବା ଆମଦାନୀ କରୁଥିଲେ । ଏହି କାର୍ଯ୍ୟ ବର୍ତ୍ତମାନ ବି ଗ୍ରହଣ କରାଯାଉଛି । ସୁଖର କଥା ଯେ ବର୍ତ୍ତମାନର ଶିକ୍ଷାମନ୍ତ୍ରୀ ସ୍କୁଲ ମାନଙ୍କରେ କୃଷିକୁ ଗୋଟିଏ ବିଷୟରୂପରେ ଗ୍ରହଣ କରୁଛନ୍ତି ।

—*—

ଭୀମା ଭୂୟାଁ ଉପନ୍ୟାସର କିୟଦଂଶ—

# ଭୀମା ଭୁୟାଁ

୰ ଗୋପାଳ ବଲ୍ଲଭ ଦାସ, ଏମ୍. ଏ.

## ସୂଚନା

( ଆଷାଢ଼ ଶୁକ୍ଳ ଦଶମୀ )

"ଏତେ କଦର୍ଥନା ପାଇ କାହିଁକ,
ଶଶ ଶଶୀ ପ୍ରାପ୍ତ ହେତୁ ନାହିଁକ ?
କୁମ୍ଭକାର ଜାତ ଘଟକୁ ବଢ,
କୃଷ୍ଣ ଦେହ ପାଇ ନଷ୍ଟ କିମ୍ପେ ରହ,
ଶ୍ୟାମନାମ ଧର,
ଯାଅ ଅନୁକୂଳ କର ବାହାର ।" (ବଦଗ୍ଧ ଚନ୍ତାମଣି)

## ପ୍ରଥମ ପରିଚ୍ଛେଦ

ମଗୁଡ଼ିରରେ ଶିର—ଶିରଆ, ପୃଷ୍ଠରେ ଭୂଷଭୂଡ଼ିଆ ଶୀତ ହେଲେ ବି ନବାଗତୋନ୍ମୁଖ ତ୍ରପାପ, ଆହତ ମୁମୂର୍ଷୁ ବ୍ୟାଘ୍ର, ଭଲ୍ଲୁକଙ୍କ ପରି ମାଘରେ ଶୀତର ବଡ଼ ରାଗ ବୋଲି ଜଣା ଶୁଣା । ମାଘ ଚଳିଲଣି ତଥାପି ରାଗ ଦାଗ ଯାଇନାହିଁ । ଅରୁଣ ଦେବ ଅଗ୍ନି କୋଣରୁ ଅପସରିବା ଆରମ୍ଭିଲେଣି, କିନ୍ତୁ ଊଷାଦେବୀ କୁଜ୍‌ଝଟି ଓଢ଼ଣା ଅନ୍ତର କରି ନାହାନ୍ତି । ସୂର୍ଯ୍ୟଦେବ ଡରି ଡରି ଥରି ଥରି ଉଇଁଲା ପରି ଦେଖା ଯାଉଛନ୍ତି । ଘନ ନାଥଙ୍କର ଦୈନ୍ୟଭାବ ଦିଗ୍‌ଦିଗରେ ପ୍ରତିବିମ୍ବିତ । ପଣ୍ଡୁ ପତନରେ,

ପ୍ରପୀଡ଼ିତ ପାଦପେ ପୋଡ଼ା ପତର ପକାଇ ସାର ନାହାନ୍ତି । ପ୍ରାତଃକାଳୀନ ଧୂମୋଦ୍ଗମରେ ଏ.ତ.ତ ତଡ଼ାଗ ଧୂସରସ୍ନିତ । ବସନ୍ତ ପଞ୍ଚମୀ ସଙ୍ଗେ ଆସି ଥିଲେ ହେଁ ଋତୁରାଜଙ୍କର ସ୍ୱେରପର ଆଚରଣ ରହିଅଛି । ତଥାପି ଅଗ୍ନି ଜଳନ୍ତ, ଶୀତ ଟଳନ୍ତ, ବଚନ ଥିବାରୁ ଶତ୍ରୁ ନିର୍ମୂଳ ନୋହିଥିଲେ ହେଁ, ଯେଉଁ ପ୍ରକୃତିଦ୍ୱାରା ପ୍ରଣୋଦିତ ହୋଇ ରଣବିଜୟୀ ଛତ୍ରପତି, ସେନାପତି, ନାୟକ ପାୟକ ପ୍ରଭୃତି ନରକଙ୍କାଳାସ୍ତୃତ ରଣଭୂମିର ଶୋଣିତ ସ୍ରୋତ-ସ୍ୱଚ୍ଛ କୂଳେ ଆମୋଦପ୍ରମୋଦରେ ମତ୍ତ ହୋଇଥାଆନ୍ତି, ସେହି ପ୍ରକୃତିର ବଶବର୍ତ୍ତୀ ହୋଇ ପ୍ରକୃତି ରାଣୀଙ୍କ କୋଡ଼ରେ ଲାଳିତ ପାଳିତ ପ୍ରକୃତି ସନ୍ତାନ ଭୂଇଁଆମାନେ ଆଜ ମାଘପୋଡ଼ା ପର୍ବରେ ମାତିଛନ୍ତି । ତିନ ଦିନ ଅହରହ ଆମୋଦପ୍ରମୋଦ ଉତ୍ତାରୁ ଆଜ ଓଷା ଉଜୁଆଁ । ଅନେକ ଗ୍ରାମରୁ ଆହୂତ ଅନାହୂତ ଧାଙ୍ଗଡ଼ା ଧାଙ୍ଗଡ଼ୀ ବୁଢ଼ା ବୁଢ଼ୀ ଏକତ୍ରିତ । "ବସୁଧୈବ କୁଟୁମ୍ବକଂ" ବାଣୀ ଆବାଳବୃଦ୍ଧ-ବନିତା ସବୁରି ହୃଦୟ ଅଧିକାର କରିଅଛି । ଶତ୍ରୁ ମିତ୍ର ଉଭୟଙ୍କ ପାଇଁ ଭୂଇଁଆ ପଲ୍ଲୀର ସରଦାର ବିଶ୍ୱାଦରଙ୍କ କୁଟୀର ଅବାରିତ ଦ୍ୱାର । ନିମନ୍ତ୍ରିତ ହେଉ ବା ନ ହେଉ ସବୁରି ସମ୍ମାନ ସମାନ । ବଡ଼ ସାନ ଯେଣୁ ପାତର ଅନ୍ତର ନାହିଁ । ଉତ୍କର୍ଷଂତରେ ଯାହା ହେଉ ଘରେ ୨ ପାନ, ଆହାର, ମଣ୍ଡୁଆ ଦ୍ୱାରେ ଅହରହ ଢୁଙ୍ଗୁ ବାଜା, ଢୁଙ୍ଗୁ ନାଚ, ଢୁଙ୍ଗୁ ଗୀତ ପଞ୍ଚାଏ ପଞ୍ଚାଏ ଆସି ବାଉଛନ୍ତି, ଗାଉଛନ୍ତି, ନାଚୁଛନ୍ତି । ପଞ୍ଚାଏ ପଞ୍ଚାଏ ଯାଇ ଗାଉଛନ୍ତି, ପିଉଛନ୍ତି । ସ୍ଥୂଳରେ ମଣ୍ଡୁଆଟି ମଦ୍ଯଫେଣା ପରି ହୋଇଛି । ଅନ୍ୟଥା ଆହାର ବିହାର ଓ ମଧୁସଂଗ୍ରହ ହେଉ ଥିବାବେଳେ ଯେପରି ମକ୍ଷିକା ପୃଷ୍ଠି ଥାଇ ମଧୁ ଚକ୍ରର କାର୍ଯ୍ୟ ଚାଲିଥାଏ, ସେହିପରି ଘରେ ଘରେ ପାନ ଆହାର କାଳରେ ମଣ୍ଡୁଆଠାରେ ନୃତ୍ୟଗୀତ ବାଦ୍ୟର ବିରାମ ନାହିଁ ଜାତି ଅଜାତି, ସାନ ବଡ଼ ସମସ୍ତେ ଆନନ୍ଦ ଲହରୀରେ ଦୋଳାୟମାନ । ଏକ ଦିଗରେ ପ୍ରପୀଡ଼କ ପ୍ରବଳ ପ୍ରତାପୀ ଶୀତର ତିରୋଧାନ, ଅପର ଦିଗରେ କାନ୍ତଶୀତୋଷ୍ଣ ମଳୟାନିଳ ସହ ମନବଦନ-ରଞ୍ଜନକାରୀ ଋତୁରାଜଙ୍କର ଆଗମନ । ପୁଣି ଆନନ୍ଦର ପାରାପାର ନାହିଁ । ନିର୍ମଳ ଚନ୍ଦ୍ର ମଣ୍ଡଳ ଦର୍ଶନରେ ନୃତ୍ୟ କରୁ କରୁ ଅଗ୍ନି ଭକ୍ଷଣ କାଳେ ଚକୋରର ଯେଉଁ ଆନନ୍ଦ, ନବଜଳଧର ଦର୍ଶନରେ ଚାତକର ସେହି ଆନନ୍ଦ । ମଞ୍ଜୁ ଗୁଞ୍ଜ

ମାଳ ନାଲ ହ୍ରାମୂଡ଼ାଲ୍ ଯେପରି କାହାରି ୨ ଚିତ୍ତ ବିନୋଦିଆ, ସ୍ନିଗ୍ଧ ମିଳା ମାଳା । ସେହିପରି କାହାରି ୨ ମନ ମୃଗଧିକାଗ୍ର କାହାରି ୨ ବି ରୂପ-ଯୌବନ-ସମ୍ପନ୍ନା ଅପସରଙ୍କ ନୃତ୍ୟ ଗୀତ ଯେପରି, ଭୂଇଁଆଙ୍କ ବୋଡ଼ା ପାଳ, ଗୀଧପାଳ ପ୍ରଭୃତି ତାଙ୍କୁ ସେହିପରି । ଏହିପରି 'ଭିନ୍ନରୁଚିଃ ଲୋକଃ' ଅନୁସାରେ ଭିନ୍ନ ୨ ପଦାର୍ଥରୁ ଉତ୍ପନ୍ନ ହେଲେ ହେଁ ଆନନ୍ଦ ଏକ । ଗାଈ କଳା ହେଉ, ଧଳା ହେଉ, ଦେଶୀ ହେଉ କି ବିଦେଶୀ ହେଉ, ଦୁଧ ଏକ । ନଦୀମାତର ନ୍ୟୁନାଧିକ୍ୟ ପରି କଲ୍ଲୋଳ ହେଉ କି କଲ୍ଲୋଳ ହେଉ କି ତରଙ୍ଗ ହେଉ, ଆନନ୍ଦ ଏକ । କିନ୍ତୁ ସୁରସରିତ ବା ମାନସରୋବରର କଳନିନାଦମୀ ବୀଚି-ମାଳା କିମ୍ବା ସୁନୀଳ ମହାସାଗରର ଦୁଗ୍ଧଫେନନିଭ ଶୁଭ୍ରଚୂଡ଼ ଘୋଷନାଦୀ ଉତ୍ତାଳ ତରଙ୍ଗମାନଙ୍କ ପରି ଆନନ୍ଦ ସାଗରର କିଛି ଦୃଷ୍ଟି ବା ଶ୍ରୁତିଗୋଚର ହେବାର ନୁହେଁ । ହୃଦୟ ବା ମନରେ ଏହାର ଉତ୍ପତ୍ତି, ସ୍ଥିତି, ଲୟ, ବିଲୁପ୍ତି । ଏହା କିଏ ଦେଖା ଶୁଣା ନକଲେ ହେଁ ଭାବଭଙ୍ଗି ଆକାର ପ୍ରକାରରେ ଆପେ ୨ ପ୍ରକାଶ ପାଇଥାଏ । ପୁଣି "ଅଗ୍ନି ଯେସନେ ସବୁ ଖାଇ, ବିଶ୍ବରେ ଦୋଷଗୁଣ ନାହିଁ" ସେହିପରି ନରକିନ୍ନର, ପଶୁ, ପକ୍ଷୀ ସବୁଠାରେ ଆନନ୍ଦର ସଞ୍ଚାର । ଏଣୁକରି ବିବିଧ କାରୁକାର୍ଯ୍ୟ ଭୂଷିତ ନାନା ଆଲୋକ ମାଳାରେ ରଞ୍ଜିତ ସୁରମ୍ୟ ପ୍ରାଚୀନହର୍ମ୍ମ୍ୟରେ ଆନନ୍ଦର ଯେଉଁ ଲୀଳା ଖେଳା, ବନ୍ଧୁର ଧୂଳି ଧୂସରିତ ଶାଳ ଦୂଳାରେ ଆଲୋକିତ ଭୂଇଁଆ ମଣ୍ଡପରେ ତାର ସେହି ଲୀଳା ଖେଳା । ଏହାର ସାନ ବଡ଼, ଉଚ୍ଚ ନୀଚ ବିଚାର ନାହିଁ । ଏହା ଈଶ୍ବରୀୟ । ସ୍ବର୍ଗନରକ, ସୁରାସୁର; ନରକିନ୍ନର ଯାହାଙ୍କର କ୍ରୀଡ଼ା ପିତୁଳା ସେ ସଚ୍ଚିଦାନନ୍ଦ ନାମରେ ଅଭିହିତ ।

ଏହି ପରମ ପବିତ୍ର ଆନନ୍ଦ ତରଙ୍ଗରେ କୃପଣ ପଣିଆ ଘୁଞ୍ଚିଯାଏ ବନ୍ଦୀ କାରାମୁକ୍ତ ହୁଏ ଏବଂ ଶତ୍ରୁପଣିଆ ମନେ ରହେ ନାହିଁ । ଏହିପରି ଆନନ୍ଦ ସାଗରରେ ମଗ୍ନ ହୋଇଥିଲେ ହେଁ, "ଯାହା ମନ ଯାହାକୁ ରସେ, ତାହା ବିନା ତାକୁ ଆନ ନ ଦିଶେ" । ସେ ଯାହାକୁ ରସିଛି ସେ ତାକୁ ସୁଖୀ କରିବାରେ ଆପଣାକୁ ସୁଖୀ ମଣୁଅଛି । ତଥାପି ବିରୁଦ୍ଧ ଭାବ ବା ଆଗ୍ରହର କୌଣସି ଅବସର ନାହିଁ, ଘୃଣା ତାଚ୍ଛଲ୍ୟ ପ୍ରଭୃତିର ଛାୟା ସୁଦ୍ଧା ଦେଖା ନାହିଁ । ବିଶୁଦ୍ଧ ସଦ୍ଭାବରୁ କେହି ଅନ୍ତର ନୁହେଁ । ଏଥିରେ କେହି

କାହାରିକି ଉଣା ନୁହେଁ । ତାହାହେଲେ ବି ବଡ଼ ବଡ଼ଙ୍କ ଉପରେ ଅବଗୁଣ ଅଛି ।

ଚାରି ଭାଇଙ୍କ ମଧ୍ୟରେ ଜ୍ୟେଷ୍ଠ ରାମ ଦାଶରଥି । ପଙ୍କରୁ କୁମୁଦ ପ୍ରଭୃତି ଜନ୍ମ ଥିଲେ ବି କମଳ ପଙ୍କଜ ନାମଧାରୀ । ସେହିପରି ଏଠାରେ ତିନିଜଣ ଲକ୍ଷ୍ୟର ସ୍ଥଳ । ପ୍ରଥମତଃ ଏ ଗ୍ରାମର ତିନି ସରଦାର ଝିଅ ଚନାମାଳୀ । ତାହା ଛଡ଼ା ସରଦାରଙ୍କ ଅନ୍ୟ ସନ୍ତାନସନ୍ତତି ନାହାନ୍ତି । ପୁଣି ସରଦାରଙ୍କ ଗାଈ, ମଇଁଷି, ଧାନ, ଗୁଡ଼ଜଳ, ଛେଳି, ମେଣ୍ଢା ଅନେକ ଅଛନ୍ତି । ତଥାପି ଧନାଗମର ଫନ୍ଦାହରଦାର ବୃଦ୍ଧି ବୟସରେ ବି ଶାନ୍ତ ନାହାନ୍ତି । ଏ ସବୁ ଚନାମାଳୀ ପାଇଁ । ଏ ଅଞ୍ଚଳରେ ତାହାପରି କେହି ସୁନ୍ଦରୀ ନାହାନ୍ତି । ସେ ଯୁବାବସ୍ଥାରେ ଉପସ୍ଥିତା । ତାହାର ରୂପପରି ଗୁଣ ମଧ୍ୟ ସମସ୍ତେ ପ୍ରଶଂସା କରିଥାନ୍ତି ।

ଦ୍ୱିତୀୟତଃ ଅପର ପିଡ଼ର ସାଧୁ ସରଦାରଙ୍କ ପୁଅ ବାଣାଶୁର ଆଉ ଶ୍ୟାମା । ସରଦାରଙ୍କର କେବଳ ଏହି ଦୁଇ ପୁଅ । ତିନି ସରଦାରଙ୍କ ପରି ସାଧୁ ସରଦାରଙ୍କର ସମ୍ପତ୍ତି । ସାଧୁ ମଧ୍ୟ ଧନାଗମ ଉପାୟରୁ ବିରତ ନୁହନ୍ତି । ପୁଅ ଦୁହେଁ ଯୁବା, ଦେବ ମୂର୍ତ୍ତି, "କାମ ଦେଖିଲେ ଝାମ ଯିବ" । ମହା ଧନୁର୍ଦ୍ଧର, ଶାନ୍ତସୁଶୀଳ ବୋଲି ତିନିଖଣ୍ଡ ପିଡ଼ରେ ଜଣାଶୁଣା । ବାଣାଶୁର ବଡ଼, ଶ୍ୟାମା ସାନ । କିନ୍ତୁ ରୂପରେ ଗୁଣରେ କିଏ ଊଣିଶ କିଏ ବିଶ, ଲୋକେ ଠିକ୍ କରି କହି ପାରନ୍ତି ନାହିଁ । ଚନାମାଳୀ ଧାଙ୍ଗିଡ଼ୀ, ବାଣାଶୁର ଓ ଶ୍ୟାମା ଧାଙ୍ଗଡ଼ା । ରୂପଗୁଣ ଯାହାର ଯାହା ହେଉ ଅଚିନ୍ତ୍ୟମନ କାହାକୁ ବୋଲିଯାଏ ତାହା ତିନିଙ୍କ ମଧ୍ୟରୁ ଯାହାକୁ ଦେଖ ତାହାଠାରୁ ଜଣାଯାଏ । ତିନିହେଁ ଖାଉଛନ୍ତି, ଖୁଆଉଛନ୍ତି, ପିଉଛନ୍ତି, ପିଆଉଛନ୍ତି, ନାଚୁଛନ୍ତି, ନଚଉଛନ୍ତି, ଖେଳୁଛନ୍ତି, ଖେଳାଉଛନ୍ତି । ସାନବଡ଼ ସବୁରି ସଙ୍ଗେ ଏହିପରି କରୁଥିଲେ ବି ବାଣାଶୁର ଓ ଶ୍ୟାମା ଦୁହେଁ ଚନାମାଳୀ କି ରସିଥିବା ଭାବପୂରେ କାହାରି ଦ୍ୱିଧା ନାହିଁ । ଚନାମାଳୀର ମନ ଧରିବାକୁ ଅଠାକାଠି ଗୁଳବାରେ କେହି କାହାରିକୁ ଊଣା ନୁହେଁ । ଏହିପରି ଅନେକ ଦିନ ହେଲା ଚାଲି ଆସୁଛି ବୋଲି ସମସ୍ତଙ୍କୁ ଜଣାଶୁଣା । କିନ୍ତୁ ଧାଙ୍ଗିଡ଼ୀ ମନ କାହାଆଡ଼କୁ ଢଳୁଛି କେହି ବୁଝି ପାରୁ ନାହାନ୍ତି । ଏହି ପର୍ବରୁ ଏହା ଜଣା ପଡ଼ିବାର

ଆଶା ଅଛୁ । ସେଥିପାଇଁ ଲୋକେ ଆରମ୍ଭରୁ ଛଳା ଛକରେ ରହିଛନ୍ତି । ମାଝ ଧାଙ୍ଗଡ଼ୀର ପାଚିରି ଅନ୍ତର କାହାର ଆଖିରେ ଛଟିଲେ ମାଝ ପଡ଼ୁ ନାହିଁ । ପାନଭାଇ, ବଉଳଭାଇ ହେଲେ ବି ସେ କାହାରିକ ବଉ ବା କାହାରିକ ପାନ ମଣୁଥିବାର ଦେଖାଯାଏ ନାହିଁ । ବରଂ ସେ ଦୁଇ ଭାଇଙ୍କି ଦୁଇ ଆଖିର ପିତୁଳା ପରି ସମାନ ସ୍ନେହ ଥିବାର ଲୋକେ ଦେଖିଛନ୍ତି ସୁତରାଂ ଏଠାରେ କହିଲେ ଅଯଥା ହେବ ନାହିଁ ଯେ "କାହାମନ କାହାକୁ ଜଣା, କେକରେ ଅଧିକ କେକରେ ଊଣା" ।

କାହାର ମନ କାହାରିକ ଜଣା ହେଉ ବା ଅଜଣା ହେଉ, କେହି କାହାରିକୁ ଅଧିକ କହୁ କି ଊଣା କରୁ, କାହାର ପ୍ରେମକୌତୁକ ଊଣା ନାହିଁ କି ଝିଅ ବୋହୂଙ୍କର ଉତ୍କଣ୍ଠା ନାହିଁ ।

ଏମାନଙ୍କୁ ଅଜଣା ନାହିଁ ଯେ ରାଣୀହଂସ ପୁରର ରାଜାଙ୍କ ବ୍ୟତୀତ ଅନ୍ୟ କାହାର ଗୁଡ ପଡ଼େ ନାହିଁ । ବାପୁରୁ, ପାଟପୋଷୀଙ୍କ ମାଇପେ ପଦାକୁ ବାହାରନ୍ତି ନାହିଁ । ବେବର୍ତ୍ତା, ନଅର ବଟୋଇଙ୍କ ଝିଅ ବୋହୂଏ ବାପଭାଇ, ଶଶୁର, ଦେଢ଼ଶୁରଙ୍କ ଆଗରେ ଛୁଆଁ ହୁଅନ୍ତି ନାହିଁ । ପୁଣି ଏମାନେ କାଳେ କାଳେ ପଖାଉଜ, ମୃଦଙ୍ଗ, ଡ଼ୁବି ତବଲା, ସିତାର, ବେହେଲା ଶୁଣି ଆସୁଥିଲେ ବି ବାଈନାଚ, ଗୋଟିପୁଅ ନାଚ, ରାମଲୀଳା, କୃଷ୍ଣଲୀଳା, ଭାରତ ଲୀଳା ନାଟ ଦେଖି ଆସୁଥିଲେ ବି ଯେଉଁପରି ରୁଙ୍ଗ୍ ବାଜା କ ବୋଡ଼ା ବା ଗୀଧପାଲୀ ନାଚ ଗୁଡ଼ ନାହାନ୍ତି । ସେହିପରି ଡାଲଖାଇ ଗୀତ ଗୁଡ଼ ନାହାନ୍ତି କିଂବା ରୁଙ୍ଗ୍ ନାଚ୍‌ନାଚ୍ ଧାଙ୍ଗଡ଼ା ଧାଙ୍ଗଡ଼ୀଏ ବର କନ୍ୟା ବାଛି ନେବା ଗୁଡ଼ ନାହାନ୍ତି । ଗୁରୁଜନ ବା ବୟୋଧିକ ଲୋକେ ଥିବା ସ୍ଥଳେ ବିଶୁଦ୍ଧ ପ୍ରେମ କୌତୁକ କମ୍ଭା ଝିଙ୍କା ବିବାହ ପାଇଁ ରୁଙ୍ଗ୍ ନାଚରୁ ପ୍ରେମିକ ପ୍ରେମିକାଙ୍କର ବନଗମନ ଏହାଙ୍କଠାରେ ଶଙ୍କା, ଭୟ, ନିନ୍ଦା, ଘୃଣା, ଛାଞ୍ଚଲ୍ୟର ବିଷୟ ନୁହେଁ । ଆପଣା ଆପଣା ମନ ଭଲ ବର କନ୍ୟା ବାଛିବାଟା ରୁଙ୍ଗ୍ ନାଚର ପ୍ରଧାନ ଉଦ୍ଦେଶ୍ୟ । ଏଥିପାଇଁ ସାରୁକୁଦର ଧାଙ୍ଗଡ଼େ ମେହେନ୍ଦୀ ପୁରକୁ, କୁଆଁରର ଧାଙ୍ଗଡ଼ୀଏ ଗାଟରଙ୍ଗାକୁ ଯାଇ ରୁଙ୍ଗ୍ ନାଚନ୍ତି । ଏଥିର ସମ୍ବାଦ ଯେ ପୂର୍ବରୁ ଦିଆନିଆ ହୋଇଥାଏ

ତାହା ନୁହେଁ । ଏକ ଗ୍ରାମର ଧାଙ୍ଗଡ଼େ ଅନ୍ୟ ଗ୍ରାମରେ ବା ଏ ଗାଁର ଧାଙ୍ଗଡ଼ୀଏ ସେ ଗାଁରେ ହଠାତ୍ ଯାଇ ପହଞ୍ଚନ୍ତି । ତଥାପି କାହାରିକି ଫେରାଇ ଦିଆଯାଇ ନ ପାରେ । ଧାଙ୍ଗଡ଼ ଧାଙ୍ଗଡ଼ୀଏ ନାଚିବାକୁ ଅନ୍ୟତ୍ର ନ ଯାଇଥିଲେ, ଦୁଇ ଗାଁ ଧାଙ୍ଗଡ଼ ଧାଙ୍ଗଡ଼ୀଙ୍କୁ ରୁଙ୍ଗ୍ ନାଚିବାକୁ ହେବ । ଏଥିପାଇଁ ଯେଉଁମାନେ ଏକ ସମୟରେ ଧାଙ୍ଗଡ଼, ଧାଙ୍ଗଡ଼ୀ ଥିଲେ, ବର୍ତ୍ତମାନକୁ ସେମାନେ ବୁଢ଼ା, ବୁଢ଼ୀ କିମ୍ବା ବାପ, ମାଆ । ସେମାନେ ଖେମା ସ୍ୱଜନଙ୍ଗତ ସାଙ୍ଗକୁ ବ୍ରୀହି ଡାଲି, ମଦ ସାଙ୍ଗକୁ ମାଂସ ଯୋଗାଇବାରେ ସୃଷ୍ଟି କରୁ ନାହାନ୍ତି । ଆଗନ୍ତୁକଙ୍କ ଚର୍ଚ୍ଚାରେ ହେଳା କରନ୍ତି ନାହିଁ, କିମ୍ବା ରୁଙ୍ଗ୍ ନାଚରୁ ଦୂରରେ ରହନ୍ତି ନାହିଁ । ଏହା ଭଲ କି ମନ୍ଦ, ନିନ୍ଦନୀୟ କି ପ୍ରଶଂସନୀୟ ତାହା ଭୂଇଁଆଏ ବା ତାଙ୍କ ରଜା ଜାଣନ୍ତି । ମାତ୍ର ଏହା ଜଣା ଶୁଣା ଯେ, ସେମାନେ ଆଦିମ ଜାତି । ସେମାନଙ୍କର ଏହିପରି ଚଳି ଆସୁଅଛି । ସେମାନେ ଯେପରି ଆଦିମଜାତି, ସେମାନଙ୍କର ଏ ପ୍ରଥା ଆଦିମ ବୋଲି କଥିତ ହୋଇଥାଏ । ପୁଣି ଏଣେ ରଜା ବେବର୍ତ୍ତା, ନଅର ବଶୋଇ, ଗ୍ରାମୁକରଣ, ଗପ୍ପଗ୍ରନ୍ଥ, ପାଟପୋଷୀ ପ୍ରଭୃତି ଅନ୍ତଃପୁର ପ୍ରଥା ମାନ ଆସୁଛନ୍ତି । ଏଣିକି ତାହା ଉଠାଇ ଦେବାର ଯତ୍ନ ଓ ଚେଷ୍ଟା ଦେଖାଯାଏ । ସୁତରାଂ କିଏ ଆଦିମ, କିଏ ଅନ୍ତିମ, କିଏ ଭଲ, କିଏ ମନ୍ଦ ବିଚାର ନ କରି ଏତିକି କହିଲେ ବୋଧହୁଏ ଯଥେଷ୍ଟ ହେବ ଯେ “କିସ ପୁଣି ଦେଖା ନଯାଏ ଯନ୍ଧ ଥାଇ ଜୀବରେ” ।

ଆଜି କିଛି ଦେଖାଯାଉ ନଥାଉ ମାଘ ପୋଡ଼ାର ଏହି ଛେର୍-ଛେରା ପର୍ବରେ ଆନନ୍ଦର ସ୍ରୋତ ସଙ୍ଗେ ପ୍ରେମର ସ୍ରୋତ ସ୍ପଷ୍ଟ ଦେଖାଯାଏ । ଏହା ମଣିକାଞ୍ଚନ, ଚନ୍ଦାଚନ୍ଦ୍ର, ଗଙ୍ଗାଯମୁନାଙ୍କ ମିଳନ, ବୃଦ୍ଧବୃଦ୍ଧା, ଯୁବକ ଯୁବତୀ, ବାଳକ ବାଳିକା ସମସ୍ତେ ଉପସ୍ଥିତ । ସମସ୍ତଙ୍କ ମନ ଉଲ୍ଲସିତ । ହୃଦୟ ପ୍ରଫୁଲ୍ଲିତ । କେହି ସୁଖୀ ହେବାରେ, କେହି ସୁଖୀ କରିବାରେ, କେହି କୌତୁକ କରିବାରେ, କେହି କୌତୁକ ଦେଖିବାରେ ସୁଖୀ । ଧାଙ୍ଗଡ଼ଧାଙ୍ଗଡ଼ୀଏ ପ୍ରେମ କୌତୁକ କରିବାରେ ଓ ବୁଢ଼ାବୁଢ଼ୀଏ ତାହା ଦେଖିବାରେ ସୁଖୀ । କେହି କାହାର ସୁଖରେ ବାଧା ଦେଉନାହିଁ କି ବିଘ୍ନ ଘଟାଉ ନାହିଁ । କେହି କାହାର ବିରୋଧୀ ନୁହେଁ । ଧାଙ୍ଗଡ଼-

ଧାଙ୍ଗଡ଼ୀଏ ଆପଣା ଆପଣା ପ୍ରେମ-ଫାନ୍ଦରେ ଲାଗିଛନ୍ତି । ବୁଢ଼ାବୁଢ଼ୀଏ ଛଇଁରେ ହାତ ଦେଇ ନାହାନ୍ତି କି ପାଟି ଫିଟାଇ ନାହାନ୍ତି ।

ଏମାନେ ପ୍ରକୃତିର ସନ୍ତାନ । ପ୍ରକୃତିକୋଳରେ ଲାଳିତପାଳିତ । ଅଜ୍ଞାନ ପଢ଼ି ଜ୍ଞାନୀ ହୋଇ ନାହାନ୍ତି, ତଥାପି ଏମାନେ ଭଲକରି ବୁଝିଛନ୍ତି ଯେ ମନୁଷ୍ୟ କେତେକ କାଳଯାଏ ବଢ଼ିବ, ତେଣିକି ତୁଟିବ । ଅନ୍ତରେ ଅନନ୍ତରେ ଅନ୍ତ ହେବ । ବାଳକାଳେ ଯାହା ଥିବ ଯୁବାକାଳେ ତାହା ନ ଥିବ । ଯୁବାକାଳ କଥା ବୁଢ଼ାକାଳକୁ ନଥିବ । ଯୁବା ଯାହା କରିପାରେ ବୁଢ଼ା ତାହା ନ ପାରେ । ଯୁବାକାଳେ ଯାହା ସୁନ୍ଦର ଦିଶେ, ତାହା ବୁଢ଼ାଠାରେ ମାଗି ଆଣିଲା ପରି ଦେଖାଯାଏ । ଯୁବାକାଳେ ଯାହା ସୁଖକର, ବୁଢ଼ାକାଳେ ତାକୁ ଅନାଇବାକୁ ମନ ହୁଏ ନାହିଁ । ସୁତରାଂ ପ୍ରେମକୌତୁକରେ ଯୁବକ ଯୁବତୀଙ୍କର ପ୍ରତିଦ୍ୱନ୍ଦୀ ହେବାପାଇଁ ବୁଢ଼ା-ବୁଢ଼ୀଙ୍କର ପଥରଦାନ୍ତ ବା କଳପ ଲୋଡ଼ା ନାହିଁ । ପଚିଶ ଷାଠିଏ ବରଷ କାଣ୍ଡ କାଉଁଶ ମାରି ମାରି ଯେ ଦକ୍ଷତା କୁଶଳତା ପ୍ରଭୃତି ଲବ୍ଧ ହୋଇଅଛି, ତାହା ଦେଖାଇବା ପାଇଁ ପଚିଶ ତିରିଶ ବର୍ଷିଆଙ୍କ ସଙ୍ଗେ ସେ କାଳ ବୁଢ଼ାଙ୍କର ପ୍ରତିଦ୍ୱନ୍ଦିତା ନାହିଁ । ଅଥଚ ପିଲାଏ କିପରି ଭଲ ହେବେ, କିପରି ଭଲରେ ରହିବେ, ଯେଉଁକାଳେ ଯାହା ଶୋଭା ପାଏ, ଯାହା ସୁଖକର ତାହା ସୁଖରେ ପାଇ ପାରିବେ । ଏହି ସବୁ ଫନ୍ଦାରେ ବୁଢ଼ାବୁଢ଼ୀଙ୍କର ମନ ଆଉ ଯତ୍ନ । ତହିଁରେହିଁ ସେମାନଙ୍କର ସୁଖ । ସବୁ କାଳରେ ସମସ୍ତଙ୍କ ସବୁ ସୁଖକର ନୁହେଁ । କିନ୍ତୁ କିଛି ନିଜକୁ ସୁଖକର ନୋହିଲେ ବି ସେଥିରେ ଅନ୍ୟକୁ ସୁଖୀ ଦେଖିବାରେ ସୁଖ ଅଛି । ବୁଢ଼ା ହେଲେ ଯାହା ନିଜେ ଖାଇବା, ପିଇବା, ନାଚିବା, ପିନ୍ଧିବାରେ ସୁଖ ନାହିଁ, ତାହା ଅନ୍ୟକୁ ଖୋଇବା, ପେଇବା, ପିନ୍ଧେଇ ଦେବାରେ ସୁଖ ଅଛି । ଏହା ପୁଅଝିଅ, ଭାଇଭଉଣୀଙ୍କ ପାଇଁ ବାପ ମା', ବଡ଼ ଭାଇ ଭଉଣୀଙ୍କ ଯତ୍ନ ଓ ଚେଷ୍ଟାରୁ ଦେଖାଏ । ପାଳିତ ପୁଅ ଝିଅ କରିବାରୁ ସ୍ପଷ୍ଟ ପ୍ରକାଶ । ଏହା ପ୍ରକୃତିର ନିୟମ ବୋଲି ଜଣାପାଏ । କିନ୍ତୁ ବଡ଼ପଣିଆ ଦେଖାଇବା ପାଇଁ ଯୁବାଙ୍କର ପ୍ରତିଦ୍ୱନ୍ଦିତା ହେବା କି ବାଟ ଓଗାଳି ଗାଡ଼ ମାଡ଼ିବସିବା ନିୟମ ବୋଲି ଜଣାପାଏ ନାହିଁ । ଏହି ନିୟମ

ଅନୁକରଣରେ ରାଜା ପ୍ରଜା ଉଭୟଙ୍କ ପାଇଁ ବାନପ୍ରସ୍ଥ ବ୍ୟବସ୍ଥା ହୋଇ ଥିବ ବୋଧ ହୁଏ ।

ତାହା ଯାହା ହେଉ ଭୂଇଁଆଏ ବାନପ୍ରସ୍ଥ କରୁନ ଥାନ୍ତି । ତାହା ନକଲ ଦୃଷ୍ଟିରେ ସନ୍ତାନ ବାପବାପୁଣୀ ଯେମିତ ଶୋଇ ଶୋଇ ଝୁଅଙ୍କର ଦୋଷଗୁଣ ଦେଖୁଥାଅନ୍ତି ଓ ବେଳେ ବେଳେ ଶିକ୍ଷା ଦେଉ ଥାଆନ୍ତି ଭୂଇଁଆ ବୁଢ଼ା ବୁଢ଼ୀଏ ଘରେ ବସି ସେହିପରି କରୁଅଛନ୍ତି । ଆପଣାର ଓ ଗାଁର ପିଲା ପିଲାଙ୍କର ଏମାନେ ନଜେ ନଜେ ଅବଧାନ । ଏମାନଙ୍କର ଅନ୍ୟ ଅବଧାନ ନାହିଁ କି ଅଧ୍ୟାପକ ନାହିଁ । ଗୁରୁଶାଳୀ ନାହିଁ କି ଚୌପାଢ଼ି ନାହିଁ । ସୁତରାଂ ଭୂଇ ଆ ପିଲାଙ୍କର ଅନ୍ୟଜାତି କୂଳ, ଶୀଳ ପ୍ରଭୃତିର ଆଦର୍ଶ ନାହିଁ । ବାପ ଭାଇଙ୍କ ଝୁଅଙ୍କ ପରି ଏମାନେ ବାପ ମାଆଙ୍କ ଆଗ୍ରର ବ୍ୟବହାର ରୂଳ ଚଳଣରେ ଶିକ୍ଷିତ, ଦୀକ୍ଷିତ ଓ ପରିବ୍ରଳିତ । ଏଣେ ଯୁବକ ଯୁବତୀଏ କେତେ କେତେ ନୂଆ କଥା ଦେଖୁଛନ୍ତି, ଶୁଣୁଛନ୍ତି, ଦେଖୁଛନ୍ତି, ଶିଖୁଛନ୍ତି । ଅଥଚ ଆପଣା ବଡ଼ପଣ ଦେଖାଇବାକୁ ବୁଢ଼ା ବୁଢ଼ୀଙ୍କର ପ୍ରତିଦ୍ୱନ୍ଦୀ ହୋଇ ନାହାନ୍ତି କି ସେମାନଙ୍କୁ ତୁଚ୍ଛଜ୍ଞାନ କରୁନାହାନ୍ତି କମ୍ବା ସେମାନଙ୍କର ଅମାନିଆ ହୋଇ ନାହାନ୍ତି । ସେମାନେ ଯେତେ ଅଜାଣିବା ଗୁଆଁର ହେଲେ ବି ସେମାନଙ୍କୁ ଭକ୍ତି ଆଜ ଶ୍ରଦ୍ଧା କରୁଛନ୍ତି । ବୋଧହୁଏ ଏହି ମତି ଅନୁସାରେ ଦିନ ଦିନ ନୂଆ ନୂଆ କଥା ବାହାରି ନବ ନବ ଯୁଗ ଉପସ୍ଥିତ ହେଉଥିଲେ ହେଁ ପୁରୁଣାର ଆଦର ଗୌରବ ଭକ୍ତି ଶ୍ରଦ୍ଧା ଯାଉ ନାହିଁ । ପୁରୁଣା ନୂଆ ନୂଆ କରିବାକୁ ପଶ୍ଚାତ୍‌ପଦ ହୋଇ ନାହିଁ । ଲାଳନ ପାଳନରେ ତ୍ରୁଟି କରୁନାହିଁ । ନୂଆ ପୁରୁଣା, ବୁଢ଼ା ପିଲାଙ୍କର ଏହି ସମ୍ବନ୍ଧରେ ନାନା ବିପଦ ଉପସ୍ଥିତ ହେବାର ଦେଖାଯାଏ । ସେ ଯାହା ହେଉ, ଭୂଇଁଆ ମାନେ ଗତି ଭଲ କି ମନ୍ଦ ସେମାନେ ବା ସେମାନଙ୍କର ଦେଶର କର୍ତ୍ତା କର୍ତ୍ତ୍ରୀଏ ଜାଣନ୍ତି । କିନ୍ତୁ ଫଳରେ ଦେଖାଯାଏ ଯେ ଭୂଇଁଆ ପିଲା କାଳେ କାଳେ ଭୂଇଁଆ । ଆଜ ଯେଉଁମାନେ ଗୁରୁଶାଳୀ, ଚଉପାଢ଼ୀ, ସ୍କୁଲ, କଲେଜରେ ଶିକ୍ଷିତ, ଦୀକ୍ଷିତ ସେମାନଙ୍କ ମଧ୍ୟରେ କୌଣସି କୌଣସି ହିନ୍ଦୁର ପିଲା ମୁସଲମାନ, ମୁସଲମାନଙ୍କର ପିଲା ଖ୍ରୀଷ୍ଟିୟାନ, ଓଡ଼ିଆ ପିଲା ବଙ୍ଗାଳୀ, ବଙ୍ଗାଳୀ ପିଲା ଫିରିଙ୍ଗୀ । ବିଅଁକ, ଛୁଆ ମାଙ୍କଡ଼, ମାଙ୍କଡ଼ ଛୁଆ ବିଅଁ ।

ସାମୟିକ ସୁଖରେ ସମାନ ହେଉଥିଲେ ହେଁ ପିଲାପିଲିଙ୍କ ଭବିଷ୍ୟତ ସୁଖ ଦୁଃଖ କଥା ବୁଢ଼ା ବୁଢ଼ୀଙ୍କ ଗୁଡ଼ ନାହିଁ । ତଲ ଓ ସାଧି ସରଦାର ଦୁହେଁ ବୁଢ଼ା ହେଲେଣି । ଦୁହେଁ ଥିଲା ଲୋକ । ଏହାର ତିନି ତାହାର ଦୁଇ ପୁଅ ଯୌବନ ଅବସ୍ଥା ପ୍ରାପ୍ତ—ବିବାହର ଉପଯୁକ୍ତ । ଯୋଗ୍ୟ ପାତ୍ର ପାତ୍ରୀଙ୍କ ମିଳନ କରିବା, ପିତାମାତାଙ୍କର ଇଚ୍ଛା ସ୍ୱଭାବିକ । ପୁଣି ତିନି ପୁଅ ଥିଲେ ଉପଯୁକ୍ତ ସ୍ଥାନରେ ବିବାହ ପ୍ରସଙ୍ଗ ପଡ଼ିଥାଏ । ତିନ୍ଦ୍ରିକା ବିବାହ ପ୍ରଥା ପ୍ରଚଳିତ ଥିଲେ ହେଁ ଭୂଇଁଆ ଘରେ ଯେ ବରକନ୍ୟା ବସ୍ତୁକଷ୍ଟରେ ବାପ ମାଆଙ୍କ ହାତ ନାହିଁ କି କଥା ନାହିଁ ତାହା ନୁହେଁ । କେବଳ ଧାଙ୍ଗଡ଼ା ଧାଙ୍ଗଡ଼ୀଙ୍କର ମିଳନ ହେଲେ ଯେ ହେଲା ତାହା ନୁହେଁ । ଅକ୍ଷମ ଲୋକ ନୋହିଥିଲେ ଯେ ହଠାତ୍ କେହି ତିନ୍ଦ୍ରିକା ବିବାହ କରିବ ତାହା ନୁହେଁ, କିମ୍ବା ଶତ୍ରୁ ମିତ୍ର ଜାତି ଅଜାତିରେ ଯେ ବିଭା ହେବ ତାହା ନୁହେଁ ।

ଭୂଇଁଆଏ ଜାଣନ୍ତି ଯେ କେହି କାହାର ଧାଡ଼ୀ ଗୁଡ଼ ଯାଏ ନାହିଁ । ସେମାନେ ଅବଶ୍ୟ ଜାଣନ୍ତି ନାହିଁ ଯେ ଖଚର ପ୍ରଭୃତି ପଶୁ ଦୋମିଶାରେ ଦୁଇ ଜାତିର ଦୁର୍ଗୁଣ ଅଧିକ ବୋଲି ଡାରଉଇନ୍ ସାହେବ ପ୍ରମାଣ କରି ଯାଇଛନ୍ତି କିମ୍ବା ଜଣେ ପାଦ୍ରୀ ସାହେବ କହି ଯାଇଛନ୍ତି ଯେ ଈଶ୍ୱର କଳା ମଣିଷ କରିଛନ୍ତି, ଈଶ୍ୱର ଧଳା ମଣିଷ କରିଛନ୍ତି । କିନ୍ତୁ ସଇତାନ ଦୋମିଶାଙ୍କୁ ସୃଷ୍ଟି କରିଅଛି । ତଥାପି ଧାଙ୍ଗଡ଼ା ଧାଙ୍ଗଡ଼ୀଏ ଆପଣା ଆପଣା ବର କନ୍ୟା ଠିକ କରୁଥିଲେ ହେଁ ଓ ତିନ୍ଦ୍ରିକା ବିବାହ ଚଳୁଥିଲେ ବି ସେମାନଙ୍କର ସ୍ୱେଚ୍ଛାଚାରିତା ନାହିଁ । ବିବାହ ବିଷୟ ପିତାମାତାଙ୍କର ଏକାବେଳେକେ ଆୟତର ବହିର୍ଭୂତ ନୁହେଁ ।

ତନାମାଳୀ ମନକୁ ଭଲ ଆସିଥିଲେ ବି ବାଣାଶୁର ଓ ଖୀମା ଜାତି କୁଳର ସତମାତ ମାନମର୍ଯ୍ୟାଦାକୁ ଫିଙ୍ଗି ଦେଲାଭଳି ଲୋକ ନୁହନ୍ତି । ଗୁପ୍ତ ଭାବରେ ବିବାହ କରି ତନାମାଳୀକି ସ୍ଥାନାନ୍ତରେ ରଖି ନିଜଲୋକ ବା ଧର୍ମ ଆଖିରେ ଧୂଳି ଦେଲା ଭଳି ଶିକ୍ଷିତ ହୋଇ ନାହାନ୍ତି । ଯାହା ଇଚ୍ଛା ତାହା କଲା ଭଳି ପ୍ରେମାନ୍ଧ ହୋଇ ନାହାନ୍ତି । ପୁଣି ତନାମାଳୀ ମଧ୍ୟ ସେହିପରି ବାଟ

ବୁଲୁଛି । ବାଣାସୁର ଓ ଖେମା ମଧ୍ୟରୁ କାହାକୁ ବରିବାକୁ ରସିଛି ତାହା ତାହାର ଢଙ୍ଗଢାଙ୍ଗରୁ ଜଣା ପଡ଼ୁନାହିଁ । ସେ ଦୁହିଁଙ୍କଠୁ ଜଣକୁ ନ ପାଇଲେ ତା ମନ କି ହେବ କିମ୍ବା ତାକୁ ନ ପାଇଲେ ଦୁଇ ଭାଇଙ୍କ ମନ କି ହେବ ତାହା କେହି କହି ନ ପାରେ । କାରଣ ଏ ଦିନହେଁ ଅନ୍ୟ ଧାଙ୍ଗଡ଼ା ଧାଙ୍ଗଡ଼ୀଙ୍କ ମାଝେ ପଶୁ ନାହାନ୍ତି କି ଅନ୍ୟସବୁ ରଙ୍ଗ୍ ନାଚ ଯାଉ ନାହାନ୍ତି, ତାହା ନୁହେଁ ।

ସେମାନଙ୍କ ମନ ଜଣାଯାଉ ନ ଥିଲେ ହେଁ ସେମାନେ ଆପଣା ୨ କଥାରେ ଏତେ ଉଦାସୀନ ପରି ବୋଧ ହେଉଥିଲେ ହେଁ ତାଙ୍କପରି ମନୋଭାବ ଗୋପନ କରି ରଖିବାକୁ ତିନ ଓ ସାଧୁ ପ୍ରୟାସୀ ନୁହନ୍ତି । କିମ୍ବା ସେପରି ଉଦାସୀନ ନୁହଁନ୍ତି । ତାହା କହିବା, ସେପରି ହେବା ଉଚିତ କି ନୁହେଁ ଏବଂ ତାହିଁ ପାଇଁ ଯେ ଆଉ ସମୟ ନାହିଁ, ତାହା ସେ ଦୁହେଁ ବୁଝି ସାରିଲେଣି । ଅବଶ୍ୟ ତାଙ୍କର ଆଉ ଧାଙ୍ଗଡ଼ୀ ଖୋଜିବାର କି ପ୍ରେମ ଫାନ୍ଦ ପଡ଼ିବାର ସମୟ ନାହିଁ । ତାହିଁରେ ଆଉ ସୁଖ ନାହିଁ ବୋଲି ଯେ ସେମାନେ ପୁଅ ଝିଅଙ୍କ ସୁଖ ଦୁଃଖ ଭୁଲିଛନ୍ତି ତାହା ନୁହେଁ । ନଥାଁ ଗଦା କଡ଼ରେ ବସି ଦୁହେଁ ଧାଙ୍ଗଡ଼ା ଧାଙ୍ଗଡ଼ୀଙ୍କ ନାଚ ରଙ୍ଗ ଦେଖୁଛନ୍ତି । ଏ କଥା ସେ କଥା କଥାବାର୍ତ୍ତା କରୁଛନ୍ତି । ସେଠାରେ ଆଉମାନେ ବି ବସିଛନ୍ତି ଓ ଆସି ବସୁଛନ୍ତି । ଏହିପରି କଥାରେ କଥାରେ ତିନ କହିଲା—

"କି ସରଦାରେ, ବୁଢ଼ା ହେବାକୁ କେନ୍ତୁ ବଢ଼ିଲା କି ? ଧାନ ଚାଉଳ ଖରଚ ହେବା ଡରରେ ଖାଉଁ ଥାଉଁ, ବାହାଘର କରିବ ନାହିଁ, ନା କିଛି ନ ଥିଲା ପରି ଝିଙ୍କା ବାନ୍ଧା କରାଇବ ?"

ସାଧୁ—ତେମେ ବି ତ ସରଦାରଟିଏ । ତମର ଧନ ଦଉଲତ କମ କ'ଣ ? ମୋର ତ ଦଶଟି ପୁଅ । ସେଇକ ଅଧ ୨ ସେର କରି ନେବେ । ତମର ତ ଏତେ ଅଛି, ତାହିଁକ ଖାଲି ଗୋଟିଏ ଝିଅ । ଧାନ ଚାଉଳ ଖରଚକୁ କାହାର ଡର ବେଶୀ ?

ତିନ—ହଁ ତମକୁ କହିବାକୁ ହେଉଛି ଚୋକଲୀଟା କଥା କିଛି ଜଣାପାଉ ନାହିଁ । କାହା ମନକୁ କିପରି ଆସିଲା ବୁଝିପାରୁ ନାହିଁ । ସେଇଥି ପାଇ କୁଆଡ଼ୁ କିଛି କରିପାରୁ ନାହିଁ ।

ସାଧୁ—ଦିନ ଯାଉଛି ନା ଆସୁଛି ? ଆଉ କେତେ କାଳ ଏହିପରି ବସିଥିବ ?

ତିଳ—ମନେ କରନ୍ତୁ ନାହିଁ ଯେ ମୁଁ ଆଖି ବୁଜି ବସିଛି । ତମେ ତ ସବୁ କଥା ଜାଣ । ତମେ କ ମନେ କରୁଛ କହିଲ ।

ସାଧୁ—ତମ ଝିଅ ଆମ ପୁଅ ଦୁହିଁଙ୍କ ମନ ମେଳ ପରି ଦେଖା ଯାଉଛି । ଆଉ ସେ ତାଙ୍କ ମନକୁ ଆସିଲା ପରି ଜଣାଯାଉଛି । ତେବେ କାହାକୁ କରିବା ତାହାର ଇଚ୍ଛା ଜଣା ପଡ଼ୁନାହିଁ ।

ତିଳ—ମୁଁ ବ ସେହିପରି ବୁଝୁଛି । ତେମେ ଆମ ସମୁଧି ହେଲା ପରି ଦିଶୁଛି ।

ସାଧୁ—ଝିଅ ଯାହାକୁ ବରୁ, କାହାକୁ ଜୁଆଁଇ କରିବାକୁ ତମର ମନ ?

ତିଳ—ଦେଖିବାକୁ ଶୁଣିବାକୁ ଦୁଇ ଭାଇ ତ ସମାନ ।

ସାଧୁ—ଚନାମାଳୀ ସେହିପରି ମନେ କରେ ବୋଲି ଜଣାଯାଉଛି । ତେବେ ତମ ମନ ଯେତିକି ତାକର କଥା ତେଣିକି ଯିବ ।

ତିଳ—ମୁଁ ଦୁହିଁକି ସମାନ ଦେଖୁଛି । କାହାକୁ ଦେବ କାହାକୁ ନ ଦେବ ଠିକ୍ କରି ପାରୁ ନାହିଁ ।"

ହଂସୀ—ତାହା ସତ, ବୃଦ୍ଧା ଅନ୍ତେ ଦୁହେଁ ସରଦାର ରହିଲା ପରି ଏତେ ବେଳଯାଏ ଦେଖା ଯାଉଛି । ତେବେ ରାଜା କ ବଡ଼କୁ ଛାଡ଼ି ସାନକୁ ସରଦାର ହେବେ ?

ସାଧୁ—ସାନ ହେଲା ବୋଲି କ ତାକୁ ଆଉ ସରଦାର ଝିଅ ମିଳିବ ନାହିଁ ତିଳଙ୍କର ତ ପୁଅ ନାହିଁ, ତାଙ୍କ ଜୁଆଁଇ ହେଲେ ତାଙ୍କ ସରଦାରି ଖଣ୍ଡିକ ମିଳିପାରେ !

ତିଳ—ତାହା ସତ ।

ହଂସୀ—ଆଜ ଯେବେ କଥା ଠିକ୍ ହୋଇ ଯିବ, ବଡ଼ ଥାଉଁ ୨ କ ସାନ ଆଗେ ବାହା ହେବ ?

ସାଧୁ—ତାହା ବ ସତ । ତେବେ ଝିଅ ରାଜି ହେବ; ବାପ ମନ ମାନିବ, ତେବେ ତ ଯାଇ ବାହାଘର ହେବ ?

ତିଳ—ତୁମ୍ଭର ଆମ୍ଭର ସମୁଧି ହେବା ଠିକ୍ ରହିଲା । କିଏ ଜୁଆଁଇ ହେବ ପରେ ଠିକ୍ କରିବା ।

ଏଥି ଉତ୍ତାରୁ ଆଉ ୨ ବିଷୟର କଥାବାର୍ତ୍ତା ଚାଲିଲା, ବୃଦ୍ଧଙ୍କ ନାଚ ଯେପରି ଲାଗିଥିଲା ସେହିପରି ଲାଗି ରହିଲା ।

—*—

## ଦ୍ୱିତୀୟ ପରିଚ୍ଛେଦ

କଥାରେ ଅଛି ରାଜା ବାପ, ବେବର୍ତ୍ତ ବା ଦେୱାନ ମା । ସେହି ପରି ରାଜା ସୂର୍ଯ୍ୟ, ବେବର୍ତ୍ତ ଚନ୍ଦ୍ର ବୋଲିଯାଇ ପାରନ୍ତି । ରାଜାଙ୍କ ପ୍ରଭାବରେ ବେବର୍ତ୍ତ ପ୍ରଭାଶାଳୀ । ସେହି ଅନୁକ୍ରମରେ ସେ ଚନ୍ଦ୍ର ଓ ପ୍ରଜାଏ ତାରକାବଳୀ । ଗୋଟିଏ ଚନ୍ଦ୍ର ପାଖରେ କୋଟିଏ ତାରା କିଛି ନୁହନ୍ତି । ପୂର୍ଣ୍ଣିମା ନିଶାରେ ବୁଧ ବୃହସ୍ପତି ହସ୍ତା ଚିତ୍ରା ନକ୍ଷତ୍ର ପ୍ରାଏ, ତାଙ୍କୁ ଖୋଜି ବାହାର କରିବା କଠିନ । ସେମାନେ ପ୍ରତି ରାତିରେ ପ୍ରକାଶ ପରି ଥାଇ ଜକ ଜକ୍ ହେଉଥାନ୍ତି । ଚନ୍ଦ୍ର ମାସକେ ପକ୍ଷେ ଦେଖା ଦିଅନ୍ତି, ଦିନେ ପୂର୍ଣ୍ଣ ବୋଲନ୍ତି । ଚନ୍ଦ୍ରକ୍ଷୟ ତିଥି ଘଟାଇ ଲୋକଙ୍କୁ ଉପାସ ରଖାନ୍ତି, ଅଥଚ ତାଙ୍କର ନାମ ନିଶାନାଥ, ସୁଧାଂଶୁମାଳୀ । ସେ ନାମରେ କୌଣସି ଗ୍ରହ ନକ୍ଷତ୍ର ଅଭିହିତ ନୁହନ୍ତି, ସେଥିପାଇଁ ସେମାନେ ଅଶ୍ରୁ ବିସର୍ଜନ କରନ୍ତି ନାହିଁ କିମ୍ବା ଆପଣା ଆପଣା କାମ ଛାଡ଼ନ୍ତି ନାହିଁ । ସେହିପରି ବେବର୍ତ୍ତାଙ୍କ ବଡ଼ପଣିଆରେ ପ୍ରଜାଙ୍କର ବିଦ୍ୱେଷ ନାହିଁ । ନିଜର ରୁଆ ବେହୁଡ଼ା ପଡୁଥିଲେ ବି ବେବର୍ତ୍ତାଙ୍କ କ୍ଷେତ ଆଗ ପାଗୁଆ କରିବାକୁ କେହି ପଛଦୁଆ ଦିଅନ୍ତି ନାହିଁ । ଆପଣା ଫଳ ଖଣ୍ଡ ଖଣ୍ଡ ହୋଇ ଯାଉଥିଲେ ବି ବେବର୍ତ୍ତାଙ୍କ ଉଆସ ପାଇଁ ବେଠି କରିବାକୁ କାହାର ହେଳା ନାହିଁ । ତିନଓଳ ଉପାସ ଥିଲେ ବି ବେବର୍ତ୍ତାଙ୍କ ଘିଅରେ ଖାଇ ଦୁଧରେ ଆଞ୍ଚାଇବା ଦେଖି କେହି ଧରସର ନୁହେଁ । ଭୋକରେ ଛଟ ଛଟ ହେଉଥିଲେ ବି ବେବର୍ତ୍ତଙ୍କ ଘରେ ନାଟ ହାଟରେ କାହାର ଆପତ୍ତି ନାହିଁ । ପ୍ରଜା ଓ ବେବର୍ତ୍ତଙ୍କର ଏପରି ପ୍ରଭେଦ ଭଲ ହେଉ ବା ମନ୍ଦ ହେଉ ଏହିପରି ନ୍ୟୂନାଧିକ ଚାଲି ଆସୁଛି । କେହି ବିଧାମାରି କେହି ପିଠି ଆଉଁଶି ଏହା କରାଉଛି । କେହି ସିଧା କେହି ବା ବଙ୍କା ବାଟରେ, କେହି ବେଠି କରାଇ, କେହି ବା ପଇସା ଦେଇ ଏପରି ତାରତମ୍ୟ ରଖି ଆସୁଛନ୍ତି ।

ଏପରି ପାର୍ଥକ୍ୟ ଭଲ ହେଉ କି ମନ୍ଦ ହେଉ, ଆବଶ୍ୟକ ହେଉ କି ନ ହେଉ, ତହିଁକି କାହାର ଶୋଚନା ନାହିଁ କି ଭାବନା ନାହିଁ ।

ଧାଙ୍ଗଡ଼ ଧାଙ୍ଗଡ଼ୀଏ ଏଠାଁ ସେଠାଁ ଗୁଙ୍କୁ ନାଚ ବୁଲନ୍ତି ଓ ବେବର୍ତ୍ତଙ୍କ ଘର ରମଣୀଏ, ଅସୂର୍ଯ୍ୟଂପଶ୍ୟା ବୋଲି ଏ ପାଖରେ କ ସେ ପାଖରେ ଦୃଣା କ ତାଡ଼ନା କ ଗଞ୍ଜନା ନାହିଁ । ବେବର୍ତ୍ତାଙ୍କର ଯେଉଁ ଅବରୋଧ ପ୍ରଥା ଅଛି ତାହା ମୁସଲମାନ ଆଧିପତ୍ୟରୁ ହୋଇଛି ବୋଲି କଥିତ ହୋଇଥାଏ, କିନ୍ତୁ ରାମଙ୍କ ବନଗମନ ବା କୁରୁ ପାଣ୍ଡବଙ୍କ ଅକ୍ଷପ୍ର କ୍ରୀଡ଼ାକାଳେ ମୁସଲମାନ ନ ଥିଲେ କ ତାଙ୍କ ଆଧିପତ୍ୟ ନ ଥିଲା । ଅଥଚ କୌଶଲ୍ୟାଙ୍କଠାରୁ ବିଦାୟ ଗ୍ରହଣ ପାଇଁ ରଘୁନାଥ ଅନ୍ତଃପୁରକୁ ଯାଇଥିଲେ, ପୁଣି ଦୁଃଶାସନ ଦ୍ରୌପଦୀଙ୍କି ଅନ୍ତଃପୁରରୁ ଝିଙ୍କି ଘୋଷାଡ଼ ନେଇଥିଲା । ଏହା ପ୍ରକୃତ ହେଉ କ କାଳ୍ପନିକ ହେଉ ବାଲ୍ମୀକି ବେଦ-ବ୍ୟାସ ଏହା ଲେଖି ଥାଆନ୍ତି କ ରାମାୟଣ ମହାଭାରତରେ ଏହା କେଉଁ ଚାଳପକାଇ ଥାଉ ବା ଗୁଞ୍ଜା ଦେଇଥାଉ ଋଷି ବଚନରୁ ହେଉ, କ ଉତ୍ପୀଡ଼ନରୁ ହେଉ, ଏ ପ୍ରଥା ଚଳି ଆସୁଅଛି । ଏହା ନ ମାନି ଦ୍ରାବିଡ଼ ମହାରାଷ୍ଟ୍ରବାସୀଏ ହିନ୍ଦୁ ହେଉନ୍ତି ନ ହେଉନ୍ତି, ଯେଉଁଠାରେ ରାଜା, ବେବର୍ତ୍ତା, ଶାସ୍ତ୍ରୀ, ପଟ୍ଟନାୟକ ପ୍ରଭୃତିଙ୍କ ଝିଅ ବୋହୂଏ ଜଣରେ ଥାନ୍ତି, ସେଥିଠାରେ ହାଟରେ ଅଧହାଟେ ମାଇପେ ଦେଖାଯାନ୍ତି । ଦଳ ବାନ୍ଧରେ ବାଟରେ ଘାଟରେ ମିଣିପଙ୍କ ସଙ୍ଗେ କାମଦାମ କରୁଥାନ୍ତି, ଆଚଯାତ ହେଉଥାନ୍ତି । ପୁଣି ଯେଉଁ ଶ୍ରେଷ୍ଠରାଯୁ, ରାୟଗୁରୁ, ଗ୍ରାମ୍ୟପଟ୍ଟନାୟକ, ଝିପଟସିଂହ, ଚମ୍ପଟସିଂହ, ସାହୁ ମହାଜନଙ୍କ ସ୍ତ୍ରୀ କନ୍ୟା ପୁତ୍ରବଧୂ ସାତଟଞ୍ଜା ଭିତରେ ଥାଆନ୍ତି ତାଙ୍କର ତିନି ପୁରୁଷିଆ ଖୁଡ଼ୀ, ଦେଠେଇ, ଭାଉଜ, ଭାଇବୋହୂ, ଭଉଣୀ ଭାଣିଜୀ, ଭଣଜାବୋହୂ ପ୍ରଭୃତି ବାଟରେ ଘାଟରେ ଦେଖାଯାଇଥାନ୍ତି, ତହିଁରେ କିଛି ଯାଏ ନାହିଁ କି ଆସେ ନାହିଁ ।

ଅଧିକ କ ସାଧିସରଦାରର ଘର ଯେଉଁ ରାଜ୍ୟରେ ସେ ରାଜ୍ୟର ବର୍ତ୍ତମାନ ବେବର୍ତ୍ତା ବିଲୋଚନ ମହାପାତ୍ରଙ୍କ ମାଆ, ଆଈ ନିଜେ ନିଜେ ହାଟ ବାଟରେ ଦେଖା ଯାଉଥିଲେ, ଜଣରେ ରହିବାକୁ ଘର ବି ନ ଥିଲା । ତିନି ପୁରୁଷରେ ତିନି ବଖୁରିଆ ଘର ଖୁବ ବଖୁରିଆ ହୋଇ ପାରି ନ ଥିଲା । ନଅରର ହିଶୋଇଙ୍କ ଘରେ ଖମାରୀ ଥାଇ ବାପ ଅଜା ଧନ ନେଇଥିଲେ । କିନ୍ତୁ ବିଲୋଚନ ମହାପାତ୍ରେ ଗୋବର ଗଦାରେ ପଦ୍ମଫୁଲ,

"ଉଦ୍ୟୋଗିନଂ ପୁରୁଷସିଂହ ମୁପୈତି ଲକ୍ଷ୍ମୀଃ" ବଚନର ଜୀବନ୍ତ ଉଦାହରଣ ।

ଆବାଲ୍ୟରୁ ପ୍ରଚଣ୍ଡ ବଳ ଦେଖାଇ କ୍ରମୋନ୍ନତ ସୋପାନର ଶିରୋଭାଗରେ ବେବର୍ତ୍ତା ପଦାରୂଢ଼ । ଏହାଙ୍କୁ ଗର୍ଭିଣୀ ଗାଈ ବାଟ ଛାଡ଼େ । ରାଜ୍ୟର ରାଜା ଏହାଙ୍କ କରତଳନ୍ୟସ୍ତ କାଷ୍ଠ-ପିତ୍ତଳିକା । ଏକା ଫଳାହାରୀ ବାବାଜୀଙ୍କ ଛଡ଼ା ଏ ଆଉ କାହାକୁ ମଣିଷ ବୋଲି ଗଣନ୍ତି ନାହିଁ । ବାବାଜୀ ପରମାରାଧ୍ୟ ଗୁରୁ, ରାଜା, ମନ୍ତ୍ରୀ, ବୈଦ୍ୟ ! ଏହା ବୋଲି ଯେ ସେ ଖଇଖିଆ ମହାଦେବଙ୍କ ନିକଟ ଜଙ୍ଗଲରେ ବାବାଜୀଙ୍କ ସାଙ୍ଗରେ ରୁହନ୍ତି, ତା ନୁହେଁ ।

ବାବାଜୀଙ୍କ ଆସ୍ଥାନରୁ ପ୍ରାୟ ଦେଢ଼ପାଆ ବାଟରେ ବେବର୍ତ୍ତାଙ୍କ ଉଆସ । ଗଡ ପରି ଖାଇ, ଉଚ୍ଚ ପାଚେଶ୍ୱ ନ ଥିଲେ ହେଁ ବେବର୍ତ୍ତାଙ୍କ ଉଚ୍ଚ ପିଣ୍ଡା ବଡ ବଡ଼ ଧୂଳିଆ ଘରର ପାଞ୍ଚପୁରୁଷ ଷୋଳକଇ ଖଞ୍ଜା ଦେଖିଲେ କୌଣସି ଭ୍ରମ ହେବାର ନାହିଁ । ଧୋବା, ଭଣ୍ଡାରି, କରଣ, ବ୍ରାହ୍ମଣ, ସାଧୁ ମହାଜନ ପ୍ରଭୃତିଙ୍କ ଘର ମଧ୍ୟରେ ତାଙ୍କ ଘର ତାରା-ମଣ୍ଡଳୀରେ ଚନ୍ଦ୍ର କମଳା ବିମଳା ପ୍ରଭୃତିଙ୍କ ମନ୍ଦିର ମଧ୍ୟରେ ବଡ ଦେଉଳ ପରି ହବଜୁ ଅଛି । ତହିଁରେ ପୁଣି ଚଉପାଢୀ ଉପରେ ଚଳେ କେତେ ବ୍ରାହ୍ମଣ, କେତେ ପଣ୍ଡିତ, କେତେ ଭଲଲୋକଆ, କେତେ ଗୁହାରିଆ ବସିଛନ୍ତି । କାବୁଲ ବନାରସ ମହାଜନ ସୌଦାଗର ମଧ୍ୟ ଅଭାବ ନାହାନ୍ତି । ଏଠାରେ ସବୁବେଳେ ଯେତେ ଲୋକ ରାଜଦ୍ୱାରେ ସେପରି କ୍ୱଚିତ୍ ଦେଖାଯାଆନ୍ତି ।

ଏତେ ଲୋକେ ଅଛନ୍ତି, କିନ୍ତୁ ବର୍ତ୍ତମାନ ବେବର୍ତ୍ତା ନାହାନ୍ତି । ସେ ଥିଲେବ ବେବର୍ତ୍ତାଙ୍କ ଭିତର କଥା ଜଣା ଯାଇ ନ ପାରେ । ସେ ପ୍ରକୃତ ଭଲ କି ମନ୍ଦ ପ୍ରକାଶ ହୋଇ ନ ପାରେ । କାରଣ ଯାହାର ଯେପରି ଭାବନା ତାକୁ ବେବର୍ତ୍ତା ସେପରି ସେ କେତେ ଲୋକଙ୍କୁ କଠୋର ଦଣ୍ଡ ଦେଉଛନ୍ତି । କେତେ ଲୋକଙ୍କୁ ଅନ୍ନ ବସ୍ତ୍ର ଦେଉଛନ୍ତି । କେତେ କଥା ଗୋପନ କରିଦେବାକୁ ବାଧ୍ୟ । ପୁଣି କେତେକ ସ୍ଥଳରେ ସ୍ପଷ୍ଟ କଥା

ନ କହିଲେ ନ ଚଳେ । ଉପସ୍ଥିତ ଲୋକଙ୍କ ମଧ୍ୟରୁ କେତେ ନଗ୍ନ ହୋଇ ଫେରିପିବେ, କେତେ ବା ଆଶା ପଛେ ପଛେ ଦଉଡ଼ିବାକୁ ଛାଡ଼ିବେ ନାହିଁ, କେହି କେହି କାନ୍ଦ କାନ୍ଦ ଯିବେ, କେହି କେହି ବା ହସି ହସି ଯିବେ । ଏଥିପାଇଁ ବେକର୍ତ୍ତା ଦୋଷୀ କି ନିର୍ଦ୍ଦୋଷୀ, ଭଲ କି ମନ୍ଦ, ନଡ଼ିଆ କି ଆମ୍ବ ଠିକ୍ କରି ବୋଲିଯାଇ ନ ପାରେ । ସୁତରାଂ ଭିତର କଥା ଜାଣିବା ନିତାନ୍ତ ପ୍ରୟୋଜନ । କାରଣ ନଡ଼ିଆର ପାଣି କି ଆମ୍ବର ଟାକୁଆ ବାହାରୁ ଦେଖାଯାଏ ନାହିଁ । ଅନ୍ତଃପୁରର ବେକର୍ତ୍ତାଙ୍କ ଭିତରେ କଥା ଜଣା ଯିବା ସମ୍ଭାବନା । କିନ୍ତୁ ବାହାରୁ ତ୍ରାସ ଆଶାପ୍ରଦ ଦେଖାଯାଉ ନାହିଁ ।

ଗେଉଦର ତିନି ପାଖେ ମୋଟ, ମୋଟ, ଉଚ୍ଚ ଉଚ୍ଚ ଶାଳ କାଠର ଘଞ୍ଚା ଘଞ୍ଚା ବେଡ଼ା । ପିମ୍ପୁଡ଼ି ଗଳି ପାରିବ ନାହିଁ କି ହାତୀ ଭାଙ୍ଗି ପାରିବ ନାହିଁ । କେବଳ ଦକ୍ଷିଣ ଦିଗରେ ସେପରି ବେଡ଼ା ନାହିଁ । ପୂର୍ବଦିଗେ ଖଳା । ସେଠାରେ ହଳିଆ ଖମାରୀ ପ୍ରଭୃତି ଗଣ୍ଡା ଗଣ୍ଡା । ପଶ୍ଚିମ ଦିଗ୍ରେ ପାଗାରେ ବସିଥାଏ ଧଳସ ସୁଆର ପଲ ପଲ । ଉତ୍ତର ଦିଗେ ଏ ମୁଣ୍ଡରୁ ସେମୁଣ୍ଡ ଯାଏ ବାର ପୋଖରୀ । ଏହିପରି ପରିବେଷ୍ଟିତ ହୋଇ ଯେ ପାଞ୍ଚ ଖଞ୍ଜା ଅଛି, ତାହାର ମଝି ଖଞ୍ଜା ଅନ୍ତଃପୁର । ସବୁ ଖଞ୍ଜା ଷୋଳେଇ । ଖଞ୍ଜା ସବୁ ପ୍ରସ୍ଥରେ ତିନି ତିନି ବଖରା ଖଲୁରି ସଙ୍ଗେ ଦୀର୍ଘରେ ପାଞ୍ଚ ପାଞ୍ଚ ବଖରା ନେଇ ଏକ ଖଞ୍ଜା ହୁଏ । ଏଥିରେ ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଘର ସବୁର ମଧ୍ୟମ ଶ୍ରେଣୀ ମିଳି ନଅ ଘର ଭିତରେ ପାଞ୍ଚ ବଖରା ଲେଖାଏଁ । ଚଉପାଢ଼ୀ ଛାତ ଆଉ ସବୁ ଘର ଭିତରେ ଓ ଦୁଆର ମୁହଁଠାରୁ ପିଣ୍ଡା ଉଚ୍ଚ ଉଚ୍ଚ । ଉପରେ ଆଜ୍ଞ । ଏକ ଖଞ୍ଜାରୁ ଅନ୍ୟ ଖଞ୍ଜାକୁ ଗୋଟିଏରୁ ଅଧିକ ବାଟ ନାହିଁ । ଯେ ଗୋଟିଏ ଅଧିକ ଝରକା ଅଛି, ତହିଁରେ ଗବାକ୍ଷ ନାମ ସାର୍ଥକ । ପୁଣି ସେ ସବୁ ଫୁଲ ପତ୍ର, ହାତୀ ଘୋଡ଼ା, ବାଘ ଭାଲୁ, ନରନାରୀ ଚିତ୍ରରେ ପୂର୍ଣ୍ଣ । ବଢ଼େଇଙ୍କ ଗୁଣ ଦେଖାଇବା କି ବିଶୁଦ୍ଧ ବାୟୁ ସଞ୍ଚାଳନ ପାଇଁ ଏ ଜଳା କବାଟି ସବୁ ଅଛି ତାହା ବେକର୍ତ୍ତା ଜାଣନ୍ତି । ଅଙ୍ଗନାନନ୍ଦନ ବାତ ସ୍ୱେଚ୍ଛ ପରି ଆଚରଣ କରୁଥିଲେ ତହିଁପାଇଁ ବଢ଼େଇ ଦୋଷୀ ହୋଇ ପାରେ । ଏ ମନ୍ଦ ବାୟୁ

ସଞ୍ଚାଳନ ଉଦ୍ଦେଶ୍ୟରେ ହୋଇଥାଏ ତେବେ ଗୃହ ମଧ୍ୟରେ ଛଣା ସୁଧା ପଣା ମିଳୁଥିବାର ବୋଧହୁଏ । କାରଣ ସ୍ୱାସ୍ଥ୍ୟପାଇଁ ବଡ଼ ବଡ଼ ଖିଡ଼କି, ଜାଳାଲ୍, ଖଡ଼ଖଡ଼ିଆ ଉନ୍ନତ ବଙ୍ଗଳା ଲୋଡ଼ୁଥିଲେହେଁ ଏହା ବେବର୍ତ୍ତା ବା ଅନ୍ୟ କାହାରି ଘରେ ଦେଖାଶୁଣା ନାହିଁ । ସେ ସବୁ ଲୋଡ଼ା ଥିଲା-ପରି ଜଣାପଡ଼ୁ ନାହିଁ । କାରଣ ରାଜ୍ୟରେ ସ୍ୱର୍ଗୀୟ ଚନ୍ଦ୍ରଶେଖର ବା ପଠାଣୀସାମନ୍ତଙ୍କ ପରି ପାଠଯୋଷୀ, ପଦ୍ୟାଳଙ୍କାର, ତର୍କାଳଙ୍କାର, ପଣ୍ଡିତ ବା ବେବର୍ତ୍ତାଙ୍କ ପରି ହୃଷ୍ଟପୁଷ୍ଟ ସବଳ ଧନୁର୍ଦ୍ଧର ଲୋକଙ୍କର ଅଭାବ ନାହିଁ । ସବୁବେଳେ ଜୀର୍ଣ୍ଣ ଶୀର୍ଣ୍ଣ କଳେବର ଧାରଣପାଇଁ ଡାକ୍ତର ବୈଦ୍ୟଙ୍କ ବ୍ୟବସ୍ଥା ଦେଇ ପଥ୍ୟ ଧାରଣରେ ଚଳିବାକୁ ହେଉନାହିଁ । ବରଂ କଞ୍ଚା ଦରସିଝା ଖାଇ ଲୋକେ ହୃଷ୍ଟୁ ହୃଷ୍ଟୁ ଭୃଷ୍ଟୁ ଭୃଷ୍ଟୁ ହୋଇ ବୁଲୁଛନ୍ତି । ସେ ଯାହାହେଉ ଦେଉଳ ଉପରେ ଠାକୁର ଠାକୁରାଣୀଙ୍କ ଅପୂର୍ବ ଚକ୍ର ତ୍ରିଶୂଳ ପରି ବେବର୍ତ୍ତଙ୍କର ଯଥେଷ୍ଟ ପଡିହାରଙ୍କର କଟକଣା । ପୁର ବାହାରେ ଗଣ୍ଡା ଗଣ୍ଡା ଭେଣ୍ଡା ପାଇକେ ଖଣ୍ଡା ବା ଦଣ୍ଡା ଧରି ବୁଲୁଛନ୍ତି । ଭିତରକୁ ଭିତରକୁ ପଡ଼ିହାରୀଏ ବଛା ବଛା ବୁଢ଼ା ବୁଢ଼ା ଲୋକ, କିନ୍ତୁ ସ୍ତ୍ରୀ ପ୍ରହରୀଙ୍କ ବେଳକୁ ଅନ୍ୟପ୍ରକାର । ବାହାରେ ଗତଯୌବନା, ଶୁଭ୍ରକେଶୀଏ, ଭିତରକୁ ଭିତରକୁ କ୍ରମେ ଯୁବତୀଏ । ସ୍ତ୍ରୀ ପୁରୁଷଙ୍କ ମିଳନ ସ୍ଥଳରେ ଏକ ଦିଗରେ ନିତାନ୍ତ ବୃଦ୍ଧ ଅପର ଦିଗରେ ଅତିବୃଦ୍ଧା । ସୁତରାଂ ବେବର୍ତ୍ତଙ୍କର ଭାଇ ବନ୍ଧୁଙ୍କ ସ୍ତ୍ରୀ ଲୋକେ ଅନ୍ତଃପୁର-ବାସିନୀ ହେଉନ୍ତୁ ବା ନ ହେଉନ୍ତୁ, ବାହାର କଥା ପଦକ ରଣବାଜ ସିଂହ, ରାଜତର ପ୍ରଭୃତିଙ୍କଠାରୁ ଯାଇ ରସକଳା ଚନ୍ଦକଳା ରମିତକ୍ଷୀଙ୍କ ତୁଣ୍ଡରେ ବେବର୍ତ୍ତିଣୀଙ୍କଠାରେ ପହୁଞ୍ଚେ । ଏହା ଭଲ କି ମନ୍ଦ ତାହା ରାଜା ବା ତାଙ୍କ ବେବର୍ତ୍ତ ଜାଣନ୍ତି । ତେବେ ଯେ ଅନ୍ତଃପୁରରେ ଥାଇ ଅନ୍ୟ ସ୍ତ୍ରୀ ପୁରୁଷ ଦେଖିବାକୁ ପାଆନ୍ତି ନାହିଁ । ସେମାନେ ହାଟୁଆଣୀ ବାରବୁଲା ପ୍ରଭୃତିଙ୍କ ପରି ଚତୁରା ନୁହନ୍ତି କି ସତକୁ ମିଛ, ମିଛକୁ ସତ କରନ୍ତି ନାହିଁ । ପୁଣି କେହି କେହି ଆପଣା ମତାମତକୁ ଅନ୍ତଃପୁରବାସିନୀଙ୍କର ବୋଲି ପ୍ରକାଶ କରି ଇହକାଳରେ ବୈତରଣୀ ପାର ହୋଇ ଥାଆନ୍ତି ।

ଏପରି କଟକଣା ଥିଲେ ମଧ୍ୟ କାନ୍ଥବାଡ଼ର ଆଖି କାନ ଥିବାର କଥିତ ହୁଏ । ପୁଣି ପଣ ପଣ ଧାଈ ମୃଦୁସୁଲୀଙ୍କ ମଧ୍ୟରୁ କେତେ

ବେବର୍ତ୍ତଙ୍କ ଉଆସ ଘୁଞ୍ଚ ବୁଲ ଯାଇଛନ୍ତି ଓ ଯାଉଛନ୍ତି । ସେମାନେ କେତେ କଥା କହି ବୁଲୁଛନ୍ତି । କିନ୍ତୁ କେହି ଶପଥ କି ସତ୍ୟ ପ୍ରତିଜ୍ଞା କରି କିଛି କହୁ ନାହାନ୍ତି । ସୁତରାଂ ସେ ସବୁ କଥା କେତେଦୂର ବିଶ୍ୱାସଯୋଗ୍ୟ ବୋଲି ଯାଇ ନ ପାରେ । ଏପରି କଥା ଅନେକ ସତ ହୋଇଥାଏ, ଅନେକ ବି ମିଛ ହୋଇଥାଏ । ସେ ଯାହାହେଉ ରାଜା କରଗତ ଥିବାରୁ ସେ କଥାକୁ ବେବର୍ତ୍ତଙ୍କର ଶୋଚନା ନାହିଁ । କିନ୍ତୁ ଏହାର ଫଳାଫଳ ଯିବାର ନୁହେଁ । ଗୁପ୍ତ ଅନ୍ଧାରରେ ଖାଇଲେ ଗୁଡ଼, ଓ ଆଲୁଅରେ ଖାଇଲେ ଗୁଡ଼ । ଧର୍ମଦ୍ୱାରେ ଯେ ପାଞ୍ଜିଲେଖା ହେଉଛି, ତହିଁରେ ସାନ ବଡ଼ ପାପ ପୁଣ୍ୟ ସବୁ ବସୁଛି । ପୁଣି ସେହି ଅନୁସାରେ ଫଳାଫଳ ଭୋଗାହୁଛି । ସ୍ୱେର ଘରେ ନିତ ଅନ୍ଧାର ହେଉ ନାହିଁ । ସୁତରାଂ ଶୁଣା କଥାର ସତ ମିଛ ଆପେ ପ୍ରକାଶ ପାଇବ । ବର୍ତ୍ତମାନ ବେବର୍ତ୍ତ ବେବର୍ତ୍ତଣୀଙ୍କ ନରେକ କଥା ଯାହା ଶୁଣାଯାଇ ଅଛି ତାହା ଲେଖାଯାଉ ଅଛି । ତାହାର ସତ୍ୟାସତ୍ୟ ପ୍ରମାଣିତ ହେଲାରୁ ବେବର୍ତ୍ତଙ୍କ ସ୍ୱଭାବ ଚରିତ, ବୁଦ୍ଧି, ବିଦ୍ୟା, କଳ କୌଶଳ ବୁଝାଯିବ ।

ମହିପୁରରେ ବେବର୍ତ୍ତ ବେବର୍ତ୍ତଣୀ ବସିଛନ୍ତି । ରମି, ଶାମି, ପାଣ୍ଡୁ, ଶାନ୍ତ ପ୍ରଭୃତି ଏଣେ ତେଣେ ଯିବା ଆସିବା କରୁଛନ୍ତି । କାମ କିଛି ନାହିଁ, ତଥାପି ନହର ପହର ନ ହେଲେ ନ ଚଳେ । ତାହାର କାରଣ ବା ଉଦ୍ଦେଶ୍ୟ ସେମାନେ ନିଜେ ନିଜେ ଜାଣୁଥିବେ । କିନ୍ତୁ ବେବର୍ତ୍ତ ବେବର୍ତ୍ତଣୀଙ୍କ ନିକଟରେ କେହି ସୁଦ୍ଧା ପାନବଟା ବା ପିକଦାନୀ ଧରି ନାହାନ୍ତି । କେବଳ ଦୁଇଜଣ ବୁଢ଼ୀ ବସିଛନ୍ତି । ସେମାନଙ୍କ ଭୁଣ୍ଡି ହଲିବାକୁ ନାହିଁ । ସେ ଦୁହେଁ ବେବର୍ତ୍ତଣୀଙ୍କ ବାପ ଘରୁ ଆସିଛନ୍ତି । ଯେ ଆଜ୍ଞା ହେବ କେବଳ ତାହା ଅନ୍ୟକୁ ଜଣାଇ ଦେବାପାଇଁ ସେ ଦୁହେଁ ଉପସ୍ଥିତା । ବେବର୍ତ୍ତ ଖୋଲମାଳ ମୁଣ୍ଡରେ ଲଗାଇଲାରୁ ବେବର୍ତ୍ତଣୀ କହିଲେ "ନଅରରେ ଆଜି ବାବାଜୀଙ୍କ କଣ୍ଠରେ ତ ଦିନ ରାତି । କେତେବେଳେ ବଣା କଣା ହୋଇ ଟିକିଏ ଭିତରକୁ ଅଇଲେ ଖାଲି କଅଣ ମାଳ ଧରି ଭୁନ ହୋଇ ମୁନପରି ଥିବ ?

ବେବର୍ତ୍ତ—"ତୁମ କଥା ଆଗେ ଶୁଣେଁ ।"

ଦେବଦତ୍ତଣୀ—"ମୋହର କଥା ମୁଁ କହୁଛି ? କହିବା ଲାଗି ପିଲା ଗାଈ ଗୁହାଳ, ତମ କଥା ସିନା କହୁଛି ।"

ଦେବଦତ୍ତ—'ମୋ କଥା କହିଲେ କଣ ହେବ ?'

ଦେବଦତ୍ତଣୀ—'ଆମ ଭିତରେ କିଛି ହେବ ନାହିଁ ବୋଲି କଏ ନ ଜାଣେ ? କିଛି ନୋହିବ ବୋଲି କିଛି ଶୁଣିବା ବି ନାହିଁ ?

ଦେବଦତ୍ତ—'ଶୁଣିଲେ କଅଣ ମିଳିବ' ?

ଦେବଦତ୍ତଣୀ—'କିଛି ନ ମିଳିଲେ କି କିଛି ଶୁଣିବାର ନୁହେଁ ।'

ଦେବଦତ୍ତ—କେତେ କଥା ଅଛି, କେଉଁ କଥାକୁ ମନ ହୋଇଛି ?'

ଦେବଦତ୍ତଣୀ—'ସବୁ କଥା ।'

ଦେବଦତ୍ତ—'ସବୁ କଥା କୁହା ଯାଇ ପାରେ କି ?'

ଦେବଦତ୍ତଣୀ—ସବୁକଥା କହିଲେ କଏ ଶୁଣୁଛି ? ଆଉ ତ କେହି ନାହିଁ ? ଏଠି ଦରମଲ ବୁଢ଼ୀଟା, । ସାତ କବାଟ ଡେଇଁ ଦାଣ୍ଡରେ ଏ କିଛି କହିବାକୁ ଯାଉଛନ୍ତି ନା ମୁଁ ଯାଉଛି ।

ଦେବଦତ୍ତ—'ତାହା ନୁହେଁ ଯେ—'

ଦେବଦତ୍ତଣୀ—'ତେବେ କି ମୋତେ ପତିଆରା ନାହିଁ ? ମୋ ଦେହ କିଛି ହେବ ବି ନାହିଁ !'

ଦେବଦତ୍ତ—ମୁଁ ଯାହା କହୁଛି ତାହା ଆଗେ ଶୁଣ—'

ଦେବଦତ୍ତଣୀ—'କଅଣ କହୁଛ କୁହ ।'

ଦେବଦତ୍ତ—'କେତେ କଥାଅଛି ସବୁ କହିଲା ବେଳକୁ ଦିନ ରାତି ଅଣ୍ଟିବ ନାହିଁ, ତେବେ ଯେଉଁ କଥାକୁ ତମର ମନ ହୋଇଥିବ ସେ କଥା କହିଲେ ସିନା ହେବ ?'

ଦେବଦତ୍ତଣୀ—ଯେଉଁଥିପାଇଁ ବାବାଜୀଙ୍କ ସାଙ୍ଗରେ ଏତେ ଦିନ ହେଲା ଲାଗିଥିଲ ।'

ଦେବଦତ୍ତ—ଆଜି ରାତିକଥା ଠିକ୍ ହୋଇଗଲା, କାଲି କଥା ଦେଖାଯାଉ ।'

ଦେବଦତ୍ତଣୀ—'କଅଣ କପର ହେବ ?'

କେବର୍ତ୍ତ—'ଆଜ ରାତ୍ରରେ ରାଜାଙ୍କ ଉପରେ ଶନି ମହାଗ୍ରହଙ୍କର ଘୋର ଉତ୍ପାତ ହେବ ।'

କେବର୍ତ୍ତଣୀ—'ଉତ୍ପାତ ହେବା କଥା ତ ପାଞ୍ଚପୋଷୀ ଆଗରୁ କହିଥିଲେ । କଅଣ କଅଣ ହେବ ? ତାହା କିଛି ବାବାଜୀ କହିଲେ ?'

କେବର୍ତ୍ତ—ବାବାଜି କହିଲେ ଅଧରାତ୍ର ଉପରୁ ଘରେ ଦୁମ୍ ଦୁମ୍ ଶବ୍ଦ ହେବ । ରାଜାଙ୍କ ପଲଙ୍କ ଦୋହଲିବ । ସାବଧାନ ନ ରହିଲେ ରାଜାଙ୍କର ଘୋର ଶାରୀରିକ ଓ ମାନସିକ ଅନିଷ୍ଟ ହେବ । ଏ ଅନିଷ୍ଟ ନ ହେବା ପାଇଁ ବ୍ୟବସ୍ଥା କରାଯାଉଛି । ଦନେଇ ଖିଲିମଚିଆ ନିଜେ ବାବାଜୀଙ୍କ ମୁହଁରୁ ଶୁଣିଗଲା । ନିଜେ ରାଜାଙ୍କୁ ଜଣାଇବ ।

କେବର୍ତ୍ତାଣୀ—"ସବୁ ହୋଇ ପାରିବତ ?"

କେବର୍ତ୍ତ—"ଯାହା ଯେପରି କରିବାକୁ ହେବ ବାରମ୍ବାର ପାଖ ଲୋକଙ୍କୁ ବତେଇ ଦିଆ ଯାଇଛି । ଠିକା ବି ଦିଆଯାଇ ଅଛି । କିଛି ଟିକିଏ ଅଡ଼ୁବାଙ୍କ ହେଲେ ସଭିଙ୍କି ଗୋଟି ଗୋଟି କରି ଆଉ ଶୂଳୀରେ ଚଢ଼ାଇବ ନାହିଁ ?

କେବର୍ତ୍ତାଣୀ—ଏହା କହୁଛ । ପୁଣି କହୁଛ ଯେ ସାବଧାନ ରହିବା ପାଇଁ ରାଜାଙ୍କଠାକୁ ଖବର ଗଲା ?"

କେବର୍ତ୍ତ—ଶୋଇଲାବେଳେ ଲାଗି ହେବା ପାଇଁ ଓ ଘରେ ପକାଇବା ପାଇଁ ବାବାଜୀ ଯେ ପଞ୍ଚାମୃତ ପଠାଇବେ ଚନ୍ଦିରେ ଗଞ୍ଜେଇ ଅରକ ଦେବେ ।"

କେବର୍ତ୍ତାଣୀ—"ଧନ୍ୟ ତୁମ୍ଭେ । ଦେଖିଲ ପରି ତମ ବାପା ମାଆ ଏପରି ନାଁ ଦେଇଥିଲେ ? ମଣିଷର ସିନା ଦୁଇଟା ଆଖି ସତକୁ ସତ ତୁମର ତିନିଟା ଆଖି ।

ବୈକୁଣ୍ଠ—ଆଚ୍ଛା, ସେତ ଯାହା ହେବାର ହେବ । ନଅର ବଡଶାଇଙ୍କର ଯେ ଘର ପୋଡ଼ିଗଲା ତାହାଁକ ତମେ କି କଲ ?

ବୈକୁଣ୍ଠାଣୀ—ହଁ ସତେତ ସେ ଗୋଟାଏ କଥା ଅଛି । ଚମ୍ପା ମା ବୁଢ଼ୀକି ପଠାଇ ଥିଲି । ସେ ଅନେକ ବୋଧ ସୋଧ କରି କହି ଅଇଲା । ଡାଲି, ଚାଉଳ, ଘିଅ, ତେଲ, ଲୁଣ ସବୁ ଜିନିଷ ପଠାଇ ଦେଇଛି ।"

ବୈକୁଣ୍ଠ—'ଠିକ୍ ହୋଇଛି, ମୋ ବୁଦ୍ଧିରୁ ତମ ବୁଦ୍ଧି ଟା କମ୍ ହେଲା କଅଣ ? ସମସ୍ତେ ଜାଣନ୍ତି ଯେ ନିର୍ଲୋକଚନଙ୍କ ସ୍ତ୍ରୀ ନିର୍ଲୋଚମା ।

ବୈକୁଣ୍ଠଣୀ—"ମୁଁ କଅଣଗୁଡ଼ାଏ କରି ପକାଇଲି କି ?"

ବୈକୁଣ୍ଠ—ତୁମ୍ଭେ ଜାଣ ଯେ ମୁଁ ଘର ପୋଡ଼େଇ ଦେଇଛି । କି କରିବାକୁ ହେବ ତମକୁ କିଛି କହି ପାରି ନ ଥିଲି । ତେବେ ବି ଯହିଁରେ ମୋ କଥା ଜଣା ନ ପଡ଼ିବ ଆଉ ଯାହା ଲୋକେ ଭଲ କହିବେ ସେ ସବୁ ଆପେ ଆପେ କଲ ଆଉ ବେଶୀ କଅଣ କରନ୍ତି କି ?

ବୈକୁଣ୍ଠଣୀ—"ନ କଲେ ହୁଅନ୍ତା କିପରି ? ତାହା ଘରେ ବନ୍ଦି କରିବାକୁ ଏତେ କଥା, ତୁମ୍ଭର ମିଣିପରେ ମିଣିପରେ ଯାହା:ହେଉ ଯାହା କଲି ତାହା ନ କରି ଥିଲେ ଯେ ବୋହ୍ଲ ହୋଇ ଆସିବ, ତାହା ମୁହଁକୁ ଚାହିଁବି କିପରି ? ସେ ବା ମନେକରିବ କଅଣ ?

ବୈକୁଣ୍ଠ—"ବଡ଼ ଭାଇତ ରାଜ ହେଲାଣି, ତେବେ ବି ତନ୍ଦ୍ରା ହାଁ ହାଁ । ଟାଣ ଭାଙ୍ଗୁ ନାହିଁ । ତା ସାଙ୍ଗକୁ ତା ମା ବାଣ୍ଡ୍ରୀ ମିଳିଛି । ସେ ଦୁହେଁ ରାଜ ନୋହିବା ଯାଏ କଅଣ ହେଲାଣି ?

ବୈକୁଣ୍ଠଣୀ—ତମକୁ ସେ ପାରିବେ ? ଘର ପୋଡ଼ିଗଲାଣି, ଏଣିକି ସଭିଏଁ ନଇଁ ପଡ଼ିବେ ଯେ । ଯେବେ ଆଜ କଥାରେ ଭଲରେ ହୋଇଯାଏ, ରଜା ବି ଆଉ ତୁନ ହୋଇ ରହି ପାରିବେ ନାହିଁ ।"

ବୈକୁଣ୍ଠ—"ହାତ ଗଣ୍ଠି ନ ପଡ଼ିବା ଯାଏ ପଡିଆଗ୍ର କଅଣ ? ସମସ୍ତେ କହନ୍ତି ବର କନ୍ୟା ପ୍ରଜାପତି ଘଟସୂକ୍ଷ୍ମ କଥା । ଆମ୍ଭେ ତ ତାହା ମାନୁ ନ ଥାଇ । ଦେଖାଯାଉ କି ହେଉଛି

ଦେବବର୍ଣ୍ଣୀ—ଜାତି, ମାନ, ମର୍ଯ୍ୟାଦା ଧନ ଦୌଲତ ଭିତରୁ କେଉଁଥିରେ ମୋ ବାପ ଘରବାଲାଙ୍କ ତା ଘର ବଡ଼ ଯେ, ସେଠି ବନ୍ଧୁ କରିବାକୁ ଏତେ ଜିଦ ଲାଗିଛୁ ?"

ଦେବବର୍ଣ୍ଣ—ଏ କଥା ମୋତେ ପଚ୍ଚାରୁଛ ? ଦେଖୁନାହଁ ଯେ ତୁମ୍ଭ ବାପ ଘର ଏ ରାଜ୍ୟରେ ନୁହେଁ ।ତା ଘରୁ କାଳେ କାଳେ ଦେବବର୍ଣ୍ଣ ହୋଇ ଆସୁଥିଲେ । ମୁଁ ବୋଲି ତାହା ଭାଙ୍ଗିଲି । ତେବେ ଏ ରାଜ୍ୟଲୋକେ ତା ଘରକୁ ମାନୁଛନ୍ତି । ବାହାଘରେ ଯୋଡ଼ା ପାଲିଙ୍କି ଦାନ ଯୌତୁକ ମିଳିବ ନାହିଁ ଖତ । ଆଉ ଯେ ଲାଭ ତାହା ତମକୁ ପୁଣି ବୁଝାଇବାକୁ ହେବ ?"

ଦେବବର୍ଣ୍ଣୀ—ସେ ତ ଆକାଶ କଇଁଆ ଚଲାକା ମାଛ କଥା । କଥାରେ କହନ୍ତି 'ଏ ସାଲ କ୍ଷେତ ଘରେ ପଶୁ । ଆଗକୁ ହାଣ୍ଡି ବାଉଁଶ ତଣ୍ଟୁ । ଏଭଳି କ୍ଷଣିକା କଥାରେ କି କରୁଛ କହିଲ ?

ଦେବବର୍ଣ୍ଣ—"ଏଭଳି କ୍ଷଣିକା କଥା କଅଣ ?"

ଦେବବର୍ଣ୍ଣୀ—'ଟଙ୍କାଗୁଡ଼ାକ ଯେ ପଡ଼ି ରହିଲା ।'

ଦେବବର୍ଣ୍ଣ—'କରଜ ଲଗାଇ ଦେଉନା ?'

ଦେବବର୍ଣ୍ଣ—'ଖଜଣା ପାଇଁ ତେମେ ଧର ପଗଡ଼ି ମାରପିଟ ନ କଲେ ଶୋଇ କି ଦେଡ଼ି ସୁଧରେ କେଭି ଟଙ୍କା ନେଉଛୁ ।

ଦେବର୍ଣ୍ଣା—'ଏତେ ଟଙ୍କା ରଖି କଅଣ କରିବ ?'

ଦେବର୍ଣ୍ଣାଣୀ—'ତେମେ ଜାଣ ନାହିଁ ଯେ ମୋତେ ପଚ୍ଚାରୁଛ ?

ଦେବର୍ଣ୍ଣା—ମୁଁ ଜାଣିଲେ ବ ତେମେ କଅଣ ଜାଣିଛ ଟିକିଏ ଶୁଣେ ।'

ଦେବର୍ଣ୍ଣାଣୀ—"ଯେବେ ପଚ୍ଚାରିଲ ସତ କହିଲେ କଟୁ ଅଡ଼ୁଆ ବୁଝିବ ନାହିଁ ତ ?'

ଦେବର୍ଣ୍ଣା—ତମ କଥା ଅଡ଼ୁଆ ବୁଝିବିତ ଆଉ ବୁଝିବ କଅଣ ?'

ଦେବର୍ଣ୍ଣାଣୀ—ମତେ ପଚ୍ଚାରୁଛ ? ତୁମ୍ଭେ କି ନ ଜାଣ ଯେ ଆଖି ବୁଜିବା ସାଙ୍ଗେ ସାଙ୍ଗେ ଦେବର୍ଣ୍ଣାଙ୍କ ଲୁଗା ପଟା, ଧାନ, ଗୁଡ଼ଳ, କଂସା, ଲୋଟା, ରଜାଘର, ଗନ୍ତାଘରକୁ ବୁହା ଲାଗେ । ଆଉ ଗାଈ, ମଇଁଷି

ଚ୍ଛେଳ, ମେଣ୍ଢା, ହାଣ୍ଡି, ଘୋଡ଼ା ଅଡ଼ା ଲଗନ୍ତି । ଆଗେ ଏ ସବୁ ଯାଉ ଯାଉ ଯାଇଲେ ପଛେ ବେବର୍ତ୍ତା ଶବ ଉଠେ । ତାହାଂ ନୋହୁଥିଲେ ସାତ ପୁରୁଷ ହେଲା ବେବର୍ତ୍ତାଇ କଣ ନଅର ବଣୋଇ ଘର ଏପରି ହୋଇ ଥାଆନ୍ତା ? ଏତେବେଳକୁ ତ ତା ଘରକୁ ରଜାଘର ପଡ଼ନ୍ତା ଥାଆନ୍ତା । ଟଙ୍କା ଯାହା ଥାଏ ଖାଲି ସେଇଥିରୁ କିଛି ରହିଯାଏ, ସେତିକ ପୁଅ ମାଇପଙ୍କର ଆଶ୍ରା ।

ବେବର୍ତ୍ତା—ଏତେ ବର୍ଷ ହେଲା ଶୋଇ ଦେଢ଼ିରେ ଟଙ୍କା ଲଗାଇ ଆସୁଥିଲା ଏ ବର୍ଷ ନ ହେଲା ।

ବେବର୍ତ୍ତାଣୀ—'ଏ ବର୍ଷ କାହିଁକି ନ ହେବ ?'

ବେବର୍ତ୍ତା—'ଏ ବର୍ଷ ଲଢ଼େଇ ହେବ ।'

ବେବର୍ତ୍ତାଣୀ—ସେ ତ ଭଲ କଥା, ରସଦ ପାଇଁ ଜୁଲମ ଜବରଦସ୍ତି ଦରକାର । ରଜାଘର ଖମାରରୁ ଧାନଗୁଣ୍ଡଳ ବିରି ମୁଗ ବନ୍ଦୀ କରାଇ ତହିଁ ସଙ୍ଗେ ସଙ୍ଗେ ଆମ ଖମାର ଜିନିଷ ବି ବନ୍ଦୀ ହେଉ । ପଇସାକ ମାଲ୍ ତିନ ପଇସାରେ ବିକିଲେ ରଜା ଘରର ଲାଭ । ଆମର ବି କିଛି ପଇସା ହୋଇଯିବ । ମୋର ବି ପଇସାକ ଦେଢ଼ ଦୁଇପଇସା ହେବ । ତେଣେ ପାଇକ ବେଠିଆଙ୍କୁ ଖୁଆଇ ତାଙ୍କ ପାଖରେ ଭଲେଇ ହୁଅ ।

ବେବର୍ତ୍ତା—'ଧନ୍ୟ ତୁମ ବୁଦ୍ଧି ଈଶ୍ବର । ଏକା ବାଟୁଳିକେ ଗଣ୍ଡାଏ ଚଢ଼େଇ !

ଏହି ସମୟରେ ଜଣେ ମୃଦୁସୁଲି ଆସି କହିଲା ଯେ ରଜାଙ୍କର କ ଖବର ଯେନ ଖିଲମତିଆ ମଦନ ପାଇକରୁ ଠିଆ ହୋଇଅଛି । ଏଥିରେ କଥାବାର୍ତ୍ତା ବନ୍ଦ ହେଲା । ତରତରରେ ଉଠି ବେବର୍ତ୍ତା ସେଠାରୁ ଚ୍ଲିଗଲେ । ବେବର୍ତ୍ତାଣୀ ମଧ୍ୟ ଅନ୍ୟଆଡ଼େ ଗଲେ ।

—ଃ✻ଃ—

# ଦଣ୍ଡକାର ନାଚୁଣୀ

**ସତ୍ୟାନନ୍ଦ ବେହୁରା**

ଜାତ ଜାତକା ଫୁଲ ଫୁଟେ ଏଇ ଦଣ୍ଡକାରଣ୍ୟରେ, ଫୁଟେ, ଝରେ । ଫୁଟିବା ତାର କାମ । କେତେ ଫୁଲର ବୀଜ ନାହିଁ । ଫୁଟି ସରିଲେ କାମ ଖତମ ।

ଅନ୍ଧାରୁ ର ଜୀବନଟି କଣ ସେସ୍ଥା ? କାରଣ ଅନୁସନ୍ଧାନ କରିବାକୁ ଯାଇନ ସିଏ । ହେଲେ ସିଏ କଣ ତାହା କରି ପାରିବ ? ମାନସିକ ବିକାଶ ଅଛି ? ନିଭୃତଦେବୀ ଉଆସ ମଧ୍ୟରେ ବସିଥାନ୍ତି ଆରାମ ଚୌକିରେ ଅଭିରାମ । ହଠାତ୍ ସକାଳୁ ପହଞ୍ଚିଗଲା ଅନ୍ଧାରୁ । ଟାଙ୍ଗିଆଟା ପିଣ୍ଡାତଳେ ରଖି ଦେଇ ନଅ୍ କନା ବସିପଡ଼ିଲା ପିଣ୍ଡା ଉପରେ ।

କିରେ, ଆଜି ସକାଳୁ ? କାମକୁ ଯାଇନୁ, ଟଙ୍କା ଦରକାର ? ସେସ୍ଥା ପଚାରି ରହିଗଲେ । ହସି ହସି ଫେର୍ କହିଲେ—ତମେ ଆଦିବାସୀ ତ ଟଙ୍କା ପଇସା ବା ଅନ୍ୟ କିଛି ନେବାକୁ ଥିଲେ ଆସ, ଅନ୍ୟଥା ତମର ଦେଖା ଦରଶନ ନଥାଏ । ଆରେ ଅନ୍ଧାରୁ, ସେଦିନ ସେ ଟୁକୀ କୁ ଡାକ୍ତର ଖାନାକୁ ନେବାକୁ କହିଥିଲି, ନେଲୁ କି ? ସେ କିପରି ଅଛି ?

ସିଏ ? କାଇଲି ଗୁଡ଼୍‌ବ୍ ଦାଦ । ଫୁଲ୍ ନେବାକୁ ଆସିଛି ।

କଣ ଯେ କହିଲୁ ମୁଣ୍ଡରେ ଖୋସିବ ?

ନାଇଁ ଦାଦ, ପୂଜା କରିବ ।

ହଉ ନେଇ ଯା, ଯେତେ ଦରକାର, ନେ । ଆଁରେ ଡାକ୍ତର ପାଖକୁ ଔଷଧ ଆଣି ଖୁଆଇବାରେ କିଛି ଫଳ ମିଳିଲା ?

ମୁଁ ତ ଯାଇନ । ଔଷଧ କଲି ଏଠି ଦିଶାରୀଠୁ ନେଇ । କିଛି ହେଲାନି । ସେ କହୁଛି-କଳା ପାରୁଆଁ ବଳି ଦେବ । ସାତ ଜାତର ଫୁଲ ଲୋଡ଼ା । ପୂଜା କଲେ ଟୁକୀ ଆରାମ ହୋଇ ଯିବ ।

ହାୟ ଭଗବାନ ! କରେ, ଘମ୍‌ବେଳୋଇରେ ଡାକ୍ତର୍‌ଖାନା, ଗୋଟାଏ ନୁହେଁ, ଦୁଇ ଦୁଇଟା……ଡାକିଲେ ଶୁଣିବ । ତୁ ପାଗୁଆଁ, ଫୁଲ ଖୋସିଲୁ ? ଚଣ୍ଡାଳ, ପିଲାଟାକୁ ଭୂତ ସିନା ମାରିଦବାକୁ ବସିଛୁ । ଏତେ କରି ସେଦିନ କହିଲି, ମୋ କଥା ସେନା ଜାଣୁନ ?

ବାପ ତୁ ତ ବୁଝିଲୁର ନାହିଁ । ସେ ଘରେ ଦେବତା ଅଛୁ । ମୋ ବାପୁକେ ଖାଇଲୁ । ଦୁଇଟା ବହେନ୍ଦ୍ର, ଗୋଟାଏ ଭାଇକୁ ଖୋଇଲ । ସେ ଦେବତାଙ୍କୁ ପୂଜା ଦେଲେ ସିଏ ଏ ଟୁକୀଟାକୁ ଛାଡ଼ିଦବ । ବଖାଣ୍ଡ କଥା କେବେ ମିଛ ହେବ ନାହିଁ । ଘରେ ଦେବତା ଥିଲେ ଡାକ୍ତର କଣ୍ କରିବ । ହଡ଼ବାକ୍ ଅଭିରାମ ।

ତୁ ବାପ ଟିକେ ଚୁପି ହେ । ମୁଁ ଫୁଲ୍ ତୋଳୁଛି ପାଗୁଆଁଟାଏ ଆଣି ରଖିଛି ।

ସ୍ତମ୍ଭୀଭୂତ ଅଭିରାମ । କିଛି ସମୟ ବାଦ୍ ଫେର୍ କହିଲେ—ଅନ୍ଧାରୁ, ମୁଁ ସବୁ ତୋତେ ଦେଇଛି । ତୋର ଯାହା ପୂଜା ପାଇଁ ଲୋଡ଼ା ମୁଁ ଖୋଜ ଲୋଡ଼ା ଦେବ । ଡାକ୍ତର ପଇସା ନେବନ । ତୁ ଯା, ପୂଜା ବ କରିବୁ ଆଉ ଔଷଧ ବ ଖୁଆଇବୁ । ଆରେ ଅନ୍ଧାରୁ, ବୁଝିଲୁ, ଜନ୍ମିଲେ ମରନ୍ତି । ଫେର୍ ଜନ୍ମ ହୁଅନ୍ତି । ଏମିତ ଅନା ଗୋନା ଲାଗିଛି । ଏଇ ନେ, ମୁଁ ଡାକ୍ତରବାବୁଙ୍କ ପାଖକୁ ଖଣ୍ଡେ ଚିଠି ଦଉଛି ।

ଏହା କହି ଅଭିରାମ ଚିଠି ଖଣ୍ଡେ ଲେଖି ତାକୁ ଡାକିଲେ । ଅନ୍ଧାରୁ ଫୁଲ ତୋଳୁ ଥିଲା ।

ଆଉ ଅନ୍ଧାରୁ, ସେ ନଶୁଣିଲା ପରି ଫୁଲ ତୋଳିବାରେ ଲାଗିଥାଏ ।

ଏ ଅନ୍ଧାରୁ, ମୁଁ ଯତ କହୁଛିରେ, ଠାକୁର ସମସ୍ତଙ୍କ କଥା ଶୁଣନ୍ତି । ଠାକୁରଙ୍କଠି ବିଶ୍ୱାସ ରଖିବା ଦରକାର । ସେ ସମସ୍ତଙ୍କର ଦୁଃଖ ଶୁଣନ୍ତି, ବିଶ୍ୱସ୍ତ ଉଦ୍ଧାର କରନ୍ତି, ହେଲେ ଔଷଦ ବ ଠାକୁରଙ୍କ ପରି । ଶରୀର ରକ୍ଷା ପାଇଁ ତାହା କରିବା ଦରକାର । ଆଗେ କାମ କଲେ ସିନା ଠାକୁର ଫଳ ଦେବେ ! ତୁ ଡାକ୍ତର ପାଖକୁ ଗଲେ ସେହି କାମଟି କରିବୁ ଆଉ ତୋ ଝିଅ ଆରୋଗ୍ୟ ହୋଇଯିବ ଠାକୁରଙ୍କ ଦୟାରୁ । ନେ ଚିଠି, ଯା ।

ନାହିଁ ବାପ, ପୂଜା କଲେ ଟୁକୀ ଭଲ ହୋଇଯିବ । ଘରେ ଦେବତା ଅଛୁ । ଅଭିରାମ ଫେର୍ କହିଲେ—ଆରେ, ପୂଜା କରିବାକୁ ତତେ ମନା କେତେବେଳେ କଏ କଲା ? ମୁଁ ପରା ନିଜେ ପୂଜାକରେ । ତୁ କଣ ତାହା ଦେଖିନୁ ? ପୂଜାର

ଫଳଟି ପାଇବାପାଇଁ ତୁତେ ଡାକ୍ତର ଖାନାକୁ ଯିବାକୁ ପଡ଼ିବ । ଔଷଧ ଆଣି ଝିଅକୁ ଖୁଆଇବାକୁ ହବ । ତୁ ଯା, ମୁଁ ସବୁ ତୋ ପାଇଁ ଯୋଗାଡ କରିଦେବି ।

ଅନ୍ଧାରୁ ଏଥର ଖୁବ୍ ଗମ୍ଭୀର ହୋଇଗଲା । ମୁହଁଟି ଭାରିଭାରି । ଅନେକ କଥା ଯେମିତି ତାର କହିବାର ଅଛି, ଅଥଚ୍ ଏକ ଅଜ୍ଞାତ ସଙ୍କୋଚ୍ ତାର କଣ୍ଠରୋଧ କରିଦେଇଛି ।

ଅଭିରାମ ବେଦନା ଭରା କଣ୍ଠରେ କହିଲେ—ତୋ ଇଚ୍ଛା । ମାତ୍ର......

ଅନ୍ଧାରୁ ସାହସ ବାନ୍ଧି କହିଲା—ନାଇଁ ଦାଦ ସିଏ କହୁଛି, ପୂଜା କଲେ ଝିଅ ରହିବ, ନ ହେଲେ......ସିଏ ପୁଣି କାଲି ରାତିରେ ସପନ ଦେଖିଛି । ସତରେ ଦାଦ, ସପନ କଣ ସତ ହୁଏ ?

ହସିଲେ ଅଭିରାମ । ତୁ ଗୋଟାଏ ପାଗଳ, କହିଲେ ସିଏ ।

ଦଖାଣି କହୁଛି—ସତ ହୁଏ ପୁଣି ।

ହସି ହସି ଅଭିରାମ କହିଲେ—ହୋଇପାରେ, କେତେବେଳେ କେମିତି ହାବୁଡ଼ଝଟିକା, ହାତ ଚକୁଲ ଚଢ଼ିଦ ସେଁ, କାଦୁଅ ଚପୁ ଚପୁ ପାଇଲ ଫଳ, ରାଜାଙ୍କ ହାତରେ ମଲ୍‌ପର ଘଟିଯାଏ । ଖାଏରୁ ଅନେକତ ମିଛ ବୋଲି ଜାଣିଛୁ । ହଁ, କଣ କହୁଥିଲ, ତୋ ବାହିଲ କଣ ସପନ ଦେଖିଲ ?

ଥଙ୍କେଇ ଥଙ୍କେଇ ହେଲା ଅନ୍ଧାରୁ, ଝିଅ, ସଂଶୟାଚ୍ଛନ୍ନ ମନ ତାର ଧୁଣି ପଡ଼ିଥିଲା ଅନ୍ଧାରୁ । ଅଭିରାମ କହିଲେ—ମନ ହଉଛି ଯଦି କହ । ବାହିଲର କଥା ଅପର ଆଗରେ କହିବା ଠିକ୍ ନୁହେଁ । ହସିଲେ ସିଏ ।

ନାଇଁ ଦାଦ, ତୋ ପାଖରେ କହିବନି ? ତୁ ଭାରି ଭଲ ଲୋକ । ସମସ୍ତଙ୍କ ଭଲରେ ଥାଉ, ଗାଁର ସବୁ ଲୋକ ଏମିତି କହିବେ ।

ହଉ, ମୋ ପ୍ରଶଂସା ଗୁଡ଼ାକ ବଖାଣିବା ଦରକାର ନାହିଁ । ମୁଁ ମୋ କାମ କରିଥାଏ । କହିଲୁ ତୋ ବାହିଲ କ ସପନ ଦେଖିଲ ?

ଅନ୍ଧାରୁ ସଙ୍କେପରେ କହିଲା—ଆମେ ଦୁହେଁ ଗୋଟାଏ ଘରେ କାଲି ଶୋଇ ରହିଲୁ । ସେ ଝୋକାଟାକୁ କୋଳରେ ପୁରାଇ ଶୋଇଥିଲା, ହଠାତ୍ ଚଲେଇଲା ।

ମୁଁ ହ୍ୱାଉଲା ଖାଇ ଉଠି ପଡ଼ିଲି । ପଚାରିଲି—କଣ ହେଲା ? ସେ କହିଲା—ଏଠା ଲୋକ ସରଗ ଥାନରୁ ଆସି ମତେ ଧରି ପକାଇ କହିଲେ—ଏଇ, ତୁ କୁଆଁ ଆମ ଦଣ୍ଡକାପୁରର ନାରୁଣୀକ ଧରିଛୁ । ଗୁଡ଼୍, ଗୁଡ଼୍, ସେ ସରଗକୁ ଯିବ ତା ଆଗ ଜାଣିଲି ଯେ, ସେ ଗୋଟାଏ ପାପକାମ କରିଥିଲା ଯେ, ଶାପ ପାଇ ଏଠି ତୋ ଘରେ ଜନ୍ମିଥିଲା । ଆଉ ସେ ରହି ପାରିବନି । ସେ ପୁଣି ପଚାରିଲି ସେ ଲୋକଙ୍କୁ—କ ପାପ ଇଏ କରିଥିଲା ? ସେମାନେ କହିଲେ—ଇଏ, ଇଏ, ଜଣେ ଧନୀ ଘରେ ଜନ୍ମିଥିଲା, ଏକ ବଡ଼ ସୌଦାଗର ପୁଅକୁ ବାଧ୍ୟ ହୋଇଥିଲା । ଆଗେ ଜଣେ ଭିକାରୀ ଆସି ଭିକ ମାଗିଲା ସେ ଇଏ ପୁଣି କହିଲା—କାମ କରି ଖାଇବା ଗୁଡ଼ ମାଗୁଛୁ ? ଯା…ଏଇ ଟୋକୀ ମରିଗଲା ପରେ ଏଠି ଜନ୍ମିଛି । ତାର ଆଗେ ଆଗର । ସିଏ ଲୋକ ଏଠା ଆମ କାନ୍ଥ ଭିତରେ ପଶିଗଲେ ।

ହସିଲେ ଅଭିରାମ ଅନ୍ଧାରୁର ଗପ ଶୁଣି ।

ଅନ୍ଧାରୁ ଓଠରେ ହସ, ମାତ୍ର ତାହା ବିଷନ୍ନ, ଆହତ । ସେ କହି ଲାଗିଲା—ତା ପାଟି ଶୁଣି ପଡ଼ଶା ଘର ଲୋକ ଉଠିଲେ । ତାଙ୍କର ମନେ ହେଲା-ଟୋକୀଟା ବେମାର ଥିଲା, କଣ ହୋଇଗଲା ପର ।

ସମସ୍ତେ କହିଲେ—ଦେବତା ଅଛି ଘରେ, କୃପାସ୍ତ କର ।

ମୁଁ ସକାଳୁ ପୂଜାରୀକ କହିଲି—ସିଏ ପୂଜା ବଢ଼େଇଛି । ପୂଜା କଲେ ସିଏ ଭଲ ହେବ । ଆଉ ଡାକ୍ତର ପାଖକୁ ଯିବା ଦରକାର କଣ ?

ଅଭିରାମ ତାକୁ ବୁଝାଇ ପାରିଲେ ନାହିଁ । ଶେଷରେ କହିଲେ ହଉ, ନେ ଫୁଲ, ନେଇ ଯା ଗୁର୍ପ । ମାତ୍ର ଡାକ୍ତରକୁ ଦେଖାଇଥିଲେ, ଓଷଦ ଖୁଆଇଥିଲେ ଭଲ ହୋଇଥାନ୍ତା, ଅନ୍ଧାରୁ ଅଭିରାମଙ୍କ ଫାଟକ ପାଖରେ ହେଇଛି, ତାଙ୍କ ଘରଆଡ଼ୁ ଅନ୍ଧାରୁର ସାନଭାଇ ଦୌଡ଼ ଦୌଡ଼ ଆସିଲା । ସେ କାନ୍ଦ କାନ୍ଦ କଣ କଣ ତାକୁ କହିଲା । ଅଭିରାମ ଶୁଣି ପାରିଲେ ନାହିଁ । ତାଙ୍କର ମନେ ହେଲା ଦଣ୍ଡକାର ନାରୁଣୀ ବୋଧହୁଏ ଆପଣେ ଦେରେ ବସି ଚନ୍ଦ୍ରଲୋକକୁ ଚାଲିଗଲା ।

—*—

# ସଭ୍ୟତାର ଗ୍ରାସ

ସୁରେନ୍ଦ୍ର ମହାନ୍ତି

ଫିଶଳପାଣି ଘଞ୍ଜ ମାଳ ମୁଲକରେ ଏକ କନ୍ଧଗାଁ । ଏହାର "ଜାକେସ୍ତ-ସ୍ଥାନ୍" ଚୋଟା ତଳକୁ ପାହାଡ଼ୀ ଝୋଲ ହଠାତ୍ ଦକ୍ଷିଣକୁ ଅଣ୍ଟା ନହଁକେଇ ବାଙ୍କି ଯାଇଛି, ଗୋଟାଏ ଝପ୍‌ଝପ୍‌କିଆ ଜଙ୍ଗଲ ଆଡ଼େ ।

"ବନଲତା—ସେବାଶ୍ରମ"ର ଆଶ୍ରମ-ବାସିନୀ କନ୍ଧଣୀ ଝିଅ ପଦୁଆଁର ଲାସ୍ ସେଇ ଝୋଲମୋଡ଼ରେ ସୁଅ ଉପରକୁ ନଇଁ ପଡ଼ିଥିବା ଗୋଟାଏ ବେଣାବୁଦା ତଳେ ପାଣିସୁଅରେ ଠାଏ ଅଟକି ଲାଗିଛି । ପଦୁଆଁର ଲମ୍ବା ବାଳ ସବୁ ପାଣି ସୁଅରେ ଭାସୁଛି ଶିଉଳିଲତା ପରି । ଅଣ୍ଟା ତଳୁ ଲେଙ୍ଗୁଟିଟା ଫାଟିଯାଇଛି···ଗ୍ରୁଡର ସ୍ତନ ଦୁଇଟା ପାଣି ଉପରକୁ ଭାସୁଛି ପାଣିଶିଉଳି ଫୁଲର କଢ଼ି ପରି ! ବାଁ ଗ୍ରୁଡର ସ୍ତନ ତଳେ ଗୋଟାଏ ଗହ୍ୱାଡ଼ା କ୍ଷତ···ତୀକ୍ଷ୍ଣ ଦାନ୍ତରେ ଫୁଟାଇ ଗୋଟାଏ ଜାନୁଆର ଯେପରି ସେଇଠୁ ସବୁ ରକ୍ତ ଶୋଷି ନେଇଛି । ତା' ପରେ ତାକୁ ଫିଙ୍ଗି ଦେଇଛି ଏଇ ଝୋଲ ସୁଅକୁ । ଲାସ୍‌ଟା ସେଇଠୁ ଭାସି ଭାସି ଲାଗିଛି ଆସି ଏଇ ମୋଡ଼ରେ ।

ବୁଦୁଜାନି ସେଇ ଲାସ ଆଡ଼କୁ ଚାହିଁ ମନକୁ ମନ କହିଲା "···କୋଉ ମାଉଲୀ ଅପଦେବତାର ଆଖି ପଡ଼ିଲା ଛୋକୀଟା ଉପରେ ଦାନ୍ତ ଫୁଟାଇ ରକ୍ତ ଶୋଷି ନେଲା !"

ବୁଦୁଜାନି ତାପରେ ବଡ଼ ବଡ଼ ହୋଇ ମନ୍ତ୍ର ବୋଲିଲା, ମାଉଲୀର କୋପଦୃଷ୍ଟିରୁ ନିଜ ଦେହ କଳିବା ପାଇଁ । ଫିଶଳପାଣି ଗାଁର କନ୍ଧ-ଗୁଣିଆଁ, ବୁଦୁଜାନି !

ପାହାଡ଼ୀ ଝୋଲ ଯେଉଁଠି ବାଙ୍କି ଯାଇଛି, ସେଇ ମୋଡ଼ରେ ଗୋଟାଏ ମଦଭାଟୀ...ମଦଭାଟୀ ଆଜି କିନ୍ତୁ ଶୂନ୍‌ଶାନ୍ । ଭାଟୀ ଠିକାଦାର ବନମାଳୀ ଭାଟୀ ପାଖରେ ସେଇ ମହାଲମ୍ବ ଗଛ ମୂଳେ ଗୋଟାଏ ଖଟିଆ ଉପରେ ବସି ଚିଲମରୁ ଗଞ୍ଜେଇ ଟାଣେ, କନ୍ଧୁଣୀମାନଙ୍କ ଆଡ଼କୁ ନଜର ପକାଏ, ଥଟ୍ଟା ପରିହାସ ବି ସୁବିଧା ପାଇଲେ । ଆଜି କିନ୍ତୁ ସେ ମଧ୍ୟ ଆଖିରେ ପଡ଼ୁ ନାହିଁ ।

ଫିରିକପାଣି ଗା ଦାଣ୍ଡରେ ବନ ବିପଦର ଟାରେ ଓହ୍ଲାଇ ଆସିଛି ଯେପରି ଗୋଟାଏ କିଛୁମ ଅଧରାତ୍ର !

'ବନଲତା-ସେବାଶ୍ରମ'ର ସୁପରିଣ୍ଟେଣ୍ଡେଣ୍ଟ ଦେବାନନ୍ଦ ଆଶଙ୍କା କରନ୍ତି ଏ ମୃତ୍ୟୁ ନୁହେଁ—ଆତ୍ମହତ୍ୟା ! କିନ୍ତୁ କୁସୁମପଙ୍ଗା ସରପଞ୍ଚ ଦଶମାଇଲ ଦୂରରେ ଚାଡ଼ୁଲଙ୍ଘର ଥାନା ଦାରୋଗାଙ୍କ ପାଖକୁ ପାଣ ଚଉକିଆକୁ ପଠାଇ ସାରିଛନ୍ତି...ନାରୀ ଧର୍ଷଣ ଆଉ ହତ୍ୟାର ମାମଲା ଖଞ୍ଜୁ । ତାଙ୍କର ଅଭିଯୋଗ ଆଶ୍ରମର ଟୋକା ଦାଢ଼ିଆ ମାଷ୍ଟର କଲ୍ୟାଣ ଦାସ ବିରୁଦ୍ଧରେ, କୁସୁମୀର ଆତ୍ମହତ୍ୟାରେ ଜଡ଼ିତ କରି !

ଲାସ୍‌କୁ ସେତିକବେଳୁ ଗୋଟାଏ ଗଛମୂଳେ ଜଗି ବସିଛି ବୁଦୁଜାନୀ ଗୁଣିଆ...କାଳେ ହେଟା ଟାଣିନେବ, ନୋହିଲେ ଶାଗୁଣା ପଲ ସଫା କରିଦେବେ ଲାସ୍‌ଟାକୁ । କିନ୍ତୁ ହେଟାର ଦେଖା ନାହିଁ । ଶାଗୁଣାମାନେ ସୁଦ୍ଧା ନାହାନ୍ତି ! କରୁଟିଆ ଖରାବେଳେ ପଦୁଆଁର ଲାସ୍ ପାଣି ସୁଅରେ ଚିତ୍ ହୋଇ ପଡ଼ିରହିଛି, କାହାଣୀର ସେଇ ମାଛ କନ୍ୟା ପରି !

ସେ ଆଡ଼ୁ ଆଖି ଫେରାଇ ବୁଦୁଜାନୀ ଚାହିଁଲା, ଗଡ଼ାଣି ଉପରେ ଫିରିକପାଣି ଗାଁ ଆଡ଼କୁ ।

ପାହାଡ଼ୀ-ଝୋଲ କଡ଼େ କଡ଼େ ଗ୍ରେଚିଆ ପାହାଡ଼ । ଘାଟୀର ଉଠାଣି ଉପରେ "ବନଲତା-ସେବାଶ୍ରମ"ର ଖପରଲି-ଗ୍ରାଇଣୀ ଛପର ସେପାଖକୁ ଗୋଟାଏ ପାହାଡ଼ୀ ମୁଣ୍ଡିଆ ଉପରେ କାଥଲିକ୍ ମିସନ ଗୀର୍ଜାର କ୍ରସ୍ ପଛକୁ ଯବନିକାର ପର୍ଦ୍ଦା ପରି ଘଞ୍ଚ ଶାଳବଣି, ଚେଣିକ ପାହାଡ଼

ତଳରେ ଝୁମ୍ପୁଝୁମ୍ପିଆ କେନ୍ଦୁ ଜଙ୍ଗଲ···ଗାଁ ମଝିରେ ମଝିରେ ବାଉଁଶବୁଦା ଘର ଗୋଟାଏ ଗୋଟାଏ ନଡ଼ିଆ ସଜନାଗଛ ! ଗଡ଼ାଣିରେ ଝୋଲ କଣ୍ଟେ କଣ୍ଟେ ଗ୍ରେଣ୍ଡିଆ କନ୍ଧବସ୍ତିଟିଏ···ଗୋଟାର ଗୋଟାଏ ମାଟି ଗୋବର-ଲିପା ଅଗଣା ଘର ପଟକୁ ଦେଉଳ ଶିଖ ଆଉ ନାଲିଟାଇ ଝୁଣ୍ଟଣି ମନ୍ଦଣି ଭିତରେ ଟେଲ୍ଲୁମାଟିଲିପା କେତେଟା ନୁଆଁଣିଆଁ ଘରଦ୍ୱାର ! ପଲ ପଲ ଘୁଷୁରି, କେତେଟା ହାଡ଼ା ଗାଈ ଗୋରୁ, କଦବା କ୍ୱଚିତ୍ ଗୋଟାଏ ଦୁଇଟା କୁକୁଡ଼ା, ପଲେ ଲଙ୍ଗଳା ଛୁଆ, ପଣସଗଛ ମାନଙ୍କରେ ଝୁଲନ୍ତି ଥିବା ଫଳ ଗଣ୍ଡା ଗଣ୍ଡା ପଣସ···ଆଉ ଦୁଆର ମୁହଁରେ ଅଧାମେଲା କବାଟ ଫାଙ୍କରେ କେବେ କେବେ ଉଙ୍କି ମାରେ ସେହିପରି ଆଭ୍ରୁହୀନ ପୁନରାବୃତ୍ତି ! ପଣସ ଗଛ ପରି ବିକାରହୀନ ଦେହ, ସଙ୍କୋଚ-ହୀନ ଆଖି ଆପଣା ଆପଣା ଭିତରେ କେବେ କେବେ କେଉଁ କଥାର ଲଥାରୁ ଖିଲଖିଲ ହସ—ସେଇ ପାହାଡ଼ୀ ଝୋଲର ଝିଲମିଲ ସୁନ୍ଦର ପଣ !

ଆଜି କିନ୍ତୁ ପୁଲିସ୍-ଦାରୋଗା ଉପରେ ସବୁଆଡ଼ ଶ୍ମଶାନ୍ ! ଘରେ ଘରେ ତାଟି କବାଟ ! ପୁରୁଷମାନେ ପଳାଇଛନ୍ତି ଜଙ୍ଗଲ ଭିତରକୁ ! ସ୍ତ୍ରୀ ମାନେ ମଧ୍ୟ ! ଖାଲି ଆବର୍ଜନାକୀର୍ଣ୍ଣ ମାନଙ୍କ ଘରପଟେ ଘୁଷୁରିଗୁଡ଼ା କେବଳ ଜନବସତିର ସଙ୍କେତ ବହନର ଦାୟିତ୍ୱ ନେଇ ପେଟରେ ଘଁ-ଘାଁ ହୋଇ ଘୂରି ବୁଲୁଛନ୍ତି ।

ଗାଁ ମୁଣ୍ଡ ଆମ୍ବ-ତେନ୍ତୁଳି ତୋଟା ଭିତରେ, ଯୋଡ଼ା ତେନ୍ତୁଳି ଗଛ ମୂଳରେ—କେତେ ବର୍ଷର ଝଡ଼, ପବନ, ଖରାବର୍ଷା ଭିତରେ ଛିଣ୍ଡି, ଛିଣ୍ଡି ଖଣ୍ଡେ ଧଳା ପତାକାର ଅବଶେଷ ତଥାପି ଫର ଫର ଉଡ଼ୁଥିଲା, ତା'ର ତଳେ "ଜାଙ୍କରସ୍ଥାନ୍" ! ଠାନା ପେନୁ, ସୋଥି ପେନୁ ପ୍ରଭୃତି କନ୍ଧ ଦେବାଦେବୀମାନେ ଖଣ୍ଡେ ଖଣ୍ଡେ ଶିଳାରୂପରେ ଉଣ୍ଡ ତଳାଇଛନ୍ତି ସେଠି ! ଅତୀତରେ ଅଗଣିତ ମେରିଆ-ବଳୀର ଦୀର୍ଘଶ୍ୱାସ ତଥାପି ଯେପରି କେବେ କେବେ ମର୍ମରିତ ହୋଇଉଠେ, ସେହି ଆମ୍ବ ତେନ୍ତୁଳି ତୋଟାର ଛାୟାଘନ ଶାଖା ମାନଙ୍କରେ । ଚୈତ୍ର ପରବ ଓ ଅନ୍ୟ ପର୍ବ ପର୍ବାଣୀ ମାନଙ୍କରେ ଏଠାର ମୌନ, ସୁନ୍ଦର, ବଳିପ୍ରଯୋଗାନ୍ତ ପୂଜା, ସଲପ, ମହୁଆ, ସଙ୍ଗୀତ, ନୃତ୍ୟ ଆଉ ଢୋଲମହୁରୀର ମାତାଲମିରେ

ଯୌବନଚଞ୍ଚଳ ହୋଇଉଠେ । ମଦୁଉଆର ତାଳମାନ ସଙ୍ଗରେ ତାଳ ରଖି ହାତରେ ହାତ ଛନ୍ଦ କନ୍ଧୁଣୀ ଡୋମ୍ନୀ ମାନଙ୍କର ଅଣ୍ଟାରେ ଲହର···ଠେଚାଳୀ ପବନରେ ଗଜାଶାଳ ସବୁ ଦୋଳବା ପର, ଆଗକୁ ଆଉ ପଛକୁ, ପଛକୁ ଅଉ ଆଗକୁ, କେତେବେଳେ ପାହାଡ଼ୀ ଝୋଲର ସୁଅ ପର, ଆଉ କେତେବେଳେ ସାପର ଗତି ପର ଅଙ୍କେଇବଙ୍କେଇ ! ଉଣି ଉଣି ଅନାବୃତ ସ୍ତନର ଅକୁଣ୍ଠିତ ଧକ୍କିଷକ !···ମୂର୍ତ୍ତିମନ୍ତ ପ୍ରକୃତିର ନିଷ୍ପାପ ଯୌବନ-ବିଳାସ ! ଜୀବନ-ଦେବତାର ଆନନ୍ଦମୟ ଦାନ ରୂପେ ଦେହର ମାଂଶପେଶୀ ଓ ସ୍ତନ ପାଇଁ ସେମାନେ ଯେପରି ଗର୍ବିତା···ତଥା-କଥିତ ପାପପୂଣ୍ୟର ବିଚାରବୋଧରେ ଶଙ୍କିତା, ଦଂଶିତା, ନୁହନ୍ତି !

ସଭ୍ୟତା-ଉପେକ୍ଷିତ ଏକ ଫିଉକପାଣି ଗାଁ··· ଶାଳବନ ଆଉ ଶିଆଳିଲଟା ଘେରା ଏହାର ଗ୍ରୁପ୍ନିବିଡ ଜଗତରେ, ସଭ୍ୟତା, ସଂସ୍କୃତି ଓ ତାହାର ଶତ ବିକୃତିର ବିସ୍ତାର ପାଇଁ ଏହି ଗ୍ରାମକୁ ଅନେକ କାଳ ପୂର୍ବେ ପ୍ରଥମେ ଆସିଥିଲେ ଏକ ବାପଟିଷ୍ଟମିସନ୍‌ର ପାଦ୍ରୀ, ତାଙ୍କ ପରେ ଅନ୍ୟ କୋଲକଷ୍ଟ । ତା' ପରେ ଆସିଲେ ମଦଭାଟୀ ଆଉ ଶୁଣ୍ଡୀ । ତା' ପରେ ଗଢ଼ିଲେ କୁମ୍ଭଟୀ ମହାଜନ, କନ୍ଧର ଫସଲ ବନ୍ଧାରଖି ତାକୁ ମଦଭାଟୀର ମାସୁଲ ଯୋଗାଇବା ପାଇଁ । ତା ପରେ ସଭ୍ୟତାର ସେଇ ପଟୁଆରରେ ଗୋଟି ଗୋଟି କରି ଗଢ଼ିଲେ ଫରେଷ୍ଟର୍, ପୁଲିସ୍, ଅବକାରୀ ଓ ସବା ଶେଷରେ ଆସିଲେ "ବନଲତା ସେବାଶ୍ରମ"ର ଆଚାର୍ଯ୍ୟ ଦେବାନନ୍ଦ, କନ୍ଧମାନଙ୍କର "ଚରିତ୍ର ଶୁଦ୍ଧି" ପାଇଁ !

ପ୍ରୌଢ଼ା, ବୃଦ୍ଧାମାନେ ଅଣ୍ଟା ଉପରକୁ ଦେହ ଅନାବୃତ ରଖିଲେ ଦେବାନନ୍ଦଙ୍କର ଆପତ୍ତି ନ ଥିଲା । ମାତ୍ର ଯୁବତୀ ଧାଙ୍ଗଡ଼ୀମାନେ ସ୍ତନ ମୁକୁଳା କରି ଅଣ୍ଟା ତଳେ କେବଳ "ଢ଼ପେମା" (ସ୍ତ୍ରୀଅମାନଙ୍କର କୌପୁନୀ) ଉପରେ ଅଣ୍ଡସାରା ରଙ୍ଗୀନ୍ କପଡ଼ା ଖଣ୍ଡେ ଖଣ୍ଡେ ଗୁଡ଼ାଇ ବାହାରକୁ ବାହାରିବା, ଯେ ଅକଥନୀୟ ଅଶ୍ଳୀଳତା, ଅଭାବନୀୟ ବର୍ବରତା, ସେଥିରେ ଦେବାନନ୍ଦଙ୍କର ସନ୍ଦେହ ନ ଥିଲା । ପୁଣି କନ୍ଧ ସ୍ତ୍ରୀଅ-ମାନଙ୍କର ସେଇ ସବୁ ନାଚ···ହାତକୁ ହାତ ଛନ୍ଦ, ଆଗକୁ ଆଉ ପଛକୁ, ପଛକୁ ଆଉ ଆଗକୁ ଦେହର ଦୋଳା ଦୋଳ ! ଦେବାନନ୍ଦ

ତାର ମଧ୍ୟରେ ଦେଖିଥାନ୍ତି ଯେପରି ଜୀବନର ନୈଥିବର ବ୍ୟଞ୍ଜନା ! ଶୁଭ ଓ ଅଶୁଭ ଚରିତ୍ରବତ୍ତ୍ୱ ଓ ଚରିତ୍ରହୀନତା ପାପ ଓ ପୁଣ୍ୟର ଉର୍ଦ୍ଧ୍ୱରେ, ଧରିତ୍ରୀର ନଗ୍ନ ସନ୍ତାନ ମାନଙ୍କର ଏ ନୃତ୍ୟ ଦେବାନନ୍ଦଙ୍କ ଦୃଷ୍ଟିରେ ଜୀବନ-ଉତ୍ସବ ନ ଥିଲା । ତାଙ୍କ ଦୃଷ୍ଟିରୁ ଏହା ଥିଲା ଅନାବୃତ ସ୍ତନ, ଜାନୁ ଓ ଜଘନର ଅଶ୍ଳୀଳ-ସ୍ୱଚେଷ୍ଟା । ଏକ ବିକୃତି ! ଏହି ଆରଣ୍ୟ-ସମାଜକୁ ସେହି ବିକୃତିରୁ ଉଦ୍ଧାର କରିବାର ପୁଣ୍ୟ ସଙ୍କଳ୍ପ ଧରି ଆର୍ଯ୍ୟ ଦେବାନନ୍ଦ ଏଠାରେ ସ୍ଥାପନ କରିଥିଲେ "ବନଲତା-ସେବାଶ୍ରମ" । କିନ୍ତୁ ବିକୃତ କିଏ, ଦେବାନନ୍ଦ ନା ଏ ବନ୍ଧ-ସମାଜ ? ତାହା ଏକ ବିବଦମାନ ସମସ୍ୟା !

ଦେବାନନ୍ଦଙ୍କ ଯଥେଷ୍ଟ ପୂର୍ବରୁ ବାପଟିଷ୍ଟ୍-ମିସନର ଯେଉଁ ପ୍ରଥମ ପାଦ୍ରୀ ଜଣକ ଏଠାକୁ ଆସିଥିଲେ ତାଙ୍କର ଆକ୍ରମଣ କିନ୍ତୁ ଉଦ୍ଦିଷ୍ଟ ଥିଲା, "ଡାଙ୍ଗନ୍-ହଉ୍" ଧାଙ୍ଗଡ଼ା—ଧାଙ୍ଗିଡ଼ୀମାନଙ୍କର ମେଳସବୁ କୋଠଘର ଉପରେ ! ପାଦ୍ରୀଙ୍କ ଦୃଷ୍ଟିରେ ଏଇ "ଡାଙ୍ଗନ୍-ଇଉ୍" ସବୁ ଥିଲା, ପାପର ଆଡ୍ଡା···ସେତାନ୍‌ର ମେଫିଲ !

କିନ୍ତୁ ଦୃଷ୍ଟିରେ ଡାଙ୍ଗନ୍-ଇଉ୍ ଥିଲା କିନ୍ତୁ ଅବାରିତ, ଯୌବନର ମୁଗ୍ଧ ତୀର୍ଥ ! ଭିନେଗାଁର ଧାଙ୍ଗଡ଼ାମାନେ ଜହ୍ନ ଆଲୁଅରେ ଉଙ୍ଗର ଚାହାଣ୍ଡ ଡେଇଁ କିନ୍ତୁ—ବଇଁଶୀ ଫୁଙ୍କି ଫୁଙ୍କି ଏ ଗାଁକୁ ଆସିଲେ ଡାଙ୍ଗନ୍-ଇଉ୍‌ରେ ମାତିଉଠେ, ମିଳନର ମଉସୁମ ! ଧାଙ୍ଗଡ଼ା ଧାଙ୍ଗଡ଼ୀଙ୍କ ଭିତରେ ମନ ଦେବା ନେବାର ସୌଦାଗରୀ ନ ଥାଏ ଏଠି, ନୈତିକତାର ଶଠତାପୂର୍ଣ୍ଣ ଆବ୍ରୁ ନ ଥାଏ, ପ୍ରେମ ନାମରେ ନରୁଦ୍ଧ ଯୌନଲାଳସାର ବିକୃତି ନ ଥାଏ, ସମାଜ-ବନ୍ଧନର ଦାୟିତ୍ୱ ନ ଥାଏ···ଏଠି କେବଳ ଅନାବୃତ ଆଦିମ ଦେହର ମଦୁଆରଙ୍ଗୀ ମେଫିଲ୍ ! ସମାଜ—ରକ୍ଷା ପାଇଁ ଏ ସମାଜରେ ବିବାହ···ମନର କ୍ଷୁଧା ମେଣ୍ଟାଇବା ପାଇଁ ନୁହେଁ ! ମନର ମାହ୍ଫିଲ୍ ଏଠାରେ ଅଲଗା । ତାହାର ମୌକା-ଘାଟ···ଡାଙ୍ଗନ୍-ଇଉ୍ !

ଶେଷ ଯୌବନର କ୍ଳାନ୍ତ-ବିହଙ୍ଗ ଯେଉଁଦିନ ବିଶ୍ରାମ ପାଇଁ ଖୋଜେ ନଭୃତ କୁଳାୟ, ସେହିଦିନ ଆସେ କେବଳ ବିବାହର ଚିନ୍ତା, ପୈତୃକ

ଘରକୁ ଆଦର ରହିବାର ଯନ୍ତ୍ରଣା : ଦାମ୍ପତ୍ୟ ବନ୍ଧନରେ ଆବଦ୍ଧ ସ୍ୱାମୀ-ସ୍ତ୍ରୀର ସଂସାର ଏଠାରେ କେବଳ, କନ୍ଧର ବଂଶବୃଦ୍ଧି ପାଇଁ···ଧାରପ୍ରବାହ ସତତ୍ୱ ଓ ସମ୍ପତ୍ତି ଧର୍ମରେ ଶୁଦ୍ଧପୂତ ଆଶ୍ରମ, ବ୍ୟତ୍ୟୟ ନାହିଁ, ପରକୀୟ ପରକୀୟା ନାହିଁ ! ସେପରି ବ୍ୟତ୍ୟୟ ସ୍ଖଳନ, ସ୍ୱୈରଚାରକୁ କନ୍ଧ-ସମାଜ ମଧ୍ୟ କ୍ଷମା ଦିଏ ନାହିଁ ଏଠି, କିନ୍ତୁ ଏ ବନ୍ଧନରେ ଆବଦ୍ଧ ହେବା ପୂର୍ବରୁ, ଡାଙ୍ଗନ୍-ଇଡ଼ୁର ଗୃହକାନ୍ଥ ମଧ୍ୟରେ, ଧକ ଧକ କାଠନିଆଁ ଘୂରପଟେ ଉଲଙ୍ଗ ଦେହର ଅବାରିତ ଜାଗର !

ସନ୍ଧ୍ୟା ହେଲେ ସବୁ ବାଟ ହେଇ ଗୋଟାଏ ଆଡ଼େ···'ଡାଙ୍ଗନ-ଇଡ଼୍' ! ଭିନ୍ନେ ଗାଁର ଧାଙ୍ଗଡ଼ାମାନେ ସେଠାକୁ ଆସନ୍ତି କନ୍ଧ-ବଇଁଶୀ ଫୁଙ୍କି ! ତାର ପ୍ରତିଧ୍ୱନି ଉଠେ, ଏ ଗାଁରେ ଧାଙ୍ଗଡ଼ୀମାନଙ୍କର ଖିଲ ଖିଲ ହସ ଆଉ ଗୀତର ଲହରରେ ।

ଶାଳବଣବେଷ୍ଟ ରାତି ଗହନ ନିବିଡ଼ ହୁଏ । ଧାଙ୍ଗଡ଼ା—ଧାଙ୍ଗଡ଼ୀଙ୍କ ମଧ୍ୟରେ ମୋହିତହାସ୍ୟ ଧୂଆଁ ଚଷ ଆଉ ମନବଣ୍ଟାବଣ୍ଟିର ପର୍ବ ଶେଷ ହୋଇଯାଏ । ଧାଙ୍ଗଡ଼ାମାନେ ଧାଙ୍ଗଡ଼ୀମାନଙ୍କର ସବୁ କୌତୁକ ପହେଳିର ଉତ୍ତର ଦେବା ଶେଷ ହୋଇଥାଏ । ତାଇ ପରେ ତାଳ ଆଉ ସ୍ୱଚ୍ଛନ୍ଦ ଭିତରେ ଧାଙ୍ଗଡ଼ୀମାନଙ୍କର ଆଉ କିଛି ନୂଆ ଗୀତ ବୋଲିବା ପାଇଁ ବାକି ନ ଥାଏ । ଦିନର ଛୋଟ ବଡ଼ ଘଟଣା ସବୁର ରୋମନ୍ଥନରେ ମଧ୍ୟ ଆଉ କୌଣସି ନୂତନତ୍ୱ ନ ଥାଏ । ଧାଙ୍ଗ୍ଡ଼ା ବାଛି ନିଏ···ଗୋଟିଏ ରାତିର ସାଥୀ । ଧାଙ୍ଗ୍ଡ଼ୀ କହେ 'ଆଜି ତୋର ମୋର ପାଳି !' ସେଥିରେ ସଙ୍କୋଚ ନାହିଁ । ଈର୍ଷା ନାହିଁ—କିମ୍ବା କାଲି ସେ ଦୋସର ଥିଲା ବୋଲି ଆଜି ସେ ସେହି ଦାବୀ ଓ ଅଧିକାର ଧରି ଆସିବ ତାହା ମଧ୍ୟ ନୁହେଁ । ଧିକ୍ ଧିକ୍ ଆଲୁଅରେ, 'ଡାଙ୍ଗନ୍-ଇଡ଼୍' ଘରର ଗୋବରଲିପା ଚଟାଣ ଉପରେ ଧାଡ଼ି ଧାଡ଼ି ଅନାବୃତ ଉଲଙ୍ଗ ମିଥୁନ, ସୃଷ୍ଟିର ଆଦିମ ସ୍ୱର୍ଗର ଆଡ଼ମ୍ ଓ ଇଭ୍ ଦିଗମ୍ବର ଦିଗମ୍ବରୀମାନଙ୍କ ପରି ।

ଏ ସମ୍ବାଦ ପାଇ ସହରରୁ ଆଂଥ୍ରୋପଲଜିଷ୍ଟ୍‌ମାନେ ବିରୁଦ୍ଧ ମନରେ ସବୁ ବିକୃତି ଘେନି ଏଠାକୁ ଆସିଥିଲେ, "ଡାଙ୍ଗନ ଇଡ଼ୁ" ମାନଙ୍କର ବିବରଣୀ ସଂଗ୍ରହ କରି, ବିକୃତ ଗ୍ରସ୍ତ ସଭ୍ୟସମାଜର ଯୌନ କୌତୁହଳ

ମେଣ୍ଟାଇବା ପାଇଁ ସେଇପରି ଜଣେ ଆଂଥ୍ରୋପଲଜିଷ୍ଟ୍ ଠାରୁ ପାଦ୍ରୀ ପ୍ରଥମେ ସଂଗ୍ରହ କରିଥିଲେ ଏଇଭଳି ତାଂଗନ-ଇଡ଼ ମାନଙ୍କର ସମ୍ବାଦ । ସେଦିନ 'ସୈତାନ'ର ଏଇ ଫେମିଲିମାନଙ୍କ ପ୍ରତି ପାଦ୍ରୀଙ୍କର ବିକଳ୍ପ ଆଗ୍ରହ ପ୍ରକାଶ ପାଇଥିଲା, ଏଥିପ୍ରତି ଘୃଣା ଓ ବିବମିଷା ମଧ୍ୟରେ ! ଭଗବାନଙ୍କର 'ଆଲୋକମୟ' ରାଜ୍ୟରୁ ଏପରି ଅନୁଷ୍ଠାନମାନଙ୍କର ବିଲୋପ ପାଇଁ ସେ ଏଠାକୁ ଆସିଥିଲେ ଏକ ଅଭିଯାତ୍ରୀ ପରି ! ତା'ପରେ ଏଠାରେ ସ୍ଥାପିତ ହୋଇଥିଲା ଏକ ମିସନ୍ ।

( ୨ )

ବୁଦୁଜାମା ଗୁଣିଆ ମନକୁ ମନ ବଡ଼ ବଡ଼ ହେଲା···ସେ ଠିକ୍ ଜାଣିଥିଲା—ଏ ସବୁ ଅଞ୍ଚଳକୁ ଆସିଥିଲେ ଯେଉଁଦିନ ଜଣକ ପରେ ଜଣେ ଆଂଥ୍ରୋପଲଜିଷ୍ଟ, ପାଦ୍ରୀ, ଶୁଣ୍ଢ଼ୀ, କୁମୁଟି ଆଉ 'ସେବାଶ୍ରମ'ର ସମାଜସେବୀ ଦଳ ସେଇଦିନୁ ସେ ବୁଝିଥିଲା—ଗୋଟାଏ କିଛି ଭୟଙ୍କର ବିପଦ ନିଶ୍ଚୟ ମାଡ଼ି ଆସୁଛି । ରକ୍ତ-ଶୋଷା 'ପେନୁ', 'ମାଉଳୀ' ଆଉ 'ଅପଦେବତା' ମାନେ ମାଡ଼ି ଆସୁଛନ୍ତି ବୋଲି । ସେଇଦିନୁ ବୁଦୁଜାମା ଏହିପରି ଗୋଟାଏ ଦୁର୍ଘଟଣାର ଆଶଙ୍କାରେ ବେଶ୍ ଆତଙ୍କିତ ହୋଇ ରହିଥିଲା । ସ୍ୱପ୍ନରେ ମଧ୍ୟ ସେ ଦେଖିଥିଲା, ଏ ସବୁ ଅମଙ୍ଗଳ ଘଟଣାର ସୂଚନା । ତା' ନ ହୋଇଥିଲେ ଜୁଆନ୍ କନ୍ଧ-ଝିଅ ପଦୁଆଁ ଖୋଲା ଜଙ୍ଗଲରେ ଏଠି ଏମିତି ମରି ପଡ଼ିଥାନ୍ତା କାହିଁକି ? ···କନ୍ଧ ଝିଅ ତ ସହଜରେ ଆତ୍ମହତ୍ୟା କରେ ନାହିଁ କେବେ ।

କୋଉ ମାଉଳୀ କି ପେନୁ, ପଦୁଆଁର ରକ୍ତ ଶୋଷି ନେଲା । କି ଦୋଷ କରିଥିଲା ସେ ? କେଜାଣି ?

ଫର୍ଣ୍ଣି ଲଟୀ ବେଡ଼ା ଡେଙ୍ଗୁଳ ମୂଳେ ବୁଦୁଜାମା ପାଖକୁ ସଡ଼କରୁ ଗଡ଼ି ଆସିଲା, ପାହାଡ଼ ମୁଣ୍ଡିଆ ସେପାଖେ ପଡ଼ୋଶୀ ଗାଁର ଏକ କନ୍ଧ··· ମୁଣ୍ଡରେ ଅନନ୍ତ କାଳର ଧୂଳିଆ ଜଟ, କୌପୁନୀ ଉପରେ ଖଣ୍ଡେ ଛିଣ୍ଡା ହୋଷଡ଼ା । ହୋଷଡ଼ାର ଶତ ଛିଦ୍ର ଭିତରୁ କଳି ବାହାରକୁ ଉଙ୍କି ମାରୁଥିଲା ଗୋଟାଏ ଅନମନୀୟ ଆଭିଜାତ୍ୟ ।

ଧୂଙ୍ଗିଆରେ ନିଆଁ ଲଗାଇ କେତେ କେତେ ଧୂଆଁ ବାହାରୁ ପରେ, ପେନୁକୁ ବଳି ଦେବା କଥା ପଡ଼ିଲା । କିନ୍ତୁ 'ମାଉଳୀ'. କି 'ପେନୁ' ବଳି ଦିଆଯିବ କାହାକୁ ?—ତାହାହିଁ ଥିଲା ସମସ୍ୟା ।

'ପେନୁ' କି 'ମାଉଳୀ', କନ୍ଧ-ଝିଅ ପଦୁଆଁର ବଢ଼ିଲା ଛାତିରୁ ରକ୍ତ ଶୋଷି, ତା'ର ଲାସ୍‌କୁ ଝୋଲା ପାଣିରେ ଫିଙ୍ଗି ଦେଇଥିବା ସେତେବେଳକୁ ସେ କନ୍ଧ ଜଣକ ବି ଶୁଣି ସାରିଥିଲା ।

କନ୍ଧ ପଚାରିଲା···'ପୋଢ଼ ନା କଳା କୁକୁଡ଼ା ? ପେନୁ କଣ ମାଗୁଛି, ଜାଣିଛୁ କରେ ?

ଦଶାସି ବୁଦୁଜାନି ମନକୁ ମନ ବଡ଼୍ ବଡ଼୍ ହେବା ପରି କହି ଗ୍ଲାଇଲା···'ଯୋଉଦିନ ପହିଲେ ପାଦ୍ରୀ ଆଇଲା ଫିରିକପାଣୀ ଗାଁକୁ ତା'ପରେ ଆଇଲା ସାଇବ, ତା'ପରେ ଶବଣି ଆଉ ଅବକାସି ଅଧିକାସି-ମାନେ ଆଇଲେ, ଆଉ ସବା ଶେଷରେ ଏଇ ଦାଢ଼ିଆ ବାବା ବାବାଜୀମାନେ ଆସି ଏଠି ଆଶ୍ରମ ବାନ୍ଧିଲେ, ସବୁଥର ମୁଁ ତମମାନଙ୍କୁ କହିନାହିଁ କରେ ପିଲେ ? ଗୋଟାଏ ଟୋଟାଏ ଅମଙ୍ଗଳ ମାଡ଼ି ଆସିଲା ।

କନ୍ଧ ମାଟି ଉପରେ ହାତ ଘ୍ଷପଡ଼େଇ କହିଲା···'ସତ୍' ! ସତ୍ !'

ଦଶାସି କହି ଗ୍ଲାଇଲା···'ଆମର ଝିଅମାନେ, ଟୋକାମାନେ ବେଶ୍ ଥିଲେ । ଅଣ୍ଟା ତଳେ ଖଣ୍ଡେ ଖଣ୍ଡେ ପଟ, ଛାତି ଉପରେ ସାର୍ ସାର୍ ଗୁଞ୍ଜା ମାଳୀ···ପାଦ୍ରୀ କହିଲା 'ଛାତି ଲୁଚ୍ଚାଅ ।'

କନ୍ଧ କହିଲା···'ଧରଣୀ ମା'ର ଥନ କାହିଁ କରେ ? ଏତ ଝୋଲା ତ ଧରଣୀ ମା'ର କ୍ଷୀରଧାର । ସେଇ ଉଞ୍ଚା ଉଞ୍ଚା ପାହାଡ଼ ଚୂଳ ସବୁ ଧରଣୀ ମା'ର ଥନ ! କପଡ଼ା ପକାଇ ତାକୁ ଲୁଚ୍ଚାଇବୁ କରେ ?'

ଦଶାସି ତାର ଅଭିଯୋଗ ସବୁ ଗୋଟିକ ପରେ ଗୋଟିଏ କହି ଗ୍ଲାଇଲା । ଧାଙ୍ଗଡ଼ୀମାନଙ୍କର ଛାତିର ଛବି ଉଠାଇବା ପାଇଁ ସାଇବ ଦିନେ କଳବାକସ ଧରି ଆଇଲା । ସେଇଦିନୁ ପାପ ଆଇଲା ।—

ଦଶାଗ୍ର ଗଳା ସ୍ୱର ନୂଆଇଁ କହିଲା···"ସେଇଟା କଳବାକସ ନୁହେଁ ରେ ବୁଆ । 'ଦ୍ରା' ଭିତରେ ଗୋଟାଏ ରକ୍ତଶୋଷା ମାଙ୍କଡ଼ୀ···ତାର ଯା ବଡ଼ ଗୋଟାଏ ଆଖି । ସାଇବ ସେଦିନ ହାଟରେ ବଡ଼ା ପରଜା ଟୋକାଙ୍କ ଘୁଞ୍ଚିରୁ ଲହୁ ଶୋଷିବା ପାଇଁ ଦେଇ ଆଖି କାଢ଼ିଥିଲା । ମୁଁ ଦଉଡ଼ି ଯାଇଁ ଲୁଚି ପଡ଼ିଥିଲି ଶୁଣ୍ଢୀ ଭାଟି ପଛ ପଟରେ ।"

କନ୍ଧ କହିଲା···"ସତ୍ । ସତ୍"

ବୁଢ଼ୁଜାନୀର ଏହିପରି ନାନା ଅଭିଯୋଗର ଶେଷ ନଥିଲା । ସେ କହି ଚାଲିଥିଲା···"ଅଧିକାରୀମାନେ ଗାଁକୁ ଆସିଲେ ଧାଙ୍ଗଡ଼ୀମାନଙ୍କ ଛାତି ଉପରକୁ ଟେରେଇ ଆଖି ହାଣିଲେ । ସେ ତ ଆଖି ନୁହେଁରେ, ମୁଣ୍ଡା ମୁଣ୍ଡା ଜଳନ୍ତା ଅଙ୍ଗାର । ଧାଙ୍ଗଡ଼ୀମାନେ ମନକୁ ମନ ଧନ୍ଦି ହେଲେ, ଏଇ ଛାତିରେ ଅଛି କଣ ? ଏଇ ଦେହ ଆଡ଼େ ଚାହିଁ ହେଇ ଧୋବଧାଉଳିଆ ଅଧିକାରୀମାନଙ୍କ ଆଖି ଏମିତି ଜଳି ରଡ଼ ପଚି ହାଉ ହାଉ ହୋଇ ଉଠୁଚି କାହିଁକି ? ଧାଙ୍ଗଡ଼ୀମାନେ ଚାହିଁ । ଚାହିଁ ହୋଇ ଖିଲ ଖିଲ ହସାହସି ହେଲେ । ସେମାନଙ୍କ ମନରେ ପାପ ଛୁଇଁଲା ।"

ମାଟି ଉପରେ ଦୁଇ ହାତ ପିଟି କନ୍ଧ କହିଲା···"ସତ୍ । ସତ୍"

ଦଶାଗ୍ର କହିଲା···"ଶେଷକୁ ବାକିଥିଲେ ଏଇ ଦାଢ଼ିଆ ବାବା ବାବାଜୀମାନେ । ସେମାନେ କହିଲେ··ଛାତି ଲୁଚାଅ । ଦେହଟା ପାପ କରେ ? ଧରଣୀ ମା'ର ଥନ ନାହିଁ କରେ ?"···ସେଇ ପ୍ରଶ୍ନର ଯେପରି ଅନ୍ତ ନଥିଲା । କନ୍ଧର ଏକମାତ୍ର ଉତ୍ତର···"ସତ୍, ସତ୍ ।

ଧଙ୍ଗିଆରେ ଗୋଟାଏ ଶେଷ ଟାଣ ଦେଇ ଦଶାଗ୍ର କହିଲା··· ଡୋମ୍ବୀମାନେ ଯେଉଁଦିନୁ ଦେହ ଲୁଚାଇଲେ ସେଇଦିନ ତ କନ୍ଧ ମୂଲକରେ ଆଇଲା ପାପ । ସେଇଦିନୁ ଆଇଲା ମିଛ । ଯେନୁ ମାଙ୍କଡ଼ୀମାନେ ବ ମାତିଲେ ।

କନ୍ଧର ହଠାତ୍ ମନେ ପଡ଼ିଗଲା ବାଘ କଥା ସେ କହିଲା··'ହରିଣ ଘାଟୀ ବଣରେ ଗୋଟାଏ ବାଘ ମାତିଛି ।'

ହଣାସ୍ତ ପଚ୍ଚରିଲା...'ମାଛ ନା ଅଣ୍ଡାରେ ?'

କନ୍ଥ କହିଲା...'ବୁଢ଼ା ଅଣ୍ଡାଟା । ତାର ମାଂଜିଟାକୁ ସାଇବ ମାର ଦେଇଛ ।'

ବୁଦୁଜାମା ଗୋଟାଏ ଝୁଲ ଝୁଲିଆ ବୁଦା ଭିତରକୁ ଗମ୍ଭୀର ଦୃଷ୍ଟିରେ ଚାହିଁ କହିଲା...'ବାଘ ମାରୁଛ ତ ।...ସେଠା ବାଘ ବୁଢ଼େଇରେ ପିଲେ । ସିଏ ବ ଗୋଟାଏ ସେମନ୍ତ କ ମାଉଳୀ ।'

ଗୋଟାଏ ଅଣସାସ୍ତ ଆତଙ୍କରେ ବୁଦୁଜାମା ଆଉ ସେଇ କନ୍ଥ ଜଣକର ଦେହ ଶୀତେଇ ଉଠିଲା ।

ବୁଦୁଜାମା ଭାବୁଥିଲା ହଠାତ୍ କମରେ ବାରଟା ଅଣ୍ଡା ଆଉ ଗୋଟାଏ କଳା କୁକୁଡ଼ା ବଳି ଦେବାର ବ୍ୟବସ୍ଥା କରି ସେଇଠି ସଙ୍ଗ ଦେବା ପାଇଁ । ମାତ୍ର ଗଡ଼ାଣି ଉପରେ ପାଦ୍ରୀ ସାଇବ, ଖୋଲଟୋପି ପିନ୍ଧା ପୁଲିସ—ଅଧିକାଂଶ, ମିସନ—ହାସପାତାଳର ପାଦ୍ରୀ ଡାକ୍ତର ଆଉ ସମସ୍ତଙ୍କ ପଛରେ କୁମ୍ଭୁମପଙ୍ଗା ପଞ୍ଚାୟତର ସରପଞ୍ଚ, ସେଆଡ଼େ ଆସୁଥିବାର ଦେଖି, ବୁଦୁଜାମାର କଥା ହଠାତ୍ ବନ୍ଦ ହୋଇଗଲା । ପାଦ୍ରୀ କ ପୁଲିସ, ଯାହାକୁ ଜଣେ ଦେଖିଲେ ବି ବୁଦୁଜାମା ଅକାରଣ ଆତଙ୍କରେ ଆତଙ୍କିତ ହୋଇ ଉଠିଥାଏ । ଏବେ ପାଦ୍ରୀ ଓ ପୋଲିସ ଏକା ସଙ୍ଗରେ ଆସୁଥିବା ଦେଖି ତାର ସେ ଆତଙ୍କ ଦ୍ୱିଗୁଣିତ ହୋଇ ଉଠିଥିଲା । ତା ଉପରେ ପୁଣି ଡାକ୍ତର ଆଉ ସବାଶେଷରେ ସନ୍ଦ୍ୟତାର ସେଇ ଶୋଭାଯାତ୍ରାରେ, ସରପଞ୍ଚ ଯେପରି ମୁଣ୍ଡି ମାରିଥିଲେ ।...କନ୍ଥ ଜଣକ ଆତ୍ମରକ୍ଷା କରିବାର ବନ୍ୟ କ୍ଷିପ୍ରତାରେ ଗୋଟାଏ ଖେପା ମାରି ପାଖର ଗୋଟାଏ ବୁଦା ଭିତରେ ଅଦୃଶ୍ୟ ହୋଇଗଲା । ମାତ୍ର ଚଦୁଆଁର ଲମ୍ବୁ ଗୁଡ଼ ସେଠାରୁ ପଳାଇବା ପାଇଁ ହଣାସ୍ତ ବୁଦୁଜାମାର ଉପାୟ ନ ଥିଲା ।

ଗୌର ପାଦ୍ରୀଙ୍କର ଚଉଖୁଣ୍ଟିଆ ନଡ଼ା ମୁହଁ ଅତ୍ୟନ୍ତ କଠୋର ହଉଥିଲା କର୍ତ୍ତବ୍ୟରେ ଗୁରୁତ୍ୱ ଆରୋପ ପାଇଁ ନିଜର ମାଂସଳ ପାପୁଲି ଉପରେ ଡ଼ାହାଣ ହାତର ଗୋଟାଏ ଚଉକୋଣିଆ ଆଙ୍ଗୁଠି ଚେଙ୍ଗି ଗେଙ୍ଗି

ସେ କହୁଥିଲେ···'ଇଏ ଆମ୍ଫିଥିଏଟ୍ରିକାଲ୍ ବ୍ୟବହାର... ନୁହେଁ । ରେପ୍···ରେପ୍ ।' ରେପ୍ ଶବ୍ଦଟା ଉଚ୍ଚାରଣ କଲାବେଳେ ପାଦ୍ରୀଙ୍କର ଚଉଖୁଣ୍ଟିଆ ମୁହଁର ରେଖା ସବୁ କଠୋର ହୋଇ ଉଠୁଥିଲା ।

ପୋଲିସ ଅଫିସରଙ୍କ ଲମ୍ବା କାନ ପାଖରୁ ଗୋଟାଏ ଗୋଲଅ ଥୋମଣି ଲମ୍ବାଇ କୁସୁମଫୋଗା ସରପଞ୍ଚ କହୁଲେ···ଆଶ୍ରମ ମାଷ୍ଟର ସେଇ କଲ୍ୟାଣ ଦାସ, ଆଜ୍ଞା । ସଚ୍ଚାସ୍ୱଚ୍ଛ ଲୁଚି ପଳେଇଛି ।'

ପାଦ୍ରୀ ଉତ୍ତେଜିତ କଣ୍ଠରେ କହୁଲେ···'ସେଇ ଲୁସ୍‌ଟାର 'ମନସ୍-ପ୍ୟୁବିସ୍' ପରୀକ୍ଷା କରି ଦେଖିଛି ମୁଁ । ଥରେ ନୁହେଁ ଅନେକ ଥର । ଆପଣ ବି ଦେଖି ପାରିବେ ମିଷ୍ଟର ଇନ୍‌ସ୍‌ପେକ୍‌ଟର । ମନସ୍-ପ୍ୟୁବିସ୍···ମନସ୍-ପ୍ୟୁବିସ୍ । (mons pubis) ।' ⁕

ମନସ୍-ପ୍ୟୁବିସ ଯେତେ ଉଚ୍ଚାରଣ କଲେ ବୁଢ଼ା ପୌଢ଼ ପାଦ୍ରୀଙ୍କର ଯେପରି ତୃପ୍ତି ନ ଥିଲା ।

ବରୁ ଅପେକ୍ଷାକୃତ ପ୍ରୌଢ଼ତର ପାଦ୍ରୀ ଡ଼ାକ୍ତର ଜଣକ କହୁଲେ··· ଲୁସ୍ ଫୁଲିଗଲେ ମନସ୍-ପ୍ୟୁବିସ ମଧ୍ୟ ଫୁଲିଯାଏ । ତା'ପରେ ସେଥିରୁ ନିର୍ଦ୍ଦିଷ୍ଟ ପ୍ରମାଣ ମିଳିବା ହୁଏତ ସମ୍ଭବ ହୋଇ ନ ପାରେ । ନାଁ କଣ କହୁଛନ୍ତି ମିଷ୍ଟର ଇନ୍‌ସ୍‌ପେକ୍ଟର ?"

ଆନାଟୋମୀର ଏ ସବୁ ସୂକ୍ଷ୍ମ ତଥ୍ୟ ଇନ୍‌ସ୍‌ପେକ୍‌ଟର ବୁଝନ୍ତି ନାହିଁ 'ରେପ୍' ତାଙ୍କ ମତରେ ଆଇନଗତ ପ୍ରତ୍ୟକ୍ଷ ପ୍ରମାଣର ମାମଲା । ଇଚ୍ଛା କଲେ ସେ କୌଣସି ରେପ୍-ଜନିତ ଘଟଣାରେ ସେ ଏପରି ଏକ ମାମଲା ଠିଆ କରି ଦେଇ ପାରିବେ—ଯେଉଁଥିରେ ଏପରି ଗପ ମଧ୍ୟ ଦିଆ ଯାଇ ପାରିବ ଯେ ସେଥିରେ ଦୁଇ ପକ୍ଷର ସମ୍ମତି ଥିଲା । ଦାମ୍ପତ୍ୟ ପାଶରେ ଆବଦ୍ଧ ନରନାରୀଙ୍କ ଯୌନଜୀବନ ତ ସେଇପରି ଜାନ୍ତବତାର ଦୈନନ୍ଦିନ

⁕ ଏଥିରେ ବ୍ୟବହୃତ ଆନାଟୋମିକାଲ୍ ଶବ୍ଦ ସବୁର ଅର୍ଥ ଯେ କୌଣସି ଆନାଟୋମୀ ପୁସ୍ତକରେ ଅନୁସନ୍ଧାନ କରାଯାଇ ପାରେ ! ଶ୍ଳୀଳତା, ଅଶ୍ଳୀଳତା ବିବାଦରୁ ମୁକ୍ତ ରହିବା ପାଇଁ ଏଠାରେ ଶୁଦ୍ଧ, ସମ୍ଭ୍ରାନ୍ତ ଲାଟିନ ଶବ୍ଦ ସବୁ ବ୍ୟବହୃତ ହୋଇଅଛି—ଲେଖକ

ଉଚି···କେତେବେଳେ କୋଉ ପକ୍ଷରୁ ତାହା ପ୍ରଥମେ ଆରମ୍ଭ ହୁଏ, ସେଇଟା ଅବଶ୍ୟ ସ୍ୱତନ୍ତ୍ର କଥା । ଏ ମାମଲାରେ ଦେଖୁ ଦୁଇ ପକ୍ଷରୁ କେତେ କଣ ପ୍ରାପ୍ତି ହୋଇପାରେ, ଇନ୍‌ସପେକ୍ଟର ମନେ ମନେ ତାହାର ଗୋଟାଏ ସମ୍ଭାବ୍ୟ ଅଙ୍କ କଳନା କରୁଥିଲେ । ପଛେ ପଛେ ଆସୁଥିବା କୁସୁମପଙ୍ଗା ସରପଞ୍ଚଙ୍କୁ ଇନସ୍‌ପେକ୍ଟର କହିଲେ···

'ଠିକ୍ କଥା ।···ଘଟଣାଟା ଯେ ରେପ୍, ତାହାର ପ୍ରମାଣ କଣ ? ଆତ୍ମହତ୍ୟା ମଧ୍ୟ ହୋଇ ଥାଇପାରେ ।'

'ବନଲତା—ଆଶ୍ରମ'ରେ ନିଶ୍ଚିତ ରେପ୍ ଘଟଣାଟା ଅଖି ଆଗରେ ଅପ୍ରମାଣିତ ହୋଇ ଯାଉଥିବା ଦେଖି କୁସୁମପଙ୍ଗା—ସରପଞ୍ଚ ରାଜନୈତିକ ସୁଲଭ ଗଳାରେ କହିଲେ···'ମୁଁ ଉପରକୁ ଟେଲିଗ୍ରାମ୍ ପଠାଇ ସାରିଛି । ଇଏ ବନଲତା—ଆଶ୍ରମର ସେଇ ଦାଡ଼ିଆ ମାଷ୍ଟର କଲ୍ୟାଣ ଦାସର କାଣ୍ଡ । ସେଦିନ ଖରାବେଳେ ଆଶ୍ରମରେ କଲ୍ୟାଣଦାସର କଠୋରୀ ଭିତରୁ ଝିଅଟିର କାନ୍ଦଣା ମଧ୍ୟ କେହି କେହି ଶୁଣିଛନ୍ତି ।'

ପାଦ୍ରୀ ଓଡ଼ିଆ କଥା ବୁଝନ୍ତି । ଇନସ୍‌ପେକ୍ଟର ଓ ସରପଞ୍ଚଙ୍କ କଥା ଶୁଣି ଅସହିଷ୍ଣୁ କଣ୍ଠରେ ସେ କହି ଉଠିଲେ···''ନାଁ, ନାଁ, ମିଷ୍ଟର ଇନସ୍‌ପେକ୍ଟର···ଏ ରେପ୍ । ରେପ୍ । ରେପ୍ । ମନସ-ସ୍ପଂଜ୍ ଫୁଲିଯାଇ ଥିବାରୁ ଯଦି ରେପ୍‌ର ପ୍ରମାଣ ନ ମିଳିବ, ତା' ହେଲେ ଭାଜାଇନାଲ୍ ଅରିଫିସ ଭିତରେ 'ସେମିନାଲ୍-ଫ୍ଲୁଇଡ୍' ଖୋଜିଲେ ନିଶ୍ଚୟ ମିଳିବ । ପୋଷ୍ଟମର୍ଟେମ୍ ଆପଣ ଆଗେ କରାନ୍ତୁ ନାଁ ।'

ଡ଼ାକ୍ତରଙ୍କ ଆଖି ଆଗରେ ଭାସି ଉଠୁଥିଲା, ଆନାଟୋମୀ ବହିର ପୃଷ୍ଠାରେ ଭର୍ଟିକାଲ୍ ସେକ୍‌ସନ୍—ଟେବୁଲ ଉପରେ ଯୋନି-ଗହ୍ୱରର ଗୋଟାଏ ଷାଭତ୍ସ ଚିତ୍ର । ମନୁଷ୍ୟର ଏକ ସୁନ୍ଦରତମ ଆବେଗ ଏପରି ଷାଭତ୍ସ ଅଶ୍ଳୀଳତା ଦ୍ୱାରା କପରି କାହିଁକି କପରି ଆକୃଷ୍ଟ ହୁଏ ଡ଼ାକ୍ତର ତାହା ବୁଝି ପାରୁ ନଥିଲେ ।

ଟସ କହିଲେ···'ନାସ୍ତ ଦେହର ଆନାଟୋମୀ ବିଷୟରେ ଆପଣ ତ ଦେଖୁଛୁ ବେଶ୍ ଅଭିଜ୍ଞ । ପୋଷ୍ଟମର୍ଟେମ୍ ବେଳେ ଆପଣ ଉପସ୍ଥିତ ରହିବାରେ କଣ ଆପତ୍ତି ଅଛି ?'

ସରପଞ୍ଚ ଟେଲିଗ୍ରାମ୍ ଏଠାଇବା କଥା ପୁଣି ଉଠାଇଥିଲେ ଇନସ୍‌ପେକ୍‌ଟରଙ୍କୁ ପ୍ରଭାବିତ କରିବା ପାଇଁ । ଡାକ୍ତରଙ୍କ ସହିତ ଏପରି ଗୋଟାଏ ଜରୁରୀ ତଥ୍ୟଗତ ଆଲୋଚନା ଚାଲିଥିବାବେଳେ ଏସବୁ ଅବାନ୍ତର କଥାରେ ଅପ୍ରସନ୍ନ ହୋଇ ଅସନ୍ତୁଷ୍ଟ କଣ୍ଠରେ ପାଦ୍ରୀ କହିଲେ··· 'ଭାଜନାଲ୍-ଅରିଫିସରୁ ରେପ୍‌ର ନିଶ୍ଚିତ ପ୍ରମାଣ ମିଳିବ । କିନ୍ତୁ ସରକାରୀ ଡାକ୍ତର ଠିକ୍ ଠିକ୍ ରିପୋର୍ଟ ଦେଲେ ହେଲା ।'

ପାଦ୍ରୀଙ୍କ ଆଖି ଆଗରେ ସେଇ ବନଭୂମି ଉପରେ ସେପରି ଉଦ୍ଭାସିତ ହୋଇ ଉଠିଥିଲା ଗୋଟାଏ ଅଶ୍ଳୀଳ, ଧର୍ଷିତ ଯୌନ-ଚିତ୍ର ।

( ୩ )

ଅରଣ୍ୟର କନ୍ୟା ବୁଟେଙ୍ଗ, ମନର ସ୍ୱତଃସ୍ଫୂର୍ତ୍ତ ହସ-ଖୁସି ଦେହର ବିଳାସ । କିନ୍ତୁ ସଭ୍ୟତାର ଏପରି ଜାନ୍ତବ ଆକ୍ରମଣ, ହିଂସ୍ର ବର୍ବର ଏପରି ବିକୃତ ଓ ଗତ କୃତ୍ରିମ ନିରୋଧରୁ ଏପରି ପରିଣତି···ଏସବୁ ସହିତ ପଦୁଆଁର ପରିଚୟ ନଥିଲା ।

ସେଦିନ···ବାହାରେ ଚୈତ୍ରର ଝଲ୍‌ସିଲା ମଧ୍ୟାହ୍ନ । ଚୈତ୍ର-ପର୍ବ ପାଇଁ ଆଶ୍ରମର ଅଧିକାଂଶ ଛାତ୍ର-ଛାତ୍ରୀ ନିଜ ନିଜ ଗାଁକୁ ଚାଲି ଯାଇଥିଲେ । ଚୈତ୍ରପର୍ବରେ ପୁରୁଣା ଝୁଲିଆରୁ ନୂଆ ବନ୍ଧନ ବାହାରିବ । ନୂଆ ସୃଷ୍ଟିର ସମ୍ଭାବନାରେ କନ୍ଧ ସମାଜରେ ଗ୍ରାମେ ଗ୍ରାମେ ନୃତ୍ୟ ଓ ଉତ୍ସବ···ନବ-ଜାଗ୍ରତ ଯୌବନର ପ୍ରମତ୍ତ ଉତ୍ସବ ।

ପଦୁଆଁ କିନ୍ତୁ ତାର ଦୂର ଗାଁକୁ ଯିବା ପାଇଁ ଭରସିଲା ନାହିଁ । ଯୋଉ ଡ଼ଙ୍ଗର ଡ଼େଇଁ ତାକୁ ଗାଁକୁ ଯିବାର ରାସ୍ତା, ସେଇ ଜଙ୍ଗଲରେ ବାଘ ମାତିଥିଲା । ସେ ବାଟରେ ବାଟୋଇଙ୍କି ଯିବା ଆସିବା ବନ୍ଦ ।

ପଦୁଆଁର ମଧ୍ୟ ସେତ ପଟରେ ଟିକୁ ଯିବା ପାଇଁ ଇଚ୍ଛା ନଥିଲା । ଇତି ମଧ୍ୟରେ ତାର ଛାତି ଉପରେ ସାଶ ସାଶ କାଚ ଆଉ କାଇଞ୍ଚ ମାଳ ନ ଥିଲା । କାଚ ଆଉ କାଇଞ୍ଚ ମାଳର ପ୍ରୟୋଜନ ମଧ୍ୟ ନ ଥିଲା । ଯେଉଁ ଅନାବୃତ ଦେହକୁ କନ୍ଧ ଯୁବତୀ ଅଥବା ଯୁବକ ପାପ ଓ ସ୍ଖଳନର ସଂକେତ ବୋଲି କେବେ ଚିନ୍ତା କରି ନ ଥିଲେ, ଯେଉଁ ସ୍ତନ ଥିଲା ଧରିତ୍ରୀର ଆଦିମ ଉଲ୍ଲାସ ପରି ମୁକ୍ତ ଅନାବୃତ, ସଭ୍ୟତା ଓ ସଂସ୍କୃତିର ଅନୁଶାସନରେ ଏବେ ସେ ଛାତି ଉପରକୁ ଆସି ଥିଲା ରେଶମୀ ବଡ଼ିସ୍, ତା ଉପରେ ବ୍ଲାଉଜ...ଅନାବୃତ ସ୍ତନକୁ ଲୁଚାଇବା ପାଇଁ ଯେତେ ନୁହେଁ, ସେତେ ପର ପୁରୁଷର ଉଦ୍ଦାମ କାମନାର କଳୁଷିତ ଦୃଷ୍ଟି ପ୍ରଲୁବ୍ଧ କରିବା ପାଇଁ । ପଦୁଆଁର ଛାତି ଦିନେ ଥିଲା ଅନାବୃତ । ମାତ୍ର ତାର କୁମାରୀ ମନଟି ଥିଲା କନ୍ଧ ସମାଜର ବନ୍ଧ୍ୟ ସଂସ୍କାର ଓ ସଂସ୍କୃତିର ଆବରଣରେ ଆବଦ୍ଧ । ଏବେ କିନ୍ତୁ ରେଶମୀ ବଡ଼ିସ୍-ବ୍ଲାଉଜ୍ ଉହାଡ଼ରୁ ତାର ସ୍ତନ ଲୁଚକାଳି ଖେଳିଲା ସିନା, ତାର ଅକ୍ଷତ କୁମାରୀ ମନଟି ଧୀରେ ଧୀରେ କେଉଁଦିନ ତାର ଅଲକ୍ଷିତରେ ବୟସ୍କ ହୋଇ ଉଠିଲା । ନିଜ ଯୌବନଭରା ଦେହର ସ୍ଫୀତି ଓ ବନ୍ଧତା ଆଡ଼େ ଚାହିଁ ବେଳେ ବେଳେ ସେ ନିଜେ ଯୁଗପତ୍ ଶଙ୍କିତା, କୁଣ୍ଠିତା ହୋଇ ଉଠିଲା ।

ପଦୁଆଁର ଅଣ୍ଟାତଳେ ହାତେ ଚଉଡ଼ାରେ ରଙ୍ଗୀନ ବେଡଣା ଆଉ ନ ଥିଲା । ଆଶ୍ରମକୁ ଆସିବା ପରେ, ସେଠାରେ ଆସିଥିଲା ରଙ୍ଗୀନ ସାୟା, ତା' ଉପରେ ଶାଢ଼ୀ । ଏ ସବୁ ଆଭରଣ ଓ ଆବରଣ ମଧ୍ୟରେ ପଦୁଆଁର ନିଷ୍ପାପ କୁମାରୀ ମନରେ ନିଜର ଦେହ ପାଇଁ କ୍ରମେ ଆସିଥିଲା ଏକ ଲଜ୍ଜା ଓ ସଂକୋଚ...ଯାହାର ଅପର ନାମ ବିକଳ୍ପ କାମ ପ୍ରବଣତା ଓ ବିକୃତି ।

ସେଦିନ ଚୈତ୍ରର ନିର୍ଜ୍ଜନ ମଧ୍ୟାହ୍ନ...

ଆଶ୍ରମ ହତା ଭିତରେ କରବୀର ଗଛରୁ ଫୁଲ ତୋଳିବା ବେଳେ ପଦୁଆଁର ଛାତି ଉପରୁ ଲୁଗା କାନିଟା ତଳେ ଖସି ପଡ଼ିଥିଲା ।

କଲ୍ୟାଣ ଦାସ ତାଙ୍କ କୋଠରୀ ବାରଣ୍ଡାରେ ଠିଆ ହୋଇ କେତେ ବେଳୁ ପଦୁଆଁକୁ ଲକ୍ଷ୍ୟ କରୁଥିଲେ,—ପଦୁଆଁ ତାହା ଜାଣି ନଥିଲା ।

ପଦୁଆଁକୁ ଡ଼ାକିବା ପାଇଁ ଚେଷ୍ଟା କରି କଲ୍ୟାଣ ଦାସ କେତେ-ଥର ଚେପ ଢୋକି କେବଳ ରହି ଯାଇ ଥିଲେ । ଦାଢ଼ୀର ଜଂଜାଳ ଭିତରୁ ତାଙ୍କର ଆଖି ଦୁଇଟା କେବଳ ଚିତା ବାଘର ଆଖି ପରି ଦାଉ ଦାଉ ହୋଇ ଉଠିଥିଲା ।

କଲ୍ୟାଣ ଦାସ ଗଳା ଖଙ୍କାରିଲେ ।

ପଦୁଆଁ ଚମକି ପଡ଼ି ହାତରୁ ଫୁଲ ତୋଳା ଲଗୀଟା ଫିଙ୍ଗିଦେଲା ହଠାତ୍ ଗୋଟାଏ ସାପ ଦେଖିଥିବା ପରି ।

କଲ୍ୟାଣ ଦାସ ଡ଼ାକିଲେ—'ଏଣେ ଆ ପଦୁଆଁ ବାଃ-କରବୀର ଫୁଲଗୁଡ଼ାକ ବେଶ ବଡ଼ ବଡ଼ ଆଉ ନାଲି ହୋଇଛି ତ ରେ ।'

ସଂକ୍ରୁଚିତା ପରି ପଦୁଆଁ ମୁଣ୍ଡ ନୁଆଇଁ ପିଣ୍ଡା ତଳକୁ ଆସି ଠିଆହେଲା । କଲ୍ୟାଣ ଦାସଙ୍କର ଦୁଇ କ୍ଷୁଧିତ ଆଖି ପଦୁଆଁର ଦେହର ସବୁ ଆବରଣ ଭେଦ ତାକୁ ଯେପରି କ୍ଷଣେ କ୍ଷଣେ ଆଉରି ଉଲଙ୍ଗ କରି ପକାଉଥିଲା ।

'ଡ଼ାଇନ୍-ଇଡ଼୍ରେ କେତେ ଅତୀତ ସନ୍ଧ୍ୟାରେ କେତେ ଭଦ୍ର-ଗାଁର ଯୁବକଙ୍କ ମେଳରେ ଠିଆ ହୋଇଛି ଅନାବୃତା ଉଲଙ୍ଗିନୀ ପଦୁଆଁ···ମାତ୍ର ଅସ୍ୱସ୍ତିର ଏପରି ଅବସାଦ ଓ ଜଡ଼ତା ସେ ଇତିପୂର୍ବରୁ ଆଉ କେବେ ଅନୁଭବ କରି ନ ଥିଲା । ପଦୁଆଁ ପରିଚିତ ଥିଲା ଆଦିମ ଉଲଙ୍ଗ ଦେହର ବିଳାସ ସହିତ କିନ୍ତୁ ସଭ୍ୟତାରେ ଆବୃତ ମନର ବିକୃତି ସହିତ ତାହାର କେବେ କୌଣସି ପରିଚୟ ନ ଥିଲା ।

କୋଠରୀ ଭିତରକୁ ପଶି ଆସି କଲ୍ୟାଣ ଦାସ ଡ଼ାକିଲେ··· 'ଭିତରେ ଶୁଣିଯା ପଦୁଆଁ···।

ପଦୁଆଁ ସମ୍ମୋହିତା ପରି ଭିତରକୁ ଆସିଲା ।

ତା'ପରେ କଲ୍ୟାଣ ଦାସ କବାଟଟା ଜୋରରେ ବନ୍ଦ କରିଦେଇ ପଦୁଆଁ ଆଡ଼େ ଯେପରି ଝାମ୍ପିଲେ, ତାହା ବୁଦା ଉହାଡ଼ରେ କ୍ଷୁଧିତ ଚିତାର

ଦୁଇଟା ଜଳନ୍ତା ଆଖି ତାକୁ ଅତି ନିଷ୍ଠୁର ଭାବରେ ମନେ ପକାଇ ଦେଇଥିଲା ! ପଦୁଆଁ ଦଗ୍ଧ ଦଗ୍ଧ ଯାଉଥିଲା, ଏଇଁ ଟିକା ହାବୁଡ଼ରୁ ଆତ୍ମରକ୍ଷା ପାଇଁ ।

କଲ୍ୟାଣ ଦାସ ପଦୁଆର ଦେହରୁ ବ୍ଲାଉଜ ଆଉ ସାୟାଟା ଛିଣ୍ଡାଇ ନେଇଥିଲା, କ୍ଷୁଧିତ ଚିତା ମଧ୍ୟ ଶୀକାରର ଅନ୍ତନାଡ଼ି ଛିନ୍‌-ଭିନ୍‌ କରି ଛିଣ୍ଡାଇ ନେବା ପରି !

ଅଥଚ ଯୌନଶୁଚି ନାମରେ ପଦୁଆଁ ଦେହରୁ କାଚ ଆଉ କାଞ୍ଚ ମାଳୀ କାଢ଼ି, ସଭ୍ୟତା ଆଉ ସାସ୍କୃତିର ଏଇସବୁ ସାଜ ପୋଷାକ ତାକୁ ପିନ୍ଧାଇବା ପାଇଁ, କଲ୍ୟାଣ ଦାସ କେତେ ଚେଷ୍ଟା କରି ନ ଥିଲେ ସତେ ।

ପଦୁଅଁର ବାପ ମାଙ୍କୁ କେତେ ଭାବରେ ବୁଝାଇ ନ ଥିଲେ ? ସଭ୍ୟତାର କେତେ ପ୍ରଲୋଭନରେ ସେମାନଙ୍କୁ ପ୍ରଲୁବ୍‌ଧ କରି ନ ଥିଲେ ?

ଶୀକାର ଉପରେ ଶେଷ ଲମ୍ଫ ଦେବା ପୂର୍ବରୁ ଗୋଟାଏ ଜାନୁଆର ପରି କଲ୍ୟାଣ ଦାସ ଏବେ ଘନ ଘନ ନିଃଶ୍ୱାସ ପକାଇ ପଦୁଆଁ ଆଡ଼େ ଚାହିଁ ରହିଥିଲେ କ୍ଷୁଧିତ ଆଖିରେ !

ଛିଣ୍ଡା ବ୍ଲାଉଜ୍‌ ଭିତରୁ ପଦୁଁଆର ସ୍ତନ ଦୁଇଟା ବାହାରକୁ ଫିଟି ପଡ଼ିଥିଲା । ସେ ବୁଝି ପାରୁ ନ ଥିଲା, ଯାହାକୁ ଅଶ୍ଳୀଳ ବୋଲି ଲୁଚାଇବା ପାଇଁ କଲ୍ୟାଣ ଦାସର ଉଦ୍ୟମରେ ଅନ୍ତ ନ ଥିଲା, ଏବେ ସେ ସେହି ଦେହକୁ ଅନାବୃତ କରିବା ପାଇଁ ଏପରି ହିଂସ୍ର ହୋଇ ଉଠିଥିଲା କିପରି ?

ସେତିକିବେଳେ ପଦୁଆଁ ଚିତ୍କାର କରି ଉଠିଥିଲା···

‘ଏଃ ! ମା·········· !

ତା’ପରେ ସେ ଝାସ ଦେଇଥିଲା ଝୋଲା ସୁଅରେ, ଲଜ୍ଜ୍ୟା ଓ ଅପମାନରେ :

ଝୋଲା ମୋଡ଼ରେ ସେଇ ବେଣାବୁଦା ତଳେ···

ପଦୁଆଁର ମୃତ ଦେହରେ ଆଜ କୌଣସି ଆବରଣ ନ ଥିଲା । ଝଣ୍ଟାର କୌପୀନ ଖଣ୍ଡିକ ସ୍ରୋତ ପାଣି ସୁଅରେ ଫିଟି ଖସି ଯାଇଥିଲା । ପାଦ୍ରୀ, ଡାକ୍ତର, ପୋଲିସ୍ ଇନ୍‌ସପେକ୍‌ଟର ଓ ସରପଞ୍ଚ—ସଭ୍ୟତାର ଏଇ ଗୃହ ପ୍ରତିନିଧି ପଦୁଆଁର ମୃତ ଦେହକୁ ଗୁଣ୍ଡି ଦେଖୁଥିଲେ, ଗୃହଗୋଟି ଶକୁନ ପରି ।

ଇନସ୍‌ପେକ୍‌ଟର କହୁଥିଲେ···'ଲାସ୍‌ର ଦେହ ଫୁଲି ଆସିଲାଣି । ରେପ୍ ଘଟଣା ସତ୍ୟ ହୋଇଥିଲେ ବି ପ୍ରମାଣ କଣ ?'

ସରପଞ୍ଚ କହୁଥିଲେ···"ସେ ଉପରକୁ ଟେଲିଗ୍ରାମ ପଠାଇ ସାରିଛନ୍ତି ଏ ଗୋଟାଏ ରେପ୍ ମାମଲା ବୋଲି ।'

ଡାକ୍ତର କହୁଥିଲେ···'ମନସ୍—ପ୍ୟୁବସ୍‌ରୁ ପ୍ରମାଣ ମିଳିବ ନାହିଁ ।'

ପାଦ୍ରୀ କହୁଥିଲେ···'ତା ହେଲେ ଭାଜାଇନାଲ୍-ଅରଫିସ୍ ପରୀକ୍ଷା କରି ଦେଖିବା ପାଇଁ ପଡ଼ିବ ।'

ବୁଢା ଜହାଡ଼ରେ ବୁଦୁଜାମା ଆଜ ସେଇ କନ୍ଧ ଜଣକ ଗୋଟିପଣେ ସଲୁ ବାଉଁଶାପରି ଥରୁଥିଲେ, ଏକ ଅଶରୀରୀ ଆତଙ୍କରେ ।



# ମଶାଣି ହାଟ

ଲକ୍ଷ୍ମୀଧର ମହାନ୍ତି

ଶୋଭନୀ ପାନ ଖାଇଛି । ଓଠ ତାର ନାଲ୍ । ସବୁବେଳେ ଖାଏନା ନା କ'ଣ...ଓଠରେ ତାର କଏ ନାଲ୍ଆ ରଙ୍ଗ ମେଞ୍ଚାଏ ବୋଳି ଦେଇଛି ଯେପରି । ହାତରେ କଟା ତରଭୁଜ ଖଣ୍ଡେ ଧରି ଶୋଭନୀ ଖାଇ ଲାଗିଛି । ତରଭୁଜରସ ତରତରରେ ମୁହଁ ଓ ଗାଲରେ ତାର ବୋଳି ହୋଇଗଲାଣି—ନଜର ନାହିଁ । ତରଭୁଜ ଖଣ୍ଡକ ଖାଇଖାଇ ଶୋଭନୀ ଘୂରିବୁଲୁଛି ହାଟ ମଝିରେ । ଏ ଦୋକାନରୁ ସେ ଦୋକାନ, ଏ ଗୁଳିରୁ ସେ ଗୁଳି, କେଉଁଠି ଟିକିଟିକି ରଙ୍ଗ ଖେଳେଇ—କେଉଁଠି ମାଳି ପାଟଫୁଲ—କେଉଁଠି ରଙ୍ଗିନ୍ କପ୍ତା—କେଉଁଠି କୁକୁଡ଼ା ଲଢ଼େଇ—ଶେଷରେ ସେଇ ଝଙ୍କାଳିଆ ମହୁଲଗଛ—ତା'ରି ମୂଳରେ ଶୋଭନୀ ଟିକଏ ଅଟକି ଯାଇଛି । ସାଙ୍ଗରେ ତାର ପୁରିଲବଅଯର ସାଥି ବାସେଲି, ତୋଫାନୀ, ବୃନ୍ଦୁକାନୀ-ଆଉ କେତେ ଝିଅ—

ହାଟ ଜମି ଆସିଲଣି—ବର୍କେସ୍ହାଟ । ବର୍କେସ୍ଠାରୁ "ଟାଙ୍ଗର-ଖୋଲ" ରାସ୍ତା, ଆଠ ମାଇଲ, ମଝିରେ ଦୁଇଟା ନାଲ—ଗୋଟାଏ ପର୍ବତ—ତା'ରି ମଝିରେ ବଙ୍କାଢଙ୍କା ଚଲାବାଟ—ଯୋଡ଼େ କଆଁର—ଶାଳବଣ—ଅକର୍ମଗିଲା ଓ ଗେଙ୍ଗୁଟିପଥରର ଟାଙ୍ଗରଭୂଇଁ—ଓସ୍ତପଲ୍ଲୀଘାଟି—ଏସବୁ ଡେଇଁ ଡେଇଁ ପାଗଳୀ ପରି ଧାଇଁ ଆସେ ଶୋଭନା—ଶୋଭନୀ ବ୍ଲନ୍ଟଙ୍ଗ୍ । ହାଟପାଳିଦନ ରାତ୍ରି ଫରଚ୍ଚ ନ ହେଉଣୁ ଦୂର ଗାଁ' "ଫିକେଟୋଲ"ର ଆଉ ଝିଅମାନେ ଆସି ଶୋଭନୀକୁ ଉଠାଇ ଦଅନ୍ତି । ଅନ୍ୟମାନଙ୍କ ପରି ଶୋଭନୀ ମେଞ୍ଚାଏ କରଞ୍ଜ ତେଲରେ ହାତକୁ ସରସର କରି ତା'ର ବହଳ କେଶକେରି କଳା ବାଳ ଗୁଡ଼ିକ ଉପରେ ସାଉଁଟି ଆଣେ—କାଠ ପାନିଆଟାକୁ ତା'ର ଅମାନିଆଁ ବାଳଗୁଡ଼ାକ ଉପରେ ଓଡ଼େଇ ଡୋଡ଼େଇ ଘସେ । ତା' ପରେ ଧାନ-କଳେଇ ବାନ୍ଧିଲାପରି ମେଞ୍ଚାକ ଯାକ ବାଳ ହାତ୍ର ମୁଠାରେ ଚିପିଧରି ଶୋଭନୀ ତା' ମୂଳରେ ଶକ୍ତକରି ଭିଡ଼ିଦଏ ଗୋଟାଏ କନାଧଡ଼ି; ସେଇ

ମେଞ୍ଚାକଯାକ ବାଲ ମଝିରେ ତରତର ହୋଇ କେଉଁଠିନ ଫୁଲ୍‌ଫୁଷ୍ଟ ଲଙ୍କାମରିଚ ଖାଲଟାଏ, କେଉଁଠିନ ନଡ଼ିଆଗ ଫୁଲରୁ ମେଞ୍ଚାଏ—କିଛି ନ ମିଳିଲେ ବଣତୁଳସୀ ଡାଲଟାଏ । ଭଲ ଅଭଲର ପ୍ରଶ୍ନ ତା' ମନରେ ଆସେନା । ସତେ ଯେପରି ପୃଥିବୀର ସବୁକିଛି ତା' ଆଖିରେ ସୁନ୍ଦର । ଘୋଡ଼ା ଲାଞ୍ଜ ପରି ଏଇ ବାଲ ଗୋଛାକ ତା'ର ପିଠିଉପରେ ଦେଇ ଝୁଲିପଡ଼େ କଟିଦେଶର ଅଳ୍ପ ତଳକୁ । ଅନାବୃତ ଗ୍ରୀବା ଓ କଟିଦେଶର ଆଭରଣ ହୋଇ ଏଇ କେଶ ଗୁଚ୍ଛ ସତେ ଯେପରି ଗୁମ୍ଫିତ ହୁଏ ତାର ବସ୍ତ୍ରାବୃତ ପିଠିଉପରେ-ଠିକ୍ ନଦୀ ଉପକୂଳର ଶ୍ରେଣୀ ଶ୍ରେଣୀ ଲହରୀ ପରି—ବେଶ୍ ସୁନ୍ଦର । ହାତରେ ଲାଗିଥିବା ବଳକା କରଞ୍ଜତେଲକୁ ଶୋଭନୀ ତା'ର ପୁଟଳ ମୁହଁ ଓ ବଳିଲବଳିଲ ହାଣୁଆ ବାହୁ ଉପର ଦେଇ ମାଖିଆଣେ । ସୁଠାମ ଯୌବନର ଅନାବୃତ ମାଂସଳ ତନୁଉପରେ ଏଇ ତେଲସ୍ପର୍ଶ ଶୋଭନୀର ରଙ୍ଗ ବଦଳାଇଦିଏ । କଳା ? —ନାଁ ଠିକ୍ କଳା କହି ହେବନି—ଆକାଶର ଗାଢ଼ ନୀଳିମା ମଧ୍ୟ ନୁହେଁ—ଏକ ନୂତନ ସବୁଜିମା ସୃଷ୍ଟି ହୁଏ ଶୋଭନୀର ଭରା ଯୌବନର କର୍ମମୟ ଅବୟବ ଉପରେ ।

ସବୁଆମଝିରେ ଡେଇଁ ଡେଇଁ, କାନ୍ଧରେ କାନ୍ଧ ମିଶାଇ, ଅଣ୍ଟାରେ ଅଣ୍ଟା ଛନ୍ଦି, ଏମାନେ ବସି ଯାଆନ୍ତି ସେଇ ସବୁଆ ମଝିରେ । ବାଟରେ ସାପୁଆନାଳର ସ୍ଥିର ଜଳ-ଉପରେ ଏମାନଙ୍କର ଛାଇପଡ଼େ—ଧୀରେ ଧୀରେ ପାଦ ପକାଇ ସାପୁଆର ପାଣି ଉପରେ ଏମାନେ ନିଜନିଜର ପ୍ରତିବିମ୍ବ ଦେଖନ୍ତି । ପ୍ରତିବିମ୍ବ ଗୁଡ଼ିକ ଥରଥର ଚହଲିଚହଲି ପୁଣି ସ୍ଥିର ହୋଇ ଯାଆନ୍ତି । ଶୋଭନୀ ଚାହେଁ ତା'ର ପ୍ରତିବିମ୍ବକୁ ଓ ପୁଣି ଚାହେଁ ନିଜ ଆଡ଼େ—ନାଲିନାଲି ଓଠରେ ମୃଦୁହାସ ଫୁଟିଉଠେ—ପୁଣି କ'ଣ ହୁଏ କେଜାଣି ଏକ କ୍ଷଣିକ ନୀରବତା ଫେରିଆସେ ସେମାନଙ୍କ ଭିତରେ । ଗୋଟାଏ ଗୋଟାଏ ଦୀର୍ଘଶ୍ୱାସରେ ଉନ୍ନତ ବକ୍ଷର ରଙ୍ଗିନ୍ କପ୍ଡା ଚହଲି ଉଠେ—ତା'ପରେ ପୁଣି ଛୁଟେ ହସରକୁଆର—ସଙ୍ଗୀତର ଲହରୀ । ଏ ସଙ୍ଗୀତର ଲହରୀ ପ୍ରତିଧ୍ୱନିତ ହୁଏ ପାଖରେ ଥିବା "ଅନନ୍ତଗିରିର" ପଥର ଖୋଲ ଭିତରେ । ଚଞ୍ଚଳ ପଦକ୍ଷେପରେ ସାପୁଆ ବକ୍ଷରେ ସେଇ ପ୍ରତିବିମ୍ବ ଗୁଡ଼ାକ ପୁଣି ଟିକିଟିକି ହୋଇ ଚହଲି ଚହଲି ଭାଙ୍ଗିଯାଏ । ଶୋଭନୀର କାନ୍ଧଉପରେ ଲଟକିଥିବା ମାଈ କୁକୁଡ଼ାଟା ଡେଣା ଦୁଇଟା ସେତିକିବେଳେ ଝାଡ଼ିଦିଏ । ଶୋଭନୀ ଚମକି ଚାହେଁ ଆଗକୁ । ମାଈ କୁକୁଡ଼ାଟା ଡେଣା ଫଡ଼ଫଡ଼ କରେ । ସାପୁଆ ନାଳର ବନ୍ଧଉପରୁ "ମାଣିକଖୋଲ" ଗାଁ'ର ଭେଣ୍ଡିଆ କେତୋଟା ହସି ଉଠନ୍ତି ଖିଲ୍ ଖିଲ୍ ହୋଇ ଏଇ ଝିଅମାନଙ୍କୁ ଲକ୍ଷ୍ୟକରି । ଭେଣ୍ଡିଆମାନେ ସମସ୍ୱରରେ ଗୀତରେ ଗୀତରେ ପ୍ରଶ୍ନ ପଚାରନ୍ତି । ଗୀତର ଅର୍ଥ

ହେଲ—"ଲେ ଝୁକୁଲମାନେ ? କୁଆଡେ ଯାଉଚ ! ଟିକଏ ରହ—ଆମେ ବ ତୁମ ସାଥେ ହାଟ୍‌କୁ ଯିବୁ—"

ଶୋଭନା, ବାସେନ୍ତୀ, ଚୁଡୁଜାନା—ଏମାନେ ସାପୁଆର ବାଲି ଉପରେ ଥକ୍‌ହୋଇ ଠିଆହୋଇ କାନଡ଼େରି ଶୁଣନ୍ତି ଏମାନଙ୍କର ସଂଗୀତ—ପରସ୍ପର ହସାହସି ହୋଇ ପୁଣି ସେଇ ଗୀତରେ ଗୀତରେ ଉତ୍ତର ଦଅନ୍ତି—

ପଛରୁ ଓ ଆଗରୁ କେବଳ ସଂଗୀତର ପ୍ରଶ୍ନ ଓ ଉତ୍ତରରେ 'ସାପୁଆ'ର ବାଲି ଓ ଅନନ୍ତ ଗିରିର ପଥର ଖୋଲ ଗୋଲେଇଯାଣ୍ଟି ହୋଇଯାଏ ।

"ଓ···ଓ ··ହୋ, ନାଙ୍ଗେ ଗିଆଡ······"



ବରକେଷ୍ଟ ହାଟ—

ହାଟର ଆରମ୍ଭରେ ଏକ ଗ୍ରେଡିଆ ସ୍କୁଲଘର—ସେଇ ସ୍କୁଲଘରର ସ୍କୁଲପାଖ ଓ ରାସ୍ତା ଉପରେ କେଉଁଦନର ଗୁଡ଼ାଏ ଶୁଖିଲା ପତ୍ରଠୁଙ୍ଗା ଜମା ହୋଇ ପଡ଼ିଛି । ଘରର ବାରଣ୍ଡା ଉପରେ ବହାଲ୍ଲାଲର ପୁଅ ବସିଛି । ବୟସ ତିରିଶ ଭିତରେ ହେବ । ଦେହରେ କଳାରଙ୍ଗର ଗୋଟାଏ ରେଶମୀ ଗେଞ୍ଜି—ଆଗରେ ଗୋଟାଏ ଟିଣ ବାକ୍ସ । ତା' ସ୍କୁଲପଟରେ ଜନ୍ଦା ପଛ ପରି ବେଢ଼ି ରହିଛନ୍ତି, କେତେ ଟୋକା, କେତେ ଭେଣ୍ଡିଆ ଆଉ କେତେ ବୁଢ଼ା । ସମସ୍ତଙ୍କ ହାତରୁ ପଇସା ରଖି ସେ କେବଳ ସିନେମା ଟିକେଟ ପରି କାଗଜ ଖଣ୍ଡେଖଣ୍ଡେ ବଢ଼ାଇ ଦେଉଛି । ସ୍କୁଲଘର ବାରଣ୍ଡାର ଗୋଟାଏ କଣରେ ନୂଆ ପତ୍ର ଠୁଙ୍ଗା ଗୁଡ଼ାଏ ଥାକ ହୋଇ ଜମା ହୋଇଛି । ସେଇ ଠୁଙ୍ଗା କୁଢ଼ ପାଖରେ ସ୍କୁଲଘରର ମାଟି କାନ୍ଥରେ ଗୋଟାଏ ବଡ଼ ଜଳା—ସେଇ ଜଳା ଭିତରେ ଗୁଡ଼ାଏ ହାତ କେବଳ ଏଇ ପତ୍ର ଠୁଙ୍ଗାରୁ ଗୋଟାଏ ଲେଖାଏଁ ଧରି ଭିତରକୁ ପ୍ରବେଶ କରିବାର ଠେଲାଠେଲିର ଦୃଶ୍ୟ । ଠୁଙ୍ଗା ପୂର୍ଣ୍ଣ ହେଲେ ଏହି ହାତଗୁଡ଼ାକ ପୁଣି ବାହାରି ଆସୁଛି ସେଇ ଜଳା ଭିତରୁ । ଅଗଣା ଭିତରେ ମଦ ଚୁଲିରୁ ଧୂଆଁ ଉପରକୁ ଉଠୁଛି ।

ଶୋଭନା ଟିକଏ ଅଟକିଗଲା ସେଇ ସ୍କୁଲଘର ପାଖରେ । ବହାଲ୍ଲାଲର ପୁଅ ଲଛମନ ତା'ର ସରୁ ନଣଟାକୁ ଟିକଏ ସାଉଁଳି ନେଇ ହସିଲା ଆଖିରେ ଶୋଭନା ଆଡ଼େ

ସ୍ପନ୍ଦିଲ । ତା'ର ଏଇ ନୀରବ ନିମନ୍ତ୍ରଣର ଜବାବ ଦେଇ ଶୋଭନୀ ଓ ବାସେଲୀ କହି ଉଠିଲେ—

"ଏ ବାବୁଆ—ନାହିଁରେ ପୈସା ନାହିଁ—ଆମେ ଆସୁଁ—।

ଶୋଭନୀ ଓ ବାସେଲୀର ଦଳ ହାଟ ଭିତରକୁ ପାଦ ବଢ଼ାଇଲେ । ଶୋଭନୀର ଗୋଟାଏ କୁକୁଡ଼ା, ବୃନ୍ଦୁଜାମୀର, ପାଞ୍ଚଟା କୁକୁଡ଼ା ଅଣ୍ଡା—ଆକାଶୀ ଓ ବାସେଲୀର ମକ୍କା ଓ ମନ୍ଦୁଳ ମେଞ୍ଚାଏ ।

ହାତ ଧରାଧରି ହୋଇ ଏମାନେ ହାଟର ଏପଟ୍ ସେପଟ୍ ଥରେ ଥରେ ହୋଇ ଘେରାଏ ଆଗ ବୁଲି ଆସନ୍ତି । କେତେ ଅଡୁ କେତେ ନୂଆ ଅଙ୍କ ସହିତ ଦେଖାହୁଏ । ସେମାନଙ୍କ ପାଖରେ ଟିକାଏ ଟିକାଏ ଠିଆହୋଇ କେତେ ଟାହି ଟାପରା, କେତେ ହସ, କେତେ ଚୁପି ଚୁପି କଥା । ତା' ପରେ ହାଟ କାରବାର ହୁଏ । କାଏ ଆଣେ ଲୁଣ, କାଏ ମାଟି ତେଲ—କାଏ ବା ଧୂଆଁ ପତ୍ର—ଆଉ କାଏ ତା'ର ଶ୍ରେଷ୍ଠ ସାଥି ପାଇଁ ନାଲି ଗୁଲୁଗୁଲିକୁ ସୁଗନ୍ଧ—ଶୋଭନୀର କାନୁ ସବୁ ପାଳ ମୁଡ଼ି ଦୁଇଅଣାର ଜିନିଷ । ତା'ର ମଙ୍ଗୁଲୀ ଖାଇବ—ମଙ୍ଗୁଲୀ—ଛନଛନିଆ ଛେଳିଟା···ଫେରନ୍ତା ହାଟର କାମ-ସାରି ହାଟ ଶେଷରେ ଏମାନେ ସେଇ ସ୍କୁଲଘର ପାଖରେ ଟିକାଏ ଅଟକି ଯାଆନ୍ତି । ଶୋଭନୀର ଅଣ୍ଡାରେ ଆଉ ମୋଟେ ପାଞ୍ଚ ପଇସା ଅଛି । ଏଇ ମଦ ଭାଟି ପାଖରେ ତା'ର ଗୋଡ଼ ଦଉଡ଼ା ଟିକାଏ ଅଟକି ଯାଏ । ଆଗରେ ପଥ ଠେକାରେ ଇଙ୍ଗିତ—ଲଛମନ୍‌ର ହସ ହସ ଆଖିର ଫକେଡ—ଗୁଣୁ ଗୁଣୁ ଗୀତ । ସମସ୍ତେ ଯେପରି ତାକୁ ନିମନ୍ତ୍ରଣ କରୁଛନ୍ତି ଏଇ ସ୍କୁଲଘରର ମାଟି ବାରଣ୍ଡା ଉପରକୁ ।

—ଆଓ ଶୁଭନୀ ଆଓ—ଆରେ ଆଓନା । ଲଛମନଲାଲ ତା'ର ଟିଣ ଚଉକି ଉପରୁ ଉଠି ଆସି ଶୋଭନୀର ଡେଣାଟାକୁ ଧରି ଭିଡ଼ିନେଇ ଯାଏ ସେଇ ସ୍କୁଲ ଘରର ବାରଣ୍ଡା ଉପରକୁ । ତା' ହାତରେ ସବୁଜ ପତ୍ର ଠୋଲାଟାଏ ଧରାଇ ଦେଇ ଲଛମନ୍‌ଲାଲ୍ ତାକୁ ଠେଲି ଠେଲି ନେଇଯାଏ କାନ୍ଥର ସେଇ ବଡ଼ ଜାଲଟା ପାଖକୁ ।

"ନାହିଁରେ ବାବୁଆ, ପୈସା ନେଇଁ, କାହିଁ ଦେଲୁରେ···"
ଫେଁ ଫେଁ ହୋଇ ହସିଉଠେ ଶୋଭନୀ ।

କଟା କଟା ବାକ୍ୟରେ ଶୋଭନୀ ପଚାରିଯାଏ ପ୍ରଶ୍ନ ଉପରେ ପ୍ରଶ୍ନ । ଲଛମନ୍‌ଲାଲ୍ ତା'ର ଓଡ଼ିଆ ଆଉ ହିନ୍ଦୀମିଶା ଭାଷାରେ ଉତ୍ତର ଦିଏ—

"ପୈସା ନେହିଁ ତୋ କ୍ୟା ମୁଁ କ'ନ ଥୋଡେ ପୈସା ମାଗ୍‌ସି କ୍ୟା" ? ପିଲେ, ପିଲେ, ଶୁଭମା ।'

ଶୋଭମା ପିଉ ଲଗିଛି—ଠୋକ ପରେ ଠୋକ—ଢୋକ ଢୋକ ହୋଇ ସେଇ ନାଲ ପାଣିଗୁଡ଼ାକ ଶୋଭମାର କଣ୍ଠରେ ବେଶ୍ ବାର ହୋଇ ଯାଉଛି । ଲଛମନ୍‌ଲାଲ୍ ଅପଲକ ଆଖିରେ ଚାହିଁ ରହିଛି ଶୋଭମାର ସେଇ ଫଙ୍କୁଲା ବେକ—ତା'ର ଦ୍ୱଳଲ ପୃଳଲ ଗାଲକୁ ଆଉ ଗଳାଖାଲ ପର ତା'ର ବଳିଷ୍ଠ ବାହୁ ଦୁଇଟାକୁ । ତା'ର ଆଖି ଦୁଇଟା ହିଂସ୍ର ହୋଇ ଉଠିଛି ଯେପରି । ବିଡ଼ି ଉପରେ ବିଡ଼ି ଟାଣି ଲଗିଛି ଲଛମନ୍‌ଲଲ ।

ଖାତର ନାହିଁ ଶୋଭମାର—ମନରେ ତା'ର କୌଣସି ଭାବନା ନାହିଁ—ସେ ସ୍ୱଚ୍ଛ—ସେ ଶୁଭ୍ର—ସେ ସୁନ୍ଦର ।

ପଇ ଠୁଙ୍ଗାଟାକୁ ବାହାରକୁ ଫୋପାଡ଼ି ଦେଇ ଶୋଭମା ବଡ଼ ପାଟିରେ କହିଲା—"ଏ ବାବୁଆ ! ପେସା ଦେ, ମୁଢ଼ି ନେମିରେ—ମୋ ମଙ୍ଗୁଲା ଖାଇବରେ···।"

ଏ ମୁହୂର୍ତ୍ତରେ ଶୋଭମାର କୌଣସି ଅନୁରୋଧ ବୋଧହୁଏ ଲଛମନ ଲାଲ ଏଡ଼ି ଦେଇ ପାରିବନି ।

ସେ ତା'ର ସ୍ଲେଟ ଟିଣ ଡବାରୁ ଗୁଟେଇଣିଟେ ବାହାର କରି ଶୋଭମାର ମୁଠାରେ ଚିପି ଧରିଲା । ତା'ର କର୍କଶ ଆଙ୍ଗୁଳ ଗୁଡ଼ାକ ଶୋଭମାର ହାତ ପାପୁଲିର ସ୍ପର୍ଶଆଡ଼େ ଯେପରି କ'ଣ ଆବିଷ୍କାର କରିବାରେ ଲାଗିପଡ଼ିଛି । ସୁକେଇଣିଟା ନିହାତ ଅବହେଳିତ ଭାବରେ ଶୋଭମାର ମାଂସଳ ପାପୁଲି ଭିତରେ କେଉଁ କଣରେ ଲୁଚି ଗଲାଣି । ତଥାପି ଲଛମନ୍‌ଲାଲ ଶୋଭମାର ପାପୁଲି ଭିତରେ କ'ଣ ଖୋଜିବାରେ ଲଗିଛି ଯେପରି । ଶୋଭମାର ସ୍ପର୍ଶ-ଶୋଭମାର ସ୍ୱାସ୍ଥ୍ୟ, ଶୋଭମାର ସୌନ୍ଦର୍ଯ୍ୟର ଅତି ନିକଟରେ ଥାଇ ଲଛମନ ଲାଲ ନିଜକୁ ହଜାଇ ଦେଉଛି ଶୋଭମା ଭିତରେ··· ।

ହଠାତ୍ ହିଂସ୍ର ବାଘୁଣୀ ପରି ଶୋଭାମା ଗର୍ଜି ଉଠିଲା ।

"ଧେତ୍, ଘୁଡ଼୍ ମ—ଘୁଡ଼୍ । ଖରାପ ଆଦ୍ ମୀ" ଲଛମନ ଲାଲ୍ ପ୍ରକୃତିସ୍ଥ ହେଲା । ଶୋଭାମାର ଗୋଟାଏ ଗର୍ଜ୍ଜନରେ ସେ ନିଜକୁ ଟିକଏ ସଜାଡ଼ି ନେଲା ।

"ଦେଖ୍ ଶୋଭାମା—ଇସ୍ କୋ ମିଲକର୍ ତୁ ରୂପେୟା ବନାନା ହୁଆ···ଦେଖ୍ ତୋ'ର୍ ବୁଢ଼ା ହରେକ୍ ରୋଜ୍ ମାଲ୍ ପିକର୍ ପୈସା ଦେତା ନହିଁ—ତାକୁ ଦେ ଦେବୁ । ଆନେକେ ବକ୍ତ ଲେଇ ଆସିବ । ନେହିଁତୋ, ଶିମ୍, ମକ୍କା, ମହୁଲ—ନେହିତୋ ମୁର୍ଗୀ ଦେଇ ଦେବ । ନେହିଁ ତୋ······ ।'

—"ନେହିଁ ତୋ···କ୍ୟା ?"

ବେପରୁଆ ଭାବରେ ଶୋଭାମା ପାଟିକରି ଉଠେ ।

ଗୁଣୁଗୁଣୁ ଗୀତ ଗାଇଗାଇ ଶୋଭାମା ଆଗକୁ ପାଦ ବଢ଼ାଏ । ଆସନ୍ନ ସନ୍ଧ୍ୟାର ଅଙ୍କାବଙ୍କା ଗେଙ୍ଗେଟି ପଥରର ରାସ୍ତା ଉପରେ କେତେ ଗୁଡ଼ାଏ ପଦଚିହ୍ନର ଛାପ ମାରି ଦେଇ ଶୋଭାମା ଆଜ ବାଟେଲ୍ଲୀର ଦଳ ହଜି ଯାଆନ୍ତି ସେଇ ସାପୁଆ ନାଳର ଆରପଟେ ।

※

'ମଙ୍ଗୁଳୀ' ଛେଳାକୁ କେଉଁଦିନ କେମିତି ଭାବରେ ଶୋଭାମା ପାଇଲା ତା'ର ଠିକ ମନେ ଅଛି । ସେଦିନ ମଙ୍ଗଳବାର ହୋଇଥାଏ—ବାଟେଲ୍ଲୀ ଠାକୁରାଣୀ ପାଖରେ ମଙ୍ଗଳବାର ପୂଜା-ଗାଁ ଜନ୍ତାଳ । ବେଣ୍ଡିଆମାନେ ବାସେଲ୍ଲୀ ଠାକୁରାଣୀ ପାଖରେ ବାର୍ହା ମାଂସ ରାନ୍ଧିବାରେ ବ୍ୟସ୍ତ ଥାଆନ୍ତି । ଶୋଭାମା କିନ୍ତୁ ଅନ୍ୟ ଝିଅମାନଙ୍କ ସହିତ ଗୀତ ଗାଇଗାଇ ବଣ ପାହାଡ଼ ଉପରେ ବୁଲୁଥାଏ । ହଠାତ୍ ସେ ଦେଖିବାକୁ ପାଇଲ ମଙ୍ଗୁଳୀକୁ ଛୁଆ ଅବସ୍ଥାରେ । ମଙ୍ଗୁଳୀର ମା' ସେଇ ବୁଦା ମଳେ ମରି ପଡ଼ିଥିବାର ସେ ଦେଖିଲା । ହେଟାଟାଏ ମଙ୍ଗୁଳୀ ମା'ର ତଣ୍ଟି ଚିପିଦେଇ ରକ୍ତ ପଳାଇଛି । ଏଇ ଶିଶୁ ଛେଳଟିକୁ ଶୋଭାମା ସେଦିନ ନିଜ ଘରକୁ ନେଇ ଆସିଥିଲା—ତା'ର ହେପାଦସ୍ତ କଲା । ଭୁଜା ମେଣ୍ଟାଏ ଦୁଧରେ ବୁଡ଼ାଇ ବୁଡ଼ାଇ ଏଇ

ଶିଶୁଟିକୁ ଖାଇବାକୁ ଦେଇ ବଞ୍ଚାଇ ଦେଲା ଶୋଭାମଣି । ସେଇ ମଙ୍ଗଳବାରର ସ୍ମୃତିକୁ ମନରେ ଆଣିବା ପାଇଁ ଶୋଭାମଣି ତା'ର ନାଁ ଦେଇଥିଲା ମଙ୍ଗୁଳୀ । ବାଘ ଖାଇଯିବ ବୋଲି ଶୋଭାମଣି ଭୁଲ୍‌ରେ କେବେହେଲେ ମଙ୍ଗୁଳୀକୁ ବାହାରକୁ ଛାଡ଼ନ୍ତ । ତାଙ୍କ ଶୋଇଲା ଘରର ସବୁବେଳେ ସେ ଖୁଣ୍ଟରେ ବନ୍ଧା ହୋଇଥାଏ । ମନହେଲେ କେତେବେଳେ ସକାଳେ ବା ସନ୍ଧ୍ୟାରେ ତାକୁ ଆଣି ଘର ସାମ୍ନା ଖୋଲା ପଡ଼ିଆର ଶିମ୍ବନଟା ପାଖରେ ବାନ୍ଧେ । କେଉଁଠୁ ଘାସ, କେଉଁଠୁ କଅଁଳିଆ ଓସ୍ତପତ୍ର—କେଉଁଠୁ କଞ୍ଚା ମଟ୍ରଲ, ସବୁଆଡ଼ୁ ଆଣି ଶୋଭାମଣି କୁଢ଼ାଇ ଦିଏ ମଙ୍ଗୁଳୀ ପାଖରେ—ତା ପାଖରେ ବସି ଶୋଭାମଣି ତାକୁ ଗେଲକରେ—ମୁହଁରେ ମୁହଁ ଘସେ—ତା'ଦେହସାରା ଶୁଙ୍ଘି ପକାଏ । କୋଳରେ ଜାକିଧରି ଗୁଣ୍ଡା ଗୁଣ୍ଡା କରି ପଖାଳଭାତ ତା' ପାଟିରେ ମାଡିଦିଏ—ନ ଖାଇଲେ ମାରେ—ଗାଳିଦିଏ । ମଙ୍ଗୁଳୀର ଦେହର ଗନ୍ଧ ଶୋଭାମଣିକୁ ଭାରି ଭଲ ଲାଗେ । ଥରେ ଥରେ ଶୋଭାମଣି ହସି ହସି ତା'ର ବୁଢ଼ାବାପାକୁ କହେ ମଙ୍ଗୁଳୀକୁ ହେଳ ପଲ ଭିତରେ ଛାଡ଼ିଦେଇ ତା' ଆଖିରେ ଅନ୍ଧ ପୁଟୁଳିଟାଏ ବାନ୍ଧି ଛାଡ଼ିଦେଲେ ବି, ସେ ମଙ୍ଗୁଳୀର ଦେହ ଶୁଙ୍ଘି ଶୁଙ୍ଘି ହେଳପଲ ଭିତରୁ ତା'କୁ ବାହାର କରିଦେବ । ଦୁଆର ଆଗରେ ଶୋଭାମଣିର ବୁଢ଼ାବାପ ମୁହଁରେ ଧୂଆଁ ପତ୍ର ପିକାଟାଏ ଧରାଇ ଦେଇ ଖଣ୍ଡେ ରଡ଼ ନିଆଁ ଖୁଣ୍ଟାରେ ପିକାରେ ନିଆଁ ଧରାଏ । ଖୁଁ ଖୁଁ କାସି ତା'ର ବୁଢ଼ାବାପା, ମନେ ମନେ ହିସାବ କରିବସେ—

—ବଡ଼ାଗାଈଲର ଛଟଙ୍କା ଆଠଅଣା

—ଗଦେଇ ସାହୁର ପାଁ'ସୁକା

—ବାହେଲିଠାକୁରାଣୀର ଗୋଟାଏ କଳାଫେଟା—ତିନଟଙ୍କା ।

—ଗାଁ' ଜନ୍ତାଳ ପାଇଁ ଚାନ୍ଦା ଦେଢ଼ଟଙ୍କା ।

ଏସବୁ ଭାବନାଗୁଡ଼ାକ ବୁଢ଼ାର ମୁଣ୍ଡଗୋଳମାଳ କରିଦିଏ । କେଉଁଠୁ ସେ ପନ୍ଦର ଟଙ୍କା ଆଣିବ ? ଶୋଭାମଣିର କଥା ବୁଢ଼ା କିଛି ଶୁଣିପାରେନା । ଶୋଭାମଣି କିନ୍ତୁ କହିବା ଲାଗିଥାଏ ।

"ଦେଖ୍ ବାପା—ମୋ ମଙ୍ଗୁଳୀ କେଉଁଟାଏ ହୋଇ ଗଲାଣି"—ପୁଣି ମଙ୍ଗୁଳୀର ଦେହ ଗୋଟାକଯାକ ଶୁଙ୍ଘି ପକାଏ ଶୋଭମା । ତା'କୁ ଭଲଲାଗେ ତା'ର ଗନ୍ଧ—ଭଲଲାଗେ ତା'ର କଳା ଲୋମ ଉପରେ ଟିପିଟିପିକା ଧଳା ଧଳା ଚିହ୍ନଗୁଡ଼ାକ—ଆହୁରି ଭଲ ଲାଗେ ମଙ୍ଗୁଳୀର ମୁଣ୍ଡ ଉପରେ ତିନକୋଣିଆ ଧଳା ବୁନ୍ଦଟା ।

ଧୂଆଁ ପତ୍ର ପିକାଟାରୁ ଜୋର୍ କରି ମେଞ୍ଚାଏ ଧୂଆଁ ଟାଣିନେଇ ବୁଢ଼ାବାପ ତା'ର ଉତ୍ତର ଦିଏ ।

—"ତୋ ମଙ୍ଗୁଳୀ କେତେ ଟଙ୍କା ହବ ଲୋ ? ପନ୍ଦର ? ନ ହେଲେ କୋଡ଼ିଏ ।"

*

ସେଦିନ ସକାଳ—ଶୋଭମା ମେଞ୍ଚାଏ ଘାସ ମଙ୍ଗୁଳୀ ଆଗରେ ପକାଇ ଦେଇ, ଘର ପାଇଁ ସାଗ, ଜଙ୍ଗଲକୁ ସବୁଜ ପତ୍ର ବୁଲିଯାଇଥିଲା । ହଠାତ୍ ବଡ଼ାସାହୁଲ ଦଶ ଟଙ୍କା ଦେଇ 'ପରଚେଣ୍ଟେ'କୁ ଶୋଭମାର ବାପ ପାଖକୁ ପଠାଇ ଦେଲା ।

ଅବକାଶ ସାହେବଙ୍କର ହଠାତ୍ ବର୍କେସ ମଦଗ୍ରନ୍ଥି ପରିଦର୍ଶନ—ଘରଆଡ଼ ସଫା ସୁତୁରା ଲାଗିଛି । ପରଚେଣ୍ଟ ବାଟସା ଧରି ସତ ହୋଇ ଯାଇ ବୁଢ଼ା ପାଖରେ ପହଞ୍ଚିଲା—ତା'ର ଚୋକାଳିଆ ଆଖି ଦୁଇଟା ବୁଢ଼ାର ଘର ଚୁଲି ପାଖରେ ବୋଧହୁଏ ଶୋଭମାକୁ ଖୋଜି ବୁଲୁଥିଲା—ଶୋଭମା ନାହିଁ ବୋଧହୁଏ । ବହୁତ କୁହାକୋଳା ପରେ ଦଶ ଟଙ୍କିଆ ନୋଟ୍ ଟା ବୁଢ଼ା ଆଗରେ ପକାଇ ଦେଇ ପରଚେଣ୍ଟେ ମଙ୍ଗୁଳୀକୁ ତା'ର ଝଣ୍ଟରୁ ଫିଟାଇଲା । ବୁଢ଼ା ବୋଧହୁଏ କହୁ ଆସୁଥିଲା—ରହ ପୁଅ ରହ, ଟିକିଏ ଅପେକ୍ଷା କରିଯା । ଶୋଭମା ଆସୁ—

ପରଚେଣ୍ଟ କାନ୍ତ କିଛି ନ ଶୁଣିଲା ପରି ବୁଢ଼ା ହାତକୁ ନୋଟ୍ ଟାକୁ ବଢ଼ାଇ ଦେଇ ମଙ୍ଗୁଳୀକୁ ଧରି ଆଗକୁ ପାଦ ବଢ଼ାଇଲା । ବୁଢ଼ାର

ହାତରେ ନୋଟ୍‌ଟା ଥିଲା ଥରି କେତେବେଳେ ତଳେ ପଡ଼ି ଯାଉଛି ତା'ର ନଜର ନାହିଁ । ବୁଢ଼ାର ମୁଣ୍ଡ ଭିତରେ ବାରଙ୍କୋଚ୍ଚ ହାଟଭଳି ମଦଭାଙ୍ଗି, ମଙ୍ଗୁଳୀର ମୁହଁ—ଶୋଭାମାର କଥା, ଦଶ ଟଙ୍କିଆ ନୋଟ, ଆଉ ପନ୍ଦର ଟଙ୍କାର ହିସାବ ସବୁ ଯେପରି ଏକାବେଳକେ ଗୁଡ଼େଇ ଛୁଡ଼େଇ ହୋଇ ତାକୁ ବ୍ୟତିବ୍ୟସ୍ତ କରି ପକାଉଥିଲେ ।

ଓ୍ଦୁଉଦିଆ ଖରାବେଳେ ଶୋଭାମା ମୁଣ୍ଡରେ ଏଣୁ ତେଣୁ କ'ଣ-ଗୁଡ଼ାଏ ମୁଣ୍ଡାଇ ଜଙ୍ଗଲରୁ ଫେରି ଆସିଲା । ତରତରରେ ଆଗ ସେ କାହାକୁ କିଛି ନକହି କଅଁଳିଆ ଘାସ କେରାକ ଧରି ଘର ଭିତରକୁ ପଶିଗଲା । ଗୁଣ୍ଡଟା ତା'ର ଦକ୍ କରି ଦେଲା । ଖୁଣ୍ଟଟା ଖାଲି ପଡ଼ିଛି । ଖୁଣ୍ଟ ମୂଳରେ ଦଳିଖିଆ ଘାସ ପୁଳାଏ ସେମିତି ପଡ଼ି ରହିଛି । ଗୁଡ଼ାଏ ଗାଳି ବର୍ଷିଗଲା ମଙ୍ଗୁଳୀ ଉପରେ ।

—ହୁଁଃ ଏତେ ବଡ଼ପ୍ ? ମୁଣ୍ଡକୁ ହାତ ପାଇଗଲାଣି ନା ? ଦେହରେ ମାଉଁସ ଲାଗି ଗଲାଣି—ଯେତେ ଦେଲେବି ଅଣ୍ଟୁନି—ଖାଇବି ବୋଲି ପେଟ ପୋଡ଼ି ଯାଉଚି । ବଦମାସ୍—ପଘାକୁ ନେଇ··· । ଯା କୁଆଡ଼େ ଯାଉଚୁ ଯା—ଆଜି ଆଉ ଖୋଜିପିବନି—ବାଘ ଖାଉ ନ ହେଲେ ଡାକିଣୀ ଖାଉ—ମରେ, ଆଜିମରେ—

ରାଗ ତମତମ ହୋଇ 'ମରେ ମରେ' କହି ଶୋଭାମା ଘର ମଝିରେ ଏ ପଟୁ ସେପଟ ହୋଇ ବକି ଲାଗିଛି ମଙ୍ଗୁଳୀକୁ । ହଠାତ୍ ବାପ ତା'ର ଦାଣ୍ଡପଟ ବାରଣ୍ଡାରୁ ଜବାବ ଦେଲା—

'ହେ ଝିଅ—ଏଠିକି ଆ'

ଦଶଟଙ୍କିଆ ନୋଟ୍‌ଟାକୁ ଶୋଭାମା ହାତକୁ ବଢ଼ାଇ ଦେଇ ବୁଢ଼ା କହି ଲାଗିଲା ସକାଳର ଘଟଣା । ଶୋଭାମାକୁ ଚାରିଆଡ଼ ଅନ୍ଧାର ଦେଖାଗଲା ହଠାତ୍ ଶୋଭାମା ଗର୍ଜି ଉଠିଲା—ଗର୍ଜି ଉଠିଲା ହିଂସ୍ର ବାଘୁଣୀ ଭଳି—ମୁହଁ ଫଣ ଫଣ କରି ଗୋଡ଼ ବାଡ଼େଇ ଘରୁ ବାହାରକୁ, ପୁଣି ବାହାରୁ ଘର ଭିତରକୁ, ଦୁଇ ତିନିଥର ଯାଆଆସ କଲା । ହଠାତ୍ କାହାକୁ କିଛି

ନ କହୁ ସୁଗ ଛମଛମ ହୋଇ ସେ ବଣ ଝଙ୍କିଆ ନୋଟ୍‌ଟାକୁ ହାତରେ ଧରି ଧଇଁ ସଇଁ ହୋଇଁ ଘରୁ ପାହାର ପଡ଼ିଲା··· ।

ଆଜି ହାଟପାଳି ନୁହଁ—ରାସ୍ତା ନିର୍ଜନ—ସୋରିଷ କିଆରିଟା ଯେପରି ଖାଁ ଖାଁ କରୁଛି—ଓସ୍ତପୁର ହୁଡ଼ ଉପରର ସେଇ ବଡ଼ କଇଁଆ ଗଛ ଉପରୁ 'ହୁଁ ହାଁ' ଚଢେଇଟା ମଝିରେମଝିରେ ଚିତ୍‌କାର ଛାଡ଼ୁଛି । ଶୋଭାମାର ଛାତିଟା ଧପ୍‌କରି ହେଲା । ଛାତି ଉପରେ ମେଞ୍ଚାଏ ଛେପ ପକାଇ ଦେଇ ତା'ର ଅସଂଯତ ନିଶ୍ୱାସକୁ ଟିକଏ ସଜାଡ଼ି ନେଇ ଶୋଭାମା ପୁଣି ଆଗକୁ ପାଦ ବଢ଼ାଇଲା । କଙ୍କଡ଼ର ଏଇ ଓସ୍ତପୁର ଘାଟୀର ଖଣ୍ଡେ ମୁନିଆ ପଥର ଦେହରେ ଶୋଭାମାର ବୁଢ଼ା ଆଙ୍ଗୁଠିରୁ ଟୋପାଏ ଉଡ଼ିଗଲା—ଝର ଝର ରକ୍ତ ବହିଲା । ଖାତିର ନାହିଁ ଶୋଭାମାର—ସେଇ ଫଟିଆ ଚମ ଉପରେ ମେଞ୍ଚାଏ ନାଲିମାଟି ବୋଳି ଦେଇ ପୁଣି ପାଦ ବଢ଼ାଇଲା ଶୋଭାମା । ସାପୁଆ ନାଳ—ସେଇ ଧଳା ଧଳା ବାଲିଗେରେଡ଼ା—ନେଳିପାଣି—କେଉଁଠି ଯେପରି ଆଜି କିଛି ନୂତନତା ନାହିଁ । ନାଳ ବନ୍ଧ ଉପରେ ସେ ଫେଣ୍ଟିଆ ଦଳ ଆଜି ନାହାନ୍ତି । ବଣଅଡ଼ ଶୁନଶାନ୍—ଶୋଭାମା ହିଂସ୍ର ହୋଇ ଉଠିଛି । ମୁହଁ ତା'ର ରତରତ—ଦେହ ମୁଣ୍ଡରୁ ଝାଳ ବାହାରୁଛି—ଅଣ୍ଟାରେ ମଇଳା ଅଣଓସାରିଆ ଗାମୁଛା ଖଣ୍ଡିକ ଜୋର୍‌କରି ଭିଡ଼ିଦେଇ ଶୋଭାମା ନାଳବନ୍ଧକୁ ଉଠିଲା ।

ବର୍‌କେଶ ହାଟ—ହାଟଟା ଖାଁ ଖାଁ କରୁଛି । ଲୋକବାକ ଗୋଟିଏ ବୋଲି ନାହିଁ—ସାଇଁ ପବନ ବହୁଛି । ଝାଞ୍ଜି ପବନ । ହାଟ ମଝିରେ ଓସ୍ତଗଛର ପତର ଗୁଡ଼ାକ ଫଡ଼୍‌ଫଡ଼୍ କରୁଛି ପବନରେ । ବେଳେ ବେଳେ ପତର ଗୁଡ଼ାକ ଉଡ଼ିଆସି ଶୋଭାମାର ନାକ କାନରେ ପିଟି ହୋଇ ଯାଉଛି । ଗଛ ସେପଟ୍ ଖଣ୍ଡିଆ ଭୂତଟା ଗୋଟାଏ ଚାଳିଆରୁ ନଣ୍ଡା ବଡ଼ାଏ ଉଡ଼ାଇ ସାରି ଶୋଭାମା ଆଡ଼କୁ ଦୌଡ଼ି ଆସୁଛି । ଶୋଭାମା ତ' ହାତରେ ଲୁଗା କାନକୁ ଜାବୁଡ଼ି ଧରି ଦଉଡ଼ିବାରେ ଲାଗିଛି ସେଇ ପଦା ହାଟଟା ମଝିରେ ।

ଟ୍ରେଷ୍ଟ ବଉ, ବଙ୍କାଡ଼ଙ୍କା ଚାଳିଆ ସବୁ ପାରିହୋଇ ଶେଷରେ ଶୋଭାମା ଆସି ପହଞ୍ଚିଛି ସେଇ ଚାଳ ଘରଟା ପାଖରେ । କାହିଁ ସେ

ଲଚ୍ଛମନ୍ ଲାଲ୍ ? କାହିଁ ସେ ଟୋକା ପରମେଷ୍ଠି ? ସେଗୁଡ଼ା ସ୍ୱପ୍ନ ଲାଗିଛି । ଗୋଦାମ ଘର ଆଗ ସାମ୍ନାରେ ଚର୍ଚ୍ଚିତ ଏକ ଚାନ୍ଦୁଆ ତଳେ କେତେ ଟେବୁଲ୍ ଚଉକି ଥୁଆ ହୋଇଛି । ଟେବୁଲ୍ ଉପରେ ଫୁଲପକା କନା, ତା' ଉପରେ ଫୁଲଦାନୀ—କେତେ ଲୋକ ବେଢ଼ି ରହିଛନ୍ତି ସେଇ ଗୋଦାମ ଘର ବାହାରପଟେ । ଲଚ୍ଛମନ୍ ଲାଲ୍ ଫାଶି ଖୁଣ୍ଟର ଆସାମୀ ପରି ସେଇଠି ସେଇ ଅବକାଶ ହାକିମଙ୍କ ପାଖରେ ଠିଆ ହୋଇଛି । ଶୋଭନାର ପାଦ ଅଟକି ଗଲା—କାହିଁ ତା'ର ମଙ୍ଗୁଳୀ ? ମଦଭାଟି ପାଖରେ କେନ୍ଥ-ନାଇଁ ଅବକାଶ ସାହେବ ଆସିଥିବାରୁ କି କ'ଣ, ମଦଭାଟିଟା ବେଶ୍ ସଫା ସୁତୁରା—ସାମ୍ନା ପଡ଼ିଆଟା ଗୋବରରେ ଲିପା ପୋଛା ହୋଇ ହସି ଉଠୁଛି ।

ଜଙ୍ଗଲ ଭିତରେ ନିଜ ଛୁଆକୁ ହଜାଇ ଦେଇଥିବା ଏକ ତ୍ରସ୍ତ ହରିଣୀ ପରି, ମଦଭାଟି ପାଖରେ ଠିଆ ହୋଇ ଶୋଭନା ବଡ଼ ପାଟିରେ ଡାକ ଛାଡ଼ିଲା—

"ରେ ଗ୍ଲୋସା ! ଏ' ସାହୁକାର ! ଏ ବାବୁଆ !" ମଦଭାଟି ପଛପଟେ ସେଇ ମହୁଲ ଗଛମୂଳରୁ କିଏ ଜଣେ ଜବାବ ଦେଲା—କିଏ ଡାକୁଛୁ ? ଏଠିକି ଆସ୍ ।

ଶୋଭନା ଧାଇଁଗଲା ସେଇ ମହୁଲ ଗଛଟା ଆଡ଼େ । ଏ' କ'ଣ !! ବ୍ରେକ କଷା ମଟର ଗାଡ଼ିଟା ପରି ଶୋଭନାର ପାଦ ଦି'ଟା ଦପ୍‌କରି ଅଟକିଗଲା ସେଇ ଗଛଟା ଆଗରେ । ଛାତି ତା'ର ଢିଙ୍କି କୁଟିଲା ପରି ଧଡ଼୍‌ଧଡ଼୍ ହେଲା । ଆତ୍ମହତ୍ୟା କରିଥିବା ଏକ ନଷ୍ଟା ଲଳନା ପରି ମଙ୍ଗୁଳୀର ମୁଣ୍ଡହୀନ ଶବଟା ଝୁଲୁଛି ସେଇ ଗଛ ଡାଳରେ । ପରମେଷ୍ଠି ଲାଲ୍, ଯିଏ ଅଜାଣତ ଭାବରେ ଶୋଭନାର ଚପ ଠୁଙ୍ଗାକୁ ଭରିଦେଇ ଥାଏ, ଅତି ନୃଶଂସ ଭାବରେ ମଙ୍ଗୁଳି ଦେହରୁ ଚମଡ଼ାଟା ଝିଙ୍କିବାରେ ଲାଗିଛି ।

ତଳେ ପଡ଼ି ରହିଛି ମଙ୍ଗୁଳିର ମୁଣ୍ଡଟା । ଜିଭ କାମୁଡ଼ି ହୋଇ ମଙ୍ଗୁଳି ଅପଲକ ଆଖିରେ ଚାହିଁରହିଛି । ଧଳା ଦାନ୍ତଟା ସେମିତି ଚକ୍ ଚକ୍

କରୁଛି । ଶୋଭନା ଥୟ ଧରି ରହି ପାରିଲାନି । ଭେଁ କରି କାନ୍ଦି ଉଠିଲା—ହାତରେ ତା'ର ଦଶଟଙ୍କିଆ ନୋଟ୍—ଆଖିରେ ଆଖିଏ ଲୁହ ।

ଲୁହ ଭରା ଆଖିରେ ଶୋଭନା ଅସ୍ପଷ୍ଟ ଭାବେ ଦେଖି ପାରୁଥିଲା କିଛି ଦୂରରେ ଦୁଇଟା ଖଲଚଟା କୁକୁର ମଙ୍ଗୁଳୀର ଅନ୍ତ୍ରବୁଜୁଳକୁ ଦାନ୍ତରେ ଝୁଣ୍ଟିବାରେ ଲାଗିଛନ୍ତି । ଠିକ୍ ତାଆରି ପାଖ ବୁଳଆ ତଳେ ଦୁଇଟା ଭଙ୍ଗାକୁଲା ଓ ଗୋଟାଏ ଭଙ୍ଗା ମାଠିଆ ଅସହାୟ ଭାବେ ପଡ଼ି-ରହିଛନ୍ତି । ମାଠିଆରେ ଗୁଣ୍ଡ ଓ କୁଲାରେ କଏ ବୋଧେ ଗନ୍ଧ ପାଳ ପରିବା ଛନ୍ଦି କରୁଥିଲା—କିନ୍ତୁ ଶୋଭନା ଆଖିରେ ଏ ସମସ୍ତ ଗୋଟାଏ ଗୋଟାଏ ମଶାଣିର ଅବୟବ । ଏ' ଖର୍‌କେଉ ହାଟଟା ଯେମିତି ଗୋଟାଏ ମଶାଣି ପାଲଟି ଯାଇଛି । ଆଜି ଶୋଭନା ଆସିଛି ମଙ୍ଗୁଳିର ଶବ ଦାହ କରିବାକୁ··· ତା' ଭିତରେ ଲଛମନ୍ ଲାଲ୍ ଓ ପରମେଶ୍ୱ ଲାଲ୍ ସମସ୍ତେ ଯେମିତି ଗୋଟାଏ ଗୋଟାଏ ମଶାଣି ଭୂମଣ୍ଡା ଅଥବା ମଶାଣିଆଁ ବାବାଜୀ······

ପୁଣି ଥରେ ଶୋଭନା ଚାହିଁଲା ତା' ମଙ୍ଗୁଳୀର କଳା ଡବ ଡବ ଆଖି ଦୁଇଟା ଆଡ଼େ—ଆଉ ସହି ପାରିଲାନି—ଆହୁରି ଆହୁରି କାନ୍ଦିବାକୁ ଲାଗିଲା ।

ଅବକାଶ ସାହେବ ସେଇ ଫୁଲପକା ରୁଦ୍‌ଆ ତଳୁ ଅପଲକ ନେତ୍ରରେ ଚାହିଁ ରହିଥିଲେ ଶୋଭନା ଆଡ଼େ—ତାଙ୍କର ଲୋଭିଲ ଆଖି ଦୁଇଟା ପରଚଟା କୁକୁରର ଜିଭପରି ଚରି ଯାଉଥିଲା ଶୋଭନାର ଅନାବୃତ ଗ୍ରୀବା, ବୋଳଲା ବୋଳଲା ବାହୁ ଓ ବସ୍ତ୍ରାବୃତ ପୃଷ୍ଠଦେଶ ଉପରେ······

—*—

# ଜାହାର୍ ଆୟୃ

( ଆଦବାସୀ ସାନ୍ତାଲୀ ଭଷା )

**ଶ୍ରୀ ରତନ ଚନ୍ଦ୍ର ଟୁଡ଼୍ୁ**
ଗୋବିନ୍ଦପୁର, ମୟୂରଭଞ୍ଜ

ହାପ୍ଡ଼୍ରେ ଜାହେର୍ ଆୟୁ, ଚେଦ୍ ଏମ୍ ଚକା କଦଓ୍
ହାଲେ ତାଲେ ରେଚେଗେ
ଇଓ୍ମା ତାପ୍ସମ୍ ରେଚେଗେ
ଜତ ହଲ୍ ଖନେମ୍ ନାଗ୍ରର୍ କଦଓ୍ ।
ଲେଲେଙ୍ଗେଦ୍‌ଗେ ଦଶମ୍ ଲପାଣ୍‌ହେଦ୍‌ଗେ ଧରମ୍
ନଆ ସିର୍ଜନ୍
ବେନଓ୍ୱାକାନ୍
ହାହାଲାଗେ ଇଖାନ୍, ଆଡ଼ି ସିବଲ୍ ଆଡ଼ି ସଲମ୍ ।
ମାଃନ୍‌ମି ଜାନାମ୍‌ରେ ଗୃହବଙ୍ଗାପୁ୍ ଏମ୍‌କେଦ୍
ଜତ ଧରମ୍
ଆର୍ କରମ୍
ଅନାତେ ମାଃନ୍‌ମି ସମାଜ୍ ବାଃଗାପୁ୍ ଧରମ୍ ଲଗିଦ୍ ।
ଅଣ୍ଡେଖନ୍ ଏହବ୍ ଆକାନ୍ ବଙ୍ଗାବୁରୁ, ସେବା ସାଧନ୍
ଜତ ହଲ୍ ଲେକା
ଇଓ୍ୱାଃ କାଃମି ଅକା
ଜାହେର୍ ଆୟୁଓ୍ ସେବା କେନ୍ଦ୍ରମେ ଅକା ବାସ୍‌ଗାନ୍ ।
ଧରମ୍ ସିର୍ଜନ୍ ହଲଃ ଖନାଃ ସେବା କେନ୍ଦ୍ରମିଓ୍
ଆମ୍ ସାମାଂରେ
ଆମାଃ ଜାଙ୍ଗାରେ

ଗୁପୁନାଡଣ୍ଡ୍ ନେହ୍ଵର୍ଲେଆ ଉକୁରେମ୍ ଅ.ଣ୍ଡମ୍ କାଃଢଣ୍ଡ୍ ।
ହ୍ଵାଙ୍ଗ୍ରେ ଂଧିଶ ଶନଣ୍ଡ୍ ଜାହ୍ଵେର୍ ଆୟୁ ଆମ୍ଗେ
ସାଗେଚେ଼ଚେମ୍
ଧିଚେମ୍ମେନାମ୍
ଉନାଃ ନେହ୍ଵର୍ ବାଙ୍ଗେମ୍ ଅଣ୍ଡିଂଲେଆ ଉନ୍ନେହ୍ଵିଁଗେ ।
ସାଗନେ ଜାହ୍ଵେର୍ ଆୟୁ, ଇଣ୍ଡ୍ମା ଆଡ଼ ନନ୍ଧାନ୍
ଅଜୟୁ୍ ସାଡଂହିଁଚ
ବାଣ୍ଡ୍ ତୁଲୁଜ କେଚ
ଖାଲ୍ ଆଷ୍ଟାବ୍ ଜାଲାବ୍ ଇଣ୍ଡ୍ଦ ଲତାର ଜତଗନ୍ ।
ଉନାଃ ଗେଚେମ୍ ନର୍ମାସ୍ବା ଜାହ୍ଵେର୍ ଆୟୁ ହ୍ଵାୟୁ୍ରେ
ଇଣ୍ଡ୍ଦ ନନ୍ଧାନ୍
ଜତ ହ୍ଵଲ୍ଗନ୍
ଦହ୍ଵକଦ୍ଵଣ୍ଡାମ୍ ହ୍ଵାଲେଣ୍ଡାଲେ ଆଡ଼ ବାପୁଲୁଲ୍ରେ ।
ବାଣ୍ଡ୍ କକୟୁ୍ନାନା ଧନ୍ଦୁଶବ୍, ସନା ରୂପା ଚେଦ୍ହିଁ
ଣିଖାଉ ଇଣ୍ଡ୍ମେ
ଶକ୍ରା ହ୍ଵାଣ୍ଡ୍ମେ
ହ୍ଵଲ୍ ସାଡ଼ଂଗେ ହ୍ଵଲକ ନେକା ଦହ୍ଵଇଣ୍ଡ୍ମେ ଇଣ୍ଡ୍ହିଁ ।
ଜାହ୍ଵେର୍ଦାରେ ଇଜାଲଃନାନ୍ ଆମା ଦାଲେ ହୁଡ଼ଣ୍ଡଃନାନ୍
ଇମାଣ୍ଡ୍ମେ ଦାଲେ
ଚାହ୍ଵେନ୍ମେ ବାଲେ
ଆମେମ୍ ବାଗିୟାଣ୍ଡ୍ଗାନ୍ ଅକୟୁ୍ ହ୍ଵଲଣ୍ଡ୍ ଚାହ୍ଵେନ୍ ।

—※—

## "ଜାହ୍ବର୍ ଆୟୁ" ( ଜାହ୍ବର ମାଆ )

( ସାନ୍ତାଳୀ କବିତାର ଓ: ଆ ସାରାଂଶ )

ହେ, ଠାକୁରାଣୀ ଜାହ୍ବର ମାଆ ! ମୋତେ କ'ଣ କଲ ? ଶେଷରେ ମୋତେ ସମସ୍ତଙ୍କଠାରୁ ବିଚାରରେ ରଖିଲ ! ବଡ଼ ଆଶ୍ଚର୍ଯ୍ୟ ଏଇ ସୃଷ୍ଟି, ମାତ୍ର ସେତେ ମଧୁର ମଧ୍ୟ । ଭଗବାନଙ୍କର ଅଲଂଘନ ସୃଷ୍ଟି ସକାଶେ ମାନବ ସମାଜରେ କର୍ମ ଓ ଧର୍ମ ରହିଛି । ସେଇଥି ପାଇଁ ମାନବ ସମାଜରେ ଧର୍ମର ବନ୍ଧନ ଆସିଛି । ସେଇଠୁ ମଣିଷ, ସେବା ସାଧନାରେ ବ୍ରତ ହେଲା । ହେ, ଜାହ୍ବର ମାଆ ! ମାନବ ସମାଜରେ ସେଇ ଧର୍ମ ଓ ସେବା ସାଧନାର ସୃଷ୍ଟି ଦିନଠାରୁ ମୁଁ ତୁମକୁ ପୂଜା କରି ଆସୁଛି କିନ୍ତୁ କ'ଣ ଅପରାଧ କଲି ଯେ, ଏବେ ତୁମେ ମୋର ପ୍ରାର୍ଥନାକୁ ଶୁଣୁନାହଁ ? ତୁମେ ଏଡ଼େ ନିର୍ମମ ! ମୋତେ ସମସ୍ତଙ୍କଠାରୁ ବିଚାରରେ ରଖି ତୁମେ ସୁଶୀତଳ ଜାହ୍ବର ବୃକ୍ଷର ଛାୟାରେ ମୋର ଆକୁଳ ପ୍ରାର୍ଥନାକୁ ପ୍ରତ୍ୟାଖାନ କରି ରହିଛ । ହେ, ପଥରର ଜାହ୍ବର ମାଆ ! ତୁମେ କ'ଣ ସତରେ ପଥର ହେଲ ? ତୁମର ସେ କଠିନ ହୃଦୟ କ'ଣ ଥରେ ହେଲେ ତରଳିବ ନାହିଁ ? ତେବେ ମାଆ ହୋଇ କି ଯଶ ପାଇବ ? ମୁଁ ତ ଧନ ସମ୍ପତ୍ତି, ସୁନା ରୂପା କିଛି ମାଗୁନାହିଁ । କେବଳ ତୁମର ଅସୀମ ଦୟାରୁ କାଣିଚାଏ ଆଶୀର୍ବାଦ । ଯାହା ଫଳରେ ମୁଁ ମାନବ ସମାଜରେ ମାନବ ହୋଇ ରହି ପାରିବି । ନିଷ୍ଠୁରରେ ତୁମେ ମୋ ପ୍ରାର୍ଥନାକୁ ପ୍ରତ୍ୟାଖାନ କରି ପଳାଇଗଲେ ମୁଁ କାହା ଆଶୀର୍ବାଦ ପାଇ ରହିବି ? ମୋତେ ଶକ୍ତି ଦିଅ, ମୋତେ ସାହସ ଦିଅ ମୁଁ ଯେପରି ସେଇ ସୁଶୀତଳ ଜାହ୍ବର ବୃକ୍ଷର ଛାୟାରେ ତୁମକୁ ସେବା କରି ମହାନ୍ ହୋଇ ପାରିବି ।



# ଆଦିବାସୀ ସଂଗୀତ

( ଆଦିବାସୀ ଲାଞ୍ଜିଆ ସଉରା ଭାଷା )

ସମ୍ପାଦକ—ମାଧବ ଚନ୍ଦ୍ର ସାମନ୍ତ

ଗୋବିନ୍ଦପଲ୍ଲୀ ଆଶ୍ରମ ସ୍କୁଲ ( କୋରାପୁଟ )

[ ଆଦିବାସୀ ଲାଞ୍ଜିଆ ସଉରାମାନଙ୍କ ବିବାହବେଳେ ଆଦିବାସୀ ଯୁବକ ଓ ଯୁବତୀଗଣ ବରକନ୍ୟାଙ୍କର ମଙ୍ଗଳ କାମନା କରେ ବରବଧୂଙ୍କର ଚତୁର୍ଦ୍ଦିଗ ପରିବେଷ୍ଟନ କରି ଦୁଇ ଦଳରେ ବିଭକ୍ତ ହୋଇ ଗାଆନ୍ତି । ]

ପ୍ରଥମେ ସ୍ତ୍ରୀଦଳ ଆରମ୍ଭ କରନ୍ତି—

୧ମ ଦଳ—"ପାରୁଇବପ୍ୟେ ଆଲେଇ ପାରୁଇବପ୍ୟେ
ପାରୁଇବପ୍ୟେ ଆଲେଇ ପାରୁଇବପ୍ୟେ"

ଡାକୋ ଡାକୋନା ଏ ପାରୁଇବପ୍ୟେ
ଡାକୋ ଡାକୋନା ଏ ପାରୁଇବପ୍ୟେ

୨ୟ ଦଳ—ପାରୁଇବପ୍ୟେ ଆଲେଇ ପାରୁଇବପ୍ୟେ
୧ମ ଦଳ—ଡାରଣାମାଂଲା ଅନୁଲେ ଡୁଆଗି ମାଂଲା ଅନୁଲେ
ପାରୁଇବପ୍ୟେ ଆଲେଇ ପାରୁଇବପ୍ୟେ
୨ୟ ଦଳ—ଡନ୍‌ପାଡା ମାଂ ଅନୁଲେ ସେନାର ପାଂଲା ଅନୁଲେ
ପାରୁଇବପ୍ୟେ ଆଲେଇ ପାରୁଇବପ୍ୟେ
୧ମ ଦଳ—ଗିନେରେମାଁଲା ଅନୁଲେ କାନୋକୋପ୍ରିମାଂଲା ଅନୁଲେ
ପାରୁଇବପ୍ୟେ ଆଲେଇ ପାରୁଇବପ୍ୟେ
୨ୟ ଦଳ—କୁଡାଂ ଡାନନଂଲା ଅନୁଲେ ବନ୍‌ଡ୍ରାନ୍‌ମଂଲା ଅନୁଲେ
ପାରୁଇବପ୍ୟେ ଆଲେଇ ପାରୁଇବପ୍ୟେ
୧ମ ଦଳ—ସାରସାରୁନ୍‌ମଂଲା ଅନୁଲେ ତରମନେନମ୍‌ ଅନୁଲେ
ପାରୁଇବପ୍ୟେ ଆଲେଇ ପାରୁଇବପ୍ୟେ
୨ୟ ଦଳ—ତଇଞ୍ଜୀନେନମ୍‌ ଅନୁଲେ ଆଗଜଂବାନେନମ୍‌ ଅନୁଲେ
ପାରୁଇବପ୍ୟେ ଆଲେଇ ପାରୁଇବପ୍ୟେ

୧ମ ଦଳ—ଅରନ୍ ଭୁଚେନନମ୍ ପାରୁଇବପ୍ୟେ
ଆରଙ୍ଗ୍ଂଙ୍ଗନେନମ୍ ପାରୁଇବପ୍ୟେ
ପାରୁଇବପ୍ୟେ ଆଳେଇ ପାରୁଇବପ୍ୟେ
୨ୟ ଦଳ—ଛଙ୍ଗ୍ଲେଇନମ୍ ଅନୁଲେ କୁପେନମ୍ ଅନୁଲେ
ପାରୁଇବପ୍ୟେ ଆଳେଇ ପାରୁଇବପ୍ୟେ
୧ମ ଦଳ—ସାନା ବାଇନମ୍ ଅନୁଲେ ସାଙ୍ଗବନ୍ଧୂନମ୍ ଅନୁଲେ
ପାରୁଇବପ୍ୟେ ଆଳେଇ ପାରୁଇବପ୍ୟେ
୨ୟ ଦଳ—ଯାଳଆନ୍ମଂଲା ଅନୁଲେ ଯାଡେ଼ଣନ୍ ମଲା ଅନୁଲେ
ପାରୁଇବପ୍ୟେ ଆଳେଇ ପାରୁଇ ବପ୍ୟେ ।

ଅର୍ଥ—ପାରୁଇବପ୍ୟେ—ଶାଳୀ, ଆଳେଇ—ହେ, ଡାକୋନାଇ—ରହରହ, କୋଡ଼ାଂମାଂଳା—ଚୋର ଗର୍ତ୍ତି ଶ୍ୱ ଘର, ଡାରନଂମାଲା—ଦୁଆର ବନ୍ଦ ପାଖରେ ଠିଆ ହେଇଥିବା ଲୋକ, ଅନୁଲେ—ଖଣ୍ଡ, ସେନାର ପାଂଲା—ପାନଅ ଆଣିଲ, ବଚନେର—ଶୀଘ୍ର, କୁଡ଼ାଂଡ଼ନ୍ମାଂଲ—ଖଣ୍ଡି ନକଟରେ ଜଗିଥିବା ଲୋକ, ଛରଞ୍ଜୀନନମ୍—ଦାନ୍ତକାଠି ନେ, ଆଁଗକଂଜାନେନମ୍—ଜଭ ଛେଲିବା, ଅରଙ୍ଗନେନମ୍—ପଦାକୁ ବାହାର ନାହିଁ, ସନା ବାଇନସ୍—ସାନ ଭାଇ, ସାଙ୍ଗ ବଂଧୁ ନମ୍—ସାଙ୍ଗବଂଧୁ ।

—ଃ*ଃ—

## ଆଦିବାସୀ ସଂଗୀତ

### ( ସାନ୍ତାଳୀ ଭାଷା )

ଶ୍ରୀ ବଦ୍ୟାଧର ସୋରେନ୍,
ଆଜୀବନ ସଭ୍ୟ ଓଡ଼ିଶା କୃଷକ ସମାଜ

ଗାଡ଼ରେହଁ ଟିକସ ମେନାଃ  ମଟରରେହଁ ଲାଇସେନ ମେନାଃ
ନାବନ ରେଦ ଜଣ୍ଡ କୁଲ ଲାଇସେନ ବାନୁଃ ।
ସାପୁାଃ ଚେଚାନ୍ ସାଳ ବାଂଦେ ଭରେହଁ ରୁର୍ଙ୍ଗିନ ଚୂଳ
ନାବନ ରେଗେ ଜୂର୍ କୁଲ ମନଦଃ ମେନାଃ ।
ନଞ୍ଜମା ଗୁଡକଳା ନାମ୍ମା କଷାଣ ହପନ୍
ନାମମା ମେଚାଞ୍ଜ, କାନ ଇଦ ଇଞ୍ଜମେ ।

ନଜଞ୍ଜମାହାସା ବାନୁଃ ମାଇଁରେ ଅନାଃ ଦୁଆର ବାନୁଃ ।
ଅଲଃ ପାଙ୍ଗାଃ ହଁ ବାନୁଃ ମାଇଁରେ ନଞ୍ଜମା ଗୁଣ୍ଡ କଜା ।
ଅଡଞ୍ଜ ଆସୁଲ କେମାଃ ଦୁଃ ରୁଆକ ଞ୍ଜମେ
ଲଜ ନାସୁଲ ଲଗିଦ ଚେ ମାଇଁ ସଜଲକଲଞ୍ଜ ଅଡ଼କ ଏନାଃ,
ବାଦାମ, ସୁଲାଇ ପାଟ ଯଚ ଖାଦାନ ବନ୍ଦ ଏନାଃ ।
ନଞ୍ଜ ରେଙ୍ଗଜ ଚେ, ଞ୍ଜପାମ ଞ୍ଜପାମ ବାଂଲ ଞ୍ଜାପାମ ଲେନାଃ
ଜାପିଦ ସାବ ସାଣ୍ଟଞ୍ଜ ବାଃଲୁ ଘାଟରେ ମାଇଁ
ମେନ୍ ଦାଃ ନାଲମ ଦରୁସ୍ୱାଃ
ନଞ୍ଜଦଃଞ୍ଜ ସଲଃ ଜାନାଃ ସଜଲକାଲ ।

—ଃ✳ଃ—

## ସୂଚନା

ଆଦିବାସୀ ବାହାଘର ବେଳେ ଏହି ଗୀତ ବୋଲାଯାଏ, ଏହା ଅର୍ଥ ହେଲା—

ଦୁଇ ତରୁଣ ତରୁଣୀ ମିଳନ ଆଶାରେ—କିନ୍ତୁ ମିଳନ ସମ୍ଭବ ନୁହେଁ । ତରୁଣୀଟି ଧନିକ କନ୍ୟା ଓ ତରୁଣ ଏକ ଦରିଦ୍ର ପରିବାରର, ଯାହାର ଘରଦ୍ୱାର ନାହିଁ, ପାଠଶାଠରେ ଯୋଗ୍ୟତା ବି ନାହିଁ । କେବଳ ପର ଗୃହରେ ଖଟି ଜୀବିକା ନିର୍ବାହ କରେ ।

ମଟର ଗାଡ଼ିରେ ଯେପରି ଲାଇସେନ୍ସ ଦରକାର, ଏହି ତରୁଣୀ ପାଇଁ ସେପରି କିଛି ଆବଶ୍ୟକ ନାହିଁ । କାରଣ ଏ ବନ୍ଧନ ଦୁହିଁଙ୍କ ସମ୍ମତିରେ । ଧନିକ କନ୍ୟାର ରଙ୍ଗୀନ୍ ଶାଢ଼ୀ ଦେଖି ତରୁଣ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଯାଏ ।

ବାଦାମ, ସୁଲେଇ ପାଟ ଖଣି ବନ୍ଦ ହୋଇଗଲା । ସେଇଠି କାମ ଦାମ କରି ସେ ଉଦରର ପୋଷଣ କରି ପାରିଥାନ୍ତା ଓ ଧନିକ କନ୍ୟା ସଙ୍ଗରେ ସୁଖରେ କାଳ ଉପାତ କରି ପାରନ୍ତା; କିନ୍ତୁ ଆଜି ବିବାହ ସମ୍ଭବ ହେଲ ନାହିଁ, ମନ ଭାଙ୍ଗିଗଲା । ପ୍ରେମିକ ପ୍ରେମିକାଙ୍କୁ କହୁଛି 'ମୋ ପାଇଁ ମନ କଷ୍ଟ କରିବ ନାହିଁ । ମୁଁ ରୁକ୍‌ଲି ସଉର୍‌କେଲା, ମୋର ଜୀବିକା ନିର୍ବାହ ପାଇଁ···।"

—ଃ✳ଃ—

# ଆଦିବାସୀ ସଂଗୀତ

( କୋୟାଭାଷା )

ଶ୍ରୀ ଜୟରାମ ପଢ଼ିଆରି, (କୋରାପୁଟ)

—୧—

ଗାଦ କୁତୁ କୁତୁ
(ଆରେ ଚାଲ)

ଗାଦ କୁତୁ କୁତୁ
(ଆରେ ଚାଲ)

ଗାଦା ଓ୍ୱାଦୁତା
(ଚାଲ ଆସୁଛୁ)

ଆକ୍‌ତେ ପିଞ୍ଜା
(ପଥରେ ଲୁଚେ)

ତପେର୍‌ ମିଞ୍ଜା
(ଦନାରେ ଲୁଚେ)

କୁତୁ କୁତୁ
(ଆ···ଆ···)

—୨—

( ୨ ) ( ଝିଅମାନେ ବାହାହେବା ସମୟରେ ଗାଇବା ଗୀତ )

ମି ମା-ମାନ୍ ମାର୍କାଟଣ୍ଡା
(ତୋର ମାମୁଁର ଆମ୍ବ ତୋଟା)

ସିନ୍‌ମାନ୍ ସିନ୍‌ମାନ୍
(କୁନ ମା କୁନ ମା)

ମି ମା-ମାନ୍ ମାର୍କାଟଣ୍ଡା
(ତୋର ମାମୁଁର ଆମ୍ବତୋଟା)

ସିନମାନ୍ ସିନମାନ୍
(କୁନମା କୁନମା)

ଟଣ୍ଡେ ତେନ ଦାଦ୍‌ତାନ୍ ଇନ୍ଦମା
(ତୋଟାରେ ଯିବ ବୋଲନା)

ସିନ୍‌ମାନ୍ ସିନ୍‌ମାନ୍
(କୁନ ମା କୁନ ମା)

ଟଣ୍ଡେ ତେନ୍ ନଲ୍ ଟାଣ୍ଡା
(ତୋଟାରେ ଗଣ୍ଡଗୋଳ)

ସି-ମା-ମାନ ଶମା ଝଣ୍ଡା          ସିନ୍‌ମାନ୍ ସିନ୍‌ମାନ୍
(ତୁମ ମାମୁଁର ଲେମ୍ବୁ କୋଁଟା)          (କୁନମା କୁନମା)

ସି-ମା-ମାନ ଶମା ଝଣ୍ଡା
(ତୁମ ମାମୁଁର ଲେମ୍ବୁ କୋଁଟା)

ସିନମାନ, ସିନମାନ          ଝଣ୍ଡେ ଚେନ୍ ଡାଦ୍‌ତାନ ଇନ୍ଦମା
(କୁନମା କୁନମା)          (ଚୋଟାରେ ଯିବ କୋଲନା)
ସିନ୍‌ମାନ ସିନ୍‌ମାନ          ଝଣ୍ଡେ ଚେନ ନଲକଣ୍ଡା
(କୁନମା କୁନମା)          (ଚୋଟାରେ ଗଣ୍ଡଗୋଳ)
ସିନ୍‌ମାନ ସିନ୍‌ମାନ          ରେ ରେଲା, ରେ ରେଲା,
(କୁନମା କୁନମା)          (ତୁମେମାନେ ତୁମେମାନେ)

ଏହିପରି ବିବାହ ଝିଅ, ଯେଉଁ ଘରକୁ ଯାଉଥାଏ, ସେହିଘର ( ବର ଘର ) ଯେଉଁ ଯେଉଁ ଚୋଟା ଥାଏ, ସେହି ସେହି ଚୋଟାର ନାମ ଧରି ପଦ୍ୟ ବୋଲି ଯାଇପାରେ ।

—୩—

( ଝିଅମାନେ ବିବାହ ହୋଇ ଶ୍ୱଶୁର ଘରକୁ ଯିବାବେଳେ ସେ ଯେଉଁ ଘରକୁ ଯାଉଥାଏ, ସେହି ଘରର ପରିବାରର ଗୁଣ ଚଳଣି ଦେଖି ଥଟ୍ଟା କରି ଗାଇବା ଗୀତ । )

ସିଡ୍‌ୱା ମା ମାନ୍ ସିନେ ଓ୍ୱାନେ
(ତୁମ ମାମୁଁର ଗୁଣ ଚର୍ଯ୍ୟ)

ନନଲେ ସିଡ୍‌ୱା ମା ମାନ ସିନେ ଓ୍ୱାନେ
(କୁନଲେ, ତୁମ ମାମୁଁର ଗୁଣ ଚର୍ଯ୍ୟ)

ନନଲେ ରେରେ ଦନା ସିନେ ଓ୍ୱାନେ
(କୁନଲେ ଦୁଇଦନ ଗୁଣ ଚର୍ଯ୍ୟ)

ନନଲେ ସିନେ ଓ୍ୱାନେ ମାସ୍ପିଚା
(କୁନଲେ ହଜପିବ ଗୁଣ ଚର୍ଯ୍ୟ)

—*—

# ଚିର ଶୋଷିତ ଏକ ଜାତି

ଶ୍ରୀ ବ୍ରଜକୁମାର ଶତପଥୀ

(ଆଦିବାସୀ ଅଞ୍ଚଳ ଭ୍ରମଣକାରୀ)

ଯେତେବେଳେ ମନୁଷ୍ୟ ଚନ୍ଦ୍ରରେ ଯାଇ ବାସ କରିବାକୁ ସମସ୍ତ ପ୍ରସ୍ତୁତ କରି ସାରିଲାଣି, ଓ ବିଜ୍ଞାନ ବଳରେ ଯାନ୍ତ୍ରିକ ମଣିଷ ମଧ୍ୟ ତିଆରି ହେବାକୁ ବସିଲାଣି, ସେତେବେଳେ ଏକ ଅଜ୍ଞ, ଚିର ଶୋଷିତ, ଅନ୍ୟାୟଗ୍ରସ୍ତ ଓ ବଞ୍ଚିତ ମଣିଷ ଜାତି ଯେ ଆମ ଓଡ଼ିଶାରେ ଅଛି ତାହା ଆଲୋଚନା କରିବାକୁ ସ୍ୱତଃ ଲଜ୍ଜା ଆସୁଅଛି । ଓଡ଼ିଶାର ଜନସଂଖ୍ୟା ଏକକୋଟି ପଚାଶ ଲକ୍ଷଙ୍କ ଭିତରେ ଆଦିବାସୀ ହେଉଛନ୍ତି ତେୟାଳିଶ ଲକ୍ଷ । ଓଡ଼ିଶାର ସମୁଦାୟ ଜନସଂଖ୍ୟାର ଏମାନେ ହେଲେ ପ୍ରାୟ ଏକ ତୃତୀୟାଂଶ । ଏହି ଲୋକମାନଙ୍କର ଅବସ୍ଥା ଦେଖିଲେ ଲୋକ ବହିରେ ପ୍ରଥମ ଅବସ୍ଥାରେ ବାସ କରୁଥିବା ଲୋକମାନଙ୍କଠାରୁ ଏମାନେ ଯେ ବିଶେଷ ପୃଥକ୍ ତାହା କହି ହେବ ନାହିଁ ।

ଆର୍ଯ୍ୟମାନେ ଆସି ଏହି ଆଦିମ ଅଧିବାସୀଙ୍କୁ ଜଙ୍ଗଲ ମଧ୍ୟକୁ ତଡ଼ିଦେଇ ସମତଳ ଓ ଶସ୍ୟଶ୍ୟାମଳା ଅଞ୍ଚଳରେ ବସବାସ କରିବାକୁ ଲାଗିଲେ । ସେମାନେ କେବଳ ଜଙ୍ଗଲର ଫଳମୂଳ ଓ ପଶୁପକ୍ଷୀ ଶିକାର କରି ଚଳୁଥିଲେ । କେତେକ ଶ୍ରେଣୀ ଓ ଗ୍ରୋଷ୍ଟ ଗ୍ରୋଷ୍ଟ ବ୍ୟବସାୟୀ ପ୍ରଥମେ ସେଠାକୁ ଯାଇ ତାଙ୍କ ପାଖରେ ବ୍ୟବସାୟ ଆରମ୍ଭ କଲେ । ସେମାନେ ଶୁଖୁଆ, ତେଲ, ଲୁଣ ପ୍ରଭୃତି ନେଇ ସେହି ଅଧିବାସୀଙ୍କୁ ବିକି ବଦଳରେ ଧାନ କମ୍ବା ଅନ୍ୟାନ୍ୟ ଫସଲ ଆଣୁଥିଲେ । ପଇସା କାରବାର ଜାଣି ନ ଥିବା ଏହି ଲୋକମାନଙ୍କୁ ଠକି ଏହି କୁଜ ବ୍ୟବସାୟୀମାନେ ବହୁ ଜିନିଷ ନେଇ ଆସୁଥିଲେ । ଏହି ବ୍ୟବସାୟ ସେମାନଙ୍କୁ ବହୁତ ଲାଭବାନ୍ କରିବାରୁ ସେମାନେ ପାଖ ଆଖରେ ବସବାସ କରି ରହିଲେ । ଏମାନଙ୍କ ପାଖରେ ବହୁ ପଇସା ଥିବାରୁ ଏମାନେ ମହାଜନ ମଧ୍ୟ ଆରମ୍ଭ କଲେ । ମୂର୍ଖ, ଅଶିକ୍ଷିତ ଲୋକଙ୍କ ପାଖରେ ମହାଜନ କରିବା ବଡ଼ ଲାଭପ୍ରଦ ଏହିମାନେ ଶେଷରେ ସାହୁକାର ନାମରେ ପରିଚିତ ହେଲେ ।

ବାହାର ଦୁନିଆ ଅଗ୍ରଗତି କରୁଥିବା ସମୟରେ ଆଦିବାସୀମାନେ କୌଣସି ସୁବିଧା ପାଇ ପାରିଲେ ନାହିଁ । ସାହୁକାରମାନେ

ସେମାନଙ୍କୁ ଋଣ ଦେଇ ସେମାନଙ୍କ ଜମି ଧରୁ ବନ୍ଧକ ରଖନ୍ତି ଓ ସୁଧର ହାର ଅତ୍ୟଧିକ ହୋଇଯାଏ । ଆଦିବାସୀମାନଙ୍କର ରୋଜଗାରର ଅନ୍ୟ କୌଣସି ରାସ୍ତା ନ ଥିବାରୁ ଓ କୃଷିଜମି ବନ୍ଧକ ଦେଇଥିବାରୁ ଋଣ ସୁଝି ପାରେନା । ସୁଧ ଓ ମୂଳ ଏଣେ ବଢି ଚାଲିଥାଏ, ତେଣେ ସାହୁକାର ଋଣ ଦେଇଥିବା ଟଙ୍କଠାରୁ ଅଧିକ ମୂଲ୍ୟର ଫସଲ ଜମିରୁ ଖାଉଥାଏ । ନିରୀହ, ଅଶିକ୍ଷିତ, ଆଦିବାସୀମାନେ ତାହା ଆଦୌ ବୁଝି ପାରନ୍ତି ନାହିଁ ।

ଭୋକ ଉପାସରେ ସେହି ଆଦିବାସୀମାନେ ପୁଣି ଧାଆନ୍ତି ସେହି ସାହୁକାର ପାଖକୁ । ସେମାନେ ଦୟା ଦେଖାଇଲା ପରି କିଛି ଏମାନଙ୍କ ମୁହଁରେ ପକାଇ ଧର୍ମାବତାର ସାଜନ୍ତି । ତେଣୁ ଆଦିବାସୀମାନେ ସେମାନଙ୍କୁ ଦେବତା ପରି ଭକ୍ତି ଓ ଭୟ କରନ୍ତି ।

ଏପରି ଅବସ୍ଥାରେ କୌଣସି ଲୋକ ତ ସାହୁକାରକୁ ନଗଦ କିଛି ସୁଝି ପାରେନା, ତେଣୁ ସାହୁକାର ଚୁକ୍ତି କରେ ଯେ ତା ଘରେ କେତେ ବର୍ଷ ଚାକିରି କଲେ ତା'ର ଋଣ ସୁଝିଯିବ । ଏହାକୁ ଗୋତି ପ୍ରଥା କହନ୍ତି । ଏମାନେ ବିନା ମଜୁରିରେ ଯାଇ ସାହୁକାର ଘରେ ଖଟନ୍ତି । ଏପରିକି ସେମାନେ ବନ୍ଧକ ଦେଇଥିବା ଜମିରେ ଖଟି ଫସଲ ସାହୁକାର ଘରେ ଦେଇ ଆସନ୍ତି, ଦେଖାଯାଏ ଶହେ ଟଙ୍କା ଋଣ ନେଇ ଏକାଧିକ ଏକର ଜମି ସାହୁକାରକୁ ଦେବା ସଙ୍ଗେ ସଙ୍ଗେ ୩୦।୪୦ ବର୍ଷ ତାର ଗୋତି ହେବ ବୋଲି ଚୁକ୍ତି ହୁଏ । କୌଣସି ଲୋକ ସମ୍ପୂର୍ଣ୍ଣ ସମୟ କାର୍ଯ୍ୟକରି ନ ପାରି ମରିଗଲେ ତା'ର ପୁଅ ଯାଇ ଖଟିବ । ଏମାନେ ବର୍ଷ ଠିକ୍ ଗଣି ନ ପାରି କେତେବର୍ଷ ଯେ ସାହୁକାରର କାମ କଲେ ତା'ର ଠିକ୍ ନ ଥାଏ । ଏପରି କି ଦୁଇ ପୁରୁଷ ପୂର୍ବରୁ କରଜ କରିଥିବା ଲୋକପାଇଁ ତା'ର ନାତି ଗୋତି ଲାଗୁଥିବା ଦେଖାଯାଏ । ଦିନସାରା ପରଘରେ ପରିଶ୍ରମ କରି ଖାଲି ହାତରେ ଘରକୁ ଫେରୁଥିବା ଲୋକର ପରିବାର କପରି ବଞ୍ଚେ, ତାହାହିଁ ସଭ୍ୟସମାଜକୁ ଆଶ୍ଚର୍ଯ୍ୟ ଲାଗେ । ଏହା କ୍ରୀତଦାସ ପ୍ରଥାଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ ।

ଏହାପରି ଦେଖାଗଲା ଯେ, କୌଣସି ଆଦିବାସୀମାନଙ୍କର ଜମି ଆଦୌ ନାହିଁ । ତେଣୁ ସରକାର ଆଇନ କଲେ ଯେ ଆଦିବାସୀଙ୍କ ଜମି କଲେକ୍ଟରଙ୍କ ବିନା ଅନୁମତିରେ କୌଣସି ଅଣଆଦିବାସୀ କିଣି ପାରିବେ ନାହିଁ । ଏହା ଫଳରେ ନାମକୁ ମାତ୍ର ଆଦିବାସୀଙ୍କ ନାମରେ ଜମି ରହିଲା,

କରୁ ଉତ୍କୃତ ଫସଲ ସାହୁକାରମାନେ ପାଇଲେ । ଜଣେ ସାହୁକାର ଅନ୍ୟ ଜଣେ ଆଦିବାସୀ ନାମରେ ମଧ୍ୟ ଜମି କିଣି ନିଜେ ଖାଇଲା । ଏହିପରି ଅଶିକ୍ଷିତ ଆଦିବାସୀମାନଙ୍କୁ ସବୁ ପ୍ରକାର ଚକ୍ରାନ୍ତର ବଶବର୍ତ୍ତୀ କରାଗଲା ।

ଏବେ ମାଲକାନ୍‌ଗିରି, ରାୟଗଡ଼ା, ଗୁଣୁପୁର ପ୍ରଭୃତି ଅଞ୍ଚଳରେ ଭୂଦାନ କର୍ମୀମାନେ ଗ୍ରାମଦାନ କରାଇ ଜମି ବଣ୍ଟନ କରି ଦେଉଛନ୍ତି । ଏହି କର୍ମୀମାନେ ଯେତେ ଯାହା କଲେ ବି ଲୋକମାନେ ସାହୁକାର ଫାନ୍ଦରେ ପଡ଼ୁଛନ୍ତି । କାରଣ ଦରିଦ୍ର ଅଭାବଗ୍ରସ୍ତ ଲୋକେ ସାହୁକାର ପାଖକୁ ଯିବାକୁ ବାଧ୍ୟ । ଯେଉଁ କେତେକ ଜମି ନିଜେ ଫସଲ କରନ୍ତି, ତାହା ଅମଳ ହେଲାମାତ୍ରେ ଖୁବ୍ କମ୍ ଦରରେ ବିକ୍ରୀ କରି ଋଣ ସୁଝନ୍ତି ଓ ଦରକାର ବେଳେ ବହୁ ଦାମ୍ ଦେଇ କିଣନ୍ତି । ଏମାନେ ଖୁବ୍ କମ୍ ଧାନ ଚାଷ କରନ୍ତି । ତଥାପି ସେମାନେ ଭାତ ଖାଆନ୍ତି ନାହିଁ । ମାଣ୍ଡିଆ ଜାଉ ଏମାନଙ୍କର ପ୍ରତିଦିନ ଖାଦ୍ୟ ।

ଏମାନେ ସମସ୍ତେ ଲୁଗା ପିନ୍ଧିବାକୁ ପାଆନ୍ତି ନାହିଁ । ଖଣ୍ଡିଏ ଦୁଇଖଣ୍ଡି ବ୍ୟତୀତ ବେଶୀ କାହାର ଲୁଗା ନ ଥାଏ । ତାହା ପୁଣି ଲେଙ୍ଗୁଟି ମାରନ୍ତି । ଅନେକ ଜାଗାରେ ସ୍ତ୍ରୀଲୋକମାନେ ପିନ୍ଧିବାକୁ ଲୁଗା ନ ପାଇ କେବଳ ଅଣ୍ଟା ତଳକୁ ବସ୍ତ୍ରାଚ୍ଛାଦିତ କରିଥାଆନ୍ତି । ଏମାନଙ୍କର ଯେ ଲଜ୍ଜା ନାହିଁ ବା ଜାଣିଶୁଣି ଏପରି ପିନ୍ଧନ୍ତି ତା ନୁହେଁ, ସେମାନେ ମଣିଷ ଦେଖିଲେ ମୁକୁଳିତ ବକ୍ଷକୁ ସେମାନଙ୍କର ଦୁଇହାତ ଦ୍ୱାରା ଲୁଚାଇବାକୁ ଚେଷ୍ଟା କରନ୍ତି । ଏଥିରୁ ଅନୁମାନ କରିହେବ ସେମାନଙ୍କ ପ୍ରକୃତ ଅବସ୍ଥା ।

ଏମାନେ ଏପରି ଅବସ୍ଥାରେ ବହୁ ବର୍ଷ ହେବ ପଡ଼ି ରହିଥିଲେ ମଧ୍ୟ ଏମାନଙ୍କ ପାଇଁ କୌଣସି ବ୍ୟବସ୍ଥା କରାଯାଇ ନାହିଁ, ଶିକ୍ଷାର ଯେଉଁ ବ୍ୟବସ୍ଥା କରାଗଲା ତାହା ସମୁଦ୍ରକୁ ଶଙ୍ଖେ ପରି । ତା ବ୍ୟତୀତ ଯେଉଁଠାରେ ସ୍କୁଲ ଅଛି ସେଠାରେ ୨୦।୨୫ଟି ଛାତ୍ରଙ୍କ ନାମ ଥିଲାବେଳେ ୩।୪ ଜଣ ପିଲା ସ୍କୁଲକୁ ଆସନ୍ତି । ସେ ବଣ ଜଙ୍ଗଲକୁ କୌଣସି ପରିଦର୍ଶକ ଯାଉ ନ ଥିବାରୁ ଓ ଶିକ୍ଷକମାନଙ୍କ କାର୍ଯ୍ୟକୁ କୌଣସି ଲୋକ ତଦାରଖ କରୁ ନ ଥିବାରୁ ଅଧିକାଂଶ ଦିନ ସ୍କୁଲ ବନ୍ଦ । ଯାହା ଫଳରେ ପ୍ରାୟ କେହି ଶିକ୍ଷିତ ବ୍ୟକ୍ତି ବାହାରି ପାରୁ ନାହାନ୍ତି ।

ଏହିପରି ଅବସ୍ଥାର ସୁଯୋଗ ନେଇ ସେ ଅଞ୍ଚଳରେ ନକ୍ସଲପନ୍ଥୀମାନଙ୍କର କ୍ରିୟାକଳାପ ଆରମ୍ଭ ହୋଇଛି । ସାହୁକାର ମାନଙ୍କଠାରୁ

ଜୋର ଜବରଦସ୍ତ ଧନ ଲୁଟ଼ି ନେଇ ସେମାନେ ବିପ୍ଳବ ଆରମ୍ଭ କରିବାକୁ ବସିଛନ୍ତି. ଆଦିବାସୀମାନେ ତ ଆଇନ ବେଆଇନ୍, ହିଂସା ଅହିଂସା କିଛି ବୁଝନ୍ତି ନାହିଁ । ନଚେତ୍ ଏତେଦିନ ଧରି ଅତି ନିର୍ମମ ଓ ବେଆଇନ୍ ଭାବରେ ଶୋଷିତ ହୋଇ ଆସୁ ନ ଥାନ୍ତେ, କିନ୍ତୁ ସେମାନଙ୍କର ବିବେକ ତ ଗୋଟାଏ କିଛି ଅଛି, ସେ ବିବେକ ଶୋଷଣର ପ୍ରତିବାଦ କରିବାକୁ ପ୍ରସ୍ତୁତ ଥିଲେ ମଧ୍ୟ କୌଣସି ସୁବିଧା ପାଏନା । ଯେ ହେତୁ ନକସଲପନ୍ଥୀମାନେ ସେମାନଙ୍କ ବିବେକକୁ କିଛି ପରିମାଣରେ ଚେତାଇ ଦେଇ ପାରିଛନ୍ତି ସେ ହେତୁ ସେମାନଙ୍କ ମଧ୍ୟରୁ କେତେକ ଆଗେଇ ଯାଇଛନ୍ତି । କିନ୍ତୁ ସେମାନେ ଯେ ପର୍ଯ୍ୟନ୍ତ ବିପ୍ଳବ, ବିଦ୍ରୋହ କ'ଣ, ତା'ର ନେତା କ'ଣ ଓ କ'ଣ ପାଇଁ ଏହା କରାଯିବ ତାହା ଭଲ ରୂପେ ନ ଜାଣି ଅନ୍ୟମାନଙ୍କୁ ଅନ୍ଧାନୁକରଣ କରୁଛନ୍ତି ସେ ପର୍ଯ୍ୟନ୍ତ କୌଣସି କାର୍ଯ୍ୟ ସଫଳ ହେବ ନାହିଁ ।

ଏହି ନକ୍ସଲପନ୍ଥୀମାନଙ୍କୁ ଦମନ କରିବାପାଇଁ ଏବେ ଓଡ଼ିଶା ସରକାର ଯାସୁ ପ୍ରତ୍ୟେକ ଗ୍ରାମରେ ରିଜର୍ଭ ପୋଲିସ ମୁତୟନ କରିଛନ୍ତି । ଏହି ଲୋକମାନଙ୍କୁ ସନ୍ଦେହ କଲେ ଗିରଫ କରିବାକୁ ଓ ଏପରିକି ଗୁଳି କରିବା'କୁ ଆଦେଶ ଦିଆଯାଇଛି । ପୋଲିସଙ୍କ ଯୋଗୁଁ ସେଠାରେ ନକ୍ସଲପନ୍ଥୀଙ୍କ ପ୍ରଭାବ କମିଯାଇଛି । କିନ୍ତୁ ଆଦିବାସୀମାନେ ବର୍ତ୍ତମାନ ମାତୃଭୂମିରୁ ଯାଇ କାନ୍ତାରରେ ପଡ଼ିଛନ୍ତି । ଏଣୁ ପୋଲିସମାନେ ଅଧିକାଂଶ ସ୍ଥାନରେ ଏମାନଙ୍କ ସରଳତା ଓ ଅଶିକ୍ଷାର ସୁଯୋଗ ନେଇ ସେମାନଙ୍କ ଠାରୁ କୁକୁଡ଼ା, ଛେଳି ଟଙ୍କା ପଇସା ନେଇ ଆସୁଛନ୍ତି । କିଏ ଦେବାକୁ ନାହିଁ କଲେ କିମ୍ବା ପଇସା ମାଗିଲେ ସେମାନଙ୍କୁ ନକ୍ସଲପନ୍ଥୀ କହି ମାଡ଼ ଦିଆଯାଉଛି ଓ ଜୋରିମାନା ନାମରେ ଟଙ୍କା ନିଆଯାଉଛି ।

ଏହା ଯେ ଅନ୍ୟାୟ ଓ ସେଥିପାଇଁ ଅଭିଯୋଗ କରାଯାଇ ପାରିବ ତାହା ସେମାନେ ଜାଣି ନ ଥିବାରୁ ଓ କାହା ପାଖରେ ଅଭିଯୋଗ କରାଯିବ ସେ ବିଷୟରେ ଅନଭିଜ୍ଞ ଥିବାରୁ ସେ ଅତ୍ୟାଚାର ସହ୍ୟ କରି ନେଉଛନ୍ତି । ଏହା ଫଳରେ ପ୍ରତିଶୋଧ ନେବାପାଇଁ ଏକ ଅଗ୍ନି ଯେ ସେମାନଙ୍କ ମନରେ ଜଳୁଥିବ ଏଥିରେ ସନ୍ଦେହ କରିବାର କିଛି ନାହିଁ, ଏପରି ଅବସ୍ଥାରେ ସେମାନେ କେବଳ ଭାବୁଛନ୍ତି ଯେ ନକସଲ୍‌ପନ୍ଥୀ ନେତାମାନେ କେବଳ ସେମାନଙ୍କ ବନ୍ଧୁ, ରକ୍ଷକ ଓ ନେତା ।

ଏ ସବୁ ଶୋଷଣର ଦୁଇଟି କାରଣ । ଗୋଟିଏ ହେଲା ସେମାନଙ୍କର ଅଶିକ୍ଷା ଦ୍ୱିତୀୟଟି ହେଲା ଅର୍ଥନୈତିକ ଦୁରବସ୍ଥା । ଶିକ୍ଷା ଓ ଆର୍ଥିକ ଅବସ୍ଥା ଅଙ୍ଗାଙ୍ଗି ଭାବରେ ଜଡ଼ିତ । କାରଣ ଅନେକ ଲୋକ ସେମାନଙ୍କ ପିଲାମାନଙ୍କୁ ଗାଈ (ପୋତ୍ର) ରଖିବାକୁ ପଠାନ୍ତି । ସେ ପିଲା-ମାନେ ତେଣୁ ପଢ଼ିବାକୁ ଆସନ୍ତି ନାହିଁ । ଦ୍ୱିତୀୟତଃ ଭୋକ ଉପାସରେ କ'ଣ ପାଠ ପଢ଼ିହେବ ? ଏହା ତ ଗଲା ଅର୍ଥ ନ ଥିବାରୁ ଶିକ୍ଷା ଦିଆଯାଇ ପାରୁନାହିଁ, ତା ବ୍ୟତୀତ ଆର୍ଥିକ ଉନ୍ନତି ପାଇଁ ମଧ୍ୟ ଶିକ୍ଷାର ଆବଶ୍ୟକ । ଯଦି ଏମାନେ ଶିକ୍ଷିତ ହୋଇ ଥାଆନ୍ତେ ତେବେ ସାହୁକାର ଏମାନଙ୍କୁ ଶୋଷଣ ତ କରିବାକୁ ସୁବିଧା ପାଆନ୍ତା ନାହିଁ ତା ବ୍ୟତୀତ ସେମାନେ ଅନ୍ୟାନ୍ୟ ବ୍ୟବସାୟ ମଧ୍ୟ ଆରମ୍ଭ କରି ଦିଅନ୍ତେ ।

ଶିକ୍ଷା ଓ ଆର୍ଥିକ ଅବସ୍ଥାର ଉନ୍ନତି ହେଲେ ସେମାନେ ସାହୁକାର ଘରକୁ ଋଣ ଆଣିବାକୁ ଯାଆନ୍ତେ ନାହିଁ, କି ଆଣିଲେ ମଧ୍ୟ ଏପରି ବେଆଇନ୍ ସର୍ତ୍ତ ରଖି ଆଣନ୍ତେ ନାହିଁ । ତେଣୁ ଶିକ୍ଷା ଦାନ ସଙ୍ଗେ ସଙ୍ଗେ ସେମାନଙ୍କ ଆର୍ଥିକ ଅବସ୍ଥାର ଉନ୍ନତି ପାଇଁ ବ୍ୟବସ୍ଥା କରାଗଲେ ଏମାନେ ସମସ୍ତଙ୍କ ଶୋଷଣରୁ ମୁକ୍ତି ପାଆନ୍ତେ । ଏଥିପାଇଁ ସରକାରୀ ଓ ବେସରକାରୀ ସ୍ୱେଚ୍ଛା ସେବକମାନଙ୍କର ଆବଶ୍ୟକ । ଏପରି ଦୁଇପଟରୁ ସାହାଯ୍ୟ ମିଳିଲେ ଅନ୍ତତଃ ଏମାନେ ମଣିଷ ସ୍ତରକୁ ଆସିପାରନ୍ତେ । ସରକାର ଯଦି ବାଧ୍ୟତାମୂଳକ ଭାବେ ସବୁ ସାହୁକାରମାନଙ୍କ ଠାରୁ ଜମି ନେଇ ଆସି ଆଦିବାସୀଙ୍କୁ ଫେରସ୍ତ କରିଦିଅନ୍ତେ ଓ କେତେକ ସ୍ୱେଚ୍ଛା-ସେବକ ରହି ସେମାନଙ୍କୁ ଶିକ୍ଷାଦାନ ତଥା ସଭ୍ୟତାର ଆଲୋକ ଦେଇ ପାରନ୍ତେ ତେବେ କିଛି କାମ ଆଗେଇ ପାରନ୍ତା ।

କେବଳ ଯେ, ଜମି ଆଣି ସେମାନଙ୍କୁ ଦେଇଦେଲେ ଚଳିବନି । କାରଣ କୃଷି ସରଞ୍ଜାମ କିଣିବା ପାଇଁ ସେମାନେ ପୁଣି ସେହି ସାହୁକାର ପାଖକୁ ଦଉଡ଼ିବେ ଓ ଜମି ବନ୍ଧା ଦେବେ । ତେଣୁ ବ୍ୟାଙ୍କ ଜାତୀୟକରଣ ପରେ ତ କୃଷକମାନଙ୍କୁ ଋଣ ଦିଆଯାଉଛି । ସେମାନଙ୍କୁ ମଧ୍ୟ ବ୍ୟାଙ୍କ ଋଣ ଦେବା ଉଚିତ । ଆମର ଶିକ୍ଷିତ-ଯୁବକ ସମାଜ ଏ ଦିଗରେ ଆଗେଇ ଆସି ଆଦିବାସୀ କଲ୍ୟାଣ କାର୍ଯ୍ୟରେ ଲାଗି ପଡ଼ନ୍ତୁ ।

—*—

# ଆଦିବାସୀ ଓ ଓଡ଼ିଆ ସଂସ୍କୃତି

ଡକ୍ଟର ମାୟାଧର ମାନସିଂହ

ଏହା ଖୁବ୍ କମ ଲୋକଙ୍କୁ ଜଣାଥିବ ଯେ, ମାତ୍ର ଦେଢ଼ଶ ବର୍ଷ ତଳେ, ୟୁରୋପୀୟ ପଣ୍ଡିତମାନେ, ୟୁରୋପ-ମହାଦେଶଠାରୁ-ସମ୍ପୂର୍ଣ୍ଣ-ବିଚ୍ଛିନ୍ନ ଓ ସହସ୍ର ସହସ୍ର କ୍ରୋଶ ଦୂରରେ ଅବସ୍ଥିତ ଏବଂ ଅସଭ୍ୟ ଅନୁନ୍ନତ ବୋଲି ଧରାଯାଇଥିବା ଭାରତ ବର୍ଷରେ, ୟୁରୋପର ଆଦର୍ଶ ଭାଷା ଗ୍ରୀକ୍ ଲାଟିନ୍ ସହିତ ଅସମ୍ଭବ ସାଦୃଶ୍ୟ ରଖିଥିବା ଓ ଅସାଧାରଣ ଭାବରେ ସମୃଦ୍ଧ, ସଂସ୍କୃତ ଭାଷା ଓ ସାହିତ୍ୟକୁ ଯେତେବେଳେ ଆବିଷ୍କାର କଲେ, ସେତେବେଳେହିଁ ଏକ ସ୍ୱତନ୍ତ୍ର ବିଦ୍ୟା ଭାବରେ "ନୃ-ତତ୍ତ୍ୱବିଜ୍ଞାନ"ର ସୂତ୍ରପାତ ହେଲା । ଅଡ଼ଲ୍ଫ୍ ହିଟ୍ଲର୍ ନିଜକୁ ଓ ଜର୍ମାନ୍ ଜାତିକୁ "ଆର୍ଯ୍ୟ" ମନେ କରି ଏବଂ କେବଳ "ଆର୍ଯ୍ୟ"ଜାତିର ହିଁ ପୃଥିବୀକୁ ଶାସନ ଓ ଭୋଗ କରିବାର ବିଧାତୃ-ଦତ୍ତ ଅଧିକାର ଅଛି ବୋଲି ପ୍ରଚାର କରାଇ, ଷାଠିଏ ଲକ୍ଷ ତଥା-କଥିତ "ଅନାର୍ଯ୍ୟ" ଇହୁଦୀଙ୍କୁ ହତ୍ୟା କରାଇଲେ ଏବଂ ଆର୍ଯ୍ୟ ଜାତିକୁ ସମଗ୍ର ଧରଣୀର ଶାସକ କରାଇବାର ଉତ୍ସାହରେ, ଦ୍ୱିତୀୟ ବିଶ୍ୱ-ଯୁଦ୍ଧ ଆରମ୍ଭ କଲେ । ଅଥଚ ଏହା ନିଶ୍ଚୟ କଥା ଯେ, ହିଟ୍ଲର୍ର ଗୋସେଇଁ ବାପ ହୁଏତ 'ଆର୍ଯ୍ୟ' ଶବ୍ଦ ଶୁଣି ନ ଥିଲେ, କି 'ସ୍ୱସ୍ତିକ' ଚିହ୍ନ କଣ ଜାଣି ନ ଥିବେ । କାଳିଦାସଙ୍କ ନାଟକାବଳୀର ପ୍ରତି ପୃଷ୍ଠାରେ ତ ଆମେ "ଆର୍ଯ୍ୟ" ବା "ଆର୍ଯ୍ୟ ପୁତ୍ର" ଶବ୍ଦକୁ ଭେଟିବା, କିନ୍ତୁ ସେକ୍ସପିଅରଙ୍କ ବିସ୍ତାରମୟ କାବ୍ୟ-ନାଟକ-ଜଗତରେ "ଆର୍ଯ୍ୟ" ଶବ୍ଦଟାହିଁ କାହିଁ ଦେଖା ଦେଇନ । ସେକ୍‌ସପିଅର ନିଜେ ଜାଣି ନ ଥିଲେ ଯେ, ବ୍ୟାସ, ବାଲ୍ମୀକି, କାଳିଦାସଙ୍କ ପରି ସେ ମଧ୍ୟ ଥିଲେ ପ୍ରକୃତରେ "ଆର୍ଯ୍ୟ" ।

ଆମେ ଭାରତୀୟମାନେ "ଆର୍ଯ୍ୟ" ସଭ୍ୟତା ନେଇ ଯେପରି ଗର୍ବ କରୁ, ସେ ଗର୍ବ ହିଟ୍ଲରଙ୍କ ଆର୍ଯ୍ୟ ଦାମ୍ଭିକତାଠାରୁ କିଛି ଊଣା ନୁହେଁ । ଗୋରା ଚମଡ଼ା ହେଲା ଆର୍ଯ୍ୟର ବଡ଼ ଅହଙ୍କାର । ଆମର ଧର୍ମ-ଶାସ୍ତ୍ର ଋକ୍‌ବେଦ ମଧ୍ୟ ସାଧାରଣ ଆର୍ଯ୍ୟ ଜନର କଳାଚମ ପ୍ରତି ଘୃଣା ଓ ତାଚ୍ଛଲ୍ୟରେ ପରିପୂର୍ଣ୍ଣ । କେବଳ ଚମଡ଼ାର ରଙ୍ଗର ତଫାତ୍ ଯୋଗୁହିଁ,

ଯେଉଁ ଭାରତୀୟମାନେ ହରପ୍ପା ଓ ମହେଞ୍ଜୋଦାରୋର ସମୁନ୍ନତ ପୌର-ସଭ୍ୟତାକୁ ଏ ମାଟିରେ ଠିଆ କରାଇ ସାରିଥିଲେ, ଋକ୍‌ବେଦୀୟ ଆର୍ଯ୍ୟ-ମାନେ ସେମାନଙ୍କୁ ମଧ୍ୟ "ଦସ୍ୟୁ", "ଦାସ" ଓ "କୃଷ୍ଣ" ଇତ୍ୟାଦି ତାଚ୍ଛଲ୍ୟ-ବ୍ୟଞ୍ଜକ ଶବ୍ଦରେ ବର୍ଣ୍ଣନା କରିଛନ୍ତି । ଆର୍ଯ୍ୟମାନଙ୍କର ନଗର-ସଭ୍ୟତା ନ ଥିଲା । ସେମାନେ ବସ୍ତୁତଃ ଥିଲେ କୃଷକ, ଶିକାରୀ ଓ ଗୋପାଳକ । ଏ ମାଟିରେ ପୂର୍ବରୁ ଗଢ଼ି ଉଠିଥିବା ହରପ୍ପା, ମହେଞ୍ଜୋଦାରୋ ପ୍ରଭୃତି ସମୃଦ୍ଧ ନଗର ବା 'ପୁର'କୁ ଧ୍ୱଂସ ଓ ଲୁଣ୍ଠନ କରିବାରେ ସେମାନେ ଗର୍ବ ଓ ଆନନ୍ଦ ପାଉଥିଲେ । ସେଥିପାଇଁ ତାଙ୍କ ଦଳ-ପତିର ଗୌରବାବହ ନାମ ଥିଲା "ପୁରନ୍ଦର", ଯାହାକି ପରେ ଦେବ-ଦଳପତି ଇନ୍ଦ୍ରଙ୍କୁ ମଧ୍ୟ ବୁଝାଇଲା । ନୃତତ୍ତ୍ୱବିତ୍‌ମାନଙ୍କ ମତରେ, ବିଶ୍ୱ-ସଭ୍ୟତା ଓ ସଂସ୍କୃତିକୁ ଆର୍ଯ୍ୟ-ଗୋଷ୍ଠୀର ଦାନ ଅନ୍ୟ ସକଳ ଗୋଷ୍ଠୀ ମଧ୍ୟରେ ସର୍ବୋତ୍ତମ ହେଲେହେଁ, ସେମାନଙ୍କର କଳା-ଗୋରା-ବିଦ୍ୱେଷ ମଧ୍ୟ ଯେ, ସମଗ୍ର ମାନବିକ ଚିନ୍ତାକୁ କଳୁଷିତ କରି ଆସିଛି, ଏଥିରେ ମଧ୍ୟ ସନ୍ଦେହ ନାହିଁ । ଏ ଘୃଣା ଏପରି ସୁପ୍ରତିଷ୍ଠିତ ଯେ, ଶ୍ରୀମଦ୍ ଭଗବଦ୍ ଗୀତା ପରି ଗ୍ରନ୍ଥରେ ମଧ୍ୟ, ଧର୍ମ-ସଂସ୍ଥାପନା କରିବାକୁ ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି ବୋଲି ପ୍ରଚାର କରୁଥିବା ସ୍ୱୟଂ-ଈଶ୍ୱର-ରୂପୀ ଶ୍ରୀକୃଷ୍ଣ, ଭକ୍ତ-ଭାଇ-ଓ-ସଖା ଅର୍ଜୁନଙ୍କ-ପ୍ରତି ଭର୍ତ୍ସନା କରିବାକୁ ଯାଇ ପ୍ରଥମେ, "ଅନାର୍ଯ୍ୟ" ଶବ୍ଦ ବ୍ୟବହାର କରିଛନ୍ତି । ଈଶ୍ୱର ବୋଲାଉଥିବା କୌଣସି ଲୋକ ଆଖିରେ ଆର୍ଯ୍ୟ-ଅନାର୍ଯ୍ୟ ଭେଦ ଆସିବ କିପରି ?

ଯାହାହେଉ, ଶହେ ବର୍ଷର ନୃତତ୍ତ୍ୱ-ଗବେଷଣା ଫଳରେ ଏବେ ସଫା ବୁଝାଯାଉଛି ଯେ, ହଜାର ବର୍ଷର ମାନବିକ ମିଶ୍ରଣ ଫଳରେ ପୃଥିବୀରେ କାହାରି ରକ୍ତ ବିଶୁଦ୍ଧ ରହି ଯାଇଛି କହିବା ଘୋର ମିଥ୍ୟା ପ୍ରଚାର ମାତ୍ର । ସମଗ୍ର "ଆର୍ଯ୍ୟାବର୍ତ୍ତ"ରେ ମଧ୍ୟ ଆଜି ଜଣେହେଲେ ଲୋକ ପାଇବାନି, ଯେ କି କହିପାରିବ ଯେ, ସେ ବିଶୁଦ୍ଧ 'ଆର୍ଯ୍ୟ' । ସାତ ହଜାର ବର୍ଷର ମିଶାମିଶି ଫଳରେ, ଆର୍ଯ୍ୟ-ରକ୍ତରେ ବହୁ ପ୍ରକାର ଅନାର୍ଯ୍ୟ ରକ୍ତ ମିଶି ଯାଇଛି । ଏପରିକି, ଏବର ହିନ୍ଦୁ-ସଂସ୍କୃତିର ପ୍ରଧାନ ସ୍ତମ୍ଭ, କୃଷ୍ଣ ଦ୍ୱୈପାୟନ ବ୍ୟାସ, କେଉଟୁଣୀର ପୁଅ ଭାବରେ ଏକ ପ୍ରକାର "ଅନାର୍ଯ୍ୟ" ଥିଲେ ବୋଲି କହିବାକୁ ହେବ ।

କିନ୍ତୁ ସୁଖର କଥା, ଓଡ଼ିଶାର ସଂସ୍କୃତିରେ ଆର୍ଯ୍ୟ—ଅନାର୍ଯ୍ୟ ଭାବ ଏକପ୍ରକାର ନ ଥିଲା କହିଲେ ଚଳେ । ଧର୍ମ ଓ ରାଜନୀତି ଉଭୟ କ୍ଷେତ୍ରରେ, ଏ ରାଜ୍ୟର ପ୍ରାଚୀନ ନେତା—ନାୟକମାନେ, ଆର୍ଯ୍ୟ ଓ ଅନାର୍ଯ୍ୟ ଉଭୟ ସଂସ୍କୃତିର ଏକ ମନୋଜ୍ଞ ସମ୍ମିଶ୍ରଣ ଆଣିବାକୁ ଚେଷ୍ଟା କରିଥିଲେ ଏବଂ ଅଦ୍ଭୁତ ଭାବରେ ସଫଳତା ହାସଲ କରିଥିଲେ । ସେମାନେ ଅନାର୍ଯ୍ୟ-ଦେବତାକୁ ଜାତୀୟ ଦେବତା ଭାବରେ ଗ୍ରହଣ କରି, ତାଙ୍କୁ ନାମ ଦେଇଦେଲେ 'ଜଗନ୍ନାଥ' ଏବଂ ସେଠି ଗୌର ଚର୍ମ ବ୍ରାହ୍ମଣ ଆଲିଙ୍ଗନ କଲା କୃଷ୍ଣ ଚର୍ମ ଶବରଙ୍କୁ, ସେହି ଜଗନ୍ନାଥର ସମସେବକ ଭାବରେ । ତେଣେ, ଆମେ ପୁଣି ପ୍ରାୟ ପ୍ରତ୍ୟେକ ଗଡ଼ଜାତରେ ଦେଖିବା ଯେ, କେବଳ ବ୍ରାହ୍ମଣ-ପୁରୋହିତର ସଂସ୍କୃତ ମନ୍ତ୍ର, କୌଣସି ନୂଆ ରାଜାକୁ ଚରମ ସ୍ୱୀକୃତି ଦେବାରେ ସମର୍ଥ ହେଉ ନ ଥିଲା । ସେ ଚରମ ସ୍ୱୀକୃତି ନୂତନ ରାଜା ପାଉଥିଲେ, ତଥାକଥିତ "ଅନାର୍ଯ୍ୟ" ବନବାସୀମାନଙ୍କର ଦଳପତିଙ୍କ "ହଁ"ରୁ । ଘୁମୁସର ଓ ଦଶପଲ୍ଲା ପ୍ରଭୃତି ରାଜ୍ୟରେ କନ୍ଧ-ପ୍ରଜାମାନଙ୍କର, ସେମାନଙ୍କର ରାଜା ପାଇଁ ଅକାତର ରକ୍ତ-ଦାନ ଓ ଜୀବନ-ଦାନ, ଏକ ମହନୀୟ ଓ ଅବିସ୍ମରଣୀୟ କାହାଣୀ । କୌଣସି ଭାରତୀୟ ଭାଷା, ଖ୍ରୀମାଗୋଇଙ୍କ ପରି ଏକ ନିରକ୍ଷର ବନବାସୀର ଉଚ୍ଚକୋଟିର ଭଜନ ଦ୍ୱାରା ଋଦ୍ଧିମନ୍ତ ହୋଇ ଉଠିନାହିଁ, ଯେପରି ହୋଇଛି, ଓଡ଼ିଆ ଭାଷା । ସାରଳାଦାସ-ବଳରାମ ଦାସଙ୍କ ଠାରୁ ଆରମ୍ଭ କରି, ରାଧାନାଥ ରାୟ ଓ ଗୋପୀନାଥ ମହାନ୍ତିଙ୍କ ପର୍ଯ୍ୟନ୍ତ, ବନବାସୀଙ୍କ ସାମାଜିକ ଜୀବନ ଯେପରି ଉଷ୍ମ ସହାନୁଭୂତି ଓ ମର୍ଯ୍ୟାଦାର ସହିତ, ଓଡ଼ିଆ ସାହିତ୍ୟରେ କ୍ରମାଗତ ବର୍ଣ୍ଣିତ ହୋଇ ଆସିଛି, ସେପରି ଅନ୍ୟ କୌଣସି ଆଧୁନିକ ଭାରତୀୟ ଭାଷାରେ ଘଟିଛି ବୋଲି ଜଣାନାହିଁ । ସାଧାରଣ ଓଡ଼ିଆର ନାଗରିକତା ବନବାସୀ-ଜୀବନ ସହିତ ଏପରି ଘନିଷ୍ଠ-ସଂପୃକ୍ତ ହୋଇପାଇଛି ଯେ, ଖ୍ରୀ. ପୂ. ତୃତୀୟ ଶତାବ୍ଦୀର ଅଶୋକଙ୍କର ସ୍ପେସାଲ କଳିଙ୍ଗ-ଅନୁଶାସନରେ, "ଅଟବିକ" ବା ବନବାସୀ ଉପଜାତିମାନଙ୍କୁ ଲକ୍ଷ୍ୟ କରି ସ୍ୱତନ୍ତ୍ର ନିର୍ଦ୍ଦେଶ ଦିଆଯାଇଛି । ଅଶୋକଙ୍କ ଦ୍ୱାରା ବିଜିତ ହେଲା ପରେ ମଧ୍ୟ, ଓଡ଼ିଶାର ବନବାସୀମାନେ ଯେ ତାଙ୍କର ଏହି ଜନ୍ମ ମାଟିର ସମ୍ମାନ ପାଇଁ ଗରିଲା-ଯୁଦ୍ଧ ଚଳାଇଥିଲେ, ଅଶୋକ-ଅନୁଶାସନରୁ ଏହା ସ୍ପଷ୍ଟ ସୂଚିତ ।

ଆର୍ଯ୍ୟ-ଅନାର୍ଯ୍ୟ ବା ପୁରବାସୀ ଓ ବନବାସୀମାନଙ୍କ ଭିତରେ ଏ ପ୍ରକାର ଅପୂର୍ବ ମନୋହର ମିଶ୍ରଣ-ମିଳନର ଐତିହ୍ୟ, ଓଡ଼ିଶା ମାଟିରେ ସମଗ୍ର ଇତିହାସ ଧରି ପ୍ରବହମାନ ଥିଲାବେଳେ, ସ୍ୱାଧୀନତା ପରେ ମଧ୍ୟ, ଆଜି ଅନ୍ତତଃ ଓଡ଼ିଶା ମାଟିରେ, "ଆଦିବାସୀ" ବୋଲି ଏକ ସମସ୍ୟା ଦେଖାଯିବା ବା ଆଲୋଚିତ ହେବା, ଉଚିତ କି ? ପ୍ରଶ୍ନ, ଭୁବନେଶ୍ୱରର ପଣ୍ଡାମାନଙ୍କୁ ଦେଖିଲେ, ସେମାନଙ୍କ ଭିତରୁ ଅଧିକାଂଶ ଯେ "ଆଦି", ଏଥିପାଇଁ ପ୍ରମାଣ ଖୋଜି ଯିବାକୁ ହେବ ନାହିଁ । ଅନ୍ୟ ପକ୍ଷରେ, ମୁଁ ଇନ୍‌ସ୍ପେକ୍ଟର ଥିଲାବେଳେ, ଫୁଲବାଣୀ ଜିଲ୍ଲାରେ ଗୋଟିଏ ମାଇନର ସ୍କୁଲ ଦେଖି ଆସିବା ଭିତରେ ତତ୍‌କାଳୀନ ଓ ତତ୍‌କାଳୀନ ଶ୍ରୀ-ମଲ୍ଲିକ-ନାମଧାରୀ କନ୍ଧ ଏମ୍. ଏଲ୍. ଏ.ଙ୍କୁ ଯେତେବେଳେ ମୁଁ ପ୍ରଥମ ଭେଟିଲି, ସେତେବେଳେ ମନେ ମନେ ବିସ୍ମୟାଭିଭୂତ ହୋଇ ପଡ଼ିଥିଲି । କାରଣ ସେ ଭଦ୍ରଲୋକ ଏପରି ସୌମ୍ୟଦର୍ଶନ ଓ ସୁବେଶ-ବିନ୍ୟସ୍ତ ଥିଲେ ଯେ, ତାଙ୍କଠାରେ ମୁଁ ମୋର ଅନାର୍ଯ୍ୟ "କନ୍ଧ" ଧାରଣା କୌଣସି ମତେ ଆରୋପ କରି ପାରିଲି ନାହିଁ ।

ତେଣୁ ଏହି ଐତିହାସିକ ମାଟିରେ କାହାର ରକ୍ତ 'ଆଦି' ବା 'ମଧ୍ୟ' ବା 'ଅନ୍ତ' ସେପରି ବିଚାର ଏକାନ୍ତ ଅଯୌକ୍ତିକ ଓ ଅନାବଶ୍ୟକ ମନେ ହେଉଛି । ଓଡ଼ିଆ, ବରବର ଗୋଟାଏ ଜାତି ହୋଇ ରହିବାର ଶିଖି ଆସିଛି । ଖାରବେଳ-କପିଳେନ୍ଦ୍ର-ନରସିଂହଙ୍କ ସାମ୍ରାଜ୍ୟ ଓ ବିଜୟ—ଗୌରବ ପାଇଁ ଏ ମାଟିର ପାଇକ-ଖଣ୍ଡାଇତେ ଯେତିକି ରକ୍ତ ଢାଳିଛନ୍ତି, ତାଠୁଁ କମ ରକ୍ତ ଢାଳି ନାହାନ୍ତି ଏ ମାଟିର କନ୍ଧ-ଭୂୟାଁ-ଜୁଆଙ୍ଗ-ସାନ୍ତାଳମାନେ । ଗଜପତିଙ୍କର ସାମନ୍ତ-ରାଜାମାନଙ୍କର 'ସୈନ୍ୟ' କହିଲେ ଯେ ମୁଖ୍ୟତଃ ବୁଝାଉଥିଲେ, ବନବାସୀ ଉପଜାତି-ଗୋଷ୍ଠୀ, ତାହା ରାଧାନାଥଙ୍କ 'ଯାଜାତି କାବ୍ୟର ଉପସଂହାର'ରେ ବର୍ଣ୍ଣ-ମଞ୍ଜୁଳ ହୋଇ ବର୍ଣ୍ଣିତ ହୋଇଛି । ଜନ୍ମ ମାଟିରୁ ବହୁ ଦୂର ଦୂର ଦେଶମାନଙ୍କରେ, ରଣକ୍ଷେତ୍ରରୁ ବିଶ୍ରାମ ନେବା କାଳରେ, ଉତ୍କଳୀୟ ସମର-ବାହିନୀ-ମାନଙ୍କରେ କନ୍ଧ-ଭୂୟାଁ-ସାନ୍ତାଳମାନଙ୍କର ଘୁଙ୍ଗୁଡ଼ୋଲକ ସହିତ ଉପଜାତି ନୃତ୍ୟରୁ, ଖୁବ୍ ସମ୍ଭବତଃ, ଓଡ଼ିଶାର ସୁପ୍ରସିଦ୍ଧ ବୀରରସାତ୍ମକ ଛଉ-ନୃତ୍ୟର ଉଦ୍ଭବ ହୋଇଛି । ମା ଓଡ଼ିଶାପାଇଁ ଧଳା-କଳା, ବ୍ରାହ୍ମଣ-ଚଷା, ପୁରବାସୀ

ଓ ବନବାସୀ, ଏ ଦେଶର ସକଳ-ଶ୍ରେଣୀର ପ୍ରଜା, ଶତ ଶତ ବର୍ଷ ଧରି ଏକାଠି ମୁଣ୍ଡ ଦେଇଛନ୍ତି, ଜାତି-ବର୍ଣ୍ଣ-ବିଶ୍ୱାସ ଭୁଲି; ଏକାଠି ଖାଇଛନ୍ତି, ଶୋଇଛନ୍ତି ଓ ନୃତ୍ୟ କରିଛନ୍ତି । ଗଜପତିର ଆହ୍ୱାନ ଓ ସମ୍ମାନ ଏହି ବିରାଟ ଐତିହାସିକ ଜାତିକୁ ଅପୂର୍ବ ମନୋଜ୍ଞ ଏକପ୍ରାଣତା ଆଣି ଦେଇ ପାରିଥିଲା ।

ଆମେ ଆଜି ସେହି ମନୋଜ୍ଞ ଐକ୍ୟକୁ ଫେରାଇ ଆଣି ପାରିବାନି କି ? ଏ ବ୍ୟାପାର ଓଡ଼ିଶା ମାଟିରେ ଯେତେ ସହଜସାଧ୍ୟ ହେବ, ଭାରତର ଅନ୍ୟ ପ୍ରାନ୍ତରେ ତାହା ସମ୍ଭବ ହେବ ନାହିଁ । କାରଣ, ଏକ-ପ୍ରାଣତାର ଏ ଐତିହ୍ୟ, ଭାରତର ଅନ୍ୟ କୌଣସି ରାଜ୍ୟରେ ନାହିଁ । ଅନ୍ତତଃ ଓଡ଼ିଶା ମାଟିରେ "ଆଦିବାସୀ" ଓ "ପୁରବାସୀ" ବୋଲି ଦୁଇଟା କଥା ଶୁଣା ନ ଯାଉ ଏବଂ ଶୁଣା ମଧ୍ୟ ନ ଯାଉ ଯେ, ଓଡ଼ିଶା ସରକାରଙ୍କ ତଳେ କୌଣସି ଆଦିବାସୀ ଗୋଷ୍ଠୀ ନିଜକୁ ଅସନ୍ତୁଷ୍ଟ ବା ଅବହେଳିତ ମନେ କରୁଛନ୍ତି । ଆସ ଆଜି ଆମେ ଅକୁଣ୍ଠ ଉତ୍ସାହରେ, ସେହିମାନଙ୍କ ଦେବତା 'ଜଗନ୍ନାଥ'ଙ୍କର ଚକ୍ଷୁଦ୍ୱାରା, ସେମାନଙ୍କ ପାଇଁ ମେଳି କରିଦେବା । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଆଖି ତଳେ, ଯେମିତି ବ୍ରାହ୍ମଣ ଓ ଶବର ଦୁହେଁ ମିଶି ଦାରୁ-ବ୍ରହ୍ମଙ୍କୁ ଯେପରି ସମୁଦ୍ରରୁ ଟେକି ଆଣି-ଥିଲେ, ଆଜି ସେହିପରି, ଓଡ଼ିଆ ଜାତିକୁ ଉପରକୁ ଟେକିବା ପାଇଁ, ଦୁହେଁ ଏକାଠି, ଏକା ଉତ୍ସାହରେ କାନ୍ଧ ଲଗେଇ ଦିଅନ୍ତୁ । ଆମେ ସମସ୍ତେ ମିଶି ଯିମିତି ପୂର୍ବେ ଗଜପତି-ଶାସନ-ତଳେ ଏକ ମନୁଷ୍ୟ ହୋଇ ଜାତି ପାଇଁ ବଞ୍ଚୁଥିଲେ ଓ ମରୁଥିଲେ, ଆଜି ମଧ୍ୟ ସେହି ଉତ୍ସାହରେ ମାତି ଉଠୁ । ସମଗ୍ର ଏହି ଉପ-ମହାଦେଶରେ ଓଡ଼ିଶାହିଁ ଏହି ପ୍ରକାର ଜାତୀୟ ସଂହତିର ଅପୂର୍ବ ଆଦର୍ଶ ଦେଖାଉ ।



# ଜାମଶୋଳାର ଆଦିବାସୀ

ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ଏମ୍. ଏ. ଓ: ଏଫ୍: ଏସ୍.

ମୟୂରଭଞ୍ଜ ଜିଲ୍ଲାର ବାରିପଦା ସହରଠାରୁ ଜାତୀୟ ରାଜପଥରେ ପ୍ରାୟ ପଚାଶ ମାଇଲ ଯିବା ପରେ ବିହାର ପ୍ରଦେଶର ସୀମା ଆରମ୍ଭ ହୁଏ । ସ୍ୱର୍ଣ୍ଣପ୍ରସୂ ଅତୀତର ସାକ୍ଷୀରୂପେ ସୁବର୍ଣ୍ଣରେଖା ଏହିଠାରେ ଓଡ଼ିଶା ଓ ବିହାରର ବିଭାଜକ ରେଖା ରୂପେ ପ୍ରବହମାନ । ସୁବର୍ଣ୍ଣରେଖାର ଉତ୍ତର କୂଳରେ ଜାମଶୋଳା ଗୋଟିଏ କ୍ଷୁଦ୍ର ଗ୍ରାମ । ଗ୍ରାମର ଲୋକସଂଖ୍ୟା ପ୍ରାୟ ଦୁଇଶହ । ଏହା ବିହାର ପ୍ରଦେଶ ସିଂହଭୂମ ଜିଲ୍ଲାର ଅନ୍ତର୍ଗତ । ସୁବର୍ଣ୍ଣରେଖାର ଦକ୍ଷିଣ କୂଳରେ କେତୋଟି ଛୋଟ ଛୋଟ କୁଡ଼ିଆ ଘର ଦେଖିବାକୁ ମିଳେ । ସେଥିମଧ୍ୟରୁ ପ୍ରାୟ ଦୁଇଶହ ଗୋଟି କୁଡ଼ିଆ ଘରକୁ ନେଇ କୁଅଁରଡ଼ିହ ଗ୍ରାମର ସୃଷ୍ଟି । ସେହିପରି ପ୍ରାୟ ଦଶଗୋଟି ଘରକୁ ନେଇ ଭୁରୁସାଣୀ ଓ ପ୍ରାୟ ପଚିଶ ଗୋଟି ଘରକୁ ନେଇ ତାହିଯାହି ଗ୍ରାମ ଗଠିତ ହୋଇଛି । 'ଜାମଶୋଳାଘାଟ' ନାମଟି ସଂପୂର୍ଣ୍ଣ ନୂତନ । ଓଡ଼ିଶାର କୌଣସି ଭୂଗୋଳ ପୁସ୍ତକ ବା ମାନଚିତ୍ରରେ ଏହା ଦେଖିବାକୁ ମିଳିବ ନାହିଁ । ଏହାର ସୃଷ୍ଟି ଏକ ପୁରୁଷକାଳରୁ ମଧ୍ୟ କମ୍ । ଦ୍ୱିତୀୟ ପୃଥିବୀ ମହାସମର ପରେ ବିଶେଷତଃ ଭାରତ ସ୍ୱାଧୀନତା ହାସଲ କରିବା ଉତ୍ତାରେ ଖାଦ୍ୟଶସ୍ୟାଦି ଅତ୍ୟାବଶ୍ୟକୀୟ ପଦାର୍ଥର ଯୋଗାଣ ପ୍ରଶ୍ନ ଯେତେବେଳେ ଗୁରୁତର ହୋଇ ପଡ଼ିଲା, ସେତେବେଳେ ଯୋଗାଣ ବିଭାଗର ସୃଷ୍ଟି ହେଲା ଏବଂ ବିଭିନ୍ନ ରାଜ୍ୟ ସୀମାନ୍ତରେ ଯାଞ୍ଚଦ୍ୱାର ( Check Gate ) ମାନ ପ୍ରତିଷ୍ଠା କରାଗଲା । ସେହି ସମୟରେ ଓଡ଼ିଶାର ଏହି ଉପାନ୍ତ ଅଞ୍ଚଳରେ ମଧ୍ୟ ଏକ ଯୋଗାଣ ଯାଞ୍ଚଦ୍ୱାର ସ୍ଥାପିତ ହେଲା । ସେତେବେଳେ ଏହି ଅଞ୍ଚଳକୁ 'ଜାମଶୋଳାଘାଟ' ନାମରେ ନାମିତ କରାଗଲା; କିନ୍ତୁ ସୁବର୍ଣ୍ଣରେଖାର ଉତ୍ତରପ୍ରାନ୍ତସ୍ଥିତ 'ଜାମଶୋଳା' ଗ୍ରାମ ଅତି ପ୍ରାଚୀନ ଗ୍ରାମ । ବହୁ ପୂର୍ବକାଳରେ ଏହି ଗ୍ରାମର ଲୋକେ ସୁବର୍ଣ୍ଣରେଖା ଗର୍ଭରୁ ସ୍ୱର୍ଣ୍ଣରେଣୁ ସଂଗ୍ରହ କରି ସୁଖରେ ଜୀବନଯାପନ କରୁଥିଲେ ବୋଲି ଶୁଣିବାକୁ ମିଳେ । ସେହି ଗ୍ରାମର ଉପକଣ୍ଠରେ

ଜାମେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ । ମନ୍ଦିରଟି ଅବଶ୍ୟ ପ୍ରାଚୀନ ନୁହେଁ । ପ୍ରାୟ ଆଠ ବର୍ଷ ତଳେ ଜାତୀୟ ରାଜପଥରେ ଯେତେବେଳେ ସୁବର୍ଣ୍ଣରେଖା ଉପରେ ସେତୁ ନିର୍ମିତ ହେଲା, ସେହି ସମୟରେହିଁ ଏହି ମନ୍ଦିର ନିର୍ମାଣ କରାଯାଇଛି; କିନ୍ତୁ ତା ପୂର୍ବରୁ ଜାମେଶ୍ୱର ମହାଦେବ ସେଠାରେ ଗୋଟିଏ ଭଗ୍ନ ମନ୍ଦିରରେ ବହୁ ପ୍ରାଚୀନକାଳରୁ ପୂଜା ପାଇ ଆସୁଥିଲେ । ଏହି ମହାଦେବ 'ଜାମେଶ୍ୱର'ଙ୍କ ନାମାନୁସାରେହିଁ ଗ୍ରାମଟିର ନାମ 'ଜାମେଶୋଲା' ରଖାଯାଇଥିବା ସ୍ପଷ୍ଟ ଅନୁମେୟ ।

## ଜାମଶୋଳା—ପ୍ରକୃତ ରାଜ୍ୟର ସେବାଦାସୀ:

ଜାମଶୋଲାଘାଟ ଅଞ୍ଚଳ ନଗର ସଭ୍ୟତାଠାରୁ ବହୁ ଦୂରରେ ଏକ ବିଚ୍ଛିନ୍ନାଞ୍ଚଳ ରୂପେ ଅବସ୍ଥିତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହିଠାରୁ ପଚିଶ ମାଇଲ ଦକ୍ଷିଣରେ ବାରିପଦା ସହର ଏବଂ ପାଞ୍ଚ ମାଇଲ ଉତ୍ତରରେ ଏକ ବୃହତ୍ ଗ୍ରାମ ବହରାଗୁଡ଼ା ଅବସ୍ଥିତ । ଏହି ଦୁଇ ପ୍ରାନ୍ତର ମଧ୍ୟବର୍ତ୍ତୀ ପାଖ ତିରିଶ ମାଇଲ ଅଞ୍ଚଳ-ଗୁଳ୍ମ ଉଦ୍ୟାନ-ପୂର୍ଣ୍ଣ ଓ ଜନବସତି-ବିରଳ । ତଥାପି ଏହି ସ୍ୱଳ୍ପ ଜନାକୀର୍ଣ୍ଣ ଉଦ୍ୟାନ-ପୂର୍ଣ୍ଣ ଅଞ୍ଚଳର ଦର୍ଶନରେ ମରୁଭୂମିର ଶୁଷ୍କତା, ରୁକ୍ଷତା ବା ନୀରସତା ଅନୁଭୂତ ହୁଏନାହିଁ । ଏହି ଅଞ୍ଚଳ ପ୍ରତି ପ୍ରକୃତି ମାତା ସତେ ଯେପରି ବେଶ୍ ଦୟାଶୀଳା; ତେଣୁ ଏହା ଅପରିମିତ ପ୍ରାକୃତିକ ବିଭବରେ ଭରପୂର । କଳନାଦିନୀ ସୁବର୍ଣ୍ଣରେଖାର ମୃଦୁ-ମଧୁର କଳଗୀତ ସୁଲୁସୁଲୁ ମନ୍ଦ-ମଳୟର ଚିତ୍ତୋଲ୍ଲାସକ ଆହ୍ଲାଦନ, ସୁବାସଯୁକ୍ତ ବିଭିନ୍ନ ବନ୍ୟପୁଷ୍ପର ବିମୋହନ ସୌରଭ ଯେକୌଣସି ରସଗ୍ରାହୀ ମାନସ-ସରୋବରରେ ଅପୂର୍ବ ପ୍ଲାବନ ସୃଷ୍ଟି କରି ତାକୁ ଉଦ୍‌ବେଳିତ କରିବ, ଏଥିରେ ସନ୍ଦେହ ନାହିଁ । ସର୍ପିଳ ସୁବର୍ଣ୍ଣରେଖାର ପ୍ରାନ୍ତବର୍ତ୍ତୀ ସୁଗୀୟ ଶିଳାଶ୍ରେଣୀ ଉପରେ ଦଣ୍ଡାୟମାନ ହୋଇ ନୌକାରୋହୀ ମତ୍ସ୍ୟଜୀବୀ-ମାନଙ୍କର ଗତିବିଧି ଅବଲୋକନ କଲେ କିମ୍ବା ସୁଦୀର୍ଘ ସେତୁ ପ୍ରାନ୍ତରେ ଆରୋହଣ କରି ଦିଗ୍‌ବଳୟ ତଳେ ସୂର୍ଯ୍ୟାସ୍ତକାଳୀନ ଦୃଶ୍ୟ ସନ୍ଦର୍ଶନ କଲେ ବାସ୍ତବିକ ଦର୍ଶକ ମନରୁ ସମସ୍ତ ଅବସାଦ ଦୂର ହୋଇଯାଏ । ସେ ଏକ ଅପୂର୍ବ 'ନବନବୋନ୍ମେଷଶାଳିନୀ' ସତ୍ତାର ଅସ୍ତିତ୍ୱ ଉପଲବ୍ଧି

କରେ । ତାର ହୃଦୟ ଦ୍ରବୀଭୂତ ହୋଇଯାଏ, ସ୍ମୃତିପଟରେ ଉଦ୍‌ଭାସିତ ହୋଇଯାଏ କବିବରଙ୍କର ଅମର ବାଣୀ—

"ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।"

ସୁବର୍ଣ୍ଣରେଖାର ଦକ୍ଷିଣ କୂଳରେ ଜାତୀୟ ରାଜପଥଠାରୁ ପ୍ରାୟ ଦେଢ଼ ମାଇଲ ଦୂରକୁ ଗଲେ କୁଅଁରିଡ଼ିହ ଜଙ୍ଗଲ । ରାସ୍ତା ଉପରୁ ଦେଖିଲେ ତାହା ଏକ ସୁଦୀର୍ଘ ସବୁଜ ପ୍ରାଚୀରର ଭ୍ରମ ଜନ୍ମାଏ । ବର୍ତ୍ତମାନ ଏହା ଗୋଟାଏ ପ୍ରାକୃତିକ ଜଙ୍ଗଲ ରୂପେ ପ୍ରତୀୟମାନ ହେଉଥିଲେ ମଧ୍ୟ ତଥ୍ୟାନୁସନ୍ଧାନରୁ ଜଣାଯାଏ ଯେ, ପ୍ରାୟ ତିନିଶହ ବର୍ଷ ପୂର୍ବେ ମୋଗଲ ରାଜତ୍ୱ କାଳରେ ତାର ବୀଜବପନ କରାଯାଇଥିଲା । ଆୟତନରେ ଏହାର ଦୈର୍ଘ୍ୟ ପ୍ରାୟ ତିନି ମାଇଲ ହେବ; କିନ୍ତୁ ବିସ୍ତୃତି ଅଧମାଇଲକରୁ ବେଶି ହେବ ନାହିଁ । ଏହାର ଉତ୍ତର ପାର୍ଶ୍ୱରେ ସୁବର୍ଣ୍ଣରେଖା ନଦୀ ପ୍ରବାହିତ । ପୂର୍ବପ୍ରାନ୍ତକୁ ପଶ୍ଚିମବଙ୍ଗର ସୀମା ସ୍ପର୍ଶ କରିଅଛି । ସୁତରାଂ ଏହାକୁ ଓଡ଼ିଶା ଓ ପଶ୍ଚିମବଙ୍ଗର ସୀମାନ୍ତରେଖା ରୂପେ ଗ୍ରହଣ କରାଯାଇ ପାରେ । ଏହି ସୁରମ୍ୟ ସୁସଜ୍ଜିତ ଜଙ୍ଗଲର ଶୋଭାସମ୍ଭାର କେବଳ ଅହ୍ଲାଦଦାୟିନୀ ନୁହେଁ, ଶକ୍ତି-ସଂଗ୍ରହଣୀ ମଧ୍ୟ; କାରଣ ଏ ଅଞ୍ଚଳର ବହୁ ଅଧିବାସୀ ଏହି ଜଙ୍ଗଲରୁ କାଷ୍ଠ ସଂଗ୍ରହ କରି ସେମାନଙ୍କର ଜୀବିକା ଅର୍ଜନ କରନ୍ତି ।

କୁଅଁରିଡ଼ିହ ଜଙ୍ଗଲ ଓ ରାଜପଥର ମଧ୍ୟବର୍ତ୍ତୀ ବିସ୍ତୀର୍ଣ୍ଣ ପ୍ରାନ୍ତର କେନ୍ଦୁଫଳରେ ଭରପୂର । ସାଧାରଣତଃ ପ୍ରଭାତ ସମୟରେ ଆଦିବାସୀ ରମଣୀମାନେ ଏଠାରୁ କେନ୍ଦୁଫଳ ସଂଗ୍ରହ କରନ୍ତି । ସେହି ସମୟରେ ସେମାନଙ୍କର ହର୍ଷୋତ୍‌ଫୁଲ୍ଲ ମନୋଭାବ ଦେଖିଲେ କିମ୍ବା ସନ୍ଧ୍ୟାକାଳରେ ଦଳ ଦଳ ହୋଇ ହାଟରୁ ଫେରୁଥିବା ଯୁବତୀମାନଙ୍କର ମନଖୋଲା ମଧୁର 'ଲଗଣେ ଗୀତ' ଶୁଣିଲେ, ଜଣେ ନୀରସ ରୁକ୍ଷ ବ୍ୟକ୍ତିର ମଧ୍ୟ ହୃଦୟ-କନ୍ଦର ରସସିକ୍ତ ହୋଇ ଉଠିବ । ଏହି 'ଲଗଣେ ଗୀତ'ର ବିଶେଷତ୍ୱ ହେଉଛି, ଗୀତର କିୟଦଂଶ ବାରମ୍ବାର ଆବୃତ୍ତି କରାଯାଏ । ନିମ୍ନରେ ଏହାର ଏକ ଉଦାହରଣ ଦିଆଗଲା:—

"କରୁ ବାଲଗେ ମାଲବାହା
ସଦ ନଟାଂଏନ୍,

ସଦ ନଟାଂଏନ୍ ଦାଇନା,
ଆବସ୍ୱଗ୍ଲତେ ।
ତାଂକ କୁଲ ଆଖାଲାରେ
ସଦ ନଟାଂଏନ୍ ଦାଇନା,
ଆଖାଲା ସାରେଲ୍‌ଏନ୍ ।"

ଏଥିରେ 'ସଦ ନଟାଂଏନ୍' ଦୁଇଟି ପଦ ବାରମ୍ବାର ଆବୃତ୍ତ ହୋଇଛି । ଏହାହିଁ 'ଲଗନେ ଗୀତ'ର ସ୍ୱାତନ୍ତ୍ର୍ୟ । ଉକ୍ତ କବିତାଂଶଟିର ଅର୍ଥ ହେଲା—

କାହା ବାଡ଼ିରୁ ମଲ୍ଲୀଫୁଲ
ଗନ୍ଧ ଉଡ଼ିଗଲାଣି,
ଗନ୍ଧ ଉଡ଼ିଗଲାଣି ଭଉଣି, ଆମଘର
ମଝି ଅଗଣା ଆଖଡ଼ାରେ
ଗନ୍ଧ ଉଡ଼ିଗଲାଣି ଭଉଣି,
ସାରା ଆଖଡ଼ା ଭରିଗଲାଣି ।

କିନ୍ତୁ କ୍ଷୋଭର ବିଷୟ ଏହି ଯେ, ଆଲୋଚ୍ୟ ଅଞ୍ଚଳର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରିବା ନିମନ୍ତେ ଏଠାରେ କେହି କବି, ଭାବୁକ ବା ରସିକ ନାହାନ୍ତି । ଏଠାକାର ଅାଦିବାସୀମାନେ ପ୍ରକୃତି କୋଳରେ ପରିବର୍ଦ୍ଧିତ । ସେମାନେ ପ୍ରାକୃତିକ ଜୀବନ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ସେମାନଙ୍କ ପକ୍ଷରେ ଏହାର ବିଶେଷତ୍ୱ ଅନୁଭବ କରିବା କିମ୍ବା ବୈଶିଷ୍ଟ୍ୟ ଉପଲବ୍‌ଧି କରିବା ସମ୍ଭବ ନୁହେଁ । ସୁତରାଂ ଜାମଶୋଲା-ଘାଟ ଅଞ୍ଚଳ ପ୍ରକୃତି ରାଜ୍ୟର ରାଣୀ ହୋଇପାରି ନାହିଁ, ସେବାଦାସୀ ରୂପେ ପଡ଼ି ରହିଛି ମାତ୍ର !

## ଜୀବନଯାପନ ପ୍ରଣାଳୀ

ଜାମଶୋଲାଘାଟ ଅଞ୍ଚଳର ପ୍ରାକୃତିକ ପରିବେଶ କେବଳ କାନ୍ତ ଓ କମନୀୟ ନୁହେଁ, ରୁଦ୍ର ଓ କରାଳ ମଧ୍ୟ । ଏଠାକାର ଜଳବାୟୁ ଚରମ-ଧର୍ମୀ । ଗ୍ରୀଷ୍ମଋତୁରେ ପ୍ରଚଣ୍ଡ ରୌଦ୍ରତାପ ଏବଂ ଶୀତକାଳରେ ପ୍ରବଳ ଶୈତ୍ୟ ଅନୁଭୂତ ହୁଏ । ସ୍ଥାନୀୟ ଅଧିବାସୀମାନେ ଗରିବ ଓ ଶ୍ରମଜୀବୀ ।

ସେମାନେ ପ୍ରକୃତିର କାଳକୋମଳ ରୂପ ଉପଭୋଗ କରିବା ପାଇଁ ଅସମର୍ଥ । ପ୍ରକୃତିର ଭୀମ ରୂପର ଶିକାର ହୋଇ ଖରା, ବର୍ଷା ଓ ଶୀତରେ ବନ ବୁଲି ହାଡଭଙ୍ଗା ପରିଶ୍ରମ କରି ଜୀବିକା ଅର୍ଜନ କରିବାହିଁ ସେମାନଙ୍କ ଦୈନନ୍ଦିନ କର୍ମସୂଚୀର ଅନ୍ତର୍ଗତ ।

କୃଷି ଓ ଶସ୍ୟୋତ୍ପାଦନ ସ୍ଥାନୀୟ ଲୋକମାନଙ୍କର ଏକ ପ୍ରଧାନ ବୃତ୍ତି ହେଲେ ମଧ୍ୟ ଜୀବିକା ଅର୍ଜନ ନିମିତ୍ତ ସେମାନେ ଅନ୍ୟାନ୍ୟ ବହୁ ପନ୍ଥା ଅବଲମ୍ବନ କରୁଥିବାର ଦେଖାଯାଏ । ସେ ମଧ୍ୟରୁ କାଷ୍ଠ ସଂଗ୍ରହ, ମତ୍ସ୍ୟ ଆହରଣ, ଠେକୁଆ ଶିକାର ଓ କେନ୍ଦୂପତ୍ର ବିକ୍ରୟ ବିଶେଷ ଉଲ୍ଲେଖ-ଯୋଗ୍ୟ ।

ଏହି ଅଞ୍ଚଳର ଲୋକମାନଙ୍କ ମଧ୍ୟରୁ ଯେଉଁମାନେ କୃଷିକର୍ମ ଉପରେ ନିର୍ଭର କରନ୍ତି, ସେମାନେ ସାଧାରଣତଃ ସମ୍ମାନାସ୍ପଦ ବ୍ୟକ୍ତି । ସେମାନଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ହେଲେ ମଧ୍ୟ ଅନ୍ୟମାନଙ୍କ ଅପେକ୍ଷା ଉନ୍ନତତର । ସେମାନେ ଗାଁର ମାନ୍ୟଗଣ୍ୟ ଲୋକ । ତେବେ ଏହି ଅଞ୍ଚଳରେ ଏଭଳି ଲୋକଙ୍କର ସଂଖ୍ୟା ଖୁବ୍ କମ୍, ନଗଣ୍ୟ । ଏମାନଙ୍କ ବ୍ୟତୀତ ଅନ୍ୟ ଯେଉଁମାନେ କାଷ୍ଠ ସଂଗ୍ରହ ଓ ବିକ୍ରୟ କରି ଜୀବିକା ଅର୍ଜନ କରନ୍ତି, ସେମାନଙ୍କୁ ଖଟିଖିଆ ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇ ପାରେ । ସେମାନେ ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ଜଙ୍ଗଲରୁ କାଷ୍ଠ ସଂଗ୍ରହ କରି ତାହାର ବିକ୍ରୟଲବ୍ଧ ଧନରେ ଖାଦ୍ୟ ଆହରଣ କରନ୍ତି । ଆଜିକାଲି ଜଙ୍ଗଲ ବିଭାଗୀୟ କର୍ମଚାରୀଙ୍କର ତତ୍ପରତା ବୃଦ୍ଧି ଫଳରେ ଏମାନଙ୍କୁ କିଛି ଦେୟ ଦେବାକୁ ପଡ଼ୁଥିବାରୁ ସେମାନଙ୍କ ଭାରଲେଣି ବଢ଼ିଯାଇଛି । ଏହି ଶ୍ରମଜୀବୀ ଶ୍ରେଣୀର କେତେକ ବ୍ୟକ୍ତି ବାଉଁଶତାଟି ବୁଣି, କୁଡ଼ଆଘର ଛପର କରି, ହୋଟେଲ ଦୋକାନ ପାଇଁ ପାଣି ଯୋଗାଇ, ମଜୁରି ଖଟି, ହାଟରେ ମାଂସ, କୁକୁଡ଼ା, ପିଆଜ, ରସୁଣ ଆଦି ଖୁଚୁରା ବ୍ୟବସାୟ କରି ଜୀବିକା ଅର୍ଜନ କରିବାର ମଧ୍ୟ ଦୃଷ୍ଟିଗୋଚର ହୁଏ ।

ଏହି ଅଞ୍ଚଳର ଧୀବରକୁଳ ମୁଖ୍ୟତଃ ମତ୍ସ୍ୟଜୀବୀ । ମାଛ ଧରି ଜୀବିକା ଅର୍ଜନ କରିବା ସେମାନଙ୍କର ପ୍ରଧାନ ପେସା । ସୁବର୍ଣ୍ଣରେଖା ନଦୀ ଏମାନଙ୍କର ଜୀବନଦାୟୀ କହିଲେ ଚଳେ । କାରଣ ଏମାନେ

ପୁରୀପୂର୍ବ ସୁବର୍ଣ୍ଣରେଖାର ମାଛ ଉପରେହିଁ ନିର୍ଭର କରନ୍ତି ଓ ମାଛ ବିକି ପରିବାର ଭରଣପୋଷଣ କରନ୍ତି । ପୁରୁଷମାନେ ନୌକା ସାହାଯ୍ୟରେ ବିବାଗିଜ ମାଛ ଧରିବା କାର୍ଯ୍ୟରେ ନିଯୁକ୍ତ ରହନ୍ତି ଏବଂ ସ୍ତ୍ରୀମାନେ ସାଧାରଣତଃ ମାଛ ବିକ୍ରି କରନ୍ତି । ଅନେକ ସମୟରେ ଏହି ଅଞ୍ଚଳରୁ ମାଛ ଯାଇ ବାରିପଦା ଓ ବିହାରର ବିଭିନ୍ନ ଗୁଡ଼ାରେ ମଧ୍ୟ ବିକ୍ରି ହୁଏ ।

ଅନ୍ୟ ଯେଉଁମାନେ କେନ୍ଦୁପତ୍ର ବିକ୍ରୟ କରି ଜୀବିକା ଅର୍ଜନ କରନ୍ତି, ସେମାନେ ବର୍ଷସାରା ସେଥିରେ ନିର୍ଭର କରନ୍ତି ନାହିଁ । ବର୍ଷରେ ଦି' ତିନି ମାସ ବର୍ଷା ହେବା ପରେ ଯେତେବେଳେ ନୂଆ ପତ୍ର କଅଁଳେ, ସେହି ସମୟରେ ସେମାନେ ତାହା ସଂଗ୍ରହ କରି ବାହାରେ ବିକନ୍ତି ଏବଂ ଦି'ଚାରି ପଇସା ଲାଭ କରନ୍ତି । ସାଧାରଣତଃ ସ୍ତ୍ରୀଲୋକମାନେ ଅତି ସକାଳୁ ଗୋଟିଏ ଟୋକେଇ ଧରି କେନ୍ଦୁପତ୍ର ତୋଳିବାରେ ଲାଗି ପଡ଼ନ୍ତି । ଯାହାର କୋଳରେ କଅଁଳା ଛୁଆ ଥାଏ, ସେ ଛୁଆଟିକୁ ପିଠିରେ ପକାଇ ଦେଇ ଏ ପତ୍ର ତୋଳିବାରେ ଲାଗିଯାଏ । ସତୁରି ଅଶୀ ବର୍ଷର ବୃଦ୍ଧାଠାରୁ ଆରମ୍ଭ କରି ସାତ ଆଠ ବର୍ଷର ଶ୍ରେଷ୍ଠ ବାଳିକା ପର୍ଯ୍ୟନ୍ତ ଏଥିରେ ନିଯୁକ୍ତ ରହନ୍ତି । ପତ୍ର ତୋଳିବା ଅବସ୍ଥାରେ ଯେ କେହି ସେମାନଙ୍କର ମନୋଭାବ ଲକ୍ଷ୍ୟ କଲେ ଜାଣିପାରିବେ ଯେ, ସେମାନେ ଯୁଗପତ୍ ଆନନ୍ଦୋଲ୍ଲାସ ଭିତରେ କର୍ମରତ ଥାଆନ୍ତି । ଦାର୍ଜିଲିଂ ଚା' ବଗିଚାର ପତ୍ରତୋଳା ଦୃଶ୍ୟ ରଙ୍ଗୀନ ଚଳଚିତ୍ର ଓ ପ୍ରଚାରପତ୍ର ମାଧ୍ୟମରେ ବିଶ୍ୱବିଶ୍ରୁତ ହୋଇପାରିଛି; କିନ୍ତୁ ଜାମଶୋଳାଘାଟ ଅଞ୍ଚଳର ଏହି ରମଣୀୟ ପ୍ରାକୃତିକ ଦୃଶ୍ୟ ଲୋକଲୋଚନର ଅଗୋଚରରେ ରହି-ଯାଇଛି !

ପଶୁଶିକାର କରି ଖାଦ୍ୟ ସଂଗ୍ରହ କରିବା ଆଦିବାସୀମାନଙ୍କର ଏକ ପ୍ରକୃତିଗତ ବୃତ୍ତି ! କିନ୍ତୁ ଏହି ଅଞ୍ଚଳରେ ବ୍ୟାଘ୍ର, ସିଂହ, ବରାହାଦି ହିଂସ୍ର-ଜନ୍ତୁ ବିଶେଷ ଦେଖିବାକୁ ମିଳନ୍ତି ନାହିଁ । କାଁ ଭାଁ କ୍ୱଚିତ୍ ହରିଣ ଦେଖିବାକୁ ମିଳିଥାଏ । ତେଣୁ ଏମାନଙ୍କର ପ୍ରଧାନ ଶିକାର ହେଲା ଠେକୁଆ । ବାସ୍ତବିକ, ଠେକୁଆ ଶିକାର ଏହି ଅଞ୍ଚଳର ଏକ ଉଲ୍ଲେଖ-ଯୋଗ୍ୟ ଘଟଣା । ଏହା ଦର୍ଶନୀୟ ମଧ୍ୟ, ଗାଁର ପ୍ରାୟ ୨୦।୨୫ ଜଣ ଯୁବକ

ଧନୁଶର ଧରି ସାଙ୍ଗରେ ୧୦।୧୨ଟି ଶିକାରୀ କୁକୁର ନେଇ ଠେଙ୍ଗୁଆ ଶିକାର ପାଇଁ ଯେତେବେଳେ ଆଡ଼ମ୍ବର ସହକାରେ ଗୃଲଥାନ୍ତି; ସେତେବେଳେ ସେମାନେ ନାଟ୍ୟଆଦିଲ ବା ସର୍କସ ପାର୍ଟିର ଲୋକଙ୍କ ପରି ପ୍ରକୃତିର ଏକ ନମୁନା ରୂପେ ପ୍ରତୀୟମାନ ହୁଅନ୍ତି ଏବଂ ଯେତେ-ବେଳେ ଶିକାର ବସ୍ତୁ ଲଭକରି ସନ୍ଧ୍ୟାବେଳକୁ ହର୍ଷୋତ୍ଫୁଲ୍ଲ ଚିତ୍ତରେ ଫେରୁଥାନ୍ତି, ସେତେବେଳର ଦୃଶ୍ୟ ତତୋଧିକ ମନୋହର ।

## ସାମାଜିକ ଜୀବନ

ଏହି ଅଞ୍ଚଳର ଲୋକେ ଅତି ସରଳ ଜୀବନଯାପନ କରନ୍ତି । ସେମାନଙ୍କର ବାସଗୃହ ଗୋଟିଏ ଗୋଟିଏ କ୍ଷୁଦ୍ର କୁଡ଼ିଆ; ପରିଧାନ ଖଣ୍ଡିଏ ଗ୍ଲେଟିଆ ମୋଟା ଲୁଗା । ସ୍ତ୍ରୀମାନେ ସାଧାରଣତଃ ନାଲି, ନୀଳ, ସବୁଜ ଆଦି ଗାଢ ରଙ୍ଗର ମୋଟା ଲୁଗା ପିନ୍ଧିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି । କିନ୍ତୁ ସଭ୍ୟତାର ହାଓ୍ୱାରେ ଜଣେ ଅଧେ ଆଦିବାସୀ ତରୁଣୀ ପତଳା କଲବୁଣା ଲୁଗା ଓ ଆଧୁନିକ ହାତକଟା ବ୍ଲାଉଜ ପିନ୍ଧିବାର ଦେଖାଗଲଣି । ତଥାପି ଏ ଅଞ୍ଚଳରେ ଆବଶ୍ୟକୀୟ ଶିକ୍ଷାର ପ୍ରସାର ଘଟିନାହିଁ । ଅର୍ଥାଭାବ ହେତୁ ମଧ୍ୟ ଅନେକେ ଶିକ୍ଷାଲଭ ସୁଯୋଗରୁ ବଞ୍ଚିତ ରହୁଛନ୍ତି । ତଥାପି ସେମାନେ ଅତି ସରଳ ଓ ବିଶ୍ୱାସୀ; ନୀଚ ଓ ଅଭଦ୍ର ନୁହନ୍ତି । ତେବେ ଏହି ଅଞ୍ଚଳର ଅଧିକାଂଶ ଅଧିବାସୀ ଅନ୍ୟାନ୍ୟ ଅଞ୍ଚଳର ଆଦିବାସୀମାନଙ୍କ ଭଳି ବିଶେଷ କଷ୍ଟସହିଷ୍ଣୁ ବା କର୍ମଠ ନୁହନ୍ତି । ସେମାନେ ସରଳ ଓ ସହଜ ଜୀବନର ପକ୍ଷପାତୀ । ପଖାଳ ଭାତ, ଶାଗ, ଛତୁ ଓ ଶୁଖୁଆ ଏମାନଙ୍କର ପ୍ରଧାନ ଖାଦ୍ୟ । ଅନ୍ୟାନ୍ୟ ଅଞ୍ଚଳର ଗରିବ ଲୋକଙ୍କ ଭଳି ଏମାନେ ପ୍ରାୟତଃ ମାଣ୍ଡିଆ, ସୁଆଁ, ବୃକ୍ଷକନ୍ଦା ଇତ୍ୟାଦି ଉପରେ ନିର୍ଭର କରନ୍ତି ନାହିଁ ।

ସ୍ଥାନୀୟ ଅଧିବାସୀମାନଙ୍କର ନୈତିକ ଚରିତ୍ର ଦୃଢ଼ ଓ ସୁଶୃଙ୍ଖଳ; କିନ୍ତୁ ଯାହା ଯେତିକି ଦୃଢ଼, ସେଥିରେ ପୁଣି ସେତିକି ଶିଥିଳତା ପ୍ରକାଶ ପାଇଥାଏ । ଏହି କ୍ଷେତ୍ରରେ ମଧ୍ୟ ସେଇଥି । ତେଣୁ ଏଠାକାର ତରୁଣୀ-ମାନଙ୍କଠାରେ ଚାରିତ୍ରିକ ଦୁର୍ବଳତାର ଦୃଷ୍ଟାନ୍ତ ବିରଳ ନୁହେଁ । ତେବେ ଚାରିତ୍ରିକ ସ୍ଖଳନଜନିତ ଅପରାଧ ନିମିତ୍ତ ପ୍ରଚଳିତ ସାମାଜିକ ପଦ୍ଧତି

ଅନୁସାରେ କଠୋର ଶାସ୍ତିବିଧାନ ରହିଛି । କୌଣସି ଆଦିବାସୀ ଯୁବକ ଯଦି କୌଣସି ଅନ୍ୟ ଯୁବତୀର ପ୍ରେମପାଶରେ ଆବଦ୍ଧ ହୁଏ, ତାହାହେଲେ ତାକୁ ଗାଁ ମୁଖିଆଙ୍କ ସଭାରେ କଠୋର ଅର୍ଥ ଦଣ୍ଡ ଦିଆଯାଏ । ଏପରିକି ଜଣେ ଜଣେ ଲୋକଙ୍କୁ ଏହି କାରଣରୁ ବାସନକୁସନ, ଢିଙ୍କିସମା, ଶିଳଶିଳପୁଆ଼ଦି ବନ୍ଧକ ପକାଇବାକୁ ପଡ଼ିଥାଏ । ଜୋରିମାନା ଦେଲା ପରେ ସେହି ଯୁବତୀ ସହିତ ଯୁବକର ବାଧ୍ୟତାମୂଳକ ଭାବରେ ବିବାହ କରାଇ ଦିଆଯାଏ । ଅନ୍ୟ ପକ୍ଷରେ କୌଣସି ଯୁବତୀ ଯଦି ଅନ୍ୟ କୌଣସି ଇତର ଜାତିର ଯୁବକ ପ୍ରେମରେ ଲିପ୍ତ ହୁଏ, ତାହାହେଲେ ଶାସ୍ତିସ୍ୱରୂପ ଉକ୍ତ ଯୁବତୀର ପରିବାରକୁ ଜାତିରୁ ଅଲଗା କରି ଦିଆଯାଏ ଏବଂ ଯୁବତୀର ପ୍ରେମିକ ଯଦି କୌଣସି କାରଣରୁ ତା' ସହିତ ବିବାହ ନ କରେ, ତେବେ ତାକୁ ଆଜୀବନ ଅବିବାହିତା ରହିବାକୁ ମଧ୍ୟ ପଡ଼ିଥାଏ । କୌଣସି ବିବାହିତା ସ୍ତ୍ରୀ ଯଦି ବ୍ୟଭିଚାରିଣୀ ହୁଏ, ତା ପ୍ରତି ମଧ୍ୟ ଦଣ୍ଡବିଧାନ ରହିଛି । ଯେଉଁ ପୁରୁଷ ସେହିଭଳି ସ୍ତ୍ରୀ ସହିତ ପାପ ପ୍ରଣୟରେ ଲିପ୍ତ ଥାଏ, ତାକୁ ଆର୍ଥିକ ଦଣ୍ଡ ଭୋଗିବାକୁ ପଡ଼େ ଏବଂ ଯଦି ସଂପୃକ୍ତ ସ୍ତ୍ରୀର ସ୍ୱାମୀ ତାକୁ ପୁନର୍ବାର ଗ୍ରହଣ କରିବା ପାଇଁ ଅସ୍ୱୀକାର କରେ, ତାହାହେଲେ ସେହି ପ୍ରେମିକ ତାକୁ ବିବାହ କରିବାକୁ ବାଧ୍ୟ ହୁଏ । ଅବଶ୍ୟ ଏହା ବୋଲି ଏହି ଅଞ୍ଚଳରେ ଯେ ପାପପ୍ରଣୟର ପ୍ରସାର ଲୋପ ପାଇଯାଇଛି, ତାହା କୁହାଯାଇ ନ ପାରେ ।

ଏମାନଙ୍କର ବିବାହ ପଦ୍ଧତି ବେଶ୍ କୌତୂହଳୋଦ୍ଦୀପକ । ସାଧାରଣତଃ ବର ଘରେ ହିଁ ବିବାହ କାର୍ଯ୍ୟ ସମ୍ପାଦିତ ହୁଏ । କେତେକ ସ୍ଥଳରେ ବରଯାତ୍ରୀ ଯାଇ କନ୍ୟାକୁ ନେଇ ଆସନ୍ତି; ଅନ୍ୟ କେତେକ ସ୍ଥଳରେ କନ୍ୟାପକ୍ଷ ଆପେ ଆପେ କନ୍ୟାକୁ ଆଣି ବର ଘର ଗ୍ରାମରେ ଛାଡ଼ି ଦିଅନ୍ତି । କନ୍ୟା ଘରକୁ ଯିବା ପୂର୍ବରୁ ବରଯାତ୍ରୀମାନଙ୍କୁ ବର ଘରେ ଭୂରିଭୋଜନରେ ଆପ୍ୟାୟିତ କରାଯାଇଥାଏ । ବରଯାତ୍ରୀ ଯାଆନ୍ତୁ ବା ନ ଯାଆନ୍ତୁ କନ୍ୟା ଘର ଲୋକେ ବିବାହ ଦିନ ସନ୍ଧ୍ୟାରେ କନ୍ୟାକୁ ଆଣି ବର ଘର ପାଖରେ ଦି'ଖଣ୍ଡି ଘର ଛାଡ଼ି ଅନ୍ୟ ଜଣକ ଘରେ ରଖନ୍ତି । ବରର ମା ( ମା ନ ଥିଲେ ଅନ୍ୟ କେହି ମାତୃସ୍ଥାନୀୟା ନାରୀ )

ସେଠାରୁ କନ୍ୟାକୁ ନିଜ ଘରକୁ କାଖେଇ କରି ଆଣନ୍ତି । ସେଠାରେ ତାକୁ ଗୋଟାଏ ଢମା ( ଗାଈ ଗୋରୁଙ୍କୁ ଯେଉଁଥିରେ ଖାଦ୍ୟ ଦିଆଯାଏ ) ଉପରେ ବସାଇ ଦିଆଯାଏ । ବରର ବଡ଼ ଭାଇ ସେହି ଢମାକୁ ଟେକି ଧରନ୍ତି । ( ବିବାହ ପରେ ଦେଢ଼ଶୁରମାନେ ଅନ୍ୟ କୌଣସି ସମୟରେ ଆଉ ଭ୍ରାତୃବଧୂମାନଙ୍କୁ ସ୍ପର୍ଶ କରନ୍ତି ନାହିଁ ) ସେହି-ପରି ବରର ଭିଣୋଇ ବରପାଳକୁ କାନ୍ଧରେ ବସାଇ ସେଠାକୁ ଆଣନ୍ତି । ବର ଓ କନ୍ୟାର ମଝିରେ ଲୁଗାର ଗୋଟାଏ ବାଡ଼ ଦିଆଯାଇଥାଏ । ସେହି ଲୁଗା ବାଡ଼ର ଚତୁର୍ଦ୍ଦିଗରେ ବର ଓ କନ୍ୟା ସେହି ଅବସ୍ଥାରେ ପାଞ୍ଚଥର ପରିକ୍ରମା କରନ୍ତି । ସେହି ସମୟରେ ବର ଓ କନ୍ୟା ପରସ୍ପର ପାଞ୍ଚଥର ଅରୁଆ ଚାଉଳ ଫିଙ୍ଗାଫିଙ୍ଗି ହୁଅନ୍ତି । ଏହାପରେ ସେହି କାନ୍ଧରେ ବସିଥିବା ଅବସ୍ଥାରେ ହିଁ ବର ଢମା ଉପରେ ବସିଥିବା କନ୍ୟାର ମଥାରେ ଟିକଟର ସିନ୍ଦୂର ବୋଳିଦିଏ । ଏହି ସମୟରେ ସେଠାରେ ଉପସ୍ଥିତ ଥିବା ଗାଁର ମୁଖିଆ ଲୋକମାନେ ତିନିଥର 'ହରିବୋଲ' ଡାକ ପକାଇଥାନ୍ତି । ତାପରେ ବର କନ୍ୟାଙ୍କୁ ତଳକୁ ଓହ୍ଲାଇ ଦିଆଯାଏ । ସେତେବେଳେ ଭାଉଜ ବର କନ୍ୟାଙ୍କର ଲୁଗା କାନିରେ ଗୋଟାଏ ଗଣ୍ଠି ପକାଇ ଘର ଭିତରକୁ ନେଇଯାଆନ୍ତି ଏବଂ ସେଠାରେ ଦୁହିଁଙ୍କୁ ତେଲ ହଳଦୀ ମାଜନ୍ତି । ତାପରେ କିଛି ସମୟ ଦିହେଁଯାକ ଅନ୍ୟମାନଙ୍କ ସହିତ ନାଚିବା ପରେ ଭାଉଜ କିଛି ହାତଗୁଞ୍ଜା ପଇସା ନେଇ ବର କନ୍ୟାଙ୍କ ଲୁଗା କାନିରେ ପକାଇଥିବା ଗଣ୍ଠିଟିକୁ ଫିଟାଇ ଦିଅନ୍ତି । ଏତିକିରେ ବିବାହ କାର୍ଯ୍ୟର ପରିସମାପ୍ତି ଘଟେ ଏବଂ ନବଦମ୍ପତିଙ୍କର ସାଂସାରିକ ଜୀବନର ଶୁଭାରମ୍ଭ ହୁଏ ।

ଏମାନଙ୍କ ବିବାହରେ ଯୌତୁକର ଆଡ଼ମ୍ବର ନାହିଁ । ଟଙ୍କା କୋଡ଼ିଏରୁ ଚାଳିଶ, ତିନିଖଣ୍ଡ ଲୁଗା, ଗୋଟିଏ ମାଈ ବାଛୁରୀ ଓ ଗୋଟିଏ ଅଣ୍ଡିରା ବାଛୁରୀ—ବେଶ୍ ଏତିକିରେ ଯୌତୁକ ବଢ଼ିଗଲା । ଯଦି ବାପ ନ ଥାନ୍ତି, ତାହାହେଲେ ଅଣ୍ଡିରା ବାଛୁରୀଟି ଦେବା ମଧ୍ୟ ଆବଶ୍ୟକ ପଡ଼େ-ନାହିଁ । ସୁତରାଂ ପ୍ରାୟ ଦୁଇଶହ ଟଙ୍କା ଖର୍ଚ୍ଚରେ ଏମାନଙ୍କର ବିବାହ କାର୍ଯ୍ୟ ବଢ଼ିଯାଏ ।

ତେବେ କେତେକ ସ୍ଥଳରେ ଯଦି ଗୋଟିଏ ପାତ୍ରୀ ପାଇଁ ତିନି ଚାରିଟି ପ୍ରସଙ୍ଗ ଆସେ; ଏହି ବିବାହ ପଦ୍ଧତିରେ ସାମାନ୍ୟ ବ୍ୟତିକ୍ରମ ଦେଖାଯାଏ । ଏପରି ସ୍ଥଳେ କୌଣସି କାରଣରୁ ଯଦି କନ୍ୟା ପକ୍ଷ ଜଣେ ବରପାତ୍ରଙ୍କୁ ମନୋନୀତ କରନ୍ତି କିମ୍ବା କୌଣସି ବରପକ୍ଷ କନ୍ୟାପ୍ରତି ଆକୃଷ୍ଟ ହୋଇ ସେଠାରେ ବିବାହ କରିବା ପାଇଁ ନିଷ୍ପତ୍ତି କରନ୍ତି, ତାହା-ହେଲେ ସେମାନେ ସେହି ବରପାତ୍ରଙ୍କୁ ସୁବିଧା ଦେଖି କନ୍ୟା ମଥାରେ ସିନ୍ଦୂର ବୋଳିଦେବା ପାଇଁ ପରାମର୍ଶ ଦିଅନ୍ତି । ଜଣେ ପୁରୁଷ ଯଦି କନ୍ୟା ମଥାରେ ସିନ୍ଦୂର ବୋଳିଦେଲା, ତେବେ ସେହି କନ୍ୟାକୁ ସେହି ପୁରୁଷ ବ୍ୟତୀତ ଅନ୍ୟ କେହି ବିବାହ କରିବା ପାଇଁ ରାଜି ହେବେନାହିଁ—ଏହି ପ୍ରଥା ଏ ଅଞ୍ଚଳରେ ପ୍ରଚଳିତ ଅଛି; କିନ୍ତୁ ପିତା ମାତା ବା ଶାଶୁ ଶ୍ୱଶୁରଙ୍କ ବିନା ପରାମର୍ଶରେ ବରପାତ୍ର ଯଦି ପାତ୍ରୀ ପ୍ରତି ନିଜେ ଆକୃଷ୍ଟ ହୋଇ ଏଭଳି ସିନ୍ଦୂର ବୋଳିଦିଏ, ତାହାହେଲେ ତାକୁ ସେ ବିବାହ କରିବ ସତ; ମାତ୍ର ତା ପୂର୍ବରୁ ସେଥିପାଇଁ ତାକୁ ଗାଁମୁଖିଆଙ୍କ ସମ୍ମୁଖରେ ଯଥେଷ୍ଟ ଜୋରିମାନା ଦେବାକୁ ପଡ଼ିବ ।

## ପୂଜା ଓ ପର୍ବପର୍ବାଣି

ପୂର୍ବେ ଉଲ୍ଲେଖ କରାଯାଇଛି ଯେ ଜାମେଶ୍ୱର ମହାଦେବ ଏହି ଅଞ୍ଚଳର ପ୍ରସିଦ୍ଧ ଦେବତା । ଏହି ଜାମେଶ୍ୱର ମନ୍ଦିର ଓଡ଼ିଶା ସୀମାନ୍ତର ପ୍ରାୟ ଏକ ଫର୍ଲଙ୍ଗ ଦୂରରେ ବିହାର ଅଞ୍ଚଳରେ ଅବସ୍ଥିତ । ଏହା ଜାମଶୋଲା ଗ୍ରାମକୁ ଲାଗିଅଛି ବୋଲି କହିଲେ ଚଳେ । ଏଠାରେ ପ୍ରତିବର୍ଷ ଶିବରାତ୍ରୀ ଦିନ ଦୀପ ଚଢ଼ାଯାଏ ଏବଂ ମକର ସଂକ୍ରାନ୍ତି ଦିନ ଏକ ବିରାଟ ମେଳା ହୁଏ । ସେହି ସମୟରେ ଆଖପାଖ ଅଞ୍ଚଳରୁ ବହୁ ଲୋକ ଆସି ଏଠାରେ ରୁଣ୍ଡ ହୁଅନ୍ତି । ସେହି ଦିନମାନଙ୍କରେ ସ୍ଥାନୀୟ ଲୋକେ ହାଣ୍ଡିଆ (ଏକ ଜାତୀୟ ମଦ୍ୟ) ପିଇ ଖୁବ୍ ପ୍ରମତ୍ତ ହୋଇ ନାଚ ଗୀତରେ ରତ ହୁଅନ୍ତି । ସାଧାରଣତଃ ଆଦିବାସୀ ଭିନ୍ନ ଅନ୍ୟ ଜାତିର ଲୋକଙ୍କୁ ଏହି ନାଚ ଗୀତ ଭିତରେ ପଶିବା ପାଇଁ ଦିଆଯାଏ ନାହିଁ । ଏହି ଦୁଇ ପର୍ବକୁ ଅବିବାହିତ ଆଦିବାସୀ ଯୁବକ ଯୁବତୀମାନେ ବେଶ୍ ଉପଭୋଗ କରନ୍ତି । ଜାମେଶ୍ୱର ମହାଦେବ ମନ୍ଦିର ବ୍ୟତୀତ ଏଠାରୁ ପ୍ରାୟ ଦୁଇ

ମାଇଲ ଦୂରରେ (ଓଡ଼ିଶା ଭିତରେ) ଥିବା ଚଣ୍ଡେଶ୍ୱର ମହାଦେବ ମନ୍ଦିରଠାରେ ମଧ୍ୟ ଅନୁରୂପ ଶିବରାତ୍ରି ଉତ୍ସବ ପାଳିତ ହୁଏ ।

ଅଷ୍ଟଭୁଜା ଦେବୀ ଜାମଶୋଲାର ଗ୍ରାମଦେବତା । ସପ୍ତାହରେ ଥରେ ତାଙ୍କ ପୂଜା ଅରାଧନା କରାଯାଏ । ପ୍ରବଚନ ଅଛି, ପୂର୍ବକାଳରେ ଏହି ଦେବୀ ସୁବର୍ଣ୍ଣରେଖା ନଦୀଗର୍ଭରେ ଅବସ୍ଥାନ କରୁଥିଲେ । ସେଠାକୁ ଦେହୁରି (ପୂଜାରୀ) ଯାଇ ପ୍ରତ୍ୟହ ପୂଜା ଆରାଧନା କରୁଥିଲା । ଦିନେ ଦୈବାତ୍ ସେ ସେଠାରେ ପୂଜା ଥାଳିଆ ଭୁଲିଆସି କିଛି ସମୟ ପରେ ପୁଣି ତାହା ଆଣିବାକୁ ଯିବାରୁ ଦେବୀ କ୍ରୋଧାନ୍ୱିତା ହୋଇ ସେଇଟାକୁ ଫିଙ୍ଗିଦେଲେ ଏବଂ ତା ସହିତ ଖଣ୍ଡେ ପ୍ରସ୍ତର ମୂର୍ତ୍ତି ମଧ୍ୟ ଫୋପାଡ଼ି ଦେଲେ । ତା ସଙ୍ଗେ ସଙ୍ଗେ ଆଦେଶଦେଲେ ଯେ ସେ ଆଉ ନଦୀଗର୍ଭରେ ପୂଜା ଗ୍ରହଣ କରିବେ ନାହିଁ । ନଦୀ କୂଳରେ ପ୍ରସ୍ତର ମୂର୍ତ୍ତିଟି ସ୍ଥାପନ କରାଯାଇ ସେଠାରେ ତାଙ୍କୁ ପୂଜା କରାଯିବ । ସେହି ଦିନଠାରୁ ନଦୀ କୂଳରେ ଉକ୍ତ ମୂର୍ତ୍ତିଟି ସ୍ଥାପିତ ହୋଇ ପୂଜା ପାଇ ଆସୁଛି । ଏହି ଅଷ୍ଟଭୁଜା ଦେବୀଙ୍କ ନିକଟରେ ବର୍ଷର ବିଭିନ୍ନ ସମୟରେ, ବିଶେଷତଃ ଦଶହରାବେଳେ ବଳି ଦିଆଯାଏ ।

ଶିବପୂଜା ଓ ଦୁର୍ଗାପୂଜା ବ୍ୟତୀତ ଏହି ଅଞ୍ଚଳରେ ମାର୍ଗଶିର ମାସ ଗୁରୁବାର ଦିନ ଘରେ ଘରେ ଲକ୍ଷ୍ମୀପୂଜା ମଧ୍ୟ ପାଳିତ ହୁଏ । ସେତେବେଳେ ଜମିରୁ ଧାନକେଣ୍ଡା ଆଣି ଲୋକେ ସେଥିରେ ଫୁଲ ଚନ୍ଦନ ଦେଇ ପୂଜା କରନ୍ତି ଏବଂ ଘରେ ବାହାରେ ଚିତା ପକାନ୍ତି । ମାଣ ବସାଇ କିମ୍ବା ମୂର୍ତ୍ତି ସ୍ଥାପନ କରି ପୂଜା କରିବା ପ୍ରଥା ଏ ଅଞ୍ଚଳରେ ପ୍ରଚଳିତ ନୁହେଁ ।

ଏହା ବ୍ୟତୀତ ଏ ଅଞ୍ଚଳର ଅନ୍ୟାନ୍ୟ ପ୍ରଧାନ ପର୍ବ ହେଲା— ଦାଶାଇ ବଙ୍ଗା, ସରାଇ ବଙ୍ଗା, ପୁଷ୍ ବଙ୍ଗା, ମାଘ୍ ବଙ୍ଗା, ବାହା ବଙ୍ଗା, ଏନେଜ୍, ଇନ୍ଦ ବଙ୍ଗା, ସାନ୍ ବଙ୍ଗା, ହେରଅଃ ପର୍ବ ଇତ୍ୟାଦି । ଏସବୁ ପର୍ବର ସଂକ୍ଷିପ୍ତ ପରିଚୟ ନିମ୍ନରେ ପ୍ରଦତ୍ତ ହେଲା ।

ଦାଶାଇ ବଙ୍ଗା ବା ଦଶହରା ପର୍ବ—ଏହା ଦୁର୍ଗାପୂଜା ବେଳର ଉତ୍ସବ । ଏହି ପର୍ବରେ ଗାଁର ଦଶଜଣ ପୁରୁଷ ଢୋଲ, କରତାଳ, ଘଣ୍ଟା

ବଜାଇ ନାଚ ନାଚ ପ୍ରତି ଘରକୁ ଯାଇ ଧାନ, ଚାଉଳ, ପଇସା ଆଦି ସଂଗ୍ରହ କରନ୍ତି ଏବଂ ସେମାନଙ୍କ ମଧ୍ୟରେ ସେଥିରେ ଭୋଜିଭାତ କରି ଖାଆନ୍ତି ।

ପରାଇ ବଙ୍ଗା ବା ବନ୍ଧାଣ ପର୍ବ:—ଏହି ପର୍ବ କାଳୀପୂଜା ଅମାବାସ୍ୟା ଦିନ ପାଳିତ ହୁଏ । ସେ ଦିନ ବଳଦ ଓ ପୋଡ଼କୁ ବାନ୍ଧି ସେମାନଙ୍କୁ ଲୁଗାପଟାରେ ଭୂଷିତ କରି ଫୁଲମାଳ ପିନ୍ଧାଇ ସଜାନ୍ତି ଏବଂ ତାର ଚାରିପଟେ ବାଦ୍ୟ ବାଜଣାକରି ନାଚନ୍ତି । ସେ କୌଣସି ପ୍ରକାରେ ଯଦି ବନ୍ଧନ ମୁକ୍ତ ହୋଇଯାଏ ବା ଦଉଡ଼ି ଛିଣ୍ଡାଇ ଦିଏ, ଉପସ୍ଥିତ ଲୋକଙ୍କୁ ଆହତ କରି ଦୌଡ଼ି ଚାଲିଯାଏ । ଏହି ପର୍ବରେ କେତେକ ଲୋକ ପ୍ରାଣ ହରାଇଥିବା ମଧ୍ୟ ଜଣାଯାଏ ।

ପୂଷ୍ ବଙ୍ଗା ବା ମକର ପର୍ବ:—ଏହା ମକର ସଂକ୍ରାନ୍ତି ବେଳର ପର୍ବ । ଏହି ସମୟରେ ଗାଆଁ ଗାଆଁରେ କଦଳୀଗଛ ବା ସଜନା ଗଛ ପୋତି ଟିକଏ ଦୂରରେ ରହି ସେଥିପ୍ରତି କାଣ୍ଡ ଛାଡ଼ନ୍ତି । ଯେଉଁ ବ୍ୟକ୍ତି ପ୍ରଥମେ ଲକ୍ଷ୍ୟଭେଦ କରେ, ସେ ସେହି ବୃକ୍ଷ ନେଇଯାଏ ଏବଂ ତାକୁ କିଛି ଆର୍ଥିକ ପୁରସ୍କାର ମିଳେ ।

ମାଘ୍ ବଙ୍ଗା ବା ମାଘ ପର୍ବ—ମାଘ ମାସର କୌଣସି ଦିନ ଗାଁର ତିନିଜଣ ଦେହୁରୀ ( ପୂଜାରୀ ) ଗ୍ରାମବାସୀଙ୍କ ଠାରୁ ଚାନ୍ଦା ଆଦାୟ କରି ତିନୋଟି କୁକୁଡ଼ା କିଣି ଗାଁମୁଣ୍ଡରେ ପୂଜା କରନ୍ତି ଏବଂ ପୂଜା ପରେ ନିଜ ନିଜ ଘରେ ରନ୍ଧାବଢ଼ା କରି ତାହା ଖାଆନ୍ତି ।

ବାହା ବଙ୍ଗା ବା ଦୋଳପର୍ବ :—ପ୍ରତି ବର୍ଷ ଦୋଳ ପୂର୍ଣ୍ଣିମା ଦିନ ଗାଁ ମୁଣ୍ଡ ବାଡେଲୀ ଶାଳରେ ଫୁଲଫଳ ଦେଇ ଗ୍ରାମଦେବତାଙ୍କୁ ପୂଜା କରାଯାଏ । ତା ପରେଦିନ ଗ୍ରାମର କେତେକ ଯୁବକ ଶିକାର ପାଇଁ ବାହାରନ୍ତି । ଯେଉଁ ଜୀବ ଶିକାର କରି ଆଣନ୍ତି ତାହା ଚାରି ଭାଗରେ ବଣ୍ଟାଯାଏ । ତିନିଭାଗ ଶିକାରକୁ ଯାଇଥିବା ଲୋକମାନେ ଯେ ଯାହା ଘରକୁ ନଅନ୍ତି ଏବଂ ଗୋଟିଏ ଭାଗ

ଗାଁର ମୁଖିଆଙ୍କୁ ଦିଅନ୍ତି । ସେହି ଭାଗକୁ ନେଇ ଗାଁ ମୁଖିଆ ସେଦିନ ଭୋଜି କରି ଶିକାରକୁ ଯାଇଥିବା ଲୋକମାନଙ୍କୁ ଖାଇବାକୁ ଦିଅନ୍ତି ।

ଏନେଇଜ୍ ବା ଉଡ଼ାପର୍ବ—ଏହା ଏ ଅଞ୍ଚଳର ଏକ ପୁରାତନ ପର୍ବ; ସାଧାରଣତଃ ପୌଷ ମାସରୁ ଆରମ୍ଭ ହୋଇ ରଥଯାତ୍ରା ପର୍ଯ୍ୟନ୍ତ ଚଳେ । ଗାଁର ମୁଖିଆ ଲୋକ ବାଦ୍ୟ ବାଜଣା ଆଡ଼ମ୍ବର ମଧ୍ୟରେ କୌଣସି ଏକ ଉଚ୍ଚ ସ୍ଥାନ ବା ଘର ଉପରେ ଚଢ଼ି ଗୋଟାଏ କୁକୁଡ଼ା ଉଡ଼ାଇ ଦିଏ । ତାପରେ ଉପସ୍ଥିତ ଲୋକେ ସେହି କୁକୁଡ଼ାଟିକୁ ଧରିବା ପାଇଁ ଭିଡ଼ା ଓଟରା ଲଗାନ୍ତି । କାହା ଭାଗରେ ଗୋଡ଼, କାହା ଭାଗରେ ମୁଣ୍ଡ ଓ କାହା ଭାଗରେ ଡେଣା ପଡ଼େ । ଏଥିରେ ଅନେକ ଲୋକ ଆହତ ମଧ୍ୟ ହୁଅନ୍ତି । ତେବେ ଆଜକାଲି ଏହି ପର୍ବ ବହୁ ପରିମାଣରେ କମିଗଲାଣି ।

ସାନ ପର୍ବ ବା ଇନ୍ଦ ପର୍ବ ଓ ଗହ୍ମା ପର୍ବ—ଶ୍ରାବଣ ମାସରେ ଏ ଅଞ୍ଚଳରେ ଦୁଇଟି ପର୍ବ ପାଳନ ହୁଏ । ଅମାବାସ୍ୟା ଦିନ ଇନ୍ଦପର୍ବ ଓ ପୂର୍ଣ୍ଣିମା ଦିନ ଗହ୍ମାପର୍ବ । ଇନ୍ଦପର୍ବରେ ଗୋଟାଏ ଲମ୍ବା ବାଉଁଶକୁ ଫୁଲରେ ସଜାଇ ଗାଁ ମଝିରେ ପୋତନ୍ତି ଓ ତାର ଚାରିପଟେ ସାରା ଗାଁ ଲୋକେ ନାଚନ୍ତି । ପୂରା ଦୁଇଦିନ ନାଚିବା ପରେ ଦ୍ୱିତୀୟ ଦିନ ସନ୍ଧ୍ୟାରେ ସେଇଟାକୁ ପାଣିରେ ଭସାଇ ଦିଅନ୍ତି । ସେହିପରି ପୂର୍ଣ୍ଣିମା ଦିନ କରମ ଗଛର ଡାଳପୋତି ଦୁଇଜଣ ଦଶ ବାର ବର୍ଷର ଶ୍ରେଷ୍ଠ ପିଲା ତାର ଚାରିପଟେ ନାଚନ୍ତି ଏବଂ ତାଙ୍କ ସହିତ ଗାଁର ସମସ୍ତ ସ୍ତ୍ରୀ ପୁରୁଷ ମଧ୍ୟ ନାଚନ୍ତି । ଦିନସାରା ନାଚିବା ପରେ ସନ୍ଧ୍ୟାରେ ତାହା ପାଣିରେ ପକାଇ ଦେଇ ସମସ୍ତେ ସ୍ନାନ କରନ୍ତି ।

ଦେରଅଃ ପର୍ବ ବା ଭାଦ୍ରପର୍ବ—ଏହା ସାଧାରଣତଃ କୋହ୍ଲ-ମାନଙ୍କ ଭିତରେ ଭାଦ୍ର ମାସରେ ପାଳିତ ହୁଏ । ସେହି ସମୟରେ କୌଣସି ଦିନ ଜମିରେ ଛାଗ ବଳିଦେଇ ଘରେ ଭୋଜିଭାତ କରନ୍ତି ଏବଂ ହାଣ୍ଡିଆ ଖାଇ ନାଚନ୍ତି । ସେତେବେଳେ ସେମାନେ ସାଧାରଣତଃ ଏହିଭଳି ଗୀତ ଗାଇଥାଆନ୍ତି —

"ଡସିଂ ଗାପା ଡାବୁ
ପରବ ପନାଇଁ
ହାଣ୍ଡିବୁ ବେନାଆଁ
ସାଣ୍ଡିବୁ ଗଜହା
ନାବୁରେ ନେପେଲେଦ୍
ରଜା ରାଣୀ ।"

ଅର୍ଥାତ୍ ଆଜକାଲି ଆମ ପରବ ହାଣ୍ଡିଆ ପିଇବା, କୁକୁଡ଼ା ମାରିବା । ଆଜି ଆମର ମିଳନ ରଜା ରାଣୀଙ୍କ ଭଳି ।

ଭାଷା—

ଏହି କ୍ଷୁଦ୍ର ଅଞ୍ଚଳରେ ବହୁ ଭାଷାର ପ୍ରଚଳନ ଦେଖାଯାଏ । ତେବେ ଏଠାରେ ପ୍ରଚଳିତ ବିଭିନ୍ନ ଭାଷା ମଧ୍ୟରେ 'ଠାର' ଭାଷା ପ୍ରଧାନ । ଏହି ଭାଷା ମୁଖ୍ୟତଃ ମାଝି ସମ୍ପ୍ରଦାୟର ଭାଷା । ନିକଟରେ ଜଣେ ପିଲା ତାର ବାପ ପାଖକୁ ଲେଖିଥିବା ଏହି ଭାଷାର ଗୋଟାଏ ଚିଠି ଲେଖକର ହସ୍ତଗତ ହୋଇଥିଲା । ଏହି ଭାଷା ସମ୍ପର୍କରେ ପାଠକମାନଙ୍କର ଧାରଣା ଜନ୍ମାଇବାଲାଗି ନିମ୍ନରେ ତାର ଅବିକଳ ନକଲ ପ୍ରଦାନ କରାଗଲା ।

ଦସିଶୋଲ
ତା ୮-୭-୭୯

ଜାନାମ୍ ବାବା, ସାଙ୍ଗିଞ୍ଜ୍ ଦିଶମ ଖନ୍ ଇଞ୍ଜା ଜହାର ଆପକାଃ ମେ । ଇଞ୍ଜ୍ ଖଲ୍‌ରେନାଂ କାଥା ଯେ ନିତଃ ଖଲାରେୟାଃ ହୁକୁଏରଃ ଗୁବା ଆକାନା । ଅଲାଃ ତେୟାର କାମି ନିତଃ ଗୁବାହୁୟୁ ଆକାନା । ଆର ଇରାଲ ମହାଗାନ୍ ହୁୟୁଃଆ । ଆଲେ ସ୍କୁଲ ଦୁଇ ତାରିଖ ହୟୁଃ ଏହବଃଆ । ଇଞ୍ଜ୍ ଲଗିଦ୍ ବହି କାଗଜ କରଞ୍ଜ ଲଗିଦ୍ ଟାକା ଦରକାରରଃ କାନା, ଦରମା ମାମ୍ଞ୍ଜାମ୍ ରେଖାନ୍ ଜାହାଁ ତିନ ଓଡ଼ଜ୍ ଟାକା ଭେଜା ଆଞ୍ଜମେ । ଗେଲ୍ ତଞ୍ଜ ରକାବ୍ ଏନା । ନିତଃ ଜଡହଲ ବୁଗିରେଗେ ମେନାଃ ଲେୟା । ଇଞ୍ଜ ମିଣ୍‌ଏରା ରୁଥାଃକାନ୍ ପହେଞ୍ଜ

କାଦାପ୍ନ, ତନଦହିଁ ବାଇବାଇତେ ବେସ୍ ହ୍ଜୁଃ କାନାପ୍ନ । ଆର ଆତ ଆଗାନ୍ କାଥା କଦତେଦ୍ ବାଞ୍ଜଅଲ୍ । ଇନାଃ , ଗେ, ଆମିଜ ମାଗାଂହଠାନ୍ ।

ଖେଲଚରଣ ମାଝୀ

( ବାପା ଜାଣିବ, ଦୂରଦେଶରୁ ଆପଣଙ୍କୁ ମୋର ନମସ୍କାର । ମୋର ଲେଖିବାର କାରଣ ଯେ ବର୍ତ୍ତମାନ ଘରର କୃଷକାମ ସରିଯାଇଛି । ଘର ଛଆଣି କାମ ଶେଷ ହୋଇ ଆସିଲାଣି, ଆଉ ପ୍ରାୟ ଆଠଦିନ ଲାଗିବ । ଆମର ସ୍କୁଲ ଦୁଇ ତାରିଖରେ ଖୋଲବ । ମୋର ବହିପତ୍ର କିଣିବା ପାଇଁ ଟଙ୍କା ନଥାନ୍ତି ଦରକାର । ଦରମା ପାଇଲେ ତମେ କିଛି ଟଙ୍କା ପଠାଇ ଦେବ । କ୍ଲାସ୍ ଟେନ୍ ପ୍ରମୋଶନ ପାଇଲି । ବର୍ତ୍ତମାନ ସମସ୍ତେ ଭଲରେ ଅଛୁ । ସାନ ଭଉଣୀର ଦେହ ବିଶେଷ ଖରାପ ଥିଲା । ସେ ଆସ୍ତେ ଆସ୍ତେ ଭଲ ହୋଇ ଆସୁଛି । ଆଉ ଅଧିକ କ'ଣ ଲେଖିବି । ଇତି ।

ଆପଣଙ୍କ ସ୍ନେହର ପୁଅ,
ଖେଲଚରଣ ମାଝୀ

ଏହି 'ଠାର' ଭାଷାରେ ହିନ୍ଦୀ, ବଙ୍ଗଳା, ଉର୍ଦ୍ଦୁ, ପାର୍ଶି ପ୍ରଭୃତି ଭାଷାର ପ୍ରଭାବ ପଡ଼ିଥିବା ଉଲ୍ଲିଖିତ ଉକ୍ତିରୁ ସ୍ପଷ୍ଟ ଅନୁମିତ ହୁଏ ।

ଠାର ଭାଷା ବ୍ୟତୀତ ଏହି ଅଞ୍ଚଳରେ ପ୍ରଚଳିତ ଅନ୍ୟତମ ପ୍ରଧାନ ଭାଷା ହେଲା—ହୋ ଭାଷା ବା କୋହ୍ଲ ଭାଷା ( ପୂର୍ବ ସ୍ତମ୍ଭରେ ଏହି ଭାଷାର ଗୋଟିଏ ଗୀତ 'ଜସିଂ ଗାପାଡ଼ାବୁ' ପ୍ରଦତ୍ତ ହୋଇଛି ) । ଉଚ୍ଚାରଣ ଭେଦ ଓ କେତେକ ବୈଦେଶିକ ଶବ୍ଦର ବ୍ୟବହାରକୁ ବାଦ୍ ଦେଲେ ଏହି ଦୁଇ ଭାଷା ମଧ୍ୟରେ ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ନିମ୍ନରେ ଏହାର କେତୋଟି ଉଦାହରଣ ଦିଆଗଲା ।

| ଠାର | କୋହ୍ଲ | ଓଡ଼ିଆ |
|---|---|---|
| ହୁଜୁମ୍ | ହୁଜୁଃ ମେ | ଆସ |
| ଜମ୍ | ଜମେ ମେ | ଖାଅ |
| ଦୁପ୍ | ଦୁପ୍ ପେ | ବସ |
| ଗୁଲ୍‌ବମେ | ସେନୋଃମେ | ଯାଅ |
| ଭଗିମେନାୟୁ | ବୁଗିନ୍‌କେ ମିନାପିଅଚେ | ଭଲ ଅଛ କି ? |
| ବେଣ ମେନାମିଆଛେ | ବୁବନ୍‌କେ ମିନାଲ୍ଲଆ | ଭଲଅଛୁ |
| ଦିକୁ | କସାଣ | ବାବୁ (ଅଫିସର) |

ଏହି ଦୁଇଟି ଆଦିବାସୀ ଭାଷା ବ୍ୟତୀତ ଏ ଅଞ୍ଚଳରେ ଏକ ବିକୃତ ଓଡ଼ିଆ ଭାଷାର ପ୍ରଚଳନ ମଧ୍ୟ ଦେଖିବାକୁ ମିଳେ । ଏଥିରେ ମୂଳ ଓଡ଼ିଆ ଶବ୍ଦ ସହିତ 'ଣ୍ଟ' ର ପ୍ରୟୋଗ ପରିଲକ୍ଷିତ ହୁଏ; ଯଥା:—ଆସଣ୍ଟ, ଖାଆଣ୍ଟ, ଯାଆଣ୍ଟ, ବସଣ୍ଟ ଇତ୍ୟାଦି ।

## ଉଜ୍ଜ୍ୱଳ ଭବିଷ୍ୟତର ପୂର୍ବାଭାସ—

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବାର ପ୍ରାୟ ଏକ ପୁରୁଷ କାଳ ଅତିବାହିତ ହୋଇଯାଇଥିଲେ ସୁଦ୍ଧା ଏହି ଅଞ୍ଚଳ ଏପର୍ଯ୍ୟନ୍ତ ଅନ୍ଧକାରଚ୍ଛନ୍ନ ହୋଇ ପଡ଼ି ରହିଛି କହିଲେ ଚଳେ । ଏଠାରେ ଶିକ୍ଷା, ସଭ୍ୟତା ତଥା ଓଡ଼ିଆ ଭାଷାର ଆବଶ୍ୟକୀୟ ପ୍ରଚାର ଘଟିନାହିଁ । ସ୍ଥାନୀୟ ଲୋକମାନେ ଜାତିର ଉନ୍ନତି, ବିଜ୍ଞାନର ଅଗ୍ରଗତି ତଥା ସଭ୍ୟତାର ପ୍ରଗତି ବିଷୟରେ ବିଶେଷ ଅବହିତ ନୁହଁନ୍ତି । ପରିଷ୍କାର ପରିଚ୍ଛନ୍ନତା କଣ ଏମାନେ ଜାଣନ୍ତି ନାହିଁ । ଏମାନଙ୍କର ବସନ ପରିଧାନ ରୁଚିସମ୍ମତ ନୁହେଁ କିମ୍ବା ଏମାନେ ବ୍ୟବହାରକୁଶଳୀ ନୁହନ୍ତି ।

ଏହା ସତ୍ତ୍ୱେ ଏହି ଅନୁନ୍ନତ ଅଞ୍ଚଳ ଉନ୍ନତି ପଥରେ ଦ୍ରୁତଗତିରେ ଆଗେଇ ଚାଲିଛି, ଏହା ନିଃସନ୍ଦେହରେ କୁହାଯାଇ ପାରେ । ଆଜକୁ ଦଶବର୍ଷ ତଳେ ଏହି ଅଞ୍ଚଳ ଯାହା ଥିଲା, ବର୍ତ୍ତମାନ ତାର ରୂପ ଯଥେଷ୍ଟ ବଦଳି ଯାଇଛି । ସୁବର୍ଣ୍ଣରେଖା ସେତୁ ନିର୍ମାଣ ପରେ ପରେ ଏଠାରେ ବିଭିନ୍ନ ବିଭାଗ ପକ୍ଷରୁ ଯାଞ୍ଚକାରୀ କର୍ମଚାରୀ ଅବସ୍ଥାପିତ ହେଲେ ଏବଂ ତା

ଫଳରେ ଏ ଅଞ୍ଚଳର ପ୍ରାଧାନ୍ୟ ବଢ଼ିଗଲା । ଜାତୀୟ ରାଜପଥର ଦୁଇ ପାର୍ଶ୍ୱରେ ପ୍ରାୟ ଅ.୦ ଦଶଟି ଜଳଖିଆ ଓ ପାନ ଦୋକାନ ବସିଲାଣି । ଗାଁଭିତରୁ ଲୋକ ଆସି ଏଠାରେ ଗୋଟିଏ ଗୋଟିଏ କୁଡ଼ିଆ ଘର କଲେଣି । ପୁଣି ଚଳଚ ବର୍ଷଠାରୁ ଓଡ଼ିଶାର ବିଭିନ୍ନ ସୀମାନ୍ତ ଯାଞ୍ଚଦ୍ୱାରମାନଙ୍କରେ ସହକାରୀ ବାଣିଜ୍ୟ ଶୁଳ୍କ ଅଫିସରଙ୍କ ଅଧୀନରେ ଜଙ୍ଗଲ, ଯୋଗାଣ, ପରିବହନ ଓ ପୋଲିସ ଆଦି ବିଭାଗର ଦାୟିତ୍ୱ-ସମ୍ପନ୍ନ କର୍ମଚାରୀମାନଙ୍କୁ ନିଯୁକ୍ତ କରାଯିବା ଲାଗି ସରକାର ନିଷ୍ପତ୍ତି କରିବା ଫଳରେ ଏଠାରେ କର୍ମଚାରୀମାନଙ୍କର ସଂଖ୍ୟା ବୃଦ୍ଧି ଘଟି ଏ ଅଞ୍ଚଳର ପ୍ରାଧାନ୍ୟ ବଢ଼ିଯିବା ସ୍ୱାଭାବିକ ।

ଆଗେ ଏଠାକୁ ଯାତାୟାତର ଆଦୌ ସୁବିଧା ନ ଥିଲା । ବର୍ତ୍ତମାନ ଏଠାରୁ ବାରିପଦା ମଧ୍ୟରେ ତିନୋଟି ବସ୍ ଯାତାୟାତ କଲାଣି । ଚନ୍ଦ୍ରଧରୁ ଗୋଟିଏ ମେଦିନୀପୁର ପର୍ଯ୍ୟନ୍ତ ଚାଲିଛି । ନିକଟରେ ଏହିବାଟ ଦେଇ ଜାମସେଦପୁର ଓ କଲିକତାକୁ ବସ ଚାଲିବାର ସମ୍ଭାବନା ରହିଛି । ଏହି ରାସ୍ତାରେ ଯାତାୟାତ କରୁଥିବା ଦୈନିକ ମାଲ ବୋଝେଇ ଟ୍ରକ୍ ସଂଖ୍ୟା ୧୦।୧୫ରୁ ବଢି ବଢ଼ି ୧୦୦।୧୫୦ରେ ପହଞ୍ଚିଲାଣି । ପୁଣି ୬ ନମ୍ବର ଜାତୀୟ ରାଜପଥ ନିର୍ମାଣ କାର୍ଯ୍ୟ ନିକଟରେ ଶେଷ ହୋଇଯିବ । ପରେ ଯେତେବେଳେ କଲିକତାଠାରୁ ଜାମଶୋଳା ଘାଟ ବାଟରେ ବିଶୋଇ, ଯଶିପୁର, କରଞ୍ଜିଆ, କେଉଁଝର, ବଡ଼ବିଲ, ରାଜଗାଙ୍ଗପୁର, ଝାର୍ସୁଗୁଡ଼ା, ସମ୍ବଲପୁର ଓ ସୋହେଲାରୁ ମଧ୍ୟପ୍ରଦେଶ ଦେଇ ବମ୍ବେକୁ ରାସ୍ତା ଖୋଲିଯିବ ସେତେବେଳେ ଏ ଅଞ୍ଚଳର ପ୍ରାଧାନ୍ୟ ଯେ ଆହୁରି ବଢ଼ିଯିବ ଏଥିରେ ସନ୍ଦେହ ନାହିଁ । ତେବେ ତା ପୂର୍ବରୁ ଏହି ଅଞ୍ଚଳରେ ବିଦ୍ୟୁତ୍ ସଂଯୋଜନା, ତାର ଯୋଗାଯୋଗ ସ୍ଥାପନା, ଶିକ୍ଷାଳୟ, ଚିକିତ୍ସାଳୟ, କୂପ, ବାର୍ମି, ପୁଷ୍କରିଣୀ ଇତ୍ୟାଦିର ଆବଶ୍ୟକତା ବିଶେଷ ମାତ୍ରାରେ ଅନୁଭୂତ ହେଉଅଛି । ଏହି ସୀମାନ୍ତ ଅଞ୍ଚଳର ଅଭିବୃଦ୍ଧି ସାଧନ ନିମନ୍ତେ ଏ ସବୁ ଅଭାବର ଦୂରୀକରଣ ଏକାନ୍ତ ଆବଶ୍ୟକ ।



# ପ୍ରେତତତ୍ତ୍ୱ ଓ ଆଦିବାସୀ ସଂସ୍କୃତି

ଶ୍ରୀ ଗଣେଶ ପ୍ରସାଦ ପରିଜା

ପରୀକ୍ଷା ମୂଳକ ଭାବେ ଆମେରିକାରେ ପ୍ରେତତତ୍ତ୍ୱ ଗବେଷଣାର ସୂତ୍ରପାତ ହୋଇଥିଲା ୧୮୭୦ ଖ୍ରୀଷ୍ଟାବ୍ଦରେ । ଆମେରିକାର ବୈଜ୍ଞାନିକମାନେ ପ୍ରଥମେ ସଫଳ ହେବାପରେ ୧୮୮୫ ଖ୍ରୀଷ୍ଟାବ୍ଦରେ 'ସୋସାଇଟି ଫର ଦି ସାଇକିକାଲ୍ ରିସାର୍ଚ୍ଚ' ନାମରେ ଏକ ସଂସଦ ଲଣ୍ଡନରେ ସ୍ଥାପିତ ହେଲା । ତତ୍‌କାଳୀନ ଖ୍ୟାତନାମା ବୈଜ୍ଞାନିକ ଏଡ୍‌ମଣ୍ଡ ଗାରେନ୍, ଡଃ. ଏଫ୍. ଡବ୍ଲ୍ୟୁ. ଏଇଚ. ମାୟର୍ସ ଆଦି ବହୁ କଷ୍ଟ ସ୍ୱୀକାର କରି ପ୍ରେତତତ୍ତ୍ୱ ବିଷୟରେ କୃତିତ୍ୱ ଅର୍ଜନ କରିଗଲେ । ତତ୍ପରେ ପାଶ୍ଚାତ୍ୟ ଦେଶମାନଙ୍କରେ ପ୍ରେତତତ୍ତ୍ୱ ଉପରେ ଏକ ବିପ୍ଳବ ଦେଖାଦେଲା । ମୃତ୍ୟୁପରେ ଆତ୍ମା ବା ଜୀବନସତ୍ତ୍ୱର ସ୍ଥିତି ବିଷୟକ ବାସ୍ତବ ପ୍ରମାଣ ପାଇପାରିବା ପରେ ବହୁ ବୈଜ୍ଞାନିକ ଆଗେଇ ଆସିଲେ ପ୍ରେତ ବୈଠକରେ ପ୍ରେତମାନଙ୍କ ସହିତ ସମ୍ପର୍କ ସ୍ଥାପନ କରି ଅନ୍ଧକାର ଆଚ୍ଛାଦିତ ମୃତ୍ୟୁ ପରର ବିଷୟ ଜାଣିବାକୁ । ଖ୍ରୀଷ୍ଟପୂର୍ବ ହଜାର ହଜାର ବର୍ଷ ପୂର୍ବେ ବୈଦିକ ଋଷି ବେଦ, ଉପନିଷଦ ଓ ଗୀତାଦି ମାଧ୍ୟମରେ ଯେଉଁ ସତ୍ୟର ସନ୍ଧାନ ଦେଇ ଯାଇଥିଲେ ତାହା ପାଶ୍ଚାତ୍ୟ ବୈଜ୍ଞାନିକ ତଥା ଗବେଷକଙ୍କ ଦ୍ୱାରା ଅନୁମୋଦିତ ହେଲା । ସେମାନଙ୍କ ଦୃଷ୍ଟି ବିଶେଷ ଭାବେ ଆକର୍ଷିତ ହେଲା ଭାରତୀୟ ପ୍ରେତତତ୍ତ୍ୱ ଆଡ଼କୁ । ଅବଶ୍ୟ ପ୍ରେତତନ୍ତ୍ରରେ ଆଧ୍ୟାତ୍ମିକ ସଫଳତା ନ ଆସିଲେ ମଧ୍ୟ ଆତ୍ମାର ଅମରତା ବିଷୟରେ ସଠିକ୍ ପ୍ରମାଣ ମିଳିଥାଏ ।

ଏହି ଭାରତୀୟ ପ୍ରେତତତ୍ତ୍ୱରେ ଆଦିବାସୀଙ୍କ ଦାନ ଅତୁଳନୀୟ । ସେମାନଙ୍କ ପଦ୍ଧତିରେ ପ୍ରେତାବତରଣ ପ୍ରଥା ପ୍ରଣିଧାନ ଯୋଗ୍ୟ । ଅନେକ ସମୟରେ ମନେହୁଏ ଆର୍ଯ୍ୟ ଋଷିମାନେ ଏହି ଆଦିବାସୀମାନଙ୍କ-

ଠାରୁ ପ୍ରଥମେ ବୋଧେ ପ୍ରେତତତ୍ତ୍ୱ ଶିକ୍ଷା କରିଥିଲେ ଏବଂ ଆତ୍ମାର ଅମରତା ବିଷୟ ବେଦ, ବେଦାନ୍ତାଦିରେ ଗାଇ ଯାଇଥିଲେ । ତାହା ନ ହେଲେ କାଷ୍ପିୟାନ ହ୍ରଦ କୂଳରୁ ଯେଉଁ ଜାତି ପୃଥିବୀର ବିଭିନ୍ନ ଦେଶକୁ ଯାଇ ବସତି ସ୍ଥାପନ କରିଛନ୍ତି କେବଳ ଭାରତକୁ ଆସିଥିବା ଜାତିଙ୍କ ବ୍ୟତୀତ ଅନ୍ୟ କେହି ଆତ୍ମାର ଅମରତା ବିଷୟରେ କାହିଁକି ଅଜ୍ଞ ରହିଲେ ତାହା ମନରେ ଘୋର ସନ୍ଦେହ ଜାତ କରେ ।

କେବଳ ଆଦିବାସୀ ସଂପ୍ରଦାୟଙ୍କୁ ଛାଡ଼ିଦେଲେ ଭାରତର ଆଉ କୌଣସି ଜାତିରେ ପ୍ରେତ ଅବତରଣ ପ୍ରଥା ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ବିଦେହୀ ଆତ୍ମାମାନେ ସେମାନଙ୍କ ବନ୍ଧୁବାନ୍ଧବ ଆତ୍ମୀୟ ସ୍ୱଜନଙ୍କ ସହିତ ସମ୍ପର୍କ ସ୍ଥାପନ କରିବାକୁ ସର୍ବଦା ବ୍ୟଗ୍ର । ସେମାନେ କପରି ଅଛନ୍ତି, କଣ କରୁଛନ୍ତି ଆଦି ସେମାନଙ୍କ ବିଷୟକ ବହୁ ତଥ୍ୟ ଦେବାକୁ ସତତ ଆଗ୍ରହୀ । ଇହଜଗତରେ ଥିବା ଆତ୍ମୀୟମାନଙ୍କ ବିପଦ ବେଳେ ସେମାନେ ଉପସ୍ଥିତ ହୋଇ, ବିପଦରୁ କପରି ଉଦ୍ଧାର ମିଳିପାରେ ସେଥିପାଇଁ ଚେଷ୍ଟା କରି ଥାଆନ୍ତି । ମୃତ୍ୟୁପରେ ମୃତବ୍ୟକ୍ତି ରଖି ପାଇଥିବା ଗୁପ୍ତ ଧନ ସମ୍ପତ୍ତି ବିଷୟରେ ବିଦେହୀ ଆତ୍ମାର ବାର୍ତ୍ତା ପ୍ରତ୍ୟେକଙ୍କୁ ଚମତ୍କୃତ କରେ । ଏହିସବୁ ବିଷୟରେ ସଭ୍ୟ ବୈଜ୍ଞାନିକ-ଗଣ ବୈଜ୍ଞାନିକ ପଦ୍ଧତିରେ ଯାହା ଜାଣି ପାରିଛନ୍ତି ବା ପ୍ରମାଣ କରି ଦେଇ-ଛନ୍ତି । ଆଦିବାସୀ ସଂପ୍ରଦାୟରେ ପ୍ରଚଳିତ ପ୍ରେତାବତରଣ ପ୍ରଥାରୁ ଯାହା ଜଣାଯାଉଛି ତାହା କୌଣସି ଗୁଣରେ ନିମ୍ନ ନୁହେଁ, ଏହା ଦୃଢ଼ ଭାବରେ କୁହାଯିବ ।

ଏକଦା ଆଦିବାସୀ ସାନ୍ତାଳ ସଂପ୍ରଦାୟରେ ପ୍ରଚଳିତ ପ୍ରେତା-ବତରଣ ପ୍ରଥା ବିଷୟରେ ଆଲୋଚନା କଲାବେଳେ ବର୍ତ୍ତମାନର ଆଦିବାସୀ ଗ୍ରାମମଙ୍ଗଳ ମନ୍ତ୍ରୀ ଶ୍ରୀ ମନମୋହନ ଟୁଡ଼ୁ ତାଙ୍କ ସଂପ୍ରଦାୟରେ ସେହିପରି ପ୍ରଥା ଚିର ପ୍ରଚଳିତ ବୋଲି ଜ୍ଞାପନ କରିଥିଲେ । ସାନ୍ତାଳ ସଂପ୍ରଦାୟରେ ଅଛି କୌଣସି ଦାୟିତ୍ୱସମ୍ପନ୍ନ ବ୍ୟକ୍ତି ମରିଗଲା ପରେ ତାର ସଂସ୍କାର

ହୁଏ ଏବଂ ତାର ପରଦିନ ତାଙ୍କ ସମ୍ପ୍ରଦାୟରେ ଥିବା ପୂଜାରୀ ସେହି ବ୍ୟକ୍ତିକୁ ନିଜ ମଧ୍ୟରେ ଅବସ୍ଥାନ କରିବାକୁ ସୁଯୋଗ ଦିଏ। ତତ୍ପରେ ବହୁ ଗୂଢ଼ ତତ୍ତ୍ୱ ଯାହାକି ସେ ଜାଣିଥିଲା ଏବଂ ମୃତ୍ୟୁ ପୂର୍ବରୁ କାହାରିକୁ କହିବାକୁ ଭୁଲି ଯାଇଛି ତାହା ସେ ବ୍ୟକ୍ତ କରେ । ଯଦି ତାହା ଏକାନ୍ତ ଗୁପ୍ତ ହୋଇଥାଏ ତେବେ ଯାହାକୁ ତାହା କୁହାଯିବାର କଥା ତାହା ସେ କେବଳ ତାହାରି କାନରେ କହିଦିଏ । ଅଶିକ୍ଷିତ ଆଦିବାସୀ ସଂପ୍ରଦାୟରେ ସାଧାରଣତଃ ଧନ-ସମ୍ପତ୍ତି ଗଛ କୋରଡ଼ରେ କିମ୍ବା ପାହାଡ଼, ପର୍ବତ ବା ଉଚ୍ଚଭୂମିରେ ଗାତ କରି ପୋତି ଦେଇଥାନ୍ତି । ତାହା ଏଭଳି ଗୁପ୍ତ ଭାବରେ କରିଥାଆନ୍ତି ଯେ ନିଜର ସ୍ତ୍ରୀ ମଧ୍ୟ ତାହା ଜାଣି ପାରେ ନାହିଁ । ତେଣୁ ମୃତ୍ୟୁ ପରେ ଯେତେବେଳେ ତାର ଆତ୍ମା ପୂଜାରୀ ଦେହ ମଧ୍ୟରେ ପ୍ରବେଶ କରେ ସେ ତାର ଏକାନ୍ତ ଆତ୍ମୀୟ । ସେ ପୁଅ ହେଉ, ଝିଅ ହେଉ ବା ଆଉ ଯେ କେହି ହେଉ ତା କାନରେ ଚୁପ୍‌କରି ସେ ବିଷୟରେ କହି ଦେଇଥାଏ । ସେହି ନିର୍ଦ୍ଦେଶମତେ ତାର ଆତ୍ମୀୟ ସେହି ଧନ ସମ୍ପତ୍ତି ନିଶ୍ଚିତ ଭାବେ ପାଇଥିବା ଲେଖିବା ଅନାବଶ୍ୟକ । ଆଶ୍ଚର୍ଯ୍ୟର କଥା ଯେଉଁ ବ୍ୟକ୍ତି ମଧ୍ୟରେ ବିଦେହୀ ଆତ୍ମା ପ୍ରବେଶ କରିଥାଏ । ପ୍ରେତ ପ୍ରବେଶ କଲାପରେ ଏବଂ ପ୍ରେତ ତା ମଧ୍ୟରୁ ଚାଲିଯିବା ପରେ କଣ କଣ ହେଲା ତାହା ସେ ବିନ୍ଦୁ ବିସର୍ଗ ଜାଣିପାରି ନାହିଁ ।

ଆଧୁନିକ ପ୍ରଣାଳୀ ବା ବୈଜ୍ଞାନିକ ଭିତ୍ତିରେ ପ୍ରେତ ଆହ୍ୱାନ ଆଦିମ ଜାତି ଯାଆଁଳାଙ୍କ ଠାରୁ ପୃଥକ ତାହା କେବେ କୁହାଯାଇ ପାରିବ ନାହିଁ । ଆଧୁନିକ ପ୍ରଣାଳୀରେ ପ୍ରେତ ଯାହା ମଧ୍ୟରେ ଅବତରଣ କରେ ତାହାକୁ ମଧ୍ୟସ୍ଥ ବା ମିଡିୟମ କୁହାଯାଏ । ଯେଉଁମାନେ ମିଡ଼ୟମ ହେବାକୁ ଇଚ୍ଛା କରନ୍ତି ସେମାନେ ଏଭଳି କେତେଗୁଡ଼ିଏ ବିଧି ବାଛନ୍ତି, ଯେଉଁମାନେ କି ମିଡ଼ୟମ ହେବାକୁ ଇଚ୍ଛା କରନ୍ତି । ପ୍ରଥମେ ସେମାନେ ଗୋଟିଏ ବୈଠକ ବସାନ୍ତି ଯାହାକୁ କୁହାଯିବ 'ମିଡ଼ୟମ ଗଠନ—ବୈଠକ' ବା ଇଂରେଜୀରେ କୁହାଯିବ ଡେଭେଲପିଙ୍ଗ୍ ସର୍କଲ । ଅପରାପର ମିଡ଼ୟମ ବା ପ୍ରେତାତ୍ମା—ନିୟନ୍ତ୍ରଣକାରୀମାନେ ଏଭଳି

ଗୋଟିଏ ନିର୍ଦ୍ଦିଷ୍ଟ ଘର ବାଛି ନିଅନ୍ତି ଯେଉଁ ଘରେ କି ସପ୍ତାହରେ ଅନ୍ତତଃ ଥରେ ବୈଠକ ବସାଇ ଥାଆନ୍ତି । ବୈଠକ ମଧ୍ୟ ଆହ୍ୱାନ କରିବାକୁ ହୁଏ ଏକ ନିର୍ଦ୍ଦିଷ୍ଟ ସମୟରେ । କାରଣ ଆମ୍ଭେମାନେ ଯେଉଁଭଳି ବିଭିନ୍ନ କାର୍ଯ୍ୟରେ ସର୍ବଦା ବ୍ୟସ୍ତ ରହୁ ସେହିପରି ପ୍ରେତାତ୍ମାମାନେ ଅନବରତ ନିଜ କର୍ତ୍ତବ୍ୟରେ ଲିପ୍ତ ରହିବାକୁ ବାଧ୍ୟ । ସେଥିପାଇଁ ଜଗତ ସ୍ତରକୁ ଆସିବାକୁ ହେଲେ ବା ପ୍ରେତବୈଠକରେ ଉପସ୍ଥିତ ହେବାକୁ ହେଲେ ସେମାନଙ୍କର ନିର୍ଦ୍ଦିଷ୍ଟ ସମୟ ଆବଶ୍ୟକ । ଯେଉଁ ଘରେ ପ୍ରେତ ବୈଠକ ହେବ ସେ ଘରକୁ ପ୍ରେତମାନଙ୍କ ପାଇଁ ଅନୁକୂଳ କରାଇ-ବାକୁ ହେଲେ ଅନ୍ତତଃ ପାଞ୍ଚ ଛଅ ଥର ପ୍ରେତ ବୈଠକ ବସାଇବାକୁ ହୋଇଥାଏ । ଘରଟି ପ୍ରେତମାନଙ୍କ ଆସିବା ପାଇଁ ଅନୁକୂଳ ହେଲେ ମିଡିୟମମାନଙ୍କ କାର୍ଯ୍ୟ ଆରମ୍ଭ ହୁଏ ।

ଅନ୍ଧକାର ଘରେ ବୈଠକ ବସାଇବାକୁ ହୋଇଥାଏ । ଜଣେ ଆଲୋକ ଚିତ୍ରଶିଳ୍ପୀ ପକ୍ଷରେ ଯେଉଁଭଳି ଅନ୍ଧାର ଘର ଦରକାର ତାର ଫଟୋ ଉଠାଇଥିବା ନେଗେଟିଭ୍‌ରୁ ପ୍ରକୃତ ଫଟୋ ଛପାଇବା ପାଇଁ ଠିକ୍ ସେହିଭଳି ଘରେ ମିଡିୟମମାନେ ବସି ପ୍ରେତ ଆହ୍ୱାନ କରିଥାନ୍ତି । ମିଡିୟମ୍ ପକ୍ଷରେ ପ୍ରେତ ଆହ୍ୱାନ ଅବସ୍ଥା ହେଲା ମଣିଷର ଦେହ ଓ ମନର ସ୍ଥିର ତନ୍ଦ୍ରାବିଷ୍ଟ ଅବସ୍ଥା । ଯାହାକୁ କି ଇଂରେଜୀରେ କୁହାଯିବ ନେଗେଟିଭ୍ କଣ୍ଡିସନ । ସେହି ସମୟରେ ଦେହ ଓ ମନ ସବୁ କାର୍ଯ୍ୟରୁ ବିରତ ରହି ସ୍ଥିର ତନ୍ଦ୍ରାବେଶ ଭଳି ଲାଗେ । ଯେଉଁମାନେ ବୈଠକରେ ବସନ୍ତି ସେମାନେ କୌଣସି ଚିନ୍ତା ନ କରି ମନକୁ ମନ ଏପରି ଶୂନ୍ୟ ଅବସ୍ଥାରେ ରଖନ୍ତି ଯାହାକି ସତେ ଯେପରି ଅପେକ୍ଷା କରିଥାଏ କଣ ଗୋଟାଏ ଗ୍ରହଣ କରିବାକୁ ( ରିସେପ୍‌ଟିଭ୍ ଆଟିଚ୍ୟୁଡ୍ ) । ଘରଟି ଅନ୍ଧାର ହେଲେ ଆଖି କୌଣସି ଜଡ଼ ଜିନିଷ ଦେଖିବାକୁ ପାଏ ନାହିଁ ଯଦ୍ୱାରା କୌଣସି ଚିନ୍ତା କରିବାର ଅବକାଶ ନ ଥାଏ । ଫଳତଃ ଇନ୍ଦ୍ରିୟ-ଗୁଡ଼ିକ ପ୍ରବୁଦ୍ଧ ହେବାପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି ହୁଏ । ଏହି କ୍ଷେତ୍ରରେ ସୁନ୍ଦର ମିଠା ଗୀତ ମିଡିୟମକୁ ସାହାଯ୍ୟ କରେ, କିନ୍ତୁ ମିଡିୟମ ନିଜେ ଯେପରି ଗୀତ ନ ବୋଲେ ବା ଗୀତ ବିଷୟରେ

କୌଣସି ଧାରଣା ନ କରେ । ଯେଉଁମାନେ ମନକୁ ଖାଲି କରିଦେଇ ନ ' ପାରନ୍ତି ବା ମନ ସଦା ନାନା ଚିନ୍ତାରେ ବ୍ୟସ୍ତ ରଖନ୍ତି ସେମାନଙ୍କୁ ବାଦ୍ ଦେଇ ମନକୁ ଫାଙ୍କା ରଖୁଥିବା ବ୍ୟକ୍ତିଙ୍କୁ ବୈଠକରେ ମିଡିୟମ୍ ହେବାପାଇଁ ସୁଯୋଗ ଦେବା ଦରକାର । ମିଡିୟମ କେବେ ନିଜ ଇଚ୍ଛାରେ ମନକୁ ରଖେନାହିଁ । ସେ ଏଭଳି ରଖେ ଯେପରି ସହଜେ ପ୍ରେତାତ୍ମା ତାକୁ ନିଜର କରି ପାରିବ ।

ଆଦିବାସୀ ସମ୍ପ୍ରଦାୟର କେବଳ ସାଆଁତାଳ କାହିଁକି କନ୍ଧ, ମୁଣ୍ଡା ଆଦି ବହୁ ଆଦିବାସୀ ସମ୍ପ୍ରଦାୟମାନଙ୍କ ପ୍ରେତ ଆହ୍ୱାନ କୌଣସି ନିର୍ଦ୍ଦିଷ୍ଟ ଘରେ ନ ହୋଇ ଯେ କୌଣସି ଲୋକ ଘରେ ମଧ୍ୟ ହୋଇଥାଏ । ପ୍ରେତ ଆହ୍ୱାନକାରୀ ବ୍ୟକ୍ତି ଯେଉଁଦିନ ପ୍ରେତ ଆହ୍ୱାନ କରିବ ସେଦିନ କିଛି ଖାଏ ନାହିଁ କମ୍ୱା କରିଥାଏ ପବିତ୍ର ଅରୁଆ ଅନ୍ନ ଭକ୍ଷଣ । କେବଳ ରାତି ବା ଅନ୍ଧାର କାହିଁକି ଏହା ମଧ୍ୟ ହୁଏ ଦିନରେ ଯଦି ରାତିରେ ହୁଏ ତେବେ ଦୀପାଲୋକରେ ସେ ପ୍ରେତକୁ ନିଜ ମଧ୍ୟରେ ସ୍ଥାନ ଦେଇଥାନ୍ତି । ଆହ୍ୱାନକାରୀ ପ୍ରଥମେ ନିଶ୍ଚଳଭାବେ ବସି କେତୋଟି ଅରୁଆଚାଉଳ ନିଜ ଉପରେ ବାଞ୍ଛି ଏକ ପବିତ୍ର ଆବହାଓ୍ୱା ସୃଷ୍ଟି କରେ । ଫଳରେ ତାର ସାରା ଦେହଟି ଥରିଉଠେ । ଏବଂ ମୁହଁ ବିକୃତ ହୋଇଯାଏ । ତାର ସାରା ଦେହକୁ ଅଧିକାର କରେ 'ଡୁମା' ବା ପ୍ରେତ । 'ଡୁମା' ବା ପ୍ରେତ ଡାକିବାରେ ସେମାନେ ଏତେ ଅଭ୍ୟସ୍ତ ଯେ କେତେବେଳେ ସେମାନେ ନିଜ ମନକୁ ତଥା ଦେହକୁ 'ଡୁମା' ଅଧିକାରରେ ଛାଡ଼ି ଦିଅନ୍ତି ତାହା ଜାଣିବା କଷ୍ଟକର । ପ୍ରେତ ଯେତେବେଳେ ତା ମଧ୍ୟରେ ଅବସ୍ଥାନ କରି ତା କଣ୍ଠ ଯନ୍ତ୍ରକୁ ବ୍ୟବହାର କରେ ସେତେବେଳେ ଆହ୍ୱାନକାରୀର କଣ୍ଠସ୍ୱର ସ୍ୱତଃ ଅସ୍ୱାଭାବିକ ହୋଇ ଯାଇ-ଥାଏ ତାହାର ପ୍ରସନ୍ନ ମୁଖମଣ୍ଡଳ ପୁରାପୁରି ଝାଉଁଳି ପଡ଼ିଥାଏ । ତାହା ତନ୍ଦ୍ରାବିଷ୍ଟ ମୁଖ ବୋଲି ଖୁବ୍ ସହଜେ କହି ହେବ । ତାହାର ଗତି ତାହାର ହାବଭାବ ଅତି ବିଚିତ୍ର ଯାହାକି ଲେଖନୀ ମୁନରେ ଏତେ ସହଜରେ ପ୍ରକାଶ ପାଇ ପାରିବ ନାହିଁ ।

ଆଦିବାସୀମାନଙ୍କ ମଧ୍ୟରେ ପ୍ରଚଳିତ ଦେବତା ଭରିବା ପ୍ରଥା ଏବଂ ପ୍ରେତ ଆହ୍ୱାନ ପ୍ରଥା ଏକ୍ । 'ଡୁମା' ଏବଂ ଦେବତା ପୃଥକ ପୃଥକ ହେଲେ ମଧ୍ୟ ଉଭୟଙ୍କ ଆହ୍ୱାନ ପ୍ରଣାଳୀ ଏକାଭଳି ତତ୍ତ୍ୱ ଦୃଷ୍ଟିରେ ଦେବତା ଓ ଡୁମା ମଧ୍ୟରେ କିଛି ତଫାତ୍ ନ ଥିଲେ ମଧ୍ୟ ଏ ଦୁହିଁଙ୍କୁ ଏକା ବୋଲି ସେମାନେ କୁହନ୍ତି ନାହିଁ । ଦେବତା ଝାଁକର ବା ପୁଝାରି ( ମିଡୟୁମ ) କୁ ପ୍ରସନ୍ନ ହୋଇଥିଲି ବେଳେ ସେ ଜୀବନ୍ତ କୁକୁଡ଼ା, କଳାପାରିକୁ ଦାନ୍ତରେ ତାଙ୍କ ତଣ୍ଟି କଣା କରି ରକ୍ତ ପିଇବା ଦୃଶ୍ୟ ଅତି ଭୟଙ୍କର ହେଲେ ମଧ୍ୟ ଲୋକମାନେ ବଡ଼ ସନ୍ତୋଷ ଲଭ କରନ୍ତି । କୌଣସି ଲୋକ ବେମାର ପଡ଼ିଲେ ଚିକିତ୍ସକ ଡାକିବା ଅପେକ୍ଷା ଦେବତା ଡାକିବାକୁ ଆଦିବାସୀ ସମ୍ପ୍ରଦାୟ କାହିଁକି ବହୁ ଅଣ ଆଦିବାସୀମାନେ ମଧ୍ୟ ପସନ୍ଦ କରିଥାଆନ୍ତି । ପନ୍ଦର ବର୍ଷରୁ ଊର୍ଦ୍ଧ୍ୱ ହେବ ଗଡ଼ଜାତ ଅଞ୍ଚଳ ଭ୍ରମଣ ସମୟରେ ଭବାନୀ-ପାଟଣାଠାରୁ ଦଶ ବାର ମାଇଲ୍ ଦୂରରେ ଡାକନାମ ଡଙ୍ଗର୍ଲା ଅଞ୍ଚଳରେ ମୋତେ ଥରେ ଜ୍ୱର ହେଲା । ମୋର ଦେବତା ବା ଗୁଣି ଉପରେ ସେତେ-ବେଳେ ବିଶ୍ୱାସ ନ ଥିଲେ ମଧ୍ୟ ଦେବତା ଲାଗିଥିବା ପୁଝାରିର ଖାଲି ଫୁଙ୍କରେ ମୁଁ ଆରୋଗ୍ୟ ହୋଇଗଲି ।

ପ୍ରେତମାନଙ୍କୁ ଭୟ କରିବାର କୌଣସି କାରଣ ନାହିଁ । ପ୍ରେତ-ମାନଙ୍କ ମଧ୍ୟରେ ଦୁଇ ପ୍ରକାର ପ୍ରେତ ଦୃଷ୍ଟ ହୁଅନ୍ତି । ଯେଉଁଗୁଡ଼ିକ ଲୋକଙ୍କ ମଙ୍ଗଳକାମନା କରନ୍ତି ସେମାନଙ୍କୁ ସୁ ପ୍ରେତ କୁହାଯାଏ ଏବଂ ଯେଉଁମାନେ ଅସତ୍ ଲୋକ, ମୃତ୍ୟୁ ପରେ ମଧ୍ୟ ତାଙ୍କର ସେହି ଅସତ୍ ପ୍ରକୃତି ଚାଲିଯାଇ ନ ଥାଏ ସେମାନଙ୍କୁ କୁ ପ୍ରେତ କୁହାଯାଏ । କୁ ପ୍ରେତ ମାନେ ସୁ ପ୍ରେତମାନଙ୍କ ସହିତ ରହି ପାରନ୍ତି ନାହିଁ । ଏପରିକି କୁ ପ୍ରେତ ସୁ ପ୍ରେତକୁ ଦେଖିଲା ମାତ୍ରେ ପଳାୟନପର ହୋଇଥାଏ । ମଣିଷମାନଙ୍କୁ ମଧ୍ୟ ସେମାନେ ଭୟ କରନ୍ତି । ମାତ୍ର ଦୁର୍ବଳ ମୁହୂର୍ତ୍ତରେ ସେମାନେ ମଣିଷକୁ ଭୟଭୀତ କରିଥାନ୍ତି । ତେଣୁ ସେମାନେ ଯେତେବେଳେ ଭୟ ପ୍ରଦର୍ଶନ କରନ୍ତି ସେତେବେଳେ ସେମାନଙ୍କୁ ଭୟ ନ କରି ବରଂ ତାଙ୍କୁ ଆକ୍ରମଣ ବିଧେୟ । ମନେରଖିବା ଉଚିତ୍ ସେମାନେ ବିଦେହୀ । ଯେଉଁ ଦେହ ଧାରଣ କରନ୍ତି ତାହା ଅସ୍ଥାୟୀ । ଏହି କୁ ପ୍ରେତମାନେ

ସୁ ପ୍ରେତ ଏବଂ ମଣିଷଙ୍କୁ ଭୟ କରି ପରିତ୍ୟକ୍ତ ସ୍ଥାନରେ ନିର୍ଦ୍ଧ୍ମା କଡ଼ରେ ରହିବାକୁ ବାଧ୍ୟ ହୁଅନ୍ତି । ପ୍ରେତାତ୍ମାମାନେ ବିଦେହୀ ହେଲେ ମଧ୍ୟ ମଦ୍ୟପୀଙ୍କ ଆତ୍ମା ମଦଭାଟି ପାଖରେ ତାଆଣାଙ୍କ ପରି ନାଚେଇ ଥାଏ । ବେଳେ ବେଳେ କାମୁକର ପ୍ରେତାତ୍ମା କୌଣସି ମଦ୍ୟପର ଦେହକୁ ଅଧିକାର କରି ମଦ୍ୟପର ପତ୍ନୀ ନିକଟ ଗମନ ପୂର୍ବକ ସହବାସ କରିଥାଏ ।

ଆଦିବାସୀମାନେ ସାଧାରଣତଃ ମଦ୍ୟପୀ । ତେଣୁ ଦେବତା ଗୁଡ଼ରେ ମଦ ଘଡ଼ାରୁ ମଦ ନିର୍ଗତ କରି ସେମାନଙ୍କ ଉଦ୍ଦେଶ୍ୟରେ ଦିଆ ହୋଇଥାଏ । ଚୈତ୍ର ଯାତ୍ରାରେ ଦିଆରି ବା ଦିସାରି ବା ପୂଝାରି ଅଥବା ଝାଙ୍କରି ଦେହକୁ ତାଙ୍କ ଗ୍ରାମର ଦେବତା ଅଧିକାରରେ ଗ୍ରହଣ କରି ବିଭିନ୍ନ ନୃତ୍ୟ ସହ ବହୁ ଅଦ୍‌ଭୁତ୍ କରଣୀ ପ୍ରଦର୍ଶନ କରେ । ଆଦିବାସୀ-ମାନଙ୍କ ପରି ସାରା ଓଡ଼ିଶାରେ କୌଣସି କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ପୂର୍ବେ ଦେବାଦେବୀଙ୍କୁ ନିଜ ମଧ୍ୟରେ ସ୍ଥାନ ଦେଇଥିବା କଥା ଅଛି । ଏହାକୁ କାଳସୀ କୁହନ୍ତି । ପ୍ରଥମେ ପ୍ରଥମେ ଏହି କାଳସୀ ସତ କହୁଥିଲେ; ମାତ୍ର ପରେ ପ୍ରକୃତ ଦେବାଦେବୀ ତାକୁ ପ୍ରସନ୍ନ ନ ହେଲେ ମଧ୍ୟ ଦେବା-ଦେବୀଙ୍କ ନାମରେ ଠକେଇ କ୍ରିୟା ଆରମ୍ଭ ହୋଇଗଲା । ଫଳରେ ଲୋକେ କେହି ବିଶ୍ୱାସ କଲେ ନାହିଁ । ତେଣୁ ଅଚିରେ ଧ୍ୱଂସ ପାଇଲା ସେହି ଆଦିମ ପ୍ରଥା ।

ଏଭଳି ବହୁ ପୁରୁଷ ସ୍ତ୍ରୀ ଅଛନ୍ତି ଯେଉଁମାନଙ୍କର କେତେକ ମାନସିକ କ୍ରିୟା ଆଂଶିକ ଭାବେ ବାହାରର କୌଣସି ପ୍ରେତଶକ୍ତି ଆୟତ୍ତରେ ଥାଏ । ସେହିମାନଙ୍କ ଠାରୁ ମଝିରେ ମଝିରେ ନିର୍ଦ୍ଦେଶ ବା ଇଙ୍ଗିତ ଆକାରରେ ସମ୍ବାଦ ପାଇ ଥାଆନ୍ତି । କିଏ ସେମାନଙ୍କୁ ଇଙ୍ଗିତ ଦେଲା ବା ନିର୍ଦ୍ଦେଶ ଦେଲା ତାହା ସେମାନେ ଜାଣି ପାରନ୍ତି ନାହିଁ । ଏହା ବୋଲି ସେମାନେ ତାଙ୍କର ଜ୍ଞାନ ଶକ୍ତି ହରାନ୍ତି ଏହା ନୁହେଁ । ଏହି ସଚେତନ ସଂସ୍କାରଯୁକ୍ତ ମିଡିୟମମାନଙ୍କ ମଧ୍ୟରେ କୌଣସି କୌଣସି ବ୍ୟକ୍ତି ବହୁ ଅସାଧାରଣ କଥା କହିଥାଆନ୍ତି ବା ଲେଖିଥାନ୍ତି । କିନ୍ତୁ ସେ

କପରି ତାହା କହୁଛନ୍ତି ବା କପରି ତାହା ଲେଖୁଛନ୍ତି ସେ ବିଷୟରେ ସେ ଜାଣି ପାରନ୍ତି ନାହିଁ ଓ ବୁଝି ପାରନ୍ତି ନାହିଁ । ଏହି ଶ୍ରେଣୀର କେତେକ ଲୋକ ଅନୁପ୍ରେରକ ବକ୍ତା ଓ ଲେଖକ ଭାବେ ପରିଚିତ ।

ଆଉ ଏକ ଶ୍ରେଣୀର ମିଡ଼ିୟମ ବାହାରର କୌଣସି ପ୍ରେତାବେଶ ବା ପ୍ରେତ ଶକ୍ତି ପ୍ରଭାବ ସମ୍ବନ୍ଧରେ କିଛି ଜାଣି ପାରନ୍ତି ନାହିଁ, ମାତ୍ର ତାଙ୍କ ମନ ଆଂଶିକ ଭାବେ ପ୍ରେତଶକ୍ତି ଦ୍ୱାରା ଆଚ୍ଛନ୍ନ ଥାଏ । ସେମାନେ କଥା କହନ୍ତି ଲେଖନ୍ତି କିନ୍ତୁ ଜାଣନ୍ତି ନାହିଁ ଯେ, କେଉଁ ଶକ୍ତି ତାଙ୍କୁ ବଶୀଭୂତ କରିଛି । କେତେକ ମିଡ଼ିୟମ କହିବା, ଲେଖିବା ସମୟରେ ଆଂଶିକ ଭାବେ ଦେହ ଓ ପାରିପାର୍ଶ୍ୱିକ ଅବସ୍ଥା ସମ୍ବନ୍ଧରେ ପୁରାପୁରି ଅଚେତନ ଥାଆନ୍ତି । ମାଂସପେଶୀ ଓ ସ୍ନାୟୁ କେନ୍ଦ୍ର ଉପରେ ପ୍ରେତ ଆଂଶିକ କର୍ତ୍ତୃତ୍ୱ ହାସଲ କରି ବହୁ କାର୍ଯ୍ୟ କରିଥାଏ । ବିଶେଷଭାବେ ପ୍ଲାନ୍‌ଚେଟେ-ଲିଖନ, ଓଜା ବୋର୍ଡ଼-ନିୟନ୍ତ୍ରଣ, ସ୍ୱୟଂ ଲିଖନ, ଦୂର ଶ୍ରବଣ, ଶବ୍ଦ-ପ୍ରେରଣ ଆଦିରେ ବିଦେହୀ ଆତ୍ମାର ଅସାଧାରଣ ଶକ୍ତି ଜଣାପଡ଼େ । ଯେତେବେଳେ ପ୍ରେତାତ୍ମା ବାହୁପେଶୀ ଉପରେ ନିୟନ୍ତ୍ରଣ ଜାହିର କରେ ସେତେବେଳେ ମିଡ଼ିୟମ ଓଜନଦାର ଜିନିଷ ଉଠାଉଠି କରି ପାରେ । ଯେତେବେଳେ ଚକ୍ଷୁର ସ୍ନାୟୁତନ୍ତ୍ରୀ ଓ ଦୃଷ୍ଟି ଶକ୍ତି ଉପରେ ନିୟନ୍ତ୍ରଣ କରେ ସେତେବେଳେ ମିଡ଼ିୟମ ଦେଖିଥାଏ ନାନା ପ୍ରକାର ଛବି ବା ପ୍ରତିକୃତି । ଏହା ଚକ୍ଷୁର ଭ୍ରମ ବା ବିକୃତ ମସ୍ତିଷ୍କ ବୋଲି କେତେକ ମନେ କରନ୍ତି । ମାତ୍ର ଏହା ଯେ ନିଚ୍ଛକ ସତ୍ୟ ଏହା ପ୍ରେତତତ୍ତ୍ୱ ନ ଜାଣିଥିବା ବ୍ୟକ୍ତି କପରି କହିବ ?

ଆଜି ଆମେରିକା ଇଂଲଣ୍ଡ ଆଦି ଦେଶମାନଙ୍କରେ ଯେଉଁ ପ୍ରେତତତ୍ତ୍ୱ ଉପରେ ବିଶିଷ୍ଟ ବିଶିଷ୍ଟ ବୈଜ୍ଞାନିକମାନେ ଗବେଷଣା କରି ପୃଥିବୀବାସୀଙ୍କୁ ନୂତନ ଆଲୋକ ଦେଖାଉଛନ୍ତି ତାହା ଯେ ହଜାର ହଜାର ବର୍ଷ ତଳେ ଭାରତରେ ଥିଲା ଏବଂ ତାହାର ମାଧ୍ୟମରେ ବହୁ ଅସାଧାରଣ କାର୍ଯ୍ୟ ସାଧିତ ହେଉଥିଲା ଏହା ସହଜେ ଅନୁମେୟ । ପରଲୋକାଗତ ଚିକିତ୍ସକଙ୍କ ଉପଦେଶରେ ବହୁ ସାଂଘାତିକ ରୋଗୀ

ଆରୋଗ୍ୟ ଲାଭ କରିଥାନ୍ତି । ଚିକାଗୋ ଧର୍ମ ମହାସଭାରେ ସ୍ୱାମୀ ବିବେକାନନ୍ଦ ପରମହଂସ ରାମକୃଷ୍ଣଙ୍କୁ ସ୍ମରଣ କରିବା ଛଡ଼ା ଅନ୍ୟ କିଛି କରି ନାହାନ୍ତି ବୋଲି ବ୍ୟକ୍ତ କରିଥିଲେ । ଅଥଚ ସେହି ସମୟରେ ତାଙ୍କ ମୁଖରୁ ଓଜସ୍ୱିନୀ ଭାଷଣ ନିର୍ଗତ ହେଉଥିଲା । ଏ ବିଷୟରେ ଚିନ୍ତା କଲେ କିଣ ଏହା ସେହି ମହାପୁରୁଷ ପରମହଂସଙ୍କ କାର୍ଯ୍ୟ ନୁହେଁ ବୋଲି କହି ହେବ କି ? ଏହିପରି ଲକ୍ଷ ଲକ୍ଷ ଉଦାହରଣ ପ୍ରେତ ସମ୍ବନ୍ଧରେ ଅଛି । ଆଜି ଏହି ବିଦ୍ୟା ଭାରତରେ ଅନ୍ୟ କେଉଁ ସଂପ୍ରଦାୟରେ ଥିବା ପରି ବୋଧହୁଏ ନାହିଁ । କେବଳ ଓଡ଼ିଶାର ଆଦିବାସୀ ସଂପ୍ରଦାୟରେ ତିଷ୍ଠି ରହିଛି । ଏହା ଅନ୍ଧତା ବା ମୂଢ଼ତା ବୋଲି କହି ହସି ଉଡ଼ାଇ ଦେବା ଅପେକ୍ଷା ପରୀକ୍ଷା ନିରୀକ୍ଷା ଦ୍ୱାରା ପ୍ରକୃତ ସତ୍ୟ ହୃଦୟଙ୍ଗମ କରିବା ଅଧିକ ଯୁକ୍ତିଯୁକ୍ତ । ଲ ଅଫ୍ ସାଇକିକ ଫେନୋମେନା ଗ୍ରନ୍ଥର ଗ୍ରନ୍ଥକାର ଡଃ ଟମାସ ଜେ. ହାଡ଼ସନ କହିଛନ୍ତି, "ଆଜିକାଲି ଯେଉଁ ବ୍ୟକ୍ତି ପ୍ରେତତତ୍ତ୍ୱକୁ ସ୍ୱୀକାର କରେନାହିଁ, ସେ ନାସ୍ତିକ ବୋଲି ଅଭିହିତ ହେବାର ମଧ୍ୟ ଯୋଗ୍ୟ ନୁହେଁ, ତାକୁ ଅଜ୍ଞ ବୋଲି କହିବାକୁ ହେବ ।" ବିଖ୍ୟାତ ଇଂରେଜ ବୈଜ୍ଞାନିକ ଆଲ୍‌ଫ୍ରେଡ୍ ଆର: ଓ୍ୱାଲେସ କହିଛନ୍ତି, "ପ୍ରେତତତ୍ତ୍ୱ ପ୍ରମାଣ କରିବା ନିମିତ୍ତ ଅଧିକ ଆଉ କିଛି ପ୍ରମାଣ ଆବଶ୍ୟକ ନାହିଁ । କାହିଁକି ନା ବିଜ୍ଞାନ ସମର୍ଥିତ ଉପରେ ଆଉ କୌଣସି ସିଦ୍ଧାନ୍ତ ଏହା ସପକ୍ଷରେ ଅଧିକ ସୁଦୃଢ଼ ପ୍ରମାଣ ଦେବ ନାହିଁ ।" ଏହି ସବୁକୁ ଲକ୍ଷ୍ୟ କରି ସଭ୍ୟମାନବ ହଜାର ହଜାର ବର୍ଷ ଧରି ଯେଉଁ ଚିରାଚରିତ ପ୍ରଥା ଆଦିବାସୀମାନଙ୍କ ସଂପ୍ରଦାୟରେ ପ୍ରଚଳିତ ଅଛି ତାକୁ ଅନୁସରଣ କରି ପ୍ରକୃତ ସତ୍ୟତା ଉପଲବ୍ଧି ସଙ୍ଗେ ସଙ୍ଗେ ପ୍ରେତତତ୍ତ୍ୱକୁ ପ୍ରକାଶିତ କରାଇବା ଉଚିତ୍ ।

———

# କନ୍ଧମାନଙ୍କର ଅର୍ଥନୈତିକ ଜୀବନ

ଶ୍ରୀ ଜଳଧର ସ୍ୱାଇଁ, ଏମ୍‌-ଏସ୍‌-ସି
ଆଦିବାସୀ ଗବେଷଣାଗାର
ଭୁବନେଶ୍ୱର

ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଜିଲ୍ଲାରେ କନ୍ଧମାନେ ଊଣା ଅଧିକେ ଦେଖିବାକୁ ମିଳନ୍ତି । ତେବେ ଫୁଲବାଣୀ ଜିଲ୍ଲାକୁ ଲୋକମାନେ ସାଧାରଣତଃ କନ୍ଧଭୂମି ବୋଲି କହିଥାନ୍ତି । 'କନ୍ଧ' ଶବ୍ଦର ଉତ୍ପତ୍ତି ସମ୍ବନ୍ଧରେ କିଛି ସଠିକ୍ ବିବରଣୀ ମିଳେ ନାହିଁ । ଅନେକ କହନ୍ତି ଯେ 'କୋଣ୍ଡା' ନାମକ ପର୍ବତର ନାମାନୁସାରେ ଏମାନଙ୍କୁ 'ପାହାଡ଼ିଆ ଲୋକ' ବା 'କନ୍ଧ' ବୋଲି କୁହାଯାଏ । ଆଉ କେତେକ କହନ୍ତି ଯେ ଏମାନେ କୁଇ ଭାଷାରେ କଥାଭାଷା କରୁଥିବାରୁ ଏମାନଙ୍କୁ 'କୁଇ' ବୋଲି କୁହାଯାଏ । ଆଉ ମଧ୍ୟ କେତେକ କହନ୍ତି ଯେ ସେମାନେ ସଦାସର୍ବଦା ଖଣ୍ଡା ବ୍ୟବହାର କରୁଥିବାରୁ ଖଣ୍ଡା ଶବ୍ଦରୁ ଅପଭ୍ରଷ୍ଟ ହୋଇ କନ୍ଧ ବୋଲି ରହିଛି । ସେମାନଙ୍କର ଭାଷା, ବସତି ଓ ବ୍ୟବସାୟାନୁସାରେ ସେମାନଙ୍କ ମଧ୍ୟରେ ବିଭିନ୍ନ ପ୍ରକାର ଶ୍ରେଣୀ ବିଭାଗ ରହିଛି । ଯଥା:— କୁଟିଆ, ଦେଶୀୟା, ମାଳୁଆ, ଡଙ୍ଗରିଆ ଓ ପେଙ୍ଗୁ ଇତ୍ୟାଦି । ପୂର୍ବର ଇଂରେଜ ସରକାରଙ୍କ ଅତ୍ୟାଚାରରୁ ରକ୍ଷା ପାଇବାକୁ ଯାଇ କନ୍ଧ ରମଣୀମାନେ ମୁହଁରେ ଚିତା କୁଟାଇ ବିକୃତ କରି ଦେଉଥିଲେ ଓ ଆଜିକାଲି ମଧ୍ୟ ଉକ୍ତ ଚିରାଚରିତ ପ୍ରଥାର ପ୍ରଚଳନ ଅଛି । ଏଠାରେ କେବଳ ଫୁଲବାଣୀ ଜିଲ୍ଲାର କନ୍ଧମାନଙ୍କ ବିଷୟରେ ଆଲୋଚନା କରା-ଯାଇଛି । ଫୁଲବାଣୀ ଜିଲ୍ଲାର ଆୟତନ ୪,୨୮୨ ବର୍ଗମାଇଲ ଓ ଲୋକସଂଖ୍ୟା ୬୧୪, ୪୨୭, ତନ୍ମଧ୍ୟରୁ ଆଦିବାସୀମାନଙ୍କ ସଂଖ୍ୟା ହେଲା

୨୧୪, ୦୬୭ ଓ କେବଳ କନ୍ଧମାନଙ୍କର ସଂଖ୍ୟା ହେଲା ୧,୯୯,୦୦୬ । ଏହି ଜିଲ୍ଲାର କେତେକ ଅଞ୍ଚଳକୁ ସରକାର 'ଅନୁସୂଚିତ ଅଞ୍ଚଳ' ବୋଲି ଘୋଷଣା କରିଛନ୍ତି । ଏହି ଜିଲ୍ଲାର ଜଙ୍ଗଲଜାତ ଦ୍ରବ୍ୟ ଓ କୃଷିଜାତ ଦ୍ରବ୍ୟ ଭିତରେ ହେଲା ସାଳ, ବାଉଁଶ, ସବାଇଘାସ, କେନ୍ଦୁପତ୍ର, ସଳପ, କଇଁଆ, ମହୁଲ, ସରି, ତୁଳା, ପେଶୁ ଇତ୍ୟାଦି । ବନ୍ୟଜନ୍ତୁମାନଙ୍କ ଭିତରେ ହାତୀ, ବାଘ, ଭାଲୁ ଆଦି ପ୍ରଧାନ ।

ଫୁଲବାଣୀ ଜିଲ୍ଲାର ଉତ୍ତରରେ ବଲାଙ୍ଗୀର, ଢେଙ୍କାନାଳ ଜିଲ୍ଲା, ଦକ୍ଷିଣରେ ଗଞ୍ଜାମ, କୋରାପୁଟ, ପୂର୍ବରେ ଗଞ୍ଜାମ, ପୁରୀ ଏବଂ ପଶ୍ଚିମରେ ବଲାଙ୍ଗୀର ଓ କଳାହାଣ୍ଡି ଜିଲ୍ଲା ଅବସ୍ଥିତ । କନ୍ଧ ବସ୍ତିଗୁଡ଼ିକ ଆମ୍ଭମାନଙ୍କ ଭଳି ଦୁଇଧାଡ଼ି ହୋଇ ବସିଥାଏ । ଘରଗୁଡ଼ିକ ସାଧାରଣତଃ କାଠରେ ତିଆରି । କାନ୍ଥ ମଧ୍ୟ କାଠ ଓ ମାଟିମିଶା । ଛାଉଣୀ ଛଣ, ନଡ଼ା, ଶାଳପତ୍ର ଓ ଖଜୁରି ଇତ୍ୟାଦିରେ ଆବୃତ ଥାଏ । ଗାଈ, ମଇଁଷି, କୁକୁଡ଼ା ଓ ଘୁଷୁରି ଆଦି କନ୍ଧମାନଙ୍କର ଗୃହପାଳିତ ପଶୁମାନଙ୍କ ମଧ୍ୟରେ ପ୍ରଧାନ । ସେମାନଙ୍କର ଦାଣ୍ଡପାଖ ବାରଣ୍ଡାରେ ଠାଏ ଠାଏ ଦୁଇ ଚାରି ଖଣ୍ଡି ପଥର ଦେଖିବାକୁ ମିଳେ । କନ୍ଧମାନେ ଏହାକୁ 'ଦାରଣି ଦେବତା' ବୋଲି ମାନନ୍ତି । ସେମାନେ ବର୍ଷସାରା ମୁଠାଏ ଖାଇବାକୁ ନପାଇ ବଣର ବିଭିନ୍ନ ପ୍ରକାରର ଫଳମୂଳ, ଶାଗ ଆଦିକୁ ସଞ୍ଚୟ କରି ଚଳନ୍ତି ।

କନ୍ଧମାନଙ୍କ ମଧ୍ୟରେ ଦୁଇ ବିଭିନ୍ନ ପ୍ରକାରର ସଂସ୍କୃତି ଦେଖିବାକୁ ମିଳେ । ସେଥିରୁ ଦଳେ ପାହାଡ଼ବାସୀ ପେଙ୍ଗମାନେ ନିଜର ପାରମ୍ପାରିକ ସଂସ୍କୃତି ତଥା ପ୍ରଥାମାନ ବଜାୟ ରଖିଛନ୍ତି ଓ ଅନ୍ୟ ଦଳେ କାଳକ୍ରମେ ପାହାଡ଼ ଶିଖରରୁ ପାଦଦେଶକୁ ଆସି ଅଣଆଦିବାସୀ ପଡ଼ୋଶୀମାନଙ୍କ ସଂସ୍କୃତିରେ ପ୍ରଭାବିତ ହୋଇ ଏକ ନୂଆ ସଂସ୍କୃତି ଗଢ଼ିବାରେ ଲାଗିଛନ୍ତି ।

ଏହି ଜିଲ୍ଲାର ଆଦିବାସୀମାନଙ୍କର କୃଷି ଓ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ ହେଲା ମୁଖ୍ୟ ବ୍ୟବସାୟ । ଏହି ଜିଲ୍ଲାର ପ୍ରାୟ ୩୦୧୧ ବର୍ଗମାଇଲ

ଜଙ୍ଗଲ ଅଛି ଓ ଅନେକ ଛୋଟ ଛୋଟ ନଦୀ ଓ ଝରଣାମାନ ଅଛି । କନ୍ଧମାନେ ପୋଡ଼ୁଚାଷ କରିବାକୁ ଯାଇ ବଣରେ ନିଆଁ ଲଗାଇବା ଦ୍ୱାରା ଜଙ୍ଗଲ ନଷ୍ଟ ହେଉଛି । ଫଳରେ ମାଟିର ଉତ୍ପାଦନ ଶକ୍ତି କମୁଛି ଓ ସାରସବୁ ଧୋଇ ହୋଇ ତଳକୁ ନଦୀ ସ୍ରୋତରେ ଚାଲିଯାଉଛି । ଝରଣାଗୁଡ଼ିକ ଆସ୍ତେ ଆସ୍ତେ ଲୋପ ପାଉଛି । ଏହି ଜିଲ୍ଲାର ଲୋକମାନଙ୍କର ଅର୍ଥନୈତିକ ମାନ ଅତି ନିମ୍ନ ସ୍ତରର । ଏମାନଙ୍କର ମୁଣ୍ଡପିଛା ଆୟ ଅନ୍ୟାନ୍ୟ ଜିଲ୍ଲାଗୁଡ଼ିକ ତୁଳନାରେ ଢେର କମ୍ । କନ୍ଧମାନେ ପୋଡ଼ୁଚାଷ ଉପରେ ନିର୍ଭର କରି ଚଳନ୍ତି ଓ ଅଣଆଦିବାସୀମାନଙ୍କଠାରେ ସମତଳଭୂମିକୁ ହରାଇ ଏ ପ୍ରକାର ଜମିରେ ପୋଡ଼ୁଚାଷ କରି ପୁରାପୁରି ନିର୍ଭର କରି ଚଳନ୍ତି । ପାହାଡ଼ ଉପରେ ଗଡ଼ାଣିଆ ଜାଗାରେ ଜଙ୍ଗଲମାନ କାଟି ଓ ପୋଡ଼ି ଏହିପ୍ରକାର ଚାଷ କରନ୍ତି । ଏହିଭଳି ଏକ ଜାଗାରେ ୨।୩ ବର୍ଷ ଚାଷ କରି ସାରିବା ପରେ ସେ ସ୍ଥାନ ପରିତ୍ୟାଗ କରି ଅନ୍ୟ ସ୍ଥାନକୁ ଚାଲିଯାଆନ୍ତି । ପୁଣି ସେ ଜାଗାରେ ଜଙ୍ଗଲ ବଢ଼ି କାଟିବା ଯୋଗ୍ୟ ହେଲେ ସେଠାରେ ପୋଡ଼ୁଚାଷର ଆୟୋଜନ କରାଯାଏ, କିନ୍ତୁ ସେହି ସ୍ଥାନରୁ ମୃତ୍ତିକା ଓ ବୀଜ କ୍ରମଶ ଧୋଇ ହୋଇ ଯାଉଥିବାରୁ ସେଠାରେ ଆଉ ଭଲ ଧରଣର ଜଙ୍ଗଲ ଉଠାଇ ପାରେ ନାହିଁ । କେତେକ ସ୍ଥାନରେ ହଳଦୀ, ଜଡ଼ା, ବାଇଗଣ, କଦଳୀ, ଲଙ୍କାମରିଚ ଆଦି ଫସଲ କରନ୍ତି । ପୋଡ଼ୁ ଭୂମିରେ ରାଶି, ମକା, ଜଡ଼ା, କୁଇରିଧାନ, ହଳଦୀ, ଶିମ୍ବ ଆଦି ଫସଲ କରନ୍ତି । ପୋଡ଼ୁଚାଷ କ୍ଷତିକାରକ ଓ ଅର୍ଥନୀତି ଦୃଷ୍ଟିରୁ ତ୍ରୁଟିପୂର୍ଣ୍ଣ ମଧ୍ୟ । ଅଣ ଆଦିବାସୀମାନେ ଆଦିବାସୀମାନଙ୍କ ସମତଳ ଜମିଗୁଡ଼ିକ ଅସତ୍ ଉପାୟ ଅବଲମ୍ବନ କରି ନେଇ ଯାଇଥିବାରୁ କନ୍ଧମାନେ ବାଧ୍ୟ ହୋଇ ପୋଡ଼ୁଚାଷ ଉପରେ ନିର୍ଭର କରିଛନ୍ତି ମାତ୍ର ଅନେକ ଜାଗାରେ ପୋଡ଼ୁଚାଷକୁ ଉପବ୍ୟବସାୟ ରୂପେ ଗ୍ରହଣ କରିଛନ୍ତି । ଫୁଲବାଣୀ ଜିଲ୍ଲାର ଜମିଜମା ଏ ପର୍ଯ୍ୟନ୍ତ ମାପଚୁପ ହୋଇ ନ ଥିବାରୁ ସେମାନେ 'ଖଣ୍ଡ' (Pieces of Land) ହିସାବ ରଖନ୍ତି । ଜମିଜମା କଣାବିକା କଲେ ଏକ ରସିରେ ମାପଚୁପ କରି ଦର ଧାର୍ଯ୍ୟ କରାଯାଏ । କନ୍ଧମାନେ ଅକ୍ଳାନ୍ତ ପରିଶ୍ରମ କରୁଥିଲେ ମଧ୍ୟ ବର୍ଷସାରା ଭାତ ମୁଠାଏ

ଖାଇବାକୁ ନ ପାଇ ବର୍ଷର ପ୍ରାୟ ୫।୬ ମାସ ଗଛର ମୂଳ ଉପରେ ନିର୍ଭର କରି ଚଳିଥାନ୍ତି । କନ୍ଧମାନେ ବିନା ଖଜଣାରେ ଜମି ଦଖଲ କରନ୍ତି । ମାତ୍ର 'ହଳ' (Pair of bullocko) ଅନୁସାରେ ସେମାନଙ୍କୁ ୭୫ ପଇସା ହିସାବରେ ଦେବାକୁ ପଡ଼ିଥାଏ । କନ୍ଧମାନଙ୍କର ଜମି, ଦୈନିକ ମଜୁରି ଓ ଜଙ୍ଗଲ ହିଁ ଜୀବନ ବଞ୍ଚିବାର ପ୍ରଧାନ ଉପାୟ । ପୁରୁଷ-ମାନେ ଦିନକୁ ଟ୧.୫୦ ଓ ସ୍ତ୍ରୀ କମ୍ବା ଗ୍ରେଟ ପିଲାମାନେ ଦିନକୁ ଟ୧.୦୦ ହିସାବରେ ମଜୁରି ପାଆନ୍ତି । କାମ କରୁଥିବା ଲୋକ ସକାଳୁ ପେଜ ଖାଇବାକୁ ଦିଏ; ମାତ୍ର ଘର ଛପର କଲାଦିନ ଭାତ ଓ ଡାଲି ଆଦି ଖାଇବାକୁ ଦେବାକୁ ପଡ଼ିଥାଏ । ଟଙ୍କା ପରିବର୍ତ୍ତେ ଧାନ ଦିନକୁ ୩ ଗାମ୍ବି ବା ୨ କିଲୋଗ୍ରାମ ଦିଆଯାଏ । ପୂର୍ବରୁ ପାତ୍ରମାନେ ବା ମୁଠା ମୁଖିଆମାନେ ଏହି 'କର' ବା 'ମାମୁଲ'କୁ ଆଦାୟ କରୁଥିଲେ । କନ୍ଧମାନେ ବିବାହ ଓ ମୃତ୍ୟୁ ବେଳକୁ ମୁଠାଦାର ବା ପାତ୍ରମାନଙ୍କୁ ଜମି ଟଙ୍କା କମ୍ବା ପୋଡ଼ ପ୍ରଭୃତି ଦେଉଥିଲେ ମାତ୍ର ବର୍ତ୍ତମାନ ଏହି ପ୍ରଥା ଲୋପ ପାଇଲାଣି ।

କନ୍ଧମାନେ ଏବେ ମଧ୍ୟ ବିଭିନ୍ନ ପ୍ରକାରରେ କଣ୍ଟ୍ରାକ୍ଟର, ମହାଜନ, ଓ ଅଣଆଦିବାସୀମାନଙ୍କ ଦ୍ୱାରା ଶୋଷିତ ହେଉଛନ୍ତି । ସେମାନେ ସ୍ୱଳ୍ପ ଆୟାନୁସାରେ ଗୁଜରାଣ ମେଣ୍ଟାଇବାକୁ ଆଶା ପୋଷଣ କରିଥାନ୍ତି । କିନ୍ତୁ ରୋଗ, ବିବାହ, ମୃତ୍ୟୁ, ପର୍ବପର୍ବାଣୀ ଆଦି ସେମାନଙ୍କର ଆର୍ଥିକ ଅବସ୍ଥାକୁ ପୁରାପୁରି ବଦଳାଇ ଦିଏ । ମଦ ପିଇବା କନ୍ଧମାନଙ୍କର ଅଭ୍ୟାସଗତ । ରୋଗରୁ ମୁକ୍ତ ପାଇବାକୁ ହେଲେ ଔଷଧର ସାହାଯ୍ୟ ନ ନେଇ କେବଳ ଅଂସଖ୍ୟ ଦେବାଦେବୀଙ୍କର ଆରାଧନା କରି ଅଯଥା ଖର୍ଚ୍ଚାନ୍ତ ହୁଅନ୍ତି । ସେମାନଙ୍କର ଦୃଢ଼ ଅନ୍ଧବିଶ୍ୱାସ ଯେ ପୂର୍ବପୁରୁଷ ବା ଭୂତର ଅସନ୍ତୁଷ୍ଟିରୁ ସମସ୍ତ ରୋଗ ଓ ଦୁଃଖ ଇତ୍ୟାଦିର ମୂଳ କାରଣ । ତେଣୁ ପୂଜା ପାଇଁ ଘୁଷୁରି, ଛେଳି, ମଇଁଷି, କୁକୁଡ଼ା ଆଦି କିଣି ଆଣି ବଳି ଦିଆଯାଏ । ମହାଜନମାନେ ତାଙ୍କ ଇଚ୍ଛାନୁଯାୟୀ ଅନୁସାରେ ଉଧାର ସୂତ୍ରରେ ଦରକାରି ପଶୁ ବା ଧନ ଯୋଗାଇ ଦେଇ ଆଦିବାସୀମାନଙ୍କୁ

କରଗତ କରିଥାନ୍ତି । ମହାଜନର ସୁବିଧା ଅନୁସାରେ ସାଧା କାଗଜରେ ଟଙ୍କାର ପରିମାଣ ନ ଲେଖି ଆଦିବାସୀମାନଙ୍କଠାରୁ ଦସ୍ତଖତ ନେଇଯାଏ କିମ୍ବା ବହୁତ ଟଙ୍କା ଲେଖି ଅଳ୍ପ ଟଙ୍କା ଦେଇଥାଏ । ତାପରେ କନ୍ଧ ଯେତେ ଶୁଝିଲେ ମଧ୍ୟ ତାହା କେବଳ ସୁଧ ଆଡ଼କୁ ମଜୁରି କରି ମୂଳଧନ ଅପରିଠ ରଖି ଖାତକକୁ ଚିରଦିନ ବାନ୍ଧିରଖେ । ତଦ୍ଵାରା ଆଦିବାସୀର ଅର୍ଥନୈତିକ ଜୀବନ ଅତି ଦୁଃଖପୂର୍ଣ୍ଣ ହୋଇପଡ଼େ । ଏହି ପ୍ରଥାକୁ "ଗୋତିପ୍ରଥା" ବୋଲି କହନ୍ତି । ସେମାନେ ଅଜ୍ଞ, ଦରିଦ୍ର ଓ ଋଣଗ୍ରସ୍ତ ହୋଇଥିବାରୁ ଅଣଆଦିବାସୀ ସାହୁକାରମାନେ ଉଚିତ୍ ମୂଲ୍ୟରେ କୌଣସି ଜିନିଷ କିଣାବିକା ନ କରି ସେମାନଙ୍କୁ ସର୍ବସ୍ଵାନ୍ତ କରିଦିଅନ୍ତି । ତେଣୁ ସେମାନେ ଆସାମ ପ୍ରଭୃତି ଜାଗା ବୁଲି ନିଜର ଜୀବିକା ନିର୍ବାହ କରନ୍ତି । ଆଦିବାସୀମାନଙ୍କୁ ଲୁଣ, ଲଙ୍କା, ଶୁଖୁଆ, ରସୁଣ, ଲୁଗା, ବାସନ, କୁସନ ଚଡ଼ା ଦରରେ ଯୋଗାଇ ଦେଇ ତାଙ୍କଠାରୁ ଜଙ୍ଗଲଜାତ ଦ୍ରବ୍ୟ ଓ କୃଷିଲବ୍ଧ ଦ୍ରବ୍ୟ କମ୍ ଦରରେ କିଣି ନେଇ ଯାଆନ୍ତି । ହଳଦି, ସୋରିଷ, ଜଡ଼ା, ପାଳୁଅ, ମୁଗ, ବାଜରା, ମହୁଲ, କଇଁଆ, ନାଇଗର ଆଦିକୁ ବଦଳି ସୂତ୍ରରେ ଦେଇ ବିଶେଷ ଶୋଷିତ ହୁଅନ୍ତି । ପାଣମାନେ କନ୍ଧ ସମାଜରେ ମଧ୍ୟସ୍ଥି ଭଳି କାର୍ଯ୍ୟ କରି ତାଙ୍କର ପ୍ରିୟମାନ ହୋଇ ପାରିଛନ୍ତି । କନ୍ଧଠାରୁ ଫସଲ କିଣି ନେଇ, ବିବାହରେ ମଧ୍ୟସ୍ଥି ହୋଇ ଓ ପଶୁ କିଣି ନେଇ ଆଜି ପାଣମାନେ ଜମିର ମାଲିକ ।

କନ୍ଧମାନେ ହାଟ ଓ ବଜାର ପ୍ରଭୃତିକୁ ଯିବାକୁ ଘୃଣା କରନ୍ତି । ଆଦିବାସୀ ଅଞ୍ଚଳରେ ରାସ୍ତାଘାଟର ଅଭାବରୁ ଓ ସେମାନଙ୍କର ଘରର ଅଭାବରୁ ଆମଦାନି ଜିନିଷ ପ୍ରକୃତ ମୂଲ୍ୟରେ ବିକ୍ରୀ କରାଯାଇ ପାରେ ନାହିଁ । ଅଣଆଦିବାସୀମାନେ, କୌଶଳ କରି ସମତଳ ଅଞ୍ଚଳର ଚାଷ ଜମି ସବୁ ନିଜ ନାମକୁ ହସ୍ତାନ୍ତର କରି ଆଦିବାସୀମାନଙ୍କୁ ପାହାଡ଼ ଶିଖର ଦେଶରେ ପୋଡ଼ୁଚାଷ କରି ଓ ଭୂମିହୀନ ମୂଲିଆ ହୋଇ ଚିର ଋଣୀ ହୋଇ ଜଙ୍ଗଲଜାତ ଦ୍ରବ୍ୟ ଉପରେ ନିର୍ଭର କରିବାରେ ବିଶେଷ

ଦାୟୀ, କାଳକ୍ରମେ ଗମନାଗମନର ସୁବିଧା ଯୋଗୁଁ ସେମାନେ ସମତଳ ଲୋକଙ୍କର ସଂସ୍ପର୍ଶରେ ଆସୁଛନ୍ତି । କିନ୍ତୁ ମଦ୍ୟପାନ କରିବା, ଅଖାଦ୍ୟ ଖାଇବା, ଗମନାଗମନର ଅସୁବିଧା, ରୋଗ, ଚାଷଜମି ଅଭାବ ଓ ଋଣ କରିବା ସେମାନଙ୍କର ଅଗ୍ରଗତିର ପ୍ରଧାନ ପ୍ରତିବନ୍ଧକ । ନିମ୍ନରେ ଏକ ୭ ଜଣିଆ ପରିବାରର ବାର୍ଷିକ ଆୟ ବ୍ୟୟର ଏକ ତାଲିକା ଦିଆଗଲା ।

| ଆୟ | | ବ୍ୟୟ | |
|---|---|---|---|
| ଜମିରୁ ଆୟ ଧାନ | ଟ୨୫୭-୦୦ | ଖାଦ୍ୟ | ଟ୪୨୫-୦୦ |
| ହଳଘା | ଟ ୨୦-୦୦ | ଲୁଗାପଟା | ଟ ୫୦-୦୦ |
| ମନ୍ଥଳ | ଟ ୧୮-୦୦ | ଚବଗୁନ୍ଦା | ଟ ୧୨-୦୦ |
| ଦିନ ମଜୁରୀ | ଟ୧୩୨-୦୦ | ବେଭାର | ଟ ୧୦-୦୦ |
| ମକା | ଟ ୧୫-୦୦ | ଖଜଣା | ଟ ୦-୭୫ |
| ଅନ୍ୟାନ୍ୟ ରବିଫସଲ | ଟ ୨୫-୦୦ | ରୋଗ | ଟ ୫୦-୦୦ |
| | | ମଦ | ଟ ୩୦-୦୦ |
| | | ମଞ୍ଜି | ଟ ୪୦-୦୦ |
| ମୋଟ | ଟ୪୬୭-୦୦ | ମୋଟ | ଟ୬୧୭-୭୫ |

ଆମଦାନୀରୁ ହାରାହାରି ବାର୍ଷିକ ଆୟ ଟ୪୬୭-୦୦
ପରିବାରର ହାରାହାରି ବାର୍ଷିକ ଖର୍ଚ୍ଚ ଟ୬୧୭-୭୫
ଅତଏବ ବର୍ଷ ଶେଷରେ ଅଭାବ ଟ୧୫୧-୭୫

ଆଜିକାଲି ଆଉ ମୁଠାଦାର ବା ପାଇକମାନେ ପୂର୍ବଭଳି ଲାଭବାନ୍ ହୋଇ ପାରୁ ନାହାନ୍ତି । ଆଦିବାସୀ ଜମି ହସ୍ତାନ୍ତର ନ ହେବା ପାଇଁ ସରକାର ଏକ ଆଇନ୍ ପ୍ରଣୟନ କରିଛନ୍ତି । ବର୍ତ୍ତମାନ ଶସ୍ୟାଗାରରୁ କନ୍ଧମାନେ କରଜ ନେଇ ବିଶେଷ ଉପକୃତ ହେଉଛନ୍ତି । ଜଙ୍ଗଲଜାତ ଓ କୃଷିଜାତ ଦ୍ରବ୍ୟର କିଣାବିକା ପାଇଁ ସରକାର ସମବାୟ ସମିତିମାନ ସ୍ଥାପନ କଲେଣି ଓ ଅଭ୍ୟନ୍ତର ଗାଁଗୁଡ଼ିକରେ ସରକାରୀ ଦୋକାନ ବସିଲାଣି । ମଧ୍ୟସ୍ଥି ଲୋକଙ୍କ ହାତରୁ ରକ୍ଷା ପାଇବା ପାଇଁ ବାଟକରା ପ୍ରଭୃତି ମାପଯନ୍ତ୍ରର ପ୍ରଚଳନ କରାଗଲାଣି ।

କୃଷିର ଉନ୍ନତି ପାଇଁ କ୍ଷୁଦ୍ର ଜଳସେଚନ ପ୍ରଭୃତିର ବ୍ୟବସ୍ଥା କରି ଆଦିବାସୀମାନଙ୍କୁ ହଳ, ବଳଦ, ଉନ୍ନତ ଧରଣର ମଞ୍ଜି ସାର ଓ ହତିଆର ଆଦି ମାଗଣାରେ ଯୋଗାଇ ଦିଆଗଲାଣି । ଉନ୍ନତ ଧରଣର ଚାଷ ଶିଖାଇବା ଲାଗି ଆଦର୍ଶ କୃଷି ଫାରମ୍‌ମାନ ସ୍ଥାପନ କରାଯାଇଛି ଓ ସ୍ଥାୟୀ ବସତି ସ୍ଥାପନ ପାଇଁ ଆର୍ଥିକ ସାହାଯ୍ୟର ବ୍ୟବସ୍ଥା ଅଛି । ଗମନାଗମନର ସୁବିଧା ପ୍ରତି ସରକାର ଦୃଷ୍ଟି ଦେଉଛନ୍ତି । ଶିକ୍ଷାର ବହୁଳ ପ୍ରସାର ପାଇଁ ନାନାପ୍ରକାର ବିଦ୍ୟାଳୟମାନ ବସାଗଲାଣି । ଜାତୀୟ ସଂପ୍ରସାରଣ ବ୍ଲକ ଜରିଆରେ ଆଦିବାସୀମାନଙ୍କର ଆର୍ଥିକ ଓ ସାମାଜିକ ଉନ୍ନତି ପାଇଁ ସରକାର ବ୍ୟବସ୍ଥା କଲେଣି । ତଥାପି ଆଦିବାସୀମାନେ ଅଶିକ୍ଷିତ, ଦରିଦ୍ର, ଶୋଷିତ ଓ ଦଳିତ ଅବସ୍ଥାରେ ଅଛନ୍ତି କହିଲେ ଚଳେ । ଦାରିଦ୍ର୍ୟ ଓ ଅନୁନ୍ନତ ଅବସ୍ଥା ହେଲା ମୁଖ୍ୟ ସମସ୍ୟା । ତେଣୁ କିପରି କାହିଁକି ଓଡ଼ିଶାର ପ୍ରତ୍ୟେକ ଆଦିବାସୀମାନଙ୍କର ଜୀବନ ଧାରଣର ମାନଦଣ୍ଡ କିପରି ଅଚିରେ ବୃଦ୍ଧି ପାଇବ, ତାହା ପ୍ରତ୍ୟେକ ସ୍ୱାଧୀନ ଦେଶର ନାଗରିକର ଚିନ୍ତା କରିବା କର୍ତ୍ତବ୍ୟ ନୁହେଁ କି ?



# ଶସ୍ୟମାତୃକ ଦେବୀ ପୂଜାର ମୂଳତତ୍ତ୍ୱ

ନଗେନ୍ଦ୍ରନାଥ ପ୍ରଧାନ

ଭାରତ ବର୍ଷରେ ଆଶ୍ୱିନ ମାସରେ ହୁଏ ଶାରଦୀୟ ଦେବୀଙ୍କର ବିପୁଳ ଆଡ଼ମ୍ବରପୂର୍ଣ୍ଣ ଉପାସନା । ଏହି ଦେବୀ ପୂଜା ସହିତ ଶାରଦୀୟ ଶସ୍ୟ-ମାତୃକାର ପୂଜା ଯେ ଘନିଷ୍ଠ ଭାବେ ଜଡ଼ିତ ଏକଥା ଅସ୍ୱୀକାର କରାଯାଇ ନ ପାରେ । ଓଡ଼ିଶାରେ ପ୍ରାଚୀନ କବିମାନଙ୍କ ମଧ୍ୟରେ ପ୍ରମୁଖ ମହାକବି ଶାରଳା ଦାସ ଏହି ତାନ୍ତ୍ରିକ ଦେବୀମାନଙ୍କର ସ୍ତୁତି କରିବାରେ ଶତମୁଖ । ସେ ଚଣ୍ଡୀପୁରାଣରେ ଏହି ଦୁର୍ଗା ଚଣ୍ଡୀଙ୍କର ମହିଷା ବଧ ପ୍ରସଙ୍ଗ ବର୍ଣ୍ଣନା କରିଅଛନ୍ତି । ପରବର୍ତ୍ତୀ କାଳରେ ଦୁର୍ଗା ଓ କାଳୀ ଆଦିଙ୍କୁ ନେଇ ବହୁ ଗ୍ରନ୍ଥ ରଚନା କରାଯାଇଥିଲେ ହେଁ ସଂସ୍କୃତ ଗ୍ରନ୍ଥ-ମାନଙ୍କରେ ତନ୍ତ୍ରଶାସ୍ତ୍ର ଏକ ବିପୁଳ ଭାଗ ଅଧିକାର କରି ବସିଛି । ଅଥର୍ବ ବେଦରେ ତନ୍ତ୍ରର ପ୍ରଭାବ ସର୍ବାଧିକ । କିନ୍ତୁ ଋକ୍‌ବେଦ ପ୍ରଭୃତି ପ୍ରାଚୀନ ବେଦମାନଙ୍କରେ ଏହାର ପ୍ରଭାବ ବେଶୀ ଦେଖାଯାଇ ନ ଥାଏ ।

ଏହି 'ତନ୍ତ୍ର'ର ଆଦିମ ବିକାଶ ସମ୍ପର୍କରେ ନାନା ମୁନିଙ୍କର ନାନା ମତ ରହିଛି । ଓଡ଼ିଆ ପଣ୍ଡିତ ନୀଳକଣ୍ଠ ଦାଶ ଡକ୍ଟର ବିନୟତୋଷ ଭଟ୍ଟାଚାର୍ଯ୍ୟଙ୍କ ମତାନୁସରଣ କରି ତନ୍ତ୍ର ବା ଆଗମ ଶାସ୍ତ୍ରକୁ ତିବ୍ବତ ଓ ଚୀନ୍‌ରୁ ଆଗତ ବୋଲି ମତ ଦେଇଛନ୍ତି; କିନ୍ତୁ ଏମ୍. ଭି. ଝାଭେରୀ ଡକ୍ଟର ଭଟ୍ଟାଚାର୍ଯ୍ୟଙ୍କର ମତକୁ ଦୃଢ଼ ଭାବରେ ଖଣ୍ଡନ କରି ଏହାର ଭାରତୀୟ ବିକାଶ ସମ୍ପର୍କରେ ମତ ପୋଷଣ କରନ୍ତି । ତେବେ ପରବର୍ତ୍ତୀ ଯୁଗରେ ଏହାର ବିକାଶ ଯେଉଁଠାରେ ହେଉନା କାହିଁକି ଏହା ଯେ ଆଦିମ ଲୋକମାନଙ୍କର ଶସ୍ୟଲକ୍ଷ୍ମୀ ଆରାଧନାରୁ ସୃଷ୍ଟ, ଏକଥା ସହଜରେ ବିଶ୍ୱାସ କରିହୁଏ ।

ପୃଥିବୀର ସବୁ ପ୍ରାଚୀନ ଆଦିମ ଜାତିଙ୍କ ଭିତରେ ଏହି ଶସ୍ୟ ପୂଜାର ପରମ୍ପରା ରହି ଆସିଛି । ଭୂଇଁରୁ ଗଛ ଉଠି ସେଥିରୁ ଶସ୍ୟ ଫଳିବା ଥିଲା ଆଦିମ ଲୋକଙ୍କ ମତରେ ଏକ ବିରାଟ ବିସ୍ମୟ । ସେମାନେ ଏହାକୁ ଏକ ଦୈବୀ କାର୍ଯ୍ୟ ବୋଲି ଜ୍ଞାନ କରୁଥିଲେ । ସେମାନେ ଶାରୀରିକ ଶ୍ରମ ଓ କୃଷି କୌଶଳ ଅପେକ୍ଷା ଦୈବୀ କାର୍ଯ୍ୟକୁ ଏ ଦିଗରେ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେ କରୁଥିଲେ । ଉତ୍ତରବୋର୍ଣ୍ଣିଓରେ ଲୋକେ କୃଷି-କାର୍ଯ୍ୟକୁ ନାରୀର କାର୍ଯ୍ୟ ବୋଲି ମନେ କରନ୍ତି, ସେମାନଙ୍କର ବିଶ୍ୱାସ ଏହା ସେମାନଙ୍କ ବାରମ୍ବାର ପୂଜା ଉପାସନାଦି ଦ୍ୱାରା ସନ୍ତୁଷ୍ଟ ଦେବତାଙ୍କର ସୁରକ୍ଷିତ ଏକ କାର୍ଯ୍ୟ । ଦକ୍ଷିଣ ଆଫ୍ରିକାରେ ସୁମ୍ବା ଲୋକଙ୍କର ବିଶ୍ୱାସ ଯେ ଯଦି ସେମାନେ ତାଙ୍କ ଦେବତାଙ୍କୁ ନୃତ୍ୟ, ଗୀତ ପୂଜାଦି ଦ୍ୱାରା ସନ୍ତୁଷ୍ଟ ନ କରନ୍ତି ତେବେ ଶସ୍ୟ କଦାପି ଫଳିବ ନାହିଁ । ମେକ୍ସିକୋର ପ୍ରାଚୀନ ଲୋକଙ୍କର ବିଶ୍ୱାସ ଥିଲା ଯେ କୃଷିକାର୍ଯ୍ୟ ସହିତ ଆନୁସଙ୍ଗିକଭାବେ ଶସ୍ୟ ଦେବତାଙ୍କର ପୂଜା କରାଯିବା ଏକାନ୍ତ ଆବଶ୍ୟକ ।

ଭାରତବର୍ଷରେ ବିଶେଷତଃ ଓଡ଼ିଶାର ଆଦିବାସୀମାନଙ୍କର ବହୁ ପର୍ବପର୍ବାଣି ମଧ୍ୟ ଏହି କୃଷି ସହିତ ଜଡ଼ିତ । ମାଳ ଅଞ୍ଚଳରେ ଶସ୍ୟ ଉତ୍ପାଦନ କଷ୍ଟସାଧ୍ୟ । ପୁନଶ୍ଚ ବର୍ଷାଭାବ ଓ ଜଳସେଚନର ଅସୁବିଧା ହେତୁ କୃଷି ଉତ୍ପାଦନ ଯଥେଷ୍ଟ ହେଉ ନ ଥିବାରୁ ଯତ୍‌କିଞ୍ଚିତ ଯେଉଁ ବର୍ଷ ହୁଏ, ତାହାକୁ ସେମାନେ ଠାକୁରଙ୍କର ଦୟା ବୋଲି ଧରି ନିଅନ୍ତି । ସେହି ଠାକୁରଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେମାନେ ବହୁପ୍ରକାରର ପୂଜା ପର୍ବାଦି ପାଳନ କରିଥାନ୍ତି ।

ହୋ ଏବଂ ସାନ୍ତାଳମାନେ ଜୁଲାଇ, ଅଗଷ୍ଟ ମାସରେ ପୂଜାଦିପର୍ବ ଅନୁଷ୍ଠାନ କରନ୍ତି କେବଳ ଠାକୁର ଧାନଗଛକୁ ସବୁଜ କରାଇ ଦେବେ ବୋଲି ବିଶ୍ୱାସ କରି । ଉତ୍ତରପ୍ରଦେଶର ଲୋକେ ଧାନ ବେଣ୍ଟି କରି ଶ୍ରାବଣ ମାସରେ ଟାଙ୍ଗି ଦିଅନ୍ତି କେବଳ ମା' ଧାନକୁ ସ୍ମରଣ କରିବା ପାଇଁ । ଓଡ଼ିଶାରେ ମଧ୍ୟ ଧାନ ଅମଳ ହେବା ମାତ୍ରେ ଧାନମେଣ୍ଟି

ପ୍ରସ୍ତୁତ ହୋଇ ମାଣବସା ପୂଜାହୁଏ, ଶସ୍ୟ ଲକ୍ଷ୍ମୀଙ୍କର । ମାଣବସାରେ ଯାହାକଛି ଉପାସନା ସେ ସବୁ ଧାନ ସମ୍ପର୍କୀୟ । ଉତ୍ତରପ୍ରଦେଶ ଓ ମଧ୍ୟପ୍ରଦେଶର କେତେକ ଲୋକେ ଶ୍ରାବଣ ମାସରେ ହଇତ ଲକ୍ଷ୍ମୀଙ୍କର ଉପାସନା କର ଧୂଆ ଲଙ୍ଗଳରେ ଲହୁଣୀ ଏବଂ ଚନ ବା ଗୁଡ଼ ଲଗାଇ ଅନ୍ୟାନ୍ୟ ଉପକରଣ ସହିତ ପୂଜା କରନ୍ତି । ବଳଦଙ୍କୁ ଗୁଡ଼ଳ ବା ଗହମ ଅଟାର ଲଡ଼ୁ ଲୁଣ ସହିତ ଖାଇବାକୁ ଦିଅନ୍ତି । ଓଡ଼ିଶାରେ ରଜସଂକ୍ରାନ୍ତି, ବସୁମାତା ସ୍ନାନ, ଗହ୍ମା ପୂର୍ଣ୍ଣିମୀ ପ୍ରଭୃତି ବହୁ ଉତ୍ସବ ଏହି ଧରଣର ଓ କୃଷିପ୍ରଧାନ । ଆଦିବାସୀଙ୍କ ମେରିଆ ବଳି ଏବଂ ଆମ ଅଗ୍ନି ଉତ୍ସବର ବଳି ପୂଜା ଭିତରେ ବହୁ ସାମ୍ୟ ରହିଥିବା କଥା ଉଲ୍ଲେଖ ବାହୁଲ୍ୟ । ନୃଶଂସ ନରବଳି ବହୁକାଳରୁ ଲୋପପାଇ ଥିଲେହେଁ, ଏବେ ମଧ୍ୟ ଅହିଅରି ପୂର୍ଣ୍ଣିମାରେ ବାଇଗଣ, ଗିଲ୍, ଗୁଡ଼ଳ, ଗୁଡ଼ ଓ ଫଳମୂଳ ମିଶ୍ରିତ ଭୋଗ ସବୁ ଅଗ୍ନିରେ ବଳି ଦିଆଯାଏ ଏବଂ ଅଗ୍ନିରେ ସାର ହିସାବରେ ପୋଡ଼ା ହୋଇଥିବା ସାହାଡ଼ାଡାଳ, ଅଣଶୁଆ ଏବଂ ଅଗି ପାଉଁଶ ଧାନ ଜମିରେ ପକାଯାଏ । ଏଥିପାଇଁ ମଧ୍ୟ ବହୁ ଗୋପନୀୟତା ପାଳିତ ହୁଏ । ଏବେ ତାହାର ଗୁରୁତ୍ୱ ଅନେକ ଲୋପ ପାଉଥିଲେହେଁ ମାତ୍ର ୧୦।୧୫ ବର୍ଷ ତଳେ ଏହି ସାର-ଧୱାଳମାନେ ସର୍ବପ୍ରଥମେ ନିଜ କିଆରିରେ ସାର ପକାଇ ନିଜ ଜମିର ଆଗାମୀବର୍ଷର ଫସଲଟାକୁ ନିଶ୍ଚିନ୍ତ କରି ନେବେ ସେଥିପାଇଁ ବହୁ ପ୍ରତିଯୋଗିତା କରୁଥିଲେ । ଜମିରେ, ଖତ-ଗଦାରେ ସାର ପକାଇ ସେମାନେ କାହାରିକୁ କିଛି ନ କହି ଘରକୁ ଯାଇ ରାତିଯାପନ କରନ୍ତି ଏବଂ ତପର ଦିନ ଅନ୍ଧାରୁଆରୁ ହଳ ନେଇ ନିଜ ଜମିରେ ପ୍ରଥମ ଫଗୁଣ ଚାଷକରି ସର୍ବାଧିକ ଫସଲ ଉତ୍ପାଦନକୁ ନିଶ୍ଚିତ କରି ନିଅନ୍ତି । ଏହି ବ୍ୟବସ୍ଥା ମେରିଆବଳି ଆଚରଣର ଆଧୁନିକୀ-କରଣ ମାତ୍ର ।

ବୈଦିକ ଯୁଗରେ ମଧ୍ୟ ଆମ ପୂର୍ବପୁରୁଷମାନେ ଏମିତି ଉପାସନା ଉପରେ ଖୁବ୍ ଗୁରୁତ୍ୱ ଦେଉଥିଲେ । ସେମାନେ ବୀଜ ବପନ କଲ୍-ବେଳେ କେତେକ ମନ୍ତ୍ର ଆବୃତ୍ତି କରୁଥିଲେ । ଅଥର୍ବ ବେଦ,

ତୈତ୍ତେରେୟ ସଂହିତାରେ ଏହିପରି ଅନେକ ମନ୍ତ୍ର ରହିଛି । ଗୃହସୂତ୍ର-ମାନଙ୍କରେ ମଧ୍ୟ ବୀଜବପନ କଲାବେଳେ କ୍ଷେତ୍ର ଦେବତା ବା କ୍ଷେତ୍ରପାଳଙ୍କୁ ପୂଜାଦେଇ ହଳ ଜୁଣିବାର ପଦ୍ଧତି ବର୍ଣ୍ଣନା କରାଯାଇ ଅଛି । ସୀତା, ଆସା, ଶାରଦା, ଅନଙ୍ଗ ପ୍ରଭୃତି କୃଷିର ଅଧିଷ୍ଠାତ୍ରୀ ଦେବତା ରୂପେ ଗୃହସୂତ୍ରମାନଙ୍କରେ ବର୍ଣ୍ଣିତ । ଅତଏବ ସେ ଯୁଗରେ ମଧ୍ୟ ହିଁ ଦେବତାମାନଙ୍କୁ କୃଷି ପ୍ରକ୍ରିୟାରେ ଅଧିକ ପ୍ରାଧାନ୍ୟ ଦିଆଯାଇଅଛି । କୃଷି କ୍ଷେତ୍ରରେ ଅପେକ୍ଷାକୃତ ବୈଜ୍ଞାନିକ କୌଶଳର ଅଭାବ ଯୋଗୁଁ ସେ ଯୁଗରେ ପ୍ରଚୁର ଉତ୍ପାଦନ ସମ୍ଭବ ହୋଇ ପାରିନାହିଁ ଏବଂ ଆକାଙ୍କ୍ଷିତ ଉତ୍ପାଦନ ପାଇଁ ସେମାନଙ୍କୁ ଧୈର୍ଯ୍ୟ, ଓ ଦୈବୀ ଶକ୍ତିରେ ବିଶ୍ୱାସ ପୋଷଣ କରିବାକୁ ପଡ଼ିଥିବା ସମ୍ଭବ ।

କିନ୍ତୁ ଏପରି ବିଶ୍ୱାସ ମୂଳତଃ ଅଜ୍ଞତା ପ୍ରସୂତ ବୋଲି ପ୍ରତୀତ ହେଲେହେଁ, ପରେ ଏହି ବିଶ୍ୱାସ ମଣିଷକୁ କର୍ମପ୍ରେରଣା ଏବଂ ମାନସିକ ସ୍ତରରେ ଐକାନ୍ତିକ ସ୍ପୃହା ପ୍ରଦାନ କରି ପାରିଅଛି । ତେଣୁ ଦୈବୀଶକ୍ତି ଉପରେ ବିଶ୍ୱାସ ଓ କର୍ମ ଏ ଉଭୟ ସେ ଯୁଗର କୃଷି ସମ୍ପର୍କରେ ଘନିଷ୍ଠଭାବେ ଜଡ଼ିତ ହୋଇ ଏ ପର୍ଯ୍ୟନ୍ତ ଚାଲି ଆସିଛି ।

ଆଦିମ ଯୁଗରେ କ୍ଷେତ୍ରର ଉତ୍ପାଦିକା ଶକ୍ତି କାମନା କରି ଯେଉଁ ସବୁ ପୂଜା ଉତ୍ସବାଦି ଆନୁଷ୍ଠାନ କରାଯାଇଥିଲା, ସେ ସବୁ ଥିଲା କେବଳ ସ୍ତ୍ରୀଲୋକମାନଙ୍କ ଧନ୍ଦା । ଆମରି ଅହିଅରି ପୂର୍ଣ୍ଣିମୀ ବାସୀଦିନ ଅଗି ପାଉଁଶ ଅଭିଆର୍ଡ଼ୀ ଝିଅମାନେ ହିଁ ନେଇ ଜମିରେ ପକାନ୍ତି । ବସୁମାତା ସ୍ନାନ, ମାଣବସା ପ୍ରଭୃତି କୃଷିମୂଳକ ଓଷା କେବଳ ସ୍ତ୍ରୀଲୋକ-ମାନଙ୍କ ଦ୍ୱାରା ହିଁ ଅନୁଷ୍ଠିତ ହୁଏ । କେତେକ ଦେଶର ଆଦିବାସୀ ସ୍ତ୍ରୀଲୋକେ ଅଧିକ ଉତ୍ପାଦନ ପାଇଁ ଔଷଧ ପ୍ରସ୍ତୁତ କରି ନିଜେ ନେଇ ଧାନ ବିଲରେ ପକାନ୍ତି । କେତେକ ଆଦିବାସୀ ଯୁବତୀ ଝିଅ ଏବଂ ପ୍ରୌଢ଼ା ସ୍ତ୍ରୀଲୋକେ ଧାନକେଣ୍ଡା ଗୋଟିଏ ବାଡ଼ରେ ଧରି ମଣ୍ଡଳାକାର ନୃତ୍ୟ କରି ପ୍ରଚୁର ଶସ୍ୟ କାମନା ମୂଳକ ଗୀତଗାନ କରନ୍ତି । ପୁନଶ୍ଚ କୃଷି ପାଇଁ ଆବଶ୍ୟକ ବର୍ଷା କାମନା କରି ମଧ୍ୟ ଚିଲି, ପେରୁ ଏବଂ ଭାରତର କେତେକ ପ୍ରଦେଶରେ ସ୍ତ୍ରୀଲୋକେ ଉପାସନା କରନ୍ତି । କାନାଗ ପ୍ରଭୃତି

ଦ୍ୱୀପରେ ବର୍ଷା କେବଳ ସ୍ତ୍ରୀଲୋକମାନଙ୍କର ବ୍ୟାପାର । ଏଥିପାଇଁ ନିର୍ଦ୍ଦିଷ୍ଟ ଜଣେ ମନ୍ତ୍ରକର୍ତ୍ତ୍ରୀ ବର୍ଷାପାଇଁ ସଂପୂର୍ଣ୍ଣ ଦାୟୀ ବୋଲି ସେମାନଙ୍କର ବିଶ୍ୱାସ । ଇଟାଲୀ ଏବଂ ଥ୍ରେସରେ ପ୍ରଚଳିତ ଥିବା ଡାଇଓନିସସ୍ ପୂଜାରେ ପୁରୁଷଙ୍କର କୌଣସି ପ୍ରବେଶ ନ ଥିଲା ଏବଂ ଏହି ପୂଜାର ମୁଖ୍ୟତଃ ଶସ୍ୟ ଉତ୍ପାଦନ କାମନା ମୂଳକ । ପ୍ରାଚୀନ ଯୁଗରେ ସ୍ତ୍ରୀଲୋକମାନେ ହିଁ ସବୁ ଦେଶରେ ପୂଜାଦି କରି ଉପାସନା କରୁଥିଲେ । ପ୍ରାଚୀନ ରୋମର ସବ ପବିତ୍ର ଧର୍ମରେ ଭେଷ୍ଟାଲମାନେ ଥିଲେ ମୁଖ୍ୟ ଉପାସିକା । ଇଟାଲୀ, ଗ୍ରୀସରେ ମଧ୍ୟ ସେଇ କଥା । ଭାରତରେ ଏବେ ମଧ୍ୟ ଅଧିକାଂଶ ଗାଁମାନଙ୍କରେ ଗ୍ରାମଦେବତୀ ପୂଜା କେବଳ ସ୍ତ୍ରୀଲୋକମାନେ ବିଶେଷତଃ ଧୋବଣୀ, ମାଳୁଣୀ, ଚମାରୁଣୀ କିମ୍ବା ବାରିକାଣୀ ପ୍ରଭୃତି କରିଥାନ୍ତି ।

କିନ୍ତୁ ପରବର୍ତ୍ତୀ ଯୁଗରେ ପୁରୁଷମାନେ ଉପାସନାର ଦାୟିତ୍ୱ ଗ୍ରହଣ କଲେ ମଧ୍ୟ ସେମାନଙ୍କୁ ନିଜ ଭିତରେ ସ୍ତ୍ରୀତ୍ୱ ଅନୁଭବ କରି ପୁରୁଷତ୍ୱକୁ ଭୁଲି ଯିବାକୁ ହୋଇଥାଏ । ସିରିଆର ଦେଶ ଗଲ୍ଲି, କୋରିବେଟସ୍, ଇଷ୍ଟାର, ଫେସିନୋସ୍ ପ୍ରଭୃତିଙ୍କର ପୂଜକମାନଙ୍କୁ ନିଜ ନିଜକୁ ସ୍ତ୍ରୀ ବୋଲି କଳ୍ପନା କରିବାକୁ ହୋଇଥାଏ । ସେମାନଙ୍କୁ ସ୍ତ୍ରୀ ଲୋକଙ୍କପରି ବେଶ ପୋଷାକ ପିନ୍ଧିବାକୁ ମଧ୍ୟ ହୋଇଥାଏ । ଖ୍ରୀ:ପୂ: ୩ୟ ଶତାବ୍ଦୀର ଆଲେକଜାଣ୍ଡ୍ରିଆର ସାହିତ୍ୟରୁ ଉଲ୍ଲେଖ ମିଳେ ଯେ, ଗାଲେଇ ଉପାସକମାନେ ମୁଣ୍ଡରେ ଦୀର୍ଘ କେଶ ରଖି ତହିଁରେ ସୁଗନ୍ଧ ଦ୍ରବ୍ୟ ଲଗାଇ, ଶାଢ଼ୀ ପିନ୍ଧି ସାଇବେଲଙ୍କର ଉପାସନା ନିମିତ୍ତ ବିବିଧ ବାଦ୍ୟ ବଜାଇ ନୃତ୍ୟ କରନ୍ତି । ସମ୍ପୂର୍ଣ୍ଣରୂପେ କ୍ଳାନ୍ତ ବା ଅଚେତନ ନ ହେବା ପର୍ଯ୍ୟନ୍ତ ସେମାନଙ୍କୁ ନୃତ୍ୟ କରିବାକୁ ହୋଇଥାଏ । ନିଜର ପୁରୁଷ ସତ୍ତ୍ୱକୁ ପୂର୍ଣ୍ଣଭାବେ ଭୁଲିଯାଇ କେବଳ ସ୍ତ୍ରୀ ଅନୁଭୂତିରେ ସେମାନେ ପୂଜା କରୁଥିଲେ । ଏ ପ୍ରସଙ୍ଗରେ ବ୍ରିଫଲ୍ଡ ସାହେବ ତାଙ୍କର The Mother ପୁସ୍ତକରେ ବିସ୍ତୃତ ଆଲୋଚନା କରିଛନ୍ତି ।

ଆମ ଦେଶରେ ଶାରଳା, ମଙ୍ଗଳା, ପ୍ରଭୃତି ଚଣ୍ଡୀମାନଙ୍କର ସେବକମାନେ ଚୈତ୍ର ମାସରେ ସ୍ତ୍ରୀ ବେଶରେ ଶାଢ଼ୀ ପିନ୍ଧି, ବେଣୀ ବାନ୍ଧି,

ହଳଦୀ ତେଲ ଲଗାଇ ରଣପାଦ୍ୟ ଘଣ୍ଟ ବଜାଇ କରନ୍ତି ଏବଂ ପାଟୁଆ ମୁଣ୍ଡରେ ରଖି ସେମାନେ ନାଚଭିତରେ ସଂପୂର୍ଣ୍ଣ ମୂର୍ଚ୍ଛିତ ଓ କ୍ଲାନ୍ତ ହୋଇ ପଡ଼ନ୍ତି । କାଁରେ ପଶି ସେମାନେ ମଧ୍ୟ ନାଚ ଦେଖାନ୍ତି । ଏସବୁର ମୂଳତତ୍ତ୍ୱ ଯେହ୍ୱ ପୁରୁଷ ଅଙ୍ଗରେ ନାରୀ ସତ୍ତା ଅନୁଭବ ବ୍ୟତୀତ ଆଉ କିଛି ହୋଇ ନ ପାରେ ।

ଏପରି ହେବାର କାରଣ ଉକ୍ତ ଦେବୀମାନେ ପ୍ରାଚୀନ କାଳରୁ କୃଷି ପ୍ରଧାନ ଏ ଦେଶରେ ଶସ୍ୟର ଅଧିଷ୍ଠାତ୍ରୀ ଦେବୀ ହିସାବରେ କେବଳ ସ୍ତ୍ରୀ ଲୋକମାନଙ୍କ ଦ୍ୱାରା ପୂଜା ପାଉଥିଲେ ଏବଂ ଏବେ ମଧ୍ୟ ଗାଁମାନଙ୍କରେ ଲୋକଙ୍କର ବିଶ୍ୱାସ ଶାରଳା ଠାକୁରାଣୀ, ମଙ୍ଗଳା ବା କୁତ୍ତମ ଚଣ୍ଡୀଙ୍କର ପାଦୁକା ଶ୍ରାବଣ ଭାଦ୍ରବ ମାସରେ ଧାନ ବିଲରେ ପଡ଼ିବା ଅପରିହାର୍ଯ୍ୟ । ନ ହେଲେ ଧାନ ଅମଳ ଆଶଙ୍କାମୟ । ପୁନଶ୍ଚ ଧାନ ଅମଳ ହେଲେ ଭରଣ ଭରଣ ଚୂଡ଼ା ଭୋଗ ସେହି ଠାକୁରାଣୀଙ୍କ ପାଖରେ କୃଷକମାନେ ନେଇ ଦେଇ ଆସନ୍ତି । ପରବର୍ତ୍ତୀ ଯୁଗରେ ସମାଜରେ ପରିବାର ମାନଙ୍କରେ ଯେତେବେଳେ ପିତା ହେଲେ ମୁଖ୍ୟ ସେତେବେଳେ ପିତାଙ୍କୁ ସ୍ତ୍ରୀ ଅଙ୍ଗ କଳ୍ପନାରେ ପୂଜା କରିବାକୁ ହେଲା । ଏଇ କଳ୍ପନାରୁ ବାମାଚାରର ତତ୍ତ୍ୱର ବିକାଶ ଲାଭ କରିଥିବା ଖୁବ୍ ସମ୍ଭବ ।

ପୁନଶ୍ଚ ତନ୍ତ୍ରରେ ନାରୀ ଉପାସିକାମାନଙ୍କୁ ସିଦ୍ଧା ବୋଲି କୁହାଯାଏ । ସେମାନେ ଭୈରବୀ ଏବଂ ଯୋଗିନୀ ହିସାବରେ ମଧ୍ୟ ବିଖ୍ୟାତ । ଆମ ଦେଶର ତନ୍ତ୍ର ସାହିତ୍ୟରେ ସହଜ ଯୋଗିନୀ, ଲକ୍ଷ୍ମୀଙ୍କର, ପଦ୍ମପଲ୍ଲରୁଣୀ, ନେତେଇ ଧୋବଣୀ ପ୍ରଭୃତି ସିଦ୍ଧାମାନଙ୍କର ନାମ ଖୁବ୍ ଦେଖିବାକୁ ମିଳିଥାଏ । ତଥାପି ତନ୍ତ୍ରରେ ବହୁ ଉପାସକ ପୁରୁଷ, କିନ୍ତୁ ପୁରୁଷ ହେଲେହେଁ ସେମାନଙ୍କୁ ନିଜ ଭିତରେ ବାମା ଅଙ୍ଗ କଳ୍ପନା କରିବାକୁ ପଡ଼ିଥାଏ ( ବାମା ଭୂତ୍ୱା ଯଜେତ ପରଂ ) । ସିଦ୍ଧ ପୂଜକ-ମାନେ ମଧ୍ୟ ଶାଢ଼ୀ ପ୍ରଭୃତି ସ୍ତ୍ରୀ ଆଭରଣମାନ ପରିଧାନ କରିଥାନ୍ତି । ଏହାର କାରଣ ମୂଳତଃ ଏହି ଉପାସନା ଥିଲା ସ୍ତ୍ରୀ ଲୋକଙ୍କର ।

ଯୋଗ ସାଧନା ଓ ଷଡ଼ଚକ୍ର ଭେଦ ମଧ୍ୟ କାହାରି କାହାରି ମତରେ ଏହିପରି ସ୍ତ୍ରୀତ୍ୱ ନିର୍ଭରଶୀଳ ଏକ ସାଧନା । ସେମାନେ କହନ୍ତି

ଯେ ଷଡ଼ଚକ୍ର ଶରୀର ମଧ୍ୟରେ ଛଅ ଗୋଟି ପଦ୍ମ ବ୍ୟତୀତ ଆଉ କିଛି ନୁହେଁ । ସହସ୍ରାର ପଦ୍ମକୁ ମିଶାଇ ଏହାର ସଂଖ୍ୟା ସାତ । ପଦ୍ମ ନାରୀର ଜନେନ୍ଦ୍ରିୟର ପ୍ରତୀକ ହିସାବରେ ତନ୍ତ୍ରରେ ଗୃହୀତ ବୋଲି କେହି କେହି ମତ ଦେଇଥାନ୍ତି । ଲ: ଓଲ: ଖଲ ପସିନଙ୍କ ମତରେ ତାନ୍ତ୍ରିକ ବୌଦ୍ଧ ଧର୍ମରେ ବଜ୍ର ବା ମଣି ଲିଙ୍ଗର ଏବଂ 'ପଦ୍ମ' ଭଗ ବା ଯୋନିର ପ୍ରତୀକ । ଇଜିପ୍ଟ ଏବଂ ପାଶ୍ଚାତ୍ୟ ଦେଶମାନଙ୍କର ପ୍ରାଚୀନ ଧର୍ମରେ ମଧ୍ୟ ପଦ୍ମ ଏହି ଅର୍ଥରେ ଗୃହୀତ ବୋଲି ସେମାନଙ୍କର ମତ ( Encyclopaedia of Religion and Ethics)

ଅତଏବ ଏହି ସାତଟି ପଦ୍ମ ପ୍ରତ୍ୟେକ ମଣିଷ ଦେହରେ ସ୍ତ୍ରୀତ୍ୱର ସାତଟି କୋଷ ମାତ୍ର । ତନ୍ତ୍ରସାଧକ ନିଃଶ୍ୱାସ ନିୟନ୍ତ୍ରଣ ଦ୍ୱାରା କୁଳକୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରାଏ ।

ଶକ୍ତି ହିଁ ସ୍ତ୍ରୀ ଶକ୍ତି ଏବଂ ଏହା ସୁସୁମ୍ନା ଦେଇ ସହସ୍ରାରରେ ପ୍ରବେଶ କରିବା ଅର୍ଥ ତାହା ପୁଂତ୍ୱ ଓ ସ୍ତ୍ରୀତ୍ୱର ଅଦ୍ୱୈତ ସତ୍ତ୍ୱରେ ପରିଣତ ହୋଇ ବିଶୁଦ୍ଧ ସ୍ତ୍ରୀ ସତ୍ତ୍ୱ ଦ୍ୱାରା ପୂର୍ଣ୍ଣ ଭାବରେ ଆଚ୍ଛନ୍ନ ହୋଇଯିବା । ଚର୍ଯ୍ୟା ଗୀତିକାମାନଙ୍କରେ ଚଣ୍ଡାଳୀ, ଡୋମ୍ବୀ, ଶାବରୀ, ଯୋଗିନୀ, ନଇରାମଣି, ସହଜ ସୁନ୍ଦରୀ, ଅବଧୂତିକା ଆଦିଶକ୍ତିମାନଙ୍କର ଉଲ୍ଲେଖ ରହିଛି ଏବଂ କାହ୍ନୁପାଦ ନିଜେ କାଙ୍ଗାଳୀ ହୋଇ ନିଜ ପିଣ୍ଡ-ନଗରୀରେ ଯୋଗରତ ହୋଇ ଅଦ୍ୱୈତ ସତ୍ତ୍ୱ ଉପଭୋଗ କରୁଥିବାର ପ୍ରକାଶ କରନ୍ତି । ଯାହାହେଉନା କାହିଁକି ଚର୍ଯ୍ୟାଗୀତିକାର ସାନ୍ଧ୍ୟ ଭାଷାରେ ପ୍ରଦତ୍ତ ଉପାଦାନରୁ ସହଜରେ ପ୍ରମାଣିତ ହୋଇପାରେ ଯେ ଯୋଗ ସାଧନାର ଲକ୍ଷ୍ୟ କେବଳ ସ୍ତ୍ରୀ ଶକ୍ତି ଦ୍ୱାରା ନିଜର ଦେହକୁ ପୂର୍ଣ୍ଣ ଭାବରେ ବ୍ୟାପ୍ତ କରାଇବା । ଭଣ୍ଡାର କରଙ୍କ ମତରେ ଏହି ସାଧନା ଧାରାରେ ସାଧକର ଲକ୍ଷ୍ୟ କେବଳ 'ତ୍ରିପୁରା ସୁନ୍ଦରୀ, ସହିତ ଏକୀଭୂତ ହୋଇଯିବା ଏବଂ ସାଧକ ନିଜକୁ ସ୍ତ୍ରୀ ଭାବରେ ବରାବର ଅନୁଭବ କରିବାକୁ ଅଭ୍ୟାସ କରେ । ଶାକ୍ତମାନଙ୍କ ମତରେ ଠାକୁର ଜଣେ ସ୍ତ୍ରୀ ମାତ୍ର ଏବଂ ତେଣୁ ନାରୀ ହେବା ସମସ୍ତଙ୍କର ଲକ୍ଷ୍ୟ ହେବା ଉଚିତ୍ । ସହଜିଆମାନଙ୍କୁ ଏହି ମତବାଦ ବେଶ୍ ସୁହାଇଥିଲି ଏବଂ ସେମାନେ ମଧ୍ୟ ଏହିପରି ନିଜକୁ ସ୍ତ୍ରୀ ଜ୍ଞାନରେ ନିଜର ସହଜ ସାଧନା ଆରମ୍ଭ କରିଥିଲେ ।

ତେବେ ଯାହା ହେଉନା କାହିଁକି ତନ୍ତ୍ରଶାସ୍ତ୍ର ମଧ୍ୟରୁ ଚଣ୍ଡୀ, ଦୁର୍ଗା, କାଳୀ, ମାଳ· ସରସ୍ୱତୀ, ଭୈରବୀ, ଶାରଦା ଆଦି ଦେବୀମାନଙ୍କର ଆବିର୍ଭାବ ମୂଳତଃ ଏହି ଶସ୍ୟ ମାତୃକା ଦେବୀ ଆରାଧନାରୁ ଆସିଥିବାର ପ୍ରତୀତ ହୁଏ । ପରେ ପୌରାଣିକ ଯୁଗରେ ଓ ଶିଳ୍ପୀମାନଙ୍କ କଳା ଗୃତୁଯରେ ଏହି ରହସ୍ୟମୟୀ ଦେବୀ ଦଶଭୁଜା, ଅଷ୍ଟଭୁଜା, ଷୋଡଶ ଭୁଜା ପ୍ରଭୃତି ବିଭିନ୍ନ ରୂପରେ ଏବଂ ମହିଷାସୁର ବିମର୍ଦ୍ଦିନୀ, ନୃମୁଣ୍ଡ ମାଳିନୀ, କଂକାଳୀ, ଗ୍ରୁମଣ୍ଡା ଆଦି ବିଭିନ୍ନ ପ୍ରକାର କଳ୍ପନା ନେଇ ଅବତିର୍ଣ ଆସିଥିଲେହେଁ, ବସ୍ତୁତଃ ସେ ଶସ୍ୟ ଲକ୍ଷ୍ମୀ, ଶରତ୍ ଲକ୍ଷ୍ମୀ, କଲ୍ୟାଣମୟୀ, ଅଭୟ ଦାୟିନୀ, ଦୁର୍ଗତି ତାରିଣୀ ଦୁର୍ଗା ଏବଂ ଶସ୍ୟ ପରିଶ୍ୟାମାୟମାନା ଶ୍ୟାମା ।

ସହସ୍ର ସହସ୍ର ବର୍ଷର ଅତିକ୍ରମରେ ସେ ସେହି ମୌଳିକ ବିଶ୍ୱାସ ପ୍ରଜନନର ହେତୁରୂପୀ, ଶସ୍ୟ ଉତ୍ପାଦନର ଅଧିଷ୍ଠାତ୍ରୀ ଦେବୀ, ଭାରତ ବର୍ଷର ମହାମାନବ ପରିବାରରେ ସେ କେତେ ବିଚିତ୍ର ରୂପ ନେଇ ଏବେ ବି ପୂଜିତା । ସେ ଅସଂଖ୍ୟ ବଳିରୁ ରକ୍ତପାନ କରି ପୃଥିବୀକୁ ନୂତନ ପ୍ରଜନନ ଶକ୍ତି ପ୍ରଦାନ କରିଏ ଏବଂ ସେହି ସୃଷ୍ଟି ସମ୍ଭବା ଦେବୀ କେବଳ ନାରୀ ଶକ୍ତି ଦ୍ୱାରା ପୂର୍ବେ ଆରାଧିତା ହେଉଥିଲେହେଁ ପିତୃ ପ୍ରଧାନ ପରିବାର ମୂଳକ ସମାଜରେ ସେ ପୁରୁଷଦ୍ୱାରା ପୁଣି ବେଦ ମନ୍ତ୍ରରେ ଏବେ ସର୍ବତ୍ର ପୂଜିତା । ପ୍ରାୟ ଶହେବର୍ଷ ପୂର୍ବେ ଉତ୍କଳରେ ସେ ସର୍ବତ୍ର ଗ୍ରାମ୍ୟ ଦେବୀ ରୂପେ ପୂଜିତା ହେଉଥିଲେ, କିନ୍ତୁ ମୃଣ୍ମୟୀ ପ୍ରତିମା ପୂଜା କେବଳ ଉକ୍ତ ପୂଜାର ଏକ ନବୀକରଣ ବ୍ୟତୀତ ଆଉ କିଛି ନୁହେଁ । ଏ ସମ୍ପର୍କରେ ଅଧିକ ତଥ୍ୟର ସବିଶେଷ ଆଲୋଚନା ଅନ୍ୟତ୍ର କରିଯିବ ।



# ଆଦିବାସୀ ଗଳ୍ପ

ବ୍ରଜମୋହନ ମହାନ୍ତି, ଏମ୍.ଏ.

ଗଳ୍ପର ସାମ୍ରାଜ୍ୟ ବିସ୍ତୃତ । କେବଳ ସଭ୍ୟ, ଶିକ୍ଷିତ, ଉଚ୍ଚବଂଶଜ ବ୍ୟକ୍ତିମାନେ ଗଳ୍ପ ସୃଷ୍ଟି କରିବାକୁ ପ୍ରୟାସୀ ହୋଇ ନାହାନ୍ତି । ପୃଥିବୀର ସବୁ ପ୍ରାନ୍ତରେ କଥା ବା ଗଳ୍ପ ସୃଷ୍ଟି ହୋଇଛି ସ୍ୱୟଂସୃଷ୍ଟ ହୋଇ । ଏ ଦିଗରେ ହିନ୍ଦୁ, ବୌଦ୍ଧ, ଜୈନ, ଖ୍ରୀଷ୍ଟିୟାନ, ମୁସଲମାନମାନଙ୍କର ଯେତିକି ଅବଦାନ ରହିଛି—ଅନାର୍ଯ୍ୟ ଆଦିବାସୀ ତଥା ଦ୍ରାବିଡ଼ମାନଙ୍କର ମଧ୍ୟ ସମପରିମାଣରେ ଅବଦାନ ରହିଛି ।

ଏପରିକି ଓଡ଼ିଶାର ଆଦିବାସୀଙ୍କ ମଧ୍ୟରେ ଅସଂଖ୍ୟ ଗଳ୍ପ ପ୍ରଚଳିତ ଥିବାର ଦେଖାଯାଏ । ଏ ଗଳ୍ପଗୁଡ଼ିକ ଲିଖିତ ଗଳ୍ପ ନୁହେଁ । ଲୋକମୁଖରୁ, ଲୋକମୁଖକୁ ଗତି କରି ଆସିଥିବା ଗଳ୍ପ । କିନ୍ତୁ ଆଦିବାସୀ ଲୋକଗଳ୍ପ ଗୁଡ଼ିକ ଲିଖିତ ଓ ସୁଚିନ୍ତିତ ଲୋକ ଗଳ୍ପ ନ ହୋଇଥିଲେ ମଧ୍ୟ ପୃଥିବୀର ସୃଷ୍ଟି ରହସ୍ୟରୁ ଆରମ୍ଭ କରି ବହୁ ବିଷୟରେ ବାସ୍ତବ ସନ୍ଧାନ ଏ ଗୁଡ଼ିକରୁ ମିଳିଥାଏ । ଏ ଗଳ୍ପଗୁଡ଼ିକର ପ୍ରଭାବ ଯେ ଆମ ଓଡ଼ିଆ ଗଳ୍ପ ରାଜ୍ୟକୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସାହାଯ୍ୟ କରିନାହିଁ—ତାହା କହି ହେବନାହିଁ ।

*Tribal Myths of Orissa ପୁସ୍ତକର ଲେଖକ ଶ୍ରୀ Verrier Elwin ମହାଶୟ କହନ୍ତି ଯେ—

"Myth is regarded as representing metaphorically a world picture and insight in to life

---

*Tribal Myths of Orissa—Introduction P. XV.

generally and may, therefore, be considered as primitive philosophy or metaphysical thought."

ବାସ୍ତବରେ ପୃଥିବୀର ଅସଲ ଆଦିମ ସ୍ୱରୂପ ସମ୍ପର୍କରେ ସୂଚନା ଦେବା ପାଇଁ କେବଳ ଲୋକଗଳ୍ପ ଗୁଡ଼ିକ ହିଁ ସକ୍ଷମ। ବସ୍ତୁତଃ ଏଗୁଡ଼ିକ ଆଦିମ କଳାର ନିଦର୍ଶନ। ତେଣୁ Boas ସାହେବ କହନ୍ତି ଯେ—

*"I am inclind...to consider folk-tale primarily and fundamentally as a work of pr imitive art,"

ଏଠାରେ ଟେଲର ସାହେବଙ୍କ ମତ ମଧ୍ୟ ଉଦ୍ଧାର କରାଯାଇ ପାରେ। ସେ କହନ୍ତି ଯେ—●'Myth was primitive ethnology expressed in poetic form.'

କେବଳ ଆର୍ଯ୍ୟମାନଙ୍କ ମଧ୍ୟରେ ପରିଚିତ ଲୋକଗଳ୍ପ ଗୁଡ଼ିକ ପାଇଁ ଏ ସଂଜ୍ଞା ନିରୂପିତ ହୋଇନାହିଁ। ଅଶିକ୍ଷିତ, ଅନାର୍ଯ୍ୟ ଆଦିବାସୀମାନଙ୍କ ଭିତରେ ପ୍ରଚଳିତ ଓ କଥିତ ଲୋକଗଳ୍ପ ଗୁଡ଼ିକ ପାଇଁ ମଧ୍ୟ ଏହା ଉଦ୍ଦିଷ୍ଟ ଓ ପ୍ରଯୁଜ୍ୟ। ବାସ୍ତବରେ ଲୋକଗଳ୍ପ ଗୁଡ଼ିକ ଧର୍ମ, ଧାରଣା ଓ ଦାର୍ଶନିକତା ପାଇଁ ଅନେକାଂଶରେ ଦାୟୀ। ଏ ସମ୍ପର୍କରେ *P.* Thomas ତାଙ୍କ Epics, myths and legends of India ପୁସ୍ତକର ମୁଖବନ୍ଧରେ ଲେଖିଛନ୍ତି—

The science of Medicine, they say, grew out of black-magic. The horned witch—doctor was the fore-runner of our civil surgeon. His cauldron of carbs, Scorpions, vipers' hyena's teeth and noxious weeds was the first laboratory in the world, and out of it grew the science of chemistry and Medicine. Similarly, art, religion and philosophy had a low origin in myths."

---

*Race, Language and Culture—F. Boas P. 480

●Primitive Culture—F. B. Tylor—P. P. 317. 413

ଭାରତର ବିଭିନ୍ନ ପ୍ରାନ୍ତରେ ଅସଂଖ୍ୟ ଆଦିବାସୀ ରହିଛନ୍ତି । ଏମାନଙ୍କଠାରୁ ବହୁ ଲୋକଗଳ୍ପ ଶୁଣିବାକୁ ମିଳେ । ସେହି ଭୂକଣ୍ଠରେ ଓଡ଼ିଶାର ଆଦିମ ଅଧିବାସୀ ତଥା ସଉରା, ଗଣ୍ଡ, କନ୍ଧ, କୋଲ୍ହ, ଭୂୟାଁ, ସନ୍ତାଳ, କୋୟା ଇତ୍ୟାଦିଙ୍କ ଭିତରେ ମଧ୍ୟ ଅସଂଖ୍ୟ ଲୋକଗଳ୍ପ ବିଦ୍ୟମାନ । ଏହି ଗଳ୍ପ ଗୁଡ଼ିକର ବିଶେଷତ୍ୱ ହେଲା ତାହାର ଆଞ୍ଚଳିକତା । ଏ ସମ୍ପର୍କରେ ଭେରିଅର ଇଲ୍ୱିଇନ ମହାଶୟ ମତ ଦିଅନ୍ତି ଯେ—

*"An outstanding characteristic of the Orissa Stories is their homely quality. They are built up on the simple events of every day, whieh catch the attention and stir the emotions of the hearers. Thus, in a very large number of cases, a story opens with a man and his wife, who are given familiar tribal names."

କିନ୍ତୁ ଏହି ଆଞ୍ଚଳିକ ପରିବେଶ ମଧ୍ୟରେ ଅନ୍ତର୍ଜାତୀୟ ଚେତନା ପରିଦୃଷ୍ଟ । ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରେ ଯେଉଁ ଆଦିବାସୀ ଲୋକଗଳ୍ପ ଗୁଡ଼ିକ ଶୁଣିବାକୁ ମିଳେ—ତାହାର ମୌଳିକ ଆଧାର ଓଡ଼ିଶାର ଆଦିବାସୀ ଲୋକଗଳ୍ପ ଗୁଡ଼ିକରୁ ଅନେକ ପରିମାଣରେ ମିଳିଥାଏ । Boas ସାହେବ ଆମେରିକାର ଲୋକଗଳ୍ପ ଗୁଡ଼ିକ ସମ୍ପର୍କରେ ମତଦେଇ କହନ୍ତି—

*"The impression that the whole stories are units, that their cohesion is strongly and the who'e complex very old. The analogy of American material, on the other hand, demonstrates that complext tories are new, that there is little cohesion between the component elements, and that the realy old parts of tales are the incident and a few simple plots ?"

---

*Tribal Myths of Orissa—V. Elwin—p Xvii

* Race language and culture—F. Boas.

ତେଣୁ ଏହି ମତାମତକୁ ଲକ୍ଷ୍ୟ କରି ଓଭ୍ରିଅରି ଇଲଜଇନ୍ ମହାଶୟ ଯଥାର୍ଥରେ କହନ୍ତି—

"In this respect, the Orissa Myths resemble the American"

ଏ ଦୃଷ୍ଟିରୁ ବିଚାରକଲେ ଓଡ଼ିଶା ଆଦିବାସୀ ଲୋକ ଗଳ୍ପକୁ ବିଶ୍ୱ ଦରବାରକୁ ଟେକିନେବାରେ ଅସୁବିଧା ନାହିଁ । ଏ ଗଳ୍ପଗୁଡ଼ିକ ସ୍ୱତଃ-ସ୍ଫୂର୍ତ୍ତ ଓ ସ୍ୱୟଂସିଦ୍ଧ । ଆଦିବାସୀ ସମାଜରେ ଗଳ୍ପ କହିବା ପାଇଁ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ନାହାନ୍ତି । ବିଭିନ୍ନ ଉତ୍ସବମାନଙ୍କରେ ଏହି ଗଳ୍ପ ଗୁଡିକ ସୃଷ୍ଟି ହୁଏ । "ଓଡ଼ିଆ ଉପନ୍ୟାସ" *ପୁସ୍ତକରେ ଶ୍ରୀ କୃଷ୍ଣଚରଣ ବେହେରା ମହାଶୟ ଲେଖିଛନ୍ତି—

"ଆଦିବାସୀ—ସମାଜରେ କୌଣସି ନିର୍ଦ୍ଦିଷ୍ଟ ଗଳ୍ପ କହିବା ବ୍ୟକ୍ତି ନାହାନ୍ତି, ଯଦି କେହି ଜଣେ ଗଳ୍ପର ଖିଅ ହଜାଇ ଦେଲେ, ଅନ୍ୟ ଜଣେ ଆଗେଇ ଆସି ଗଳ୍ପଟି କହି ଶେଷ କରେ । ତେଣୁ ଆଦିବାସୀ ଗଳ୍ପ କୌଣସି ବ୍ୟକ୍ତି ବିଶେଷର ଉକ୍ତି ବା ସୃଷ୍ଟି ନୁହେଁ—ବରଂ ଗୋଟିଏ ଗୋଷ୍ଠୀ ବା ସମାଜର ସୃଷ୍ଟି କହିଲେ ଠିକ୍ ହେବ । ବିଭିନ୍ନ ଉତ୍ସବ ଅନୁଷ୍ଠାନରେ ସାଧାରଣତଃ ଏହି ଗଳ୍ପଗୁଡ଼ିକ ବୋଲା ଯାଇଥାଏ" ।

ଅନେକ ସମାଲୋଚକ ମତ ଦିଅନ୍ତି ଯେ—ବିପୁଳ ଲୋକ, ପୂଜକ ଓ ପୁରୋହିତମାନେ ଆଦିବାସୀ ଗଳ୍ପରାଜ୍ୟର ଆଧାର । ପୃଥିବୀର ସୃଷ୍ଟି, ମଣିଷର ସୃଷ୍ଟି ରହସ୍ୟ, ଜନ୍ମ, ମୃତ୍ୟୁ, ବିବାହ, ବିଭିନ୍ନ ଉତ୍ସବ ସମ୍ପର୍କରେ ଆଦିବାସୀ ଗଳ୍ପଗୁଡ଼ିକ ଜୀବନ୍ତ ହୋଇ ଉଠିଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ଓଡ଼ିଶାର ଆଦିବାସୀମାନଙ୍କ ଭିତରେ ଯେଉଁ ଗଳ୍ପ ଗୁଡ଼ିକ କଥିତ ତାହା ଗୋଟିଏ ପ୍ରକାରର ନୁହେଁ । ଏହା ବିଭିନ୍ନ ଭଙ୍ଗୀର ଓ ଛାଞ୍ଚର । ପ୍ରତ୍ୟେକ ଜାତିରେ ପୁଣି ସମବିଷୟରେ ଗଳ୍ପର ସୃଷ୍ଟି ଭିନ୍ନ

*ଓଡ଼ିଆ ଉପନ୍ୟାସ—ଡକ୍ଟର କୃଷ୍ଣଚରଣ ବେହେରା ପୃ—୧୩

ଧରଣର । ସୃଷ୍ଟି ରହସ୍ୟ ସମ୍ପର୍କରେ ଶତ୍ତ୍ୱମାନେ ଯେଉଁ ମତ ଦଅନ୍ତି-ଗଦବା ମାନେ ସେ ମତ ଦଅନ୍ତି ନାହିଁ । ତେଣୁ ପ୍ରତ୍ୟେକ ଗଳ୍ପ ନୂଆ ଭଳି ଲାଗେ । ଏମାନଙ୍କର ଗଳ୍ପସଞ୍ଜ୍ୟ ବସ୍ତୁତ ଓ ବଶାଳ ବୋଲି କୁହା ଯାଇ ପାରେ । ଏଗୁଡ଼ିକ ଏକତ୍ରିତ ହେଲେ ତୃତେ ବରାଟ ବରାଟ ଗ୍ରନ୍ଥ ସୃଷ୍ଟି ହୋଇ ପାରିବ—ସନ୍ଦେହ ନାହିଁ ।

ସରଳ, ସାବଲୀଳ, ଛନ୍ଦହୀନ ଆଦିବାସୀମାନେ ଚିତ୍ତ ବିନୋଦନ ପାଇଁ, ଭାବର ଆଦାନ ପ୍ରଦାନ ଲାଗି ଓ ସାମାଜିକ ସଂସ୍କାର ଲାଗି ଅନେକ ସମୟରେ ଏହି ଗଳ୍ପ ଗୁଡ଼ିକର ସୁନ୍ଦର ସୁଠାମ ଅବତାରଣା କରିଥାନ୍ତି । ଦ୍ୱନ୍ଦ୍ୱ, ବାଦ, ବିସମ୍ବାଦ, ସ୍ନେହ, ପ୍ରେମ ଓ ଉଦାରତା ମଧ୍ୟରେ ଆଦିବାସୀ ଗଳ୍ପଗୁଡ଼ିକ ଅପରୂପ ରୂପ ଧାରଣ କରିଛି ।

ଅବଶ୍ୟ ଆଦିବାସୀ ଭାଷାର ଲିପି ନ ଥିବା ହେତୁ ଏଗୁଡ଼ିକ ଲିପି-ବଦ୍ଧ ହୋଇ ପାରିନାହିଁ—ତଥାପି ଅନେକ ଗଳ୍ପ ଅକ୍ଷତ ରହିଛି ବହୁ ପୂର୍ବକାଳରୁ । ସମାଲୋଚକମାନେ କହନ୍ତି ଯେ—ଆଦିବାସୀମାନଙ୍କ ମଧ୍ୟରେ ଶିକ୍ଷାର ଅଧିକ ପ୍ରସାର ନ ହୋଇଥିବା ହେତୁ, ଏମାନେ ଜୀବିକାର୍ଜନ ପାଇଁ ସ୍ଥାନ ପରିବର୍ତ୍ତନ ନ କରିଥିବା ହେତୁ ଓ ବହିର୍ଜଗତ ସହିତ ଏ ଏମାନଙ୍କର ସିଧାସଳଖ ଭାବର ଆଦାନ ପ୍ରଦାନ ନ ଥିବା ହେତୁ – ଏ ଗଳ୍ପ ଗୁଡ଼ିକ ଅଧିକ ଶଙ୍କର ହୋଇ ପାରିନାହିଁ ।

ନିଜର ସଂସ୍କୃତି, ସାମାଜିକ ଚଳଣୀ, ଆସ୍ଥିର ଓ ବିସ୍ମୟକୁ କେନ୍ଦ୍ର କରି ଗଳ୍ପଗୁଡ଼ିକ ଗଢ଼ି ଉଠିଛି । ଉଦାହରଣ ସ୍ୱରୂପ—ହଳଦୀ ଫସଲରେ ଆଦିବାସୀମାନେ ନରବଳି ଦେଉଥିବା କଥା ସମସ୍ତେ ଜାଣନ୍ତି । ଏ ବିଷୟରେ ମଧ୍ୟ ବହୁ ଗଳ୍ପ ଦୃଷ୍ଟିଗୋଚର ହୁଏ । ଅବଶ୍ୟ ଆଜି ଆଉ ନରବଳି ପ୍ରଥା ନାହିଁ । ତଥାପି ପଶୁ ପକ୍ଷୀ ବଳୀ ଏବେ ବି ଆଦିବାସୀ ସମାଜରେ ପ୍ରଚଳିତ । ଏ ସମ୍ପର୍କରେ ସଂଖ୍ୟାଧିକ ଗଳ୍ପ ଦେଖିବାକୁ ମିଳେ ।

ଦେବଦେବୀଙ୍କୁ ଏମାନେ ଭୟ ଓ ଭକ୍ତି କରନ୍ତି । ସମସ୍ତ ବାଂଶରେ ଦେବୀଙ୍କ ଉପରେ କୋପ କରିବାର ପ୍ରମାଣ ରହିଛି । ତେଣୁ ଲୋକ ଗଳ୍ପ ଗୁଡ଼ିକରେ ଏହାର ପ୍ରମାଣ ବିଦ୍ୟମାନ ।"

ଆଜି ମଧ୍ୟ ଆଦିବାସୀ ସମାଜର ସମ୍ପୂର୍ଣ୍ଣ ଚିତ୍ର ଲାଭ କରିବାକୁ ହେଲେ—ସେମାନଙ୍କର ଲୋକ ଗଳ୍ପଗୁଡ଼ିକୁ ସତର୍କତାର ସହିତ ଅନୁଧ୍ୟାନ କରିବାକୁ ହେବ । ଏହା ଏହି ସମାଜର ବାସ୍ତବ ପରିଚୟ । ଏ ଗଳ୍ପ ଗୁଡ଼ିକରେ ଯେ ଆର୍ଯ୍ୟ, ଦ୍ରାବିଡ଼, ଖ୍ରୀଷ୍ଟିଆନ ଧର୍ମାବଲମ୍ବୀମାନଙ୍କର ପ୍ରଭାବ ପଡ଼ିନାହିଁ ତାହା ନୁହେଁ । ଆର୍ଯ୍ୟ ତଥା ହିନ୍ଦୁ ଧର୍ମର ଅନେକ ପୌରାଣିକ ଚରିତ୍ର ଏହି ଗଳ୍ପରେ ସ୍ଥାନ ପାଇଛନ୍ତି । ବହୁ ପୌରାଣିକ ଆଖ୍ୟାୟିକା ଓ ଉପାଖ୍ୟାନ ମଧ୍ୟ ସ୍ଥାନ ପାଇଛି । କେବଳ ସେତିକି ନୁହେଁ— ଖ୍ରୀଷ୍ଟିଆନମାନଙ୍କର ଆଗମନ ପରେ ଓ ମିସନାରୀମାନଙ୍କ ଧର୍ମ ପ୍ରଚାର ପରେ ଏହି ଗଳ୍ପଗୁଡ଼ିକ ଉପରେ ବାଇବେଲର ମଧ୍ୟ ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ ପଡ଼ିଅଛି । ଉକ୍ତରେ କୃଷ୍ଣଚରଣ ବେହେରା ତାଙ୍କ ଓଡ଼ିଆ ଉପନ୍ୟାସ ପୁସ୍ତକରେ ଲେଖିଛନ୍ତି —

*"ଖ୍ରୀଷ୍ଟିଆନ ପାଦ୍ରୀ ପ୍ରଚାରିତ ବାଇବେଲ କାହାଣୀର ପ୍ରଭାବ କେତେକ ପରିମାଣରେ ଉକ୍ତ ଗଳ୍ପରେ ଲକ୍ଷ୍ୟ କରାଯାଇ ପାରେ । କିନ୍ତୁ ବାଇବେଲ ବର୍ଣ୍ଣିତ ସୃଷ୍ଟି କାହାଣୀଠାରୁ ଏହା ଅଧିକ ବାସ୍ତବ ଓ ସ୍ୱାଭାବିକ ମନେହୁଏ ।"

ଏ ସୃଷ୍ଟି କପରି ସମ୍ଭବ ହେଲା—ସେ ସମ୍ପର୍କରେ ବାଇବେଲ ଓ ହିନ୍ଦୁ ଶାସ୍ତ୍ର ଗୁଡ଼ିକରେ ଯେପରି ବର୍ଣ୍ଣନା ରହିଛି—ଆଦିବାସୀ ଗଳ୍ପ ଗୁଡ଼ିକରେ ସେହିପରି ବର୍ଣ୍ଣନା ବିଦ୍ୟମାନ । ବାଇବେଲ ପରି ଆଦିବାସୀ ଗଳ୍ପରେ ଅଛି ଯେ—ଭଗବାନ ଭାବିଲେ ସୃଷ୍ଟି କରିବା । ତେଣୁ ନିଜେ ନିଜର ନାମ ଦେଲେ ବୁରାପେନୁ । ତାହାପରେ ନିଜ ସ୍ତ୍ରୀ ରୂପେ ତାଡ଼ାପେନୁଙ୍କୁ ସର୍ଜନା କଲେ । ଦୁଇ ଜଣଯାକ ମିଳି ପୃଥିବୀର ବିଭିନ୍ନ

* ଓଡ଼ିଆ ଉପନ୍ୟାସ—କୃ. ଚ. ବେ. ପୃ—୧୫

ବସ୍ତୁ ଓ ଜୀବଜନ୍ତୁ ସୃଷ୍ଟି କଲେ । ଥରେ ପିଠି କୁଣ୍ଡାଇ ହେଲାରୁ ବୁଢ଼ୀପେନୁ ଛୋଡ଼ାପେନୁଙ୍କୁ ପିଠି କୁଣ୍ଡାଇ ଦେବାକୁ କହିଲେ । ଛୋଡ଼ାପେନୁ ରଚିଯିବାରୁ ସେ ଝଡ଼ପା ହୋଇ ନିଜର କାମ ଚଳାଇବାକୁ ଅନ୍ୟ ଜୀବ ସୃଷ୍ଟି କଲେ । ସେ ପାଞ୍ଚ ମୁଠା ମାଟି ଆଣି 'ପଛକୁ ଫିଙ୍ଗିଦେଲେ । ସେହି ମାଟିରୁ ଉଦ୍ଭିଦ, ମାଛ, ଜୀବଜନ୍ତୁ, ପକ୍ଷୀ ଓ ମଣିଷ ସୃଷ୍ଟି ହେଲେ ।

ଏହି ଗଳ୍ପ ଗୁଡ଼ିକରେ ସ୍ଥାନ ପାଇଥିବା ହିନ୍ଦୁ ରାମାୟଣ ଗଳ୍ପକୁ ଲକ୍ଷ୍ୟ କରିବାର କଥା । ଗୋଟିଏ ଆଦିବାସୀ ଗଳ୍ପରେ ଅଛି ଯେ— ରାଜା ଦଶରଥ ପ୍ରଜାମାନଙ୍କ ଆଡ଼କୁ ଗୋଟିଏ ଆଙ୍ଗୁଳି ହଲାଇ ସଦା-ବେଳେ କଥାବାର୍ତ୍ତା କରୁଥିଲେ । ରାଜାଙ୍କର ଏହି ବଚନ ଅଭ୍ୟାସରେ ପ୍ରଜାମାନେ ବିରକ୍ତ ହୋଇ ଅଭିଶାପ ଦେଲେ ଯେ—ଯେଉଁ ଆଙ୍ଗୁଳି ହଲାଇ ରାଜା, ପ୍ରଜାମାନଙ୍କ ସହିତ କଥାବାର୍ତ୍ତା କରୁଛନ୍ତି, ତାହା ଘା ହୋଇ ପଚିଯାଉ । ଅଭିଶାପ ଠିକ୍ ଠିକ୍ ଫଳିଗଲା । ଯେତେ ଗୁଣିଆ ଲାଗିଲେ—ରାଜାଙ୍କ ଘା ଭଲ ହେଲାନାହିଁ । ଶେଷରେ ଜ୍ୟୋତିଷ ଖଡ଼ି ପକାଇ କହିଲେ—ଆପଣ ରାମ-ଲକ୍ଷ୍ମଣ ପୁଅ ଦୁହିଁଙ୍କି ବଣକୁ ପଠାଇଲେ —ଘା ଭଲ ହୋଇଯିବ । ରାଜା ତହିଁରେ ରାଜି ହେଲେ ।

ରାମାୟଣର ଏହା ଏକ ଅଦ୍ଭୁତ କଳ୍ପନା ବୋଲି ବୋଲାଯାଇ ପାରେ । କେବଳ ଏହି ଗୋଟିଏ ନୁହେଁ—ଏହିପରି ଅସଂଖ୍ୟ ପୌରାଣିକ କାହାଣୀ ବିକୃତ ହୋଇ ଆଦିବାସୀ ସମାଜରେ ପ୍ରଚଳିତ ।

ସେହିପରି ଅସଂଖ୍ୟ ଆଦିବାସୀ ଗଳ୍ପର ପ୍ରଭାବ ଓଡ଼ିଆ କାହାଣୀ ଉପରେ ମଧ୍ୟ ପଡ଼ିଛି । ରାଜାର ଝିଅ ମୃତ୍ୟୁବରଣ କରିବା—ତାହାକୁ ନେଇ ଗୋଟିଏ ସ୍ଥାନରେ ସମାଧି ଦେବା—ସେହି ସମାଧି ସ୍ଥାନରେ ଗୋଟିଏ ଗଛ ଉଠିବା ଓ ଗଛ ଫଳ ପୂର୍ଣ୍ଣ ହେବା ସମ୍ପର୍କରେ ବହୁ ଗଳ୍ପ ଓଡ଼ିଆ କାହାଣୀ ଦେହରେ ପରିଦୃଷ୍ଟ ହୁଏ । ଠିକ୍ ଏହିପରି ଗଳ୍ପ

ଆଦିବାସୀ ଗଳ୍ପରେ ମଧ୍ୟ ଦେଖିବାକୁ ମିଳେ । ଏଠାରେ ପାହାଡ଼ ଶବର ମାନଙ୍କର ଗୋଟିଏ ଗଳ୍ପ ପ୍ରତି ଦୃଷ୍ଟି ନିକ୍ଷେପ କରାଯାଉ ପାରେ ।

ମହେନ୍ଦ୍ର ଗିରି ପର୍ବତରେ ମଙ୍ଗଲେ ଶବର ବାସ କରୁଥିଲେ । ତାଙ୍କର ପାଞ୍ଚ ପୁତ୍ର ଓ ତିନି କନ୍ୟା ଥିଲେ । ଥରେ ସମସ୍ତେ ମିଳି ଅରଣ୍ୟ ମଧ୍ୟରେ କାଠ କାଟୁଥିବା ସମୟରେ ସାନ ଝିଅକୁ ସାପ କାମୁଡ଼ ପକାଇଲା । ସେତେବେଳକୁ ସାନ ଝିଅଟି ବିବାହ କରି ନ ଥିଲା । ତାହାର ବାପା ମାଆ ଝିଅଟିକୁ ମୃତ୍ୟୁ ବରଣ କରିଥିବା ସ୍ଥାନରେ ସମାଧି ଦେଇ ଦେଲେ ।

ସେହି ସମାଧି ଉପରେ ଗୋଟିଏ ଗଛ ଉଠିଲା । ଗଛଟି ପାଞ୍ଚ ବର୍ଷର ହେବା ପରେ—ଝିଅର ଭୂତ ବାହାରି ସ୍ୱପ୍ନରେ ମଙ୍ଗ୍‌ଲେ ସବରକୁ କହିଲା—ମୋ ଶରୀରରୁ ଗୋଟିଏ ଗଛ ଉଠି ବର୍ତ୍ତମାନ ଫଳପୂର୍ଣ୍ଣ ହୋଇଛି । ସେ ଫଳ ତୁମେ ଖାଅ ନାହିଁ, କିନ୍ତୁ ମୋର ଅନ୍ୟ ଦୁଇଜଣ ଭଉଣୀଙ୍କୁ ଏ ସମ୍ପର୍କରେ କୁହ, ସେମାନେ ଯାଇ ଫଳ ତୋଳି ଖାଆନ୍ତୁ । ତାହାହିଁ ହେଲା । ମଙ୍ଗ୍‌ଲେ ଶବର ଦୁଇ କୋଳିଙ୍କୁ ଡାକି ଏ ସମ୍ପର୍କରେ କହିଲା । ସେହିଦିନୁ ଏମାନେ ଫଳ ତୋଳି ତାହା ବ୍ୟବହାର କଲେ ।

କଥାରେ ଅଛି ଯେ—ମଣିଷର ପ୍ରକୃତି ପୃଥିବୀର ସବୁଠାରେ ସମାନ । ତେଣୁ ଗଳ୍ପ ଗୁଡ଼ିକ ବା ଭିନ୍ନ ହେବ କିପରି ? ଏ ଦିଗରୁ ବିଚାର କଲେ ଆଦିବାସୀ ଜୀବନଧାରା, ମାନବିକତା ସହିତ ଆର୍ଯ୍ୟ ଓ ଦ୍ରାବିଡ ମାନବିକତାର ସାମ୍ୟ ନିଶ୍ଚିତ ଦୃଷ୍ଟିଗ୍ରାହ୍ୟ । ତେଣୁ ଅସଂଖ୍ୟ ଆଦିବାସୀ ମନର ଆଦିମ ଚିନ୍ତାଧାରା ଯେ ଓଡ଼ିଆ କାହାଣୀ ରାଜ୍ୟକୁ ପ୍ରଭାବିତ କରିନାହିଁ ତାହା ନୁହେଁ ।

ଅବଶ୍ୟ ଶିକ୍ଷାର ପ୍ରସାର ଫଳରେ ଓ ସଭ୍ୟତାର ବିକାଶ ଫଳରେ ଲୋକ ସାହିତ୍ୟର ବିଲୟ ସାଧିତ ହେବାରେ ଲାଗିଛି

Women Folk—Songs of Rajputana ପୁସ୍ତକରେ winifred Bryce ମହାଶୟ ମତ ଦେଇଛନ୍ତି ଯେ— The number of literate persons has doubled in recent years and this increase of literacy inevitably means that much folk—literature is doomed to decay."

କିନ୍ତୁ ଶିକ୍ଷାର ପ୍ରସାର ଫଳରେ ଏ ଦିଗରେ ଗବେଷଣାର ସମ୍ଭାବନା ଅଧିକ ବୃଦ୍ଧି ପାଇଛି । ବାସ୍ତବିକ୍ ଆଦିବାସୀ ସମାଜ ଓ ଏହାର ସଂସ୍କୃତି ସମ୍ପର୍କରେ ସମ୍ୟକ ଧାରଣା କରିବାକୁ ହେଲେ ଲୋକଗଳ୍ପ ଓ ଲୋକସଂଗୀତ ଗୁଡ଼ିକ ଉପରେ ହିଁ ଦୃଷ୍ଟି ନିକ୍ଷେପ କରିବାକୁ ହେବ । ସରଳ, ନିରାଡ଼ମ୍ବର ଆଦିବାସୀମାନଙ୍କର ଏହି ଗଳ୍ପଗୁଡ଼ିକ କଳାହୀନ ନୁହେଁ । ଶ୍ରୀ କୃଷ୍ଣଚରଣ ବେହେରା ଯଥାର୍ଥରେ କହିଛନ୍ତି—

ଆଦିବାସୀ ଗଳ୍ପର କଳାଗତ ମୂଲ୍ୟ କୌଣସି ଗୁଣରେ କମ୍ ନୁହେଁ । ଏହାର ସରଳ ଓ ସାବଲୀଳ କଥନଭଙ୍ଗୀ ସବିଶେଷ ଲକ୍ଷଣୀୟ । କେତେକ ଗଳ୍ପରେ କ୍ଷୁଦ୍ର କ୍ଷୁଦ୍ର ପଦ୍ୟ ରଚନାକୁ ସମାବେଶ କରାଯାଇ ଥିବାରୁ ଏହା-ଦ୍ୱାରା ଶ୍ରୋତାର କର୍ଣ୍ଣମନ ରସାପ୍ଲୁତ ହୋଇଥାଏ । ଅନେକ ଗଳ୍ପର ଆରମ୍ଭ ଓ ଅଗ୍ରଗତିରେ ଦ୍ୱନ୍ଦ୍ୱ, ପ୍ରଚ୍ଛନ୍ନତା ଆଦି ସ୍ଥାନ ପାଇଥିବାରୁ ଶ୍ରୋତା ମନରେ ବିସ୍ମୟ, ଆବେଗ ଓ କୌତୂହଳ ସୃଷ୍ଟି ହୋଇଥାଏ । ସ୍ଥାନେ ସ୍ଥାନେ ଗଳ୍ପମଧ୍ୟରେ ରଙ୍ଗ ବ୍ୟଙ୍ଗର ପୁଟ ମଧ୍ୟ ପରିଲକ୍ଷିତ ହୁଏ । ସର୍ବୋ-ପରି ସମସ୍ତ ପ୍ରକାର ସାହିତ୍ୟର ଯେଉଁ ମୌଳିକ ଉଦ୍ଦେଶ୍ୟ—ରସ ସୃଷ୍ଟି, ତାହା ଆଦିବାସୀ ଗଳ୍ପରେ ସମ୍ଭବ ହୋଇ ପାରିଛି ।"

ତେଣୁ ଆଦିବାସୀ ଲୋକ ଗଳ୍ପ ଗୁଡ଼ିକରେ କଳାଗତ ମୂଲ୍ୟ କମ୍ ନାହିଁ । ଏମାନଙ୍କ ଜୀବନ ମଧ୍ୟରେ ଉତ୍ଥାନ, ପତନ, ସଂଘର୍ଷ, ଦ୍ୱନ୍ଦ୍ୱ, ସମାଧାନର କ୍ଷେତ୍ର ବିସ୍ତୃତ ଥିବାରୁ ସାଧାରଣ ମାନବିକତା ଦୃଷ୍ଟିରୁ ଏମାନଙ୍କ ସୃଷ୍ଟି ଅଗ୍ରାହ୍ୟ ନୁହେଁ । ବିଶ୍ୱମାନବିକତା ହିଁ ଏମାନଙ୍କ ପ୍ରାଣରେ ଉଦ୍ଦୀପିତ । ତେଣୁ କାହାଣୀ ବା ଗଳ୍ପ ସୃଷ୍ଟି ପାଇଁ ଆଦିବାସୀ ଘଟଣା କମ୍ ଖୋରାକ୍ ଯୋଗାଉ ନାହିଁ ।

ଏହି ଗଳ୍ପ ଗୁଡ଼ିକର ଚରମ ବିକାଶରେ ଡ଼ି.ଶିମା ଭୂୟାଁ, ପରଜା, ଅମୃତର ସନ୍ତାନ ଆଦି ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଗଦ୍ୟ ସମ୍ପଦ ସମୃଦ୍ଧ ହୋଇଛି କହିଲେ ଅତ୍ୟୁକ୍ତି ହେବନାହିଁ। ସେହି ଚିନ୍ତାଧାରା, ଜନ୍ମ, ମୃତ୍ୟୁ, ବିବାହ, ପର୍ବପର୍ବାଣୀ ଓ ଚଳଣୀକୁ କେନ୍ଦ୍ର କରି, ଦେବ ଦେବୀଙ୍କ ଧାରଣା ଧରି ଏହି ଗଳ୍ପ ସମ୍ପଦ ଗୁଡ଼ିକ ଜନ୍ମଲାଭ କରିଛି। ଏଗୁଡ଼ିକ ଉପରେ ଯେ ଆଦିବାସୀ ଲୋକ ଗଳ୍ପର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ ପଡ଼ିନାହିଁ ତାହା କହି ହେବନାହିଁ।

ଆଦିବାସୀ ମାନେ ମଣିଷ। ଏହି ସଂସାରର ଭଲ ମନ୍ଦ, ରୋଗ ଶୋକ, ଅଭାବ ଅନାଟନ, ଘର, ପରିବାର ନେଇ ସେମାନଙ୍କର ଜୀବନ ଓ ଜୀବିକା ନିର୍ବାହର ପ୍ରଣାଳୀ ଗଠିତ। ତେଣୁ ଆଦିବାସୀମାନଙ୍କର ବିରାଟ ଗଳ୍ପରାଜ୍ୟ ନିଶ୍ଚୟ ଓଡ଼ିଆ ସାହିତ୍ୟ ତଥା ଗଳ୍ପର ବିକାଶରେ ସାହାଯ୍ୟ କରିଛି।

---

ଓଡ଼ିଶାର ଆଦିବାସୀ ଓ ଆଦିବାସୀ ଗଳ୍ପ ସମ୍ପର୍କରେ ସମ୍ୟକ୍ ଜ୍ଞାନାର୍ଜନ ପାଇଁ କେତେଗୋଟି ଉପାଦେୟ ପୁସ୍ତକ –

1. Tribal Myths of Orissa—Verrier Elwin
2. ଓଡ଼ିଶାର ଆଦିବାସୀ—ବୃନ୍ଦାବନ ଚନ୍ଦ୍ର ପଟ୍ଟନାୟକ।
3. The Adivasis—The Publication Divisions, Govt, of India.
4. ଆଦିବାସୀ ଗଳ୍ପ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
5. Myth and cult among primitive people—Adolf E. gensen.
6. ବନ—ବିକ୍ରମଦେବ ବର୍ମା—ପ୍ରଜ୍ଞାପ (ପତ୍ରିକା)
7. The H.ll Bhuiyas of Orissa—Sarat Chandra Ray.
3. ଓଡ଼ିଆ ଉପନ୍ୟାସ—ଡକ୍ଟର କୃଷ୍ଣଚରଣ ବେହେରା
9. ଶବର – ଅନିରୁଦ୍ଧ ଦାଶ
10. ଦାରୁ ଦେବତା—ବେଣୀ ମାଧବପାଢ଼ୀ
11. ଭୂୟାଁ ଜାତି



# ଆଦିବାସୀ ଅଞ୍ଚଳର ସଂପଦ ଓ ତାର ସଦୁପଯୋଗ

ଶ୍ରୀ ବିଧୁଶେଖର ତ୍ରିପାଠୀ, ଓ: ଏ: ଏସ୍:

ସାଧାରଣତଃ ଆଦିବାସୀ ବହୁଳ ଅଂଚଳ ଗୁଡ଼ିକ ପ୍ରାକୃତିକ ସମ୍ପଦରେ ଭରପୂର । କିନ୍ତୁ ଏ ଅଞ୍ଚଳର ପ୍ରଧାନ ସମସ୍ୟା ହେଲା—ଏହି ସମ୍ପଦର ପ୍ରକୃତ ବିନିଯୋଗ । ପ୍ରାକୃତିକ ସଂପଦର ପ୍ରାଚୂର୍ଯ୍ୟ ମଧ୍ୟରେ ଦାରିଦ୍ର୍ୟର ଅବସ୍ଥିତି ଏ ଅଞ୍ଚଳର ବୈଶିଷ୍ଟ୍ୟ । ଏହାର ଉପଯୁକ୍ତ ବିନିଯୋଗ ନ ହେବା ଯାଏ ଆଦିବାସୀମାନଙ୍କ ନିମନ୍ତେ ହେଉଥିବା ଅର୍ଥନୈତିକ କାର୍ଯ୍ୟକ୍ରମ କେବେହେଲେ ସଫଳ ହୋଇ ପାରିବ ନାହିଁ । ବର୍ତ୍ତମାନ ଦେଖାଯାଉ ଏ ଅଞ୍ଚଳରେ କଅଣ କଅଣ ସମ୍ପଦ ରହିଛି—ଓ ସେଗୁଡ଼ିକର କିପରି ଉପଯୁକ୍ତ ଭାବରେ ବିନିଯୋଗ ହୋଇ ପାରିବ ।

**କୃଷି**—କୃଷି ଆଦିବାସୀ ମାନଙ୍କର ପ୍ରଧାନ ଜୀବିକା । ସେମାନଙ୍କ ମଧ୍ୟରୁ ଶତକଡ଼ା ୮୦ ଭାଗ ଏଥିଉପରେ ନିର୍ଭର କରନ୍ତି । ୧୯୫୧ର ଜନଗଣନାରୁ ଜଣାଯାଏ ଯେ ମୋଟ ୨.୩୫ କୋଟି ଲୋକମାନଙ୍କ ମଧ୍ୟରୁ ୧.୭୩ କୋଟି ଲୋକ କୃଷି ଉପରେ ନିର୍ଭର କରନ୍ତି ଓ ବାକି ଲୋକମାନଙ୍କ ମଧ୍ୟରୁ ଅଧିକାଂଶ କୃଷି କାର୍ଯ୍ୟରେ ମୂଲିଆ ଭାବରେ ନିଯୋଜିତ ହୋଇଥାନ୍ତି ଓ ଖୁବ୍ କମ୍ ଅଂଶ ଅନ୍ୟାନ୍ୟ କାମ କରିଥାନ୍ତି । ତେଣୁ ଆଦିବାସୀ ଉନ୍ନୟନ ଯୋଜନାରେ କୃଷିର ପ୍ରାଧାନ୍ୟ ସବୁଠାରୁ ଅଧିକ । କିନ୍ତୁ ବର୍ତ୍ତମାନ ସମୟରେ କୃଷିର ଅର୍ଥ କିଛି ନାହିଁ । କାରଣ ଏହା ସେମାନଙ୍କ ପକ୍ଷେ ଲାଭଜନକ ନୁହେଁ । ଏହାର କାରଣ—

ପ୍ରଥମତଃ—ଜଙ୍ଗଲ ଅଞ୍ଚଳରେ ବହୁ ପରିମାଣରେ ଭଲ ଜମି ନାହିଁ ।

ଦ୍ୱିତୀୟତଃ—ବିଶେଷ ଭାବରେ ମୃତ୍ତିକାକ୍ଷୟୀକରଣ ଫଳରେ ଜମିର ଉର୍ବରଶକ୍ତି ନଷ୍ଟ ହୋଇଅଛି ।

ତୃତୀୟତଃ—ଜଳସେଚନ ସୁବିଧାର ଅଭାବ ।

ଚତୁର୍ଥତଃ—ପ୍ରାଚୀନ କୃଷି ପଦ୍ଧତି ଓ କୃଷୋପକରଣର ବ୍ୟବହାର ।

ପଞ୍ଚମତଃ—ଜମିଗୁଡ଼ିକ ଭଲ ଭାବରେ ସାର ପାଆନ୍ତି ନାହିଁ ।

ଏହା ବ୍ୟତୀତଃ ଆଦିବାସୀ ମାନଙ୍କର ଜମି ଉପରେ ଥିବା ସ୍ୱତ୍ତ୍ୱ ସୁରକ୍ଷିତ ନୁହେଁ । ଅଣ ଆଦିବାସୀମାନଙ୍କ ଅତ୍ୟାଚାର ଫଳରେ ଆଦିବାସୀମାନେ ଦିନକୁ ଦିନ ସେମାନଙ୍କ ଜମି ହସ୍ତାନ୍ତର କରିବାରେ ଲାଗିପଡ଼ିଅଛନ୍ତି । ଅଧିକନ୍ତୁ ଏମାନଙ୍କର କୃଷି ବିଶେଷତଃ ଆଦିବାସୀ ଝୁମିଙ୍ଗ ବା ପୋଡୁ ଚାଷ ଉପରେ ନିର୍ଭର କରେ । ସମାଜ ମଙ୍ଗଳ ଓ ସମାଜ ମଙ୍ଗଳ ଉପରେ ବସିଥିବା ରେଣୁକାରାୟ କମିଟିର ରିପୋର୍ଟ ଅନୁଯାୟୀ ୨୫ ଲକ୍ଷ ଆଦିବାସୀ ଏହି ଝୁମିଙ୍ଗ ବା ପୋଡୁ ଚାଷ ଉପରେ ନିର୍ଭର କରନ୍ତି । ଦ୍ୱିତୀୟତଃ ପଞ୍ଚବାର୍ଷିକ ଯୋଜନା କାଳରେ ସରକାର ଏହି ପୋଡୁ ଚାଷ ବନ୍ଦ କରିବା ନିମନ୍ତେ ୨୮୭.୩୩ ଲକ୍ଷ ଟଙ୍କାର ବ୍ୟବସ୍ଥା ରଖିଥିଲେ । କିନ୍ତୁ ଏହି ପୋଡୁ ଚାଷ ବନ୍ଦ କରିବା ସହଜ ନୁହେଁ । ପୋଡୁ ଚାଷକୁ ବୈଜ୍ଞାନିକ ସମ୍ମତ କରାଇ ମୃତ୍ତିକା କ୍ଷୟୀକରଣକୁ ବନ୍ଦ କରିବା ନିମନ୍ତେ ପରୀକ୍ଷା ଚାଲିଅଛି । ଯେଉଁଠାରେ ଆଦିବାସୀମାନେ ବାସ-କରି ଚାଷ କରୁଅଛନ୍ତି—ସେଠାରେ ମଧ୍ୟ ସେମାନେ ସେଇ ପୁରାତନ ଆଦିମ ପ୍ରଥାର ଅନୁକରଣ କରୁଅଛନ୍ତି । ତେଣୁ ବ୍ୟାପକ ସମ୍ପ୍ରସାରଣ ଯୋଜନା ମାଧ୍ୟମରେ ମୃତ୍ତିକା ସଂରକ୍ଷଣ, ଜଳସେଚନ ବ୍ୟବସ୍ଥାର ସୃଷ୍ଟି କରି ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି କରାଇବାର ନିତ୍ୟାନ୍ତ ଆବଶ୍ୟକତା ରହିଅଛି । ସରକାର କୃଷୋପଯୋଗୀ ଜମିର ହିସାବ ନେଇ ତାପରେ କେତେ ଜମି ଆବାଦଯୋଗ୍ୟ ହୋଇ ପାରିବ ଦେଖି ସେଇ ଅନୁସାରେ

ଲୋକମାନଙ୍କ ମଧ୍ୟରେ ବଣ୍ଟନ କରିବା ଉଚିତ । ଏଇ ଜମିକୁ ପୋଡୁ ଚାଷ କରୁଥିବା ଭୂମିହୀନ ଆଦିବାସୀମାନଙ୍କ ମଧ୍ୟରେ ବାଣ୍ଟି ଦିଆଯିବା ଉଚିତ । ଯେଉଁ ସ୍ଥାନମାନଙ୍କରେ ପୋଡୁ ଚାଷ ବନ୍ଦ କରିବା ସମ୍ଭବ ହୋଇ ପାରିବ ନାହିଁ, ସେଠାରେ ପୋଡୁ ଚାଷକୁ ଅଧିକ ବୈଜ୍ଞାନିକ ସମ୍ମତ କରି ଉନ୍ନତ କରାଇବା ଉଚିତ । ପ୍ରଚଳିତ ବ୍ୟବସ୍ଥା ମାଧ୍ୟମରେ ଆଦିବାସୀ ମାନଙ୍କର ଜମି ଉପରେ ସ୍ୱତ୍ୱ ଯେପରି ରହେ, ତନ୍ନିମନ୍ତେ ବିଶେଷରେ ଆଇନର ପରିବର୍ତ୍ତନ କରାଯିବା ଉଚିତ । ଏହା ଫଳରେ ଆଦିବାସୀମାନଙ୍କ ମଧ୍ୟରେ ଜମି ପ୍ରତି ମମତା ରହିବ ଓ ସେମାନେ ଅତ୍ୟାଚାରୀଙ୍କ କବଳରୁ ମୁକ୍ତିପାଇ ପାରିବେ । ଯେ କୌଣସି ଉପାୟରେ ଆଦିବାସୀଙ୍କଠାରୁ ଅଣ ଆଦିବାସୀଙ୍କ ପାଖକୁ ଜମି ହସ୍ତାନ୍ତର କରାଇ ଦିଆଯିବା ଉଚିତ ନୁହେଁ ଏହା ବ୍ୟତୀତ ସାହାଯ୍ୟ ମାଧ୍ୟମରେ ମୃତ୍ତିକା ସଂରକ୍ଷଣ ଯୋଜନା କାର୍ଯ୍ୟକାରି କରାଗଲେ ତାହା ଜମିର ଉର୍ବରା ଶକ୍ତି ରକ୍ଷାକରି ପାରିବ । ଏହାଦ୍ୱାରା ଉଭୟ ଚାଷ ଓ ପନିପରିବା କରି ଆଦିବାସୀମାନେ ସେମାନଙ୍କର ଅର୍ଥନୈତିକ ମାନ ବୃଦ୍ଧି କରି ପାରିବେ । ଏହା ସଙ୍ଗେ ସଙ୍ଗେ ଆଦିବାସୀ ଅଞ୍ଚଳର ରାସ୍ତା-ଘାଟର ଉନ୍ନତି ପ୍ରତି ଦୃଷ୍ଟି ଦିଆଯିବା ମଧ୍ୟ ଉଚିତ । ଚାଷୀ ତାର ଚାଷ ନିମନ୍ତେ ଅର୍ଥ ଖଟାଇବାକୁ ଚାହେଁ, କିନ୍ତୁ ଆଦିବାସୀମାନଙ୍କ ମଧ୍ୟରେ ଏହି ସୁବିଧାର ଅଭାବ ଦେଖାଯାଏ, ଏଣୁ ଅଳ୍ପ ସୁଧରେ ଋଣ ପାଇବା ନିମନ୍ତେ ସେମାନଙ୍କ ପାଇଁ ସୁବିଧା ଦିଆଯିବା ଉଚିତ । ତେବେ ସେମାନେ କୃଷି ପ୍ରତି ଆକୃଷ୍ଟ ହୋଇ ସେଥିରେ ମନ ଯୋଗ ଦେଇ ପାରିବେ ।

କ୍ଷୁଦ୍ର ଜଳସେଚନ ଯୋଜନା ମାନ କାର୍ଯ୍ୟକାରୀ କରାଯାଇ ପାରିଲେ ତାହା ସେମାନଙ୍କୁ ଆର୍ଥିକ ଉନ୍ନତି ଦିଗରେ ଯଥେଷ୍ଟ ସାହାଯ୍ୟ କରି ପାରିବ । ଚାଷ ଓ ଜମିର ଉନ୍ନତି ନିମନ୍ତେ ତକାବି ଋଣ ଇତ୍ୟାଦି ଯଥା ସମୟରେ ଯୋଗାଇ ଦିଆଯିବାର ବ୍ୟବସ୍ଥା ମଧ୍ୟ କରାଯିବା ଉଚିତ । ଏ ଦିଗରେ ପ୍ରଚଳିତ ନିୟମାବଳୀ କୋହଳ କରାଯିବା ମଧ୍ୟ ଉଚିତ । ଏହା-ଦ୍ୱାରା ସେମାନେ ସହଜରେ ଋଣ ପାଇ ପାରିବେ । ବିହନ, ସାର ଓ ଚାଷ-ସମ୍ବନ୍ଧୀୟ ଯନ୍ତ୍ରପାତି ନିମନ୍ତେ ଯୋଗାଇ ଦିଆଯାଉଥିବା ଋଣ ଟଙ୍କା

ଆକାରରେ ଦିଆ ନ ଯାଇ ତାହା ଜିନିଷ ଆକାରରେ ଯୋଗାଇ ଦିଆଯିବା ଉଚିତ ।

ଶିକ୍ଷାର ମାଧ୍ୟମରେ ପୋଡୁ ଚାଷ ପ୍ରଥା ବନ୍ଦ କରିବା ନିମନ୍ତେ ସର୍ବ-ବିଧ ଚେଷ୍ଟା କରାଯିବା ଉଚିତ । ଯେତେଦିନ ପର୍ଯ୍ୟନ୍ତ ସେମାନଙ୍କୁ ବସବାସ କରି ଚାଷ କରିବା ନିମନ୍ତେ ସମସ୍ତ ପ୍ରକାର ସୁବିଧା ଯୋଗାଇ ଦିଆ ନ ଯାଉଛି, ସେତେଦିନ ପର୍ଯ୍ୟନ୍ତ ଏହି ପୋଡୁ ଚାଷ ପ୍ରଥା ବନ୍ଦ କରି ଦିଆଯିବା ଉଚିତ ନୁହେଁ, ବରଂ ଏହାକୁ ଅଧିକ ବିଜ୍ଞାନ ସମ୍ମତ କରାଇବା ଉଚିତ । ଏହାଛଡ଼ା ପୋଡୁ ଚାଷ ବନ୍ଦ ହେଉଥିବା ଅଞ୍ଚଳରେ ମୃତ୍ତିକା କ୍ଷୟ ଅବରୋଧ କରାଯିବା ଉଚିତ ।

## ଗୋ ସମ୍ପଦ—

ଆଦିବାସୀମାନଙ୍କ ମଧ୍ୟରେ ଗୋ ସମ୍ପଦର ଉପଯୁକ୍ତ ତତ୍ତ୍ୱାବ-ଧାନର ଘୋର ଅଭାବ । ଉପଯୁକ୍ତ ଖାଦ୍ୟର ଅଭାବରୁ ସେମାନେ ରୁଗ୍ଣ, କ୍ଷୀଣକାୟ ଓ ଦୁର୍ବଳ । ସେମାନଙ୍କ ମଧ୍ୟରେ ଏବେ ସୁଦ୍ଧା ପ୍ରଚଳିତ ପ୍ରାଚୀନ କୃଷି ପଦ୍ଧତିର ଅନୁକରଣ, ଗୋ ସମ୍ପଦର ଉନ୍ନତି ପ୍ରତି ସେମାନଙ୍କୁ ବୀତସ୍ପୃହ କରିଅଛି । ଏହା ବ୍ୟତୀତ ସାମାଜିକ ପର୍ବ ପର୍ବାଣିରେ ଗୋରୁ-ମାନଙ୍କୁ ବଳିଦେବାର ପ୍ରଥା ସେମାନଙ୍କୁ ଗୋ ସମ୍ପଦର ଅଭିବୃଦ୍ଧି ଦିଗରେ କୌଣସି ପ୍ରେରଣା ଦେଇ ପାରିନାହିଁ । ଏଣୁ ଉପଯୁକ୍ତ ଶିକ୍ଷାଦାନ ଦ୍ୱାରା ଗୋ ସମ୍ପଦ ପ୍ରତି ସେମାନଙ୍କର ଦୃଷ୍ଟିକୋଣ ବଦଳାଇବାକୁ ହେବ । ତାହା ହୋଇ ପାରିଲେ ସେମାନଙ୍କ ମଧ୍ୟରେ କୃଷିର ଉନ୍ନତି ସହିତ ଗୋ ସମ୍ପଦର ମଧ୍ୟ ଉନ୍ନତି ସାଧିତ ହୋଇ ପାରିବ । ଆଦିବାସୀମାନଙ୍କ ମଧ୍ୟରେ କୃତ୍ରିମ ଗୋ ପ୍ରଜନନ ପ୍ରଣାଳୀ ବିଶେଷ ଫଳପ୍ରଦ ହୋଇ ନ ପାରେ । ତେଣୁ ପ୍ରାକୃତିକ ଗୋ ପ୍ରଜନନ ମାଧ୍ୟମରେ ଏହାର ଉନ୍ନତି ସାଧିତ ହେଲା ଭଳି କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ପଡ଼ିବ । ଏହା ବ୍ୟତୀତ ଉପଯୁକ୍ତ ଗୋଚାରଣ ଭୂମି ଗୋ ସମ୍ପଦର ଅଭିବୃଦ୍ଧି ନିମନ୍ତେ ଆଦିବାସୀ ଅଞ୍ଚଳରେ ଆରମ୍ଭ କରିବାକୁ ହେବ । କୁକୁଡ଼ା ଓ ଘୁଷୁରି ପାଳନ ଆଦିବାସୀମାନଙ୍କ ମଧ୍ୟରେ ବେଶ ଆଦୃତ ହୋଇଥିବାର ଦେଖା ଯାଇଅଛି । ଯେତେଦୂର

ସମ୍ଭବ ଉନ୍ନତ ଧରଣର କୁକୁଡ଼ା ବଦଳରେ ଦେଶୀ କୁକୁଡ଼ାମାନଙ୍କୁ କ୍ରମେ କ୍ରମେ ମୂଳୋତ୍ପାଟନ କରିବାକୁ ହେବ । ଉନ୍ନତ ଧରଣର କୁକୁଡ଼ାମାନେ ଯେ ଦେଶୀ କୁକୁଡ଼ାମାନଙ୍କ ପରି ସହଜରେ ରୋଗାକ୍ରାନ୍ତ ହୋଇ ପାରନ୍ତି ନାହିଁ; ଏ ଧାରଣା ଆଦିବାସୀମାନଙ୍କ ମଧ୍ୟରେ ଦେବାକୁ ପଡ଼ିବ ।

କୃଷିର ଗୁରୁତ୍ୱ ଦୃଷ୍ଟିରୁ ଗୋ ସମ୍ପଦର ଉନ୍ନତି ଓ ଉପଯୁକ୍ତ ରକ୍ଷଣାବେକ୍ଷଣ ନିମନ୍ତେ ଆଦିବାସୀମାନଙ୍କୁ ଆବଶ୍ୟକୀୟ ଶିକ୍ଷା ଦିଆଯିବା ଉଚିତ । ପ୍ରାକୃତିକ ପ୍ରଜନନ ପ୍ରକ୍ରିୟାର ଉନ୍ନତି କରାଯିବା ନିମନ୍ତେ ଚେଷ୍ଟା କରାଯିବା ଉଚିତ, କାରଣ ଆଦିବାସୀ ଅଞ୍ଚଳରେ କୃତ୍ରିମ ପ୍ରଜନନ ଯୋଜନା ସଫଳ ହୋଇ ନ ପାରେ । ଯେଉଁ ଅଞ୍ଚଳରେ ଲୋକମାନେ ଦାୟିତ୍ୱ ନେବାକୁ ରାଜି ହେବେ, ସେ ଅଞ୍ଚଳରେ ମାଗଣାରେ ଷଣ୍ଢମାନଙ୍କୁ ଯୋଗାଇ ଦିଆଯିବା ଉଚିତ ।

## ଜଙ୍ଗଲ—

ସୃଷ୍ଟିର ଆରମ୍ଭରୁ ଜଙ୍ଗଲ ସହିତ ଆଦିବାସୀମାନଙ୍କର ଘନିଷ୍ଠ ସମ୍ପର୍କ ରହି ଆସିଅଛି । କାରଣ ଏମାନେ ଜଙ୍ଗଲରେ ବାସ କରନ୍ତି ଏବଂ ଜଙ୍ଗଲ ଜାତ ଦ୍ରବ୍ୟ ଉପରେ ନିର୍ଭର କରନ୍ତି । ଜଙ୍ଗଲରୁ ଶିଳ୍ପ ନିମନ୍ତେ କଞ୍ଚାମାଲ, ଜାଳେଣି କାଠ, ଆସବାବ ନିମନ୍ତେ କାଠ ଓ ବାଉଁଶ ଇତ୍ୟାଦି ଅଜସ୍ର ମୂଲ୍ୟବାନ ପଦାର୍ଥ ମିଳିଥାଏ । ଏହା ବ୍ୟତୀତ ଆଦିବାସୀମାନେ ଏଥିରୁ ଖାଦ୍ୟ ସଂଗ୍ରହ କରି ଜୀବିକା ନିର୍ବାହ କରିଥାନ୍ତି ।

ଜଙ୍ଗଲ ବିଭାଗ ଜାଳେଣି କାଠ, କାଠ, କେନ୍ଦୁ ପତ୍ର, ମହୁଲ ଓ ଚମଡ଼ା ଇତ୍ୟାଦି କଣ୍ଟ୍ରାକ୍ଟରମାନଙ୍କ ଜରିଆରେ ସଂଗ୍ରହ କରିଥାନ୍ତି । ଏହି କଣ୍ଟ୍ରାକ୍ଟରମାନଙ୍କୁ ଆଦିବାସୀମାନେ ଶସ୍ତାରେ ମୂଲିଆ ଯୋଗାଇ ଦେଇଥାନ୍ତି । ଅଧିକାଂଶ ସାଧାରଣ ଜଙ୍ଗଲ ଜାତ ଦ୍ରବ୍ୟ ଆଦିବାସୀମାନେ ନିଜେ ବ୍ୟବହାର କରିଥାନ୍ତି । ଉଦାହରଣ ସ୍ୱରୂପ ଘର

ଛପର ନିମନ୍ତେ—ଘାସ, ଦଉଡ଼ି ଓ ବ୍ୟବହାର ନିମନ୍ତେ ଲୁଗା ପାଇଁ ତନ୍ତୁ, ଖାଦ୍ୟପେୟ ପାଇଁ ମହୁଆ, ତୈଳ ନିମନ୍ତେ ବିଭିନ୍ନ ମଞ୍ଜି, ଚମଡ଼ା ଓ ସିଙ୍ଗ ଇତ୍ୟାଦି ଘର ସଜାଇବା ନିମନ୍ତେ ଆଦିବାସୀମାନଙ୍କ ଦ୍ୱାରା ବ୍ୟବହୃତ ହୋଇଥାଏ । ସେମାନେ ଖୁବ୍ କମ୍ ଦରରେ ଏଗୁଡ଼ିକୁ ବିକ୍ରି ମଧ୍ୟ କରିଥାନ୍ତି । ଏହି ପ୍ରକାର ସାଧାରଣ ଜଙ୍ଗଲଜାତ ଦ୍ରବ୍ୟର ସଂଗ୍ରହକୁ ବେଶ୍ ଲାଭଜନକ ବ୍ୟବସାୟରେ ପରିଣତ କରିହେବ । ଯଦି ଏହି ପଦାର୍ଥ ଗୁଡ଼ିକର ଉପଯୁକ୍ତ ବିନିଯୋଗ ପ୍ରଣାଳୀ ସମ୍ପର୍କରେ ଆଦିବାସୀମାନଙ୍କୁ ଶିକ୍ଷା ଦିଆଯାଇ ପାରେ । ଏହା ଫଳରେ କଣ୍ଟ୍ରାକ୍ଟର ଶ୍ରେଣୀର ଲୋକମାନଙ୍କ ଅତ୍ୟାଚାର କବଳରୁ ସେମାନଙ୍କୁ ମଧ୍ୟ ମୁକ୍ତ କରାଯାଇ ପାରିବ । ଏହା କରିବାକୁ ହେଲେ ଆମର ଜଙ୍ଗଲ କର୍ପୋରେସନକୁ ମହାରାଷ୍ଟ୍ର ପ୍ରଦେଶର ସୋସାଇଟି ଢାଞ୍ଚାରେ ଗଢ଼ିବାକୁ ପଡ଼ିବ ଓ ଜଙ୍ଗଲ ଅଞ୍ଚଳର ରାସ୍ତାଘାଟର ଉନ୍ନତି କରିବାକୁ ପଡ଼ିବ । ଏହାଛଡ଼ା କୁଟୀର ଶିଳ୍ପର ମଧ୍ୟ ପ୍ରସାର ହୋଇ ପାରିବ । ଏଥି ନିମନ୍ତେ ସରକାରୀ ସାହାଯ୍ୟ ପାଇଲେ ଏହା ଆଦିବାସୀମାନଙ୍କୁ ବେଶ୍ ଲାଭପ୍ରଦ ବ୍ୟବସାୟ ଯୋଗାଇ ଦେଇ ପାରିବ । ଏ ସବୁ ଦିଗରେ ସରକାରଙ୍କ ଆର୍ଥିକ ସାହାଯ୍ୟ ଆଦିବାସୀ ମାନଙ୍କର ଅର୍ଥନୈତିକ ଉନ୍ନତିର ବିକାଶ ଦିଗରେ ଯଥେଷ୍ଟ ସାହାଯ୍ୟ କରି ପାରିବ ।

ବର୍ତ୍ତମାନ ଉପଯୁକ୍ତ ମାର୍କେଟର ଅଭାବରୁ ଜଙ୍ଗଲଜାତ ଦ୍ରବ୍ୟର ବିନିଯୋଗ ହୋଇ ପାରୁନାହିଁ । ବିନିମୟ ଅର୍ଥନୀତି ମାଧ୍ୟମରେ ବ୍ୟବସାୟୀମାନେ ଆଦିବାସୀମାନଙ୍କ ଠାରୁ ଏହି ଜିନିଷ ଗୁଡ଼ିକ ଆଣି ବେଶ୍ ଲାଭବାନ୍ ହୋଇଥାନ୍ତି । ଏ ଦିଗରେ ଅନ୍ଧ୍ର ପ୍ରଦେଶର ଢାଞ୍ଚାରେ ଯଥେଷ୍ଟ ଷ୍ଟୋର ସୁବିଧା ଥାଇ ମାର୍କେଟିଂ କୋ-ଅପରେଟିଭ୍ ସୋସାଇଟି ମାନ ଗଠିତ ହେଲେ ଏହା ବହୁ ପରିମାଣରେ ସମସ୍ୟାର ସମାଧାନ କରି ପାରିବ । ଏହା ଫଳରେ ସେମାନେ ଆଦିବାସୀମାନଙ୍କଠାରୁ ଜଙ୍ଗଲଜାତ ଦ୍ରବ୍ୟ କିଣି ଉପଯୁକ୍ତ ଦରରେ ସେମାନଙ୍କୁ ସେମାନଙ୍କର ବ୍ୟବହାର୍ଯ୍ୟ ସାମଗ୍ରୀ ଯୋଗାଇ ଦିଆଯାଇ ପାରିବ ।

ଜନକଷ୍ଟ ବନ୍ଦୋବସ୍ତରେ ବନନମସ୍ଥ ପ୍ରଥା ଆନ୍ଦ ଆଦିବାସୀମାନଙ୍କର ଅର୍ଥନୈତିକ ମେରୁଦଣ୍ଡ ଭାଙ୍ଗି ପକାଇଅଛି । ଏ ସ୍ଥଳରେ ଯଦି ଟଙ୍କା ପଇସାର କାରବାର କରାଯାଏ, ତେବେ ଛୋଟ ଛୋଟ କଣ୍ଟ୍ରାକ୍ଟର ମାନଙ୍କ ଦ୍ୱାରା ଆଦିବାସୀମାନେ ଆଉ ଅତ୍ୟାଚରିତ ହୋଇ ପାରିବେ ନାହିଁ । ଏହା ବ୍ୟତୀତ ଟଙ୍କା ମଧ୍ୟ ଆଦିବାସୀମାନଙ୍କର କଣାକଣି କରି-ବାର କ୍ଷମତା ବୃଦ୍ଧି କରି ସେମାନଙ୍କର ଜୀବନ ଧାରଣର ମାନ ବଢ଼ାଇ ଦେଇ ପାରିବାରେ ସାହାଯ୍ୟ କରିବ ।

## ଶିଳ୍ପ—

ଆଦିବାସୀ ଅଞ୍ଚଳ ଗୁଡ଼ିକ ଶିଳ୍ପ ଓ ଶକ୍ତିଶାଳୀ ଦ୍ରବ୍ୟରେ ସାଧାରଣତଃ ପରିପୂର୍ଣ୍ଣ । କୃଷି ଓ ଜଙ୍ଗଲଜାତ ଦ୍ରବ୍ୟ ଉପରେ ନିର୍ଭର କରୁଥିବା ଶିଳ୍ପଗୁଡ଼ିକ ନିମନ୍ତେ ଯଥେଷ୍ଟ ପରିମାଣରେ କଞ୍ଚାମାଲ ମିଳିଥାଏ । ଆଦିବାସୀ ଅର୍ଥନୀତିର ଉନ୍ନତି ସାଧନ କରିବାକୁ ହେଲେ ସ୍ଥାନୀୟ କଞ୍ଚାମାଲ ଉପରେ ନିର୍ଭର କରୁଥିବା ଶିଳ୍ପଗୁଡ଼ିକ ସ୍ଥାପନ କରାଯିବା ଉଚିତ । ଏହା ଫଳରେ ଅତି ଅଳ୍ପ ସମୟ ମଧ୍ୟରେ ଅନୁନ୍ନତ ଓ ଅବ-ହେଳିତ ଆଦିବାସୀମାନଙ୍କର ଅର୍ଥନୈତିକ ମାନର ଉନ୍ନତି କରାଯାଇ ପାରିବ । ସେ ଯାହାହେଉନା କାହିଁକି ଶିଳ୍ପ ସ୍ଥାପନ କରିବା ସମୟରେ ଆଦିବାସୀମାନଙ୍କର ସ୍ୱାର୍ଥ ପ୍ରତି ଯଥେଷ୍ଟ ନଜର ଓ ଗୁରୁତ୍ୱ ଦିଆଯିବା ଉଚିତ । କିନ୍ତୁ ଆଦିବାସୀ ଅଞ୍ଚଳରେ କୌଣସି ଯୋଜନା କାର୍ଯ୍ୟକାରୀ କରାଯିବା ପୂର୍ବରୁ ସେ ଅଞ୍ଚଳକୁ ଉତ୍ତମ ରୂପେ ସର୍ଭେ କରାଯିବା ଉଚିତ ।

କୁଟୀର ଶିଳ୍ପର ଉନ୍ନତି ନିମନ୍ତେ ମଧ୍ୟ ଏ ଅଞ୍ଚଳରେ ଯଥେଷ୍ଟ ସୁବିଧା ଓ ସୁଯୋଗ ଅଛି । ଏ କ୍ଷେତ୍ରରେ ଯେଉଁ ପ୍ରକାର କୁଟୀର ଶିଳ୍ପ ସ୍ଥାନୀୟ କଞ୍ଚାମାଲ ଉପରେ ନିର୍ଭର କରେ ଅଥଚ ବୃହତ୍ ଶିଳ୍ପ ସଂସ୍ଥାର ପ୍ରତିଯୋଗୀତାର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ; ସେଇ ପ୍ରକାର କୁଟୀର ଶିଳ୍ପ ସ୍ଥାପନ ନିମନ୍ତେ ସୁଯୋଗ ଦିଆଯିବା ଉଚିତ । ଏ ସବୁ କୁଟୀର ଶିଳ୍ପର ସୁଯୋଗ ନେବା ନିମନ୍ତେ ସଂପୃକ୍ତ ବ୍ଲକ ଜରିଆରେ

ଆଦିବାସୀମାନଙ୍କ ନିକଟରେ ପହଞ୍ଚାଇ ଦିଆଯିବା ଉଚିତ । ଏ ପ୍ରକାର କୁଟୀର ଶିଳ୍ପ ଗୁଡ଼ିକ ହେଲା ପାଏ, ଇଟା, ଟାଇଲ, ବାଉଁଶ ନିର୍ମିତ ବୋଝ, ମଶିଣା ବୁଣା ଓ ଆସବାବ ପତ୍ର ତିଆରି ଇତ୍ୟାଦି । ଏହା ବ୍ୟତୀତ ସେମାନଙ୍କୁ ବିଭିନ୍ନ ପ୍ରକାର କୁଟୀର ଶିଳ୍ପ ନିମନ୍ତେ ଆବଶ୍ୟକୀୟ ଟ୍ରେନିଂ ଦେବାର ବ୍ୟବସ୍ଥା କରିବା ଉଚିତ । ଶିଳ୍ପ ସହଯୋଗ ସମିତିମାନ ଗଠନ କରି ତାରି ଜରିଆରେ ଆଦିବାସୀମାନଙ୍କୁ ତାଲିମ ଦିଆଯିବା ସଙ୍ଗେ ସଙ୍ଗେ ଏହି ସହଯୋଗ ସମିତିକୁ ପ୍ରାଥମିକ ମୂଳଧନ ଯୋଗାଇ ଦିଆଯିବା ଉଚିତ । କୁଟୀର ଶିଳ୍ପ ସ୍ଥାପନ ନିମନ୍ତେ ଇଚ୍ଛୁକ ଥିବା ବ୍ୟକ୍ତି ବିଶେଷଙ୍କୁ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯିବା ଉଚିତ ।

## ସମବାୟ—

ଆଦିବାସୀ ମାନଙ୍କର ଅର୍ଥନୈତିକ ଅବସ୍ଥା ଯାହାହେଉନା କାହିଁକି ସେମାନେ ସାହୁକାର ମାନଙ୍କ ଦ୍ୱାରା ପୀଡ଼ିତ ଓ ଅତ୍ୟାଚରିତ ହୋଇଥାନ୍ତି । ଋଣ କରିବା ଯେପରି ସେମାନଙ୍କର ଅସ୍ଥି ମଜ୍ଜାଗତରେ ପରିଣତ ହୋଇ ଯାଇଅଛି । ସେମାନଙ୍କୁ ସାହୁକାର ମାନଙ୍କର କବଳରୁ ରକ୍ଷା କରିବାକୁ ହେଲେ ପ୍ରଥମେ ଋଣ ସହଯୋଗ ସମିତି ଓ ସହଯୋଗ ବ୍ୟାଙ୍କ ଇତ୍ୟାଦି ସ୍ଥାପନ କରିବାକୁ ହେବ । ଏହି ସହଯୋଗ ସମିତି ମାନଙ୍କ ଜରିଆରେ ସେମାନଙ୍କର ଋଣ ଯେପରି ସୁଝାଇ ଦିଆଯାଇ ପାରିବ ସେଥିପ୍ରତି ପ୍ରଥମେ ଦୃଷ୍ଟି ଦିଆଯିବା ଉଚିତ । ତାପରେ ଧୀରେ ଧୀରେ ଖାଉଟି ସମବାୟ ସମିତି, ମାର୍କେଟିଂ ସହଯୋଗ ସମିତି ଓ ଜଙ୍ଗଲ ସମବାୟ ସମିତି ମାନ ଗଠନ କରାଗଲେ ତାହା ସେମାନଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ଦିଗରେ ଯଥେଷ୍ଟ ସାହାଯ୍ୟ କରି ପାରିବ । ବର୍ତ୍ତମାନ ଆଦିବାସୀ ଅଞ୍ଚଳରେ ମାନସିକ ଶକ୍ତିର ଅପବ୍ୟୟ ହେଉଅଛି ଏବଂ ପ୍ରାକୃତିକ ସମ୍ପଦର ଯଥାଯୋଗ ବ୍ୟବହାର କରାଯାଇ ପାରୁନାହିଁ । ଉପଯୁକ୍ତ ତାଲିମ ଅଭାବରୁ ସେମାନେ କୃଷିର ଉନ୍ନତି କରିପାରୁ ନାହାନ୍ତି ଏବଂ ସେମାନଙ୍କର ଅନ୍ତର୍ନିହିତ ଶକ୍ତିର ବିନିଯୋଗ କରାଯାଇ ପାରୁନାହିଁ । ଜମିର ଅଳ୍ପ ଉତ୍ପାଦିକା ଶକ୍ତି ଆବଶ୍ୟକୀୟ ମୁଳଧନର ଅଭାବ, ସାହୁକାର

ଓ ଋଣଦାତା ମାନଙ୍କର ଅତ୍ୟାଚାର ଏବଂ ଉପଯୁକ୍ତ ମାର୍କେଟ୍ ତଥା ବଜାରର ଅଭାବ ଯୋଗୁଁ ଅଜି ସେମାନଙ୍କର ଆର୍ଥିକ ମାନ ଖୁବ୍ ନିମ୍ନରେ ।

ଏଣୁ ଆନ୍ଧ୍ରପ୍ରଦେଶ ଢାଞ୍ଚାରେ ଋଣ ସହଯୋଗ ସମିତି ଓ ମାର୍କେଟିଂ ଯୋସାଇଟି, ମହାରାଷ୍ଟ୍ର ଢାଞ୍ଚାରେ ଖାଉଟି ସମବାୟ ସମିତି, ଜଙ୍ଗଲ ସମବାୟ ସମିତି ଓ ଶିଳ୍ପ ସମବାୟ ସମିତିମାନ ଗଠନ କରାଗଲେ ଏହା ବର୍ତ୍ତମାନର ସମସ୍ୟା ସମାଧାନ ଦିଗରେ ବିଶେଷ ସାହାଯ୍ୟ କରିବ ।

ଏହି ସହଯୋଗ ସମିତି ମାନଙ୍କୁ ସରକାରୀ ସାହାଯ୍ୟ ଯୋଗାଇ ଦିଆଯିବା ଉଚିତ ଏବଂ ଏଥିରେ ସରକାରୀ ମନୋନୀତ ବ୍ୟକ୍ତି ସ୍ଥାନ ପାଇବା ଉଚିତ ।

ଋଣ ସହଯୋଗ ସମିତି ଜରିଆରେ ଋଣ ଯୋଗାଇ ଦେବାର ନିୟମାବଳୀ କୋହଳ କରି ଦିଆଯାଇ ସେମାନଙ୍କୁ ଆବଶ୍ୟକୀୟ ଋଣ ଯୋଗାଇ ଦିଆଯିବା ଉଚିତ । ଏବଂ ସାହୁକାର ଓ ଋଣଦାତାମାନଙ୍କର କାର୍ଯ୍ୟକଳାପ ପ୍ରତି କଡ଼ା ନଜର ଦିଆଯିବା ଉଚିତ । ଯେପରିକି ଆଦିବାସୀମାନେ ସେମାନଙ୍କର କବଳରେ ନ ପଡ଼ନ୍ତି ।

## ଶିକ୍ଷା :—

ଶିକ୍ଷା ସୁଖ ସ୍ୱାଚ୍ଛନ୍ଦ୍ୟମୟ ଜୀବନ ଯାପନର ଅନ୍ୟ ଏକ ପ୍ରଧାନ ଉପାଦାନ । ଏହା ମନୁଷ୍ୟର ବ୍ୟକ୍ତିତ୍ୱର ବିକାଶ ଆଣିଦିଏ । ସଭ୍ୟ ଜଗତର ଲୋକମାନଙ୍କ ପାଇଁ ଦିଆଯାଉଥିବା ଶିକ୍ଷା ଆଦିବାସୀ ମାନଙ୍କ ପକ୍ଷେ ବିଶେଷ ମୂଲ୍ୟବାନ ନୁହେଁ ।

ଏମାନଙ୍କ ପାଇଁ ବୈଷୟିକ ଶିକ୍ଷା ଆବଶ୍ୟକ । ତାହା ହୋଇ ପାରିଲେ ଆଦିବାସୀ ଅଞ୍ଚଳର ମାନବିକ ସମ୍ପଦର ଉପଯୁକ୍ତ ବିନିଯୋଗ ହୋଇ ପାରିବା ସଙ୍ଗେ ସଙ୍ଗେ ଏ ଅଞ୍ଚଳର ପ୍ରାକୃତିକ ସମ୍ପଦ ତଥା କଞ୍ଚାମାଲ୍‌ର ଉପଯୁକ୍ତ ବିନିଯୋଗ କରାଯାଇ ପାରିବ ।

ଆଦିବାସୀ ଛାତ୍ରମାନଙ୍କୁ ବୈଷୟିକ ଶିକ୍ଷା ଦିଆଯିବା ନିମନ୍ତେ ସେମାନଙ୍କୁ ଯଥେଷ୍ଟ ପରିମାଣରେ ବୃତ୍ତି ଇତ୍ୟାଦି ଯୋଗାଇ ଦିଆଯିବା ଉଚିତ । ଆଧୁନିକ ଗଣତାନ୍ତ୍ରିକ ରାଷ୍ଟ୍ରର ଦାୟିତ୍ୱପୂର୍ଣ୍ଣ ନାଗରିକ ଭାବରେ ବଞ୍ଚି ରହିବା ପାଇଁ ଯେଉଁ ଶିକ୍ଷା ଆବଶ୍ୟକ, ସେ ପ୍ରକାର ଶିକ୍ଷା ସେମାନଙ୍କୁ ଦିଆଯିବା ଉଚିତ ।

## ରାସ୍ତାଘାଟ—

ଆଦିବାସୀମାନଙ୍କର ଅର୍ଥନୈତିକ ଉନ୍ନତି ନିମନ୍ତେ ଗମନାଗମନ ପାଇଁ ରାସ୍ତାଘାଟର ସୁବିଧା ନିତାନ୍ତ ପ୍ରୟୋଜନ । ଆଦିବାସୀ ଅଞ୍ଚଳକୁ ଦେଶର ବିଭିନ୍ନ ଉନ୍ନତ ଅଞ୍ଚଳ ସହିତ ଯୋଗାଯୋଗ ସ୍ଥାପନ କରାଯାଇ ପାରିଲେ କାଳକ୍ରମେ ସେମାନଙ୍କର ଜୀବନ ଧାରଣ ପ୍ରଣାଳୀ ତଥା ଅର୍ଥନୈତିକ ଅବସ୍ଥାର ଉନ୍ନତି ହୋଇ ପାରିବ । ଏହି ସୁବିଧା ନ ଥିବାରୁ ଆଜି ସେମାନେ ଅବହେଳିତ ହୋଇ ପଡ଼ି ରହିଅଛନ୍ତି ଏବଂ ସଭ୍ୟ ଜଗତରୁ ଏକାବେଳକେ ବିଚ୍ଛିନ୍ନ ହୋଇ ରହି ଅଛନ୍ତି ।

ଏଣୁ ଜିଲ୍ଲା ଓ ସବଡିଭିଜନର ସଦର ମହକୁମା ସହିତ ଏ ଅଞ୍ଚଳର ଯୋଗାଯୋଗ ସ୍ଥାପନ କରାଯିବା ଉଚିତ । ଏହାଛଡ଼ା ପ୍ରଧାନ ରାସ୍ତାରୁ ଅଭ୍ୟନ୍ତରସ୍ଥ ଅଞ୍ଚଳ ସହିତ ସହଯୋଗ ସ୍ଥାପନ ନିମନ୍ତେ ରାସ୍ତାମାନ ମଧ୍ୟ ନିର୍ମାଣ କରାଯିବା ଉଚିତ ।

## ଗ୍ରାମ ଗୋଷ୍ଠୀ ସଂସ୍ଥାର କାର୍ଯ୍ୟ—

ଉପରୋକ୍ତ ସମସ୍ତ ବିଷୟ ପ୍ରତି ଉଚିତ ଧ୍ୟାନ ଦିଆଯାଇ କାର୍ଯ୍ୟ କରାଯାଇ ପାରିଲେ ଆଦିବାସୀ ଅଞ୍ଚଳ ଅନ୍ୟାନ୍ୟ ଅଞ୍ଚଳ ସହିତ ସମକକ୍ଷ ହେବା ସଙ୍ଗେ ସଙ୍ଗେ ଆଦିବାସୀମାନେ ମଧ୍ୟ ସମତଳ ଅଞ୍ଚଳର ଅଣଆଦିବାସୀମାନଙ୍କ ସହିତ କାନ୍ଧ ମିଳାଇ ଚାଲି ପାରିବେ । କିନ୍ତୁ ଆମର ଅଭିଳଷିତ ଉଦ୍ଦେଶ୍ୟ ସାଧନ ନିମନ୍ତେ କିପରି ଓ କେଉଁ ସଂସ୍ଥା ଜରିଆରେ କାର୍ଯ୍ୟ କରାଯାଇ ପାରିବ ତାହାହିଁ ବର୍ତ୍ତମାନ ଆଲୋଚ୍ୟ

ବିଷୟ । ଗ୍ରାମବହୁଳ ଭାରତର ସର୍ବାଙ୍ଗୀନ ଉନ୍ନତି କଲ୍ପେ ଗ୍ରାମଗୋଷ୍ଠୀ ଯୋଜନାକୁ ଏକମାତ୍ର କାର୍ଯ୍ୟକାରୀ ସଂସ୍ଥା ଭାବରେ ଗ୍ରହଣ କରାଯାଇ ଅଛି । ଏହି ସଂସ୍ଥାର ଉଦ୍ଦେଶ୍ୟ ହେଲା ଲୋକମାନଙ୍କ ମଧ୍ୟରେ ପରସ୍ପରକୁ ସାହାଯ୍ୟ କରିବାର ମନୋବୃତ୍ତି ଜାଗ୍ରତ କରାଇବା ଏବଂ ସେମାନଙ୍କର ଜୀବନ ଧାରଣ ମାନର ଉନ୍ନତି କରାଇବା । ବର୍ତ୍ତମାନ ଲୋକ ଜାଗରଣ ଏବଂ ଦୃଷ୍ଟିଭଙ୍ଗୀର ଟିକିଏ ସୂକ୍ଷ୍ମ ବିଶ୍ଲେଷଣ କଲେ ମନେହୁଏ ଯେ ଉପରୋକ୍ତ ଉଦ୍ଦେଶ୍ୟ ଏହି ସଂସ୍ଥାର ଉଦ୍ଭବ ଫଳରେ କେତେକାଂଶରେ ସାଧିତ ହୋଇଅଛି ଏଥିରେ ସନ୍ଦେହ ନାହିଁ । ଗୋଷ୍ଠୀର ଏପରି କୌଣସି ଅଂଶ ନାହିଁ ଯାହାକି ଗ୍ରାମ ଗୋଷ୍ଠୀ ଉନ୍ନୟନ ସଂସ୍ଥାର ଅନ୍ତର୍ଗତ ନୁହେଁ । ଏକ ଅଖଣ୍ଡ ଭାରତର ସନ୍ତାନ ଭାବରେ ପ୍ରତ୍ୟେକ ଯେ ଦେଶର ଯୋଜନାରୁ ଉପକୃତ ହେବାର କଥା ଏଥିରେ ସନ୍ଦେହ ନାହିଁ । ତେଣୁ ସମତଳ ଅଞ୍ଚଳର ଅଧିବାସୀମାନେ ଯେ କେବଳ ଏହି ଗ୍ରାମଗୋଷ୍ଠୀ ଯୋଜନା ମାଧ୍ୟମରେ ଉପକୃତ ହେବେ ତାହା ନୁହେଁ । ତେଣୁ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା ସ୍ୱତନ୍ତ୍ର ବହୁମୁଖୀ ଉନ୍ନୟନ ବ୍ଲକମାନ ଆଦିବାସୀ ଅଞ୍ଚଳରେ ଖୋଲାଯାଇ ଥିଲା ଏବଂ ତୃତୀୟ ଯୋଜନା କାଳରେ ସେଗୁଡ଼ିକ ବହୁ ସଂଖ୍ୟାରେ ଖୋଲାଯାଇ ଦେଶର ସମଗ୍ର ଆଦିବାସୀ ଅଞ୍ଚଳକୁ ଅନ୍ତର୍ଭୁକ୍ତ କରିଥିଲା । ଏହି ଯୋଜନା ଫଳରେ ଆଦିବାସୀମାନେ ବହୁ ପରିମାଣରେ ଉପକୃତ ହୋଇ ଅଛନ୍ତି । ଅବଶ୍ୟ ଏଥିରେ କେତେକାଂଶରେ ଦୋଷ ପରିଲକ୍ଷିତ ହୋଇଥାଏ, ଉଦାହରଣ ସ୍ୱରୂପ ରେଣୁକା ରାୟ କମିଟି ଓ ଏ ଇ ଓ୍ୱାନ୍ କମିଟିଙ୍କ ମତରେ ଯୋଜନାରେ କେତେକ ତ୍ରୁଟି ରହି ଯାଇଥିଲେହେଁ ଏହା ଯେ ଆଦିବାସୀମାନଙ୍କ ଦୈନନ୍ଦିନ ଜୀବନ ପ୍ରବାହରେ ବହୁ ପରିମାଣରେ ରେଖାପାତ କରିଛି ଏଥିରେ ସନ୍ଦେହ ନାହିଁ ।

ସେ ଯାହାହେଉନା କାହିଁକି ସମତଳ ଅଞ୍ଚଳ ପ୍ରତି ପ୍ରଯୁଜ୍ୟ ନୀତି ଓ ନିୟମ ଆଦିବାସୀ ଅଞ୍ଚଳ ପ୍ରତି ପ୍ରଯୁଜ୍ୟ ହୋଇ ନ ପାରେ । ଏହାର କାରଣ ହେଲା ଆଦିବାସୀ ଜୀବନର ସାମାଜିକ ତଥା ଅର୍ଥନୈତିକ ପ୍ରକୃତିର ବୈଚିତ୍ର୍ୟ । ଏହାର ଉନ୍ନତି ସାଧନ କରିବାକୁ ହେଲେ ଆମକୁ

ବହୁ ସାବଧାନତା ଅବଲମ୍ବନ କରିବାକୁ ହେବ । ପ୍ରଥମତଃ ଦେଖିବାକୁ ହେବ ଯେ ସେମାନଙ୍କର ଚିରାଚରିତ ଜୀବନ ଧାରଣ ପ୍ରଣାଳୀ, ଗତାନୁଗତିକ ପନ୍ଥା ଓ ସାଂସ୍କୃତିକ ମୂଲ୍ୟବୋଧ ଯେପରି ବ୍ୟାହତ ନ ହୁଏ । ଏହାଛଡ଼ା ସେମାନଙ୍କର ଜୀବନର ଏକାନ୍ତ ନିଜସ୍ୱ କେତେକ ସଂସ୍କୃତି ଉପରେ ଯେପରି କୌଣସି ଆଞ୍ଚ ନ ଆସେ । ଉଦାହରଣ ସ୍ୱରୂପ ରେଣୁକା ରାୟ କମିଟିଙ୍କ ମତରେ ପୋଡ଼ୁଚାଷ ବା ଝୁମିଙ୍ଗ । ଆଦିବାସୀମାନଙ୍କ ମତରେ ଏହା କେବଳ ଏକ ସାଧାରଣ ଚାଷ ପ୍ରଣାଳୀ ନୁହେଁ । ଏହା ସହିତ କେତେକ ଅନ୍ଧବିଶ୍ୱାସ ସାଂସ୍କୃତିକ ତଥା ଧର୍ମ ସମ୍ବନ୍ଧୀୟ ପ୍ରଥା ମଧ୍ୟ ଜଡ଼ିତ । ତେଣୁ ଏହାକୁ ବନ୍ଦ କରିବାକୁ ହେଲେ ପ୍ରଥମରେ ସେମାନଙ୍କ ହୃଦୟରେ ଏକ ବିଶ୍ୱାସ ଜାତ କରାଇବାକୁ ହେବ ଏବଂ ସେମାନଙ୍କର ମନସ୍ତାତ୍ତ୍ୱିକ ଚିନ୍ତାଧାରାର ନବୀକରଣ ଦ୍ୱାରା ଧୀରେ ଧୀରେ ପରିବର୍ତ୍ତନ ନ ଆଣିଲେ ସେମାନେ କଦାପି ବୈଜ୍ଞାନିକ ସମ୍ମତ ପୋଡ଼ୁଚାଷ ପ୍ରତି ଆଗ୍ରହ ପ୍ରକାଶ କରିବେ ନାହିଁ । ସେହିପରି ନୂତନ ସଂସ୍ଥା ଗୁଡ଼ିକର ସୃଷ୍ଟି କରିବା ଅପେକ୍ଷା ପୁରାତନ ଆଦିବାସୀ ସଂସ୍ଥାଗୁଡ଼ିକର ସୁରକ୍ଷା କରାଯିବା ଉଚିତ । ଉଦାହରଣ ସ୍ୱରୂପ ଯୁବସଂସ୍ଥା ନିମିତ୍ତ ଉଦ୍ଦିଷ୍ଟ କୋଠଘର ଓ ଆଦିବାସୀ କାଉନ୍‌ସିଲ ଗୁଡ଼ିକୁ ତାର କାର୍ଯ୍ୟ କରିବାକୁ ଦିଆଯିବା ଉଚିତ ଏବଂ ଆବଶ୍ୟକ ସ୍ଥଳେ ସେଗୁଡ଼ିକୁ ଅଧିକ ଶକ୍ତିଶାଳୀ କରାଯିବା ଉଚିତ । ଏହାପରେ ଆଦିବାସୀ ପଞ୍ଚାୟତ ତଥା କ୍ଲବ ଗଠନ କରାଯାଇ ପାରେ । ସେହିପରି ଆଦିବାସୀ ମହଲରେ ପ୍ରଚଳିତ ଗୋଷ୍ଠୀ ଜୀବନ (Community life) ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରାଯିବା ସଙ୍ଗେ ସଙ୍ଗେ ଅର୍ଥନୈତିକ ମାନ ବୃଦ୍ଧି ନିମନ୍ତେ ସେଗୁଡ଼ିକର ସଦୁପଯୋଗ କରାଯିବା ଉଚିତ ।



# ଆଦିବାସୀର ରାଜନୈତିକ ସ୍ୱାଧୀନତା

**ଅଧ୍ୟାପକ କିଶୋର ଚନ୍ଦ୍ର ପାଢ଼ୀ**, ଏମ୍: ଏ: ଏମ୍: ଏସ: ସି:,
ଏଇଚ୍: ଏମ୍: ଡ଼:, ଏମ୍: ଆଇ: ଏଚ୍ଚର୍: ଆର: ଏ:

ଦେଶ ସ୍ୱାଧୀନ ହେଲା । ଆଜକୁ ୨୨ ବର୍ଷ ତଳେ ଲୋକେ ନିଜ ସରକାର ଗଢ଼ିଲେ । ଲୋକପ୍ରିୟ ସରକାର ଲୋକଙ୍କ ଦ୍ୱାରା ବଛା ହେଲେ । ଜନମଙ୍ଗଳର ଦାୟିତ୍ୱ ସରକାର ଉପରେ ନ୍ୟସ୍ତ ହେଲା । ତେଣୁ 'ଆଦିବାସୀର ସ୍ୱାଧୀନତା' ଶିରୋନାମାଟି ନିରର୍ଥକ ବୋଧ ହୋଇପାରେ । କିନ୍ତୁ ସିଦ୍ଧାନ୍ତଟି ଏତେ ସହଜ ଲବ୍ଧ ନୁହେଁ । ସ୍ୱତନ୍ତ୍ର ଝାଡ଼ଖଣ୍ଡ ପ୍ରଦେଶ ପାଇଁ ଦାବୀ ଗୋଟିଏ ପକ୍ଷରେ, ଠାଏ ଠାଏ ନକ୍ସାଲ ପନ୍ଥୀଙ୍କୁ ଆଦିବାସୀଙ୍କର ତଥାକଥିତ ସମର୍ଥନ, ସଶସ୍ତ୍ର ଅବା ଅହିଂସାତ୍ମକ ଆନ୍ଦୋଳନରେ ଆଦିବାସୀର ଯୋଗଦାନ—ଏସବୁ ସମ୍ବାଦ ସ୍ମରଣ କରାଇ ଦିଏ ଯେ, ବୋଧହୁଏ ଆଦିବାସୀ ସ୍ୱାଧୀନତା ପାଇନାହିଁ ଅବା ତାର ସ୍ୱାଧୀନତା ସମ୍ପୂର୍ଣ୍ଣ ହୋଇ ନାହିଁ ।

ପ୍ରଥମେ ରାଜନୈତିକ ସ୍ୱାଧୀନତା କଥା ବିଚାର କରାଯାଉ । ଏଇଟି ସମସ୍ତଙ୍କୁ ମିଳିଲା ୨୨ ବର୍ଷ ତଳେ । ସାବାଳକ ଭୋଟ ଦ୍ୱାରା ଲୋକେ ନିଜ ପ୍ରତିନିଧି ବାଛିଲେ । ପ୍ରତିନିଧିମାନେ ସରକାର ଗଢ଼ିଲେ । ଅର୍ଥାତ୍ ଲୋକେ ନିଜକୁ ନିଜେ ଶାସନ କଲେ । ଦେଶରେ ତିନୋଟି ନିର୍ବାଚନ ହେଲା । ପ୍ରଥମ ନିର୍ବାଚନରେ ଆଦିବାସୀମାନେ କାହିଁକି ଅଶିକ୍ଷିତ ଲୋକେ କୌତୁହଳ ସହକାରେ କୌଣସି ଏକ ବିଶେଷତ୍ୱ ପୂର୍ଣ୍ଣ ଆମୋଦ-ପ୍ରମୋଦରେ ଯୋଗଦାନ କଲାପରି ଭାଗନେଲେ । ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ବେଳକୁ ଅଯଥା କୌତୁହଳ ମେଣ୍ଟିଯାଇଥିଲା । ଭୋଟ କେନ୍ଦ୍ରରେ ଅନ୍ୟାନ୍ୟ ଲୋକମାନଙ୍କ ପରି ଆଦିବାସୀମାନଙ୍କର ସଂଖ୍ୟା କମି ଆସିଲା । କମିବାକୁ ଆପେକ୍ଷିକ ଅର୍ଥରେ ଗ୍ରହଣ କରିବା

ଉଚିତ୍ । ଲୋକସଂଖ୍ୟା ବୃଦ୍ଧି ହେତୁ ଭୋଟର ସଂଖ୍ୟା ବୃଦ୍ଧି ହୋଇଥିଲା, ମାତ୍ର ଭୋଟ ଦେବାର ଆଗ୍ରହ ସେଇ ଅନୁପାତରେ କମି ଆସିଥିଲା । ତେଣୁ ସରକାର ସଂଖ୍ୟାଗରିଷ୍ଠ ଲୋକମାନଙ୍କର ସରକାର ନ ହୋଇ ସଂଖ୍ୟାନ୍ୟୁନ ଲୋକମାନଙ୍କ ମଧ୍ୟରେ ସଂଖ୍ୟାଗରିଷ୍ଠ ଲୋକମାନଙ୍କର ସରକାର ହେଲା । ସ୍ୱାଧୀନତା ଲୋକମାନଙ୍କୁ ଦାନ ଦିଆଗଲା; ଲୋକେ ଗ୍ରହଣ କରିବା ପାଇଁ ଆଗଭର ହେଲେ ନାହିଁ ।

ତାପରେ ଭୋଟ କଥା । ଭୋଟ ଯହିଁ ସାଧାରଣ ଜୀବନରେ ପାଞ୍ଚ ବର୍ଷ ନିୟମରେ ଘଟୁଥିବା ଏକ ଘଟଣା ଆଦିବାସୀମାନଙ୍କ ପାଇଁ ଏହା ଏକ ଉପାଖ୍ୟାନ । ଏହି ଉପାଖ୍ୟାନର ଆରମ୍ଭ ଅତି ମଧୁର, ଶେଷ ଅତି ତିକ୍ତ । ପ୍ରଥମେ ଅନ୍ଧବିଶ୍ୱାସକୁ ଭିତ୍ତିକରି ଭୋଟ ଦିଆଯାଉଥିଲା । ତାପରେ ଧର୍ମ ବିଶ୍ୱାସ କାଠ ପଥର ଛୁଇଁ ପ୍ରତିଜ୍ଞା ଗାଡ଼ି, କେହେରୁ ନାମ ସଂକୀର୍ତ୍ତନ । ଦେବଅଂଶୀ ରାଜା ମହାରାଜାଙ୍କ ଶାଣ୍ଡୁଳ କୋମଳ କଥା, ନ୍ୟସ୍ତସ୍ୱାର୍ଥୀ ନେତାଙ୍କ ମିଥ୍ୟା ପ୍ରତିଶ୍ରୁତି—ଏ ସବୁ ଆଦିବାସୀମାନଙ୍କର ମତାମତ ସ୍ଥିର କଲା । ତା ପରେ ଆସିଲା ବସ୍ତୁବାଦର ଦୁନିଆଁ । ଅନ୍ୟ-ମାନଙ୍କ ପରି ଆଦିବାସୀ ମଧ୍ୟ ନୋଟ୍ ବଦଳରେ ଭୋଟ୍ଧର୍ମର ଶିକାର ହେଲା । ତେଣୁ ଭୋଟ ଦେବାରେ ରାଜନୈତିକ ଚେତନାର ପ୍ରତିଫଳନ ହେଲା ନାହିଁ; ରାଜନୈତିକ ସ୍ୱାଧୀନତାର ଅପବ୍ୟବହାର କରାଗଲା ।

ସରକାର ତିଆରି ହେଲା । ଆଦିବାସୀ ବହୁଳ ରାଜ୍ୟରେ ମଧ୍ୟ ସଂଖ୍ୟା ଅନୁପାତରେ ଶାସନକଳରେ ଭାଗ ମିଳିଲା ନାହିଁ । ଯେଉଁମାନେ ମନ୍ତ୍ରୀତ୍ୱ ପାଇଲେ ଅବା ଶାସନ ବିଧାୟକ ସଭାକୁ ନିର୍ବାଚିତ ହୋଇ ଆସିଲେ ସେମାନେ ଏକ ନୂତନ ଶ୍ରେଣୀ ଗଠନ କଲେ । ଅନୁନ୍ନତ ଜାତି, ସଂପ୍ରଦାୟ ଏବଂ ଗୋଷ୍ଠୀ ଓ ଗରିବ ଦେଶର ଏହାହିଁ ଦୁର୍ଭାଗ୍ୟ ଯେ ଶାସକ ଏବଂ ଶାସିତ ଭିତରେ ଦୂରତା ଯଥେଷ୍ଟ ଅଧିକ । ଫଳରେ ସ୍ୱାଧୀନତା ସମାଜରେ ହେଲା ନାହିଁ; ଗୋଷ୍ଠୀରେ ସୀମାବଦ୍ଧ ହେଲା । କେତୋଟି ମୁଷ୍ଟିମେୟ ବ୍ୟକ୍ତିଙ୍କର ଖେଳନା ହୋଇ ପଡ଼ି ରହିଲା ।

ତା ପରେ ଏକ ପ୍ରଶ୍ନ—ଆଦିବାସୀ ମଙ୍ଗଳ ପାଇଁ ଏହି ଶାସନ ଆଭିମୁଖ୍ୟ ନେଇଛି କି ? ଆଖି ଦେଖାଣିଆ କେତେଗୁଡ଼ିଏ ଆଇନ୍ ହୋଇଛି । ସେଥିରେ ପୁଣି ରକ୍ଷାକବଚ ପୂରାହୋଇଛି ଏତେ ପରିମାଣରେ ଯେ ଆଇନର ଉଦ୍ଦେଶ୍ୟ କାର୍ଯ୍ୟକାରିତାର ସୀମା ସ୍ପର୍ଶ କରୁନାହିଁ । ମୁଖ୍ୟ କେତେଗୁଡ଼ିଏ ଅଭାବ ବାଇଶ ବର୍ଷ ପରେ ଅପୂରଣୀୟ ହୋଇ ରହିଛି । ଟଙ୍କା ଖର୍ଚ୍ଚ ଚାଲିଛି, ଆଦିବାସୀ ବହୁଳ ଅଞ୍ଚଳରେ ଖର୍ଚ୍ଚ ହେବା ବଦଳରେ କଦବା କଦବା ଅଣଆଦିବାସୀ ଅଞ୍ଚଳରେ ପାଞ୍ଚ ଦଶଟିକୁ ଉପଲକ୍ଷ୍ୟ କରି ଖର୍ଚ୍ଚ ହେଉଛି । ଏକତଃ ଆଦିବାସୀ ସମାଜରେ ଅଶିକ୍ଷିତ ବେଶୀ । ନିଜ ଦାବୀ ବିଷୟରେ ସେମାନେ ଅନଭିଜ୍ଞ । ରାଜନୈତିକ ଚେତନାର ଅଭାବ ତ ସୁସ୍ପଷ୍ଟ । ସେହି ଚେତନା ଯୋଗାଇବା ପାଇଁ ରାଜ-ନୈତିକ ଦଳମାନଙ୍କର ଅଦମ୍ୟ କୁଣ୍ଠା । ଜନମତ ଗଠନ କରିବା ଯେଉଁମାନଙ୍କ ଦାୟିତ୍ୱ, ସେମାନେ ଏହାକୁ ବିସର୍ଜନ କରି କ୍ଷୁଦ୍ର ସ୍ୱାର୍ଥ ସାଧନ କରିବା ପରମ ସୌଭାଗ୍ୟ ମନେ କରନ୍ତି । ତେଣୁ ଦଳଗତ ରାଜନୀତିରେ ଆଦିବାସୀ ମଙ୍ଗଳ କାର୍ଯ୍ୟ ଧିମେଇ ଯାଇଛି ଓ ତାର ସ୍ୱାତନ୍ତ୍ର୍ୟ ଲୋପ ପାଇଛି ।

ସରଳ ବିଶ୍ୱାସ ସ୍ୱାଧୀନତା ହରାଇବାରେ ସାହାଯ୍ୟ କରିଥାଏ । ଅଳ୍ପରେ ସନ୍ତୁଷ୍ଟ ହେଲେ ସ୍ୱାଧୀନତାର ସୁଖ ଭୋଗ କରି ହୁଏନାହିଁ । ଏହାହିଁ ଆଦିବାସୀର ପ୍ରଧାନ ରାଜନୈତିକ ସମସ୍ୟା ।



# ଆମ ସମାଜରେ ବାଉରୀମାନଙ୍କ ସ୍ଥାନ

ଶ୍ରୀ ମନମୋହନ ମହାପାତ୍ର, ଏମ୍. ଏ.

ଆମ ରାଜ୍ୟରେ ବାସ କରୁଥିବା ବିଭିନ୍ନ ଅନୁନ୍ନତ ଜାତି (Scheduled caste) ମଧ୍ୟରେ 'ବାଉରୀ'ମାନେ ଅନ୍ୟତମ । ଏମାନେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, କୋରାପୁଟ, ଗଞ୍ଜାମ ଓ କେନ୍ଦୁଝର ଜିଲ୍ଲାରେ ବାସ କରନ୍ତି । ୧୯୬୧ ଜନଗଣନା ଅନୁସାରେ, ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ବାସ କରୁଥିବା ବାଉରୀମାନଙ୍କ ସଂଖ୍ୟା ହେଲା ୨୫୦,୯୧୪ । ଗଞ୍ଜାମରେ ବାସ କରୁଥିବା 'ବାଉରୀ'ମାନେ 'ଝଦାଲୋ' ନାମରେ ପରିଚିତ । ଏମାନେ ଓଡ଼ିଆ ଭାଷା କହନ୍ତି । କିନ୍ତୁ କୋରାପୁଟ ଓ ଗଞ୍ଜାମରେ ରହୁଥିବା ବାଉରୀମାନେ ଓଡ଼ିଆ ଓ ତେଲୁଗୁ ଉଭୟ ଭାଷା ବ୍ୟବହାର କରନ୍ତି । ଆମ ରାଜ୍ୟରେ ଏମାନଙ୍କର ନିମ୍ନ ସାମାଜିକ ସ୍ଥିତି (Low social position) ଯୋଗୁଁ ଏମାନେ ଅଛୁଆଁ ବୋଲି ପରିଗଣିତ । ଏମାନଙ୍କର ଦାରିଦ୍ର୍ୟ, ନିରକ୍ଷରତା ଓ ନୀଚ ସାମାଜିକତା ସ୍ଥିତି ଯୋଗୁଁ, ସ୍ପୃଶ୍ୟ ଜାତିମାନେ ଏମାନଙ୍କୁ ଗେଣ୍ଡାଳ, ଘାଡୁଆ ଜାତି ଇତ୍ୟାଦି ନାନା ବ୍ୟଙ୍ଗ ବିଦ୍ରୂପ କରନ୍ତି ।

## ଜାତି ବିଭାଗ ଓ ବାଉରୀ ଜାତି—

ଆମ ସମାଜରେ ପ୍ରଚଳିତ ଚତୁର୍ବର୍ଣ୍ଣ ( ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ର ) ମଧ୍ୟରେ ବାଉରୀମାନେ ଆସନ୍ତି ନାହିଁ । ଏପରିକି ଶୁଦ୍ରମାନଙ୍କ ମଧ୍ୟରେ ଥିବା 'ଛତିଶ ପାଟକ'ରେ ଏମାନଙ୍କ ସ୍ଥାନ ନାହିଁ । କାରଣ କୌଣସି ଧୋବା ବା ଭଣ୍ଡାରୀ ଏମାନଙ୍କର ସେବା କରନ୍ତି ନାହିଁ । ୰ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପ୍ରଣୀତ 'ଭାଷାକୋଷ'ରେ ଏ ସମ୍ପର୍କରେ କୁହାଯାଇଛି ଯେ ଆର୍ଯ୍ୟମାନେ କେବଳ ଚତୁର୍ବର୍ଣ୍ଣ ଅନ୍ତର୍ଗତ, କିନ୍ତୁ ବାଉରୀ, ହାଡ଼ି, ଚମାର, ଗୋଖା ଓ କଣ୍ଡରା ଇତ୍ୟାଦି 'ଅନାର୍ଯ୍ୟ'

ଶ୍ରେଣୀଭୁକ୍ତ ହୋଇଥିବାରୁ ହିନ୍ଦୁମାନଙ୍କ 'ଚତୁଃବର୍ଣ୍ଣ' ଅନ୍ତର୍ଗତ ନୁହନ୍ତି । ଆମର ପୁରାଣ ବର୍ଣ୍ଣିତ ଚତୁଃବର୍ଣ୍ଣର ଉତ୍ପତ୍ତି, ବାଉରୀ ଜାତିର ଉତ୍ପତ୍ତି ଠାରୁ ସଂପୂର୍ଣ୍ଣ ପୃଥକ ।

ବାଉରୀ ଜାତିର ଜନ୍ମ ସମ୍ବନ୍ଧରେ ନାନାପ୍ରକାର ମତ ଦେଖାଯାଏ । Risley ଏବଂ Thurston ବାଉରୀମାନ ଉତ୍ପତ୍ତି ସଂପର୍କରେ ନିମ୍ନଲିଖିତ ଗଳ୍ପଟି ବର୍ଣ୍ଣନା କରନ୍ତି ।

"......They were degraded for attempting to steal food from the banquet of Goodsj another prof-ess to trace them back to a mythical an cestar named Bahaka Rishi (bearer of the burdens), and tells, how, while returning from a marriage procession, they sold fhe palanquine they had been hired to carry, got drunk on the proceeds and assueted their Guru ( religions preceptor ), who eursed them for the relige and condemned to rank them thence forward among the lowest castes of the society,"

୬ ବଳରାମ ଦାଶଙ୍କ ରଚିତ 'ସିଦ୍ଧାନ୍ତ ଡମ୍ବରୁ' ବାଉରୀ ଜାତିର ଉତ୍ପତ୍ତି ସଂପର୍କରେ କହନ୍ତି—

"ନରକାର ଦକ୍ଷିଣରୁ ବାହ୍ରୁ ହୁଏ ଜାତ
ଉତ୍ତର ଅଙ୍ଗରୁ ଜାଣ ଗୋପାଳ ସମ୍ଭୂତ ।
ବଦନ ଅନ୍ତରେ ବିଶ୍ୱାମିତ୍ର ମୁନି କହି
ତାହାଙ୍କ ଅଙ୍ଗରେ ବାଉରୀ ଜାତ ହୋଇ ।।
ବିଶ୍ୱାମିତ୍ର ଜ୍ୟେଷ୍ଠ ସୁତ ପୁତ୍ର ହୁଏ ଜାଣ
ସେଇଟି ବାଉରୀ ଅନନ୍ତ କାଣ୍ଡି ନାମ ।।"

N. N, Vasuଙ୍କ ରଚିତ "Modern Buddhism and if followers in Orissa" ରେ ବସୁ ମହାଶୟ ବାଉରୀମାନଙ୍କ ଜନ୍ମ ସଂପର୍କରେ ୬ ବଳରାମ ଦାଶଙ୍କ ସହ ଏକମତ । ବସୁ ମହାଶୟ, ବାଉରୀମାନଙ୍କୁ ବୌଦ୍ଧଧର୍ମୀ ବୋଲି ବର୍ଣ୍ଣନା କରନ୍ତି । ଆମ ସମାଜରେ ବିଶେଷ କରି ହିନ୍ଦୁମାନଙ୍କ ବିବାହ, ବ୍ରତ ଇତ୍ୟାଦି ଶୁଭକାର୍ଯ୍ୟରେ ବାଉରୀମାନେ ଶଙ୍ଖ ବଜାନ୍ତି । ଏହି ଶଙ୍ଖକୁ ବସୁ ମହାଶୟ, ବୁଦ୍ଧମାନଙ୍କ 'ସଂଘ' ବୋଲି କହନ୍ତି । ୬ ଗୋପାଳ ଚନ୍ଦ୍ର ପ୍ରହରାଜ ଏ ସଂପର୍କରେ କହନ୍ତି :—

"ପ୍ରତ୍ନତତ୍ତ୍ୱ-ବିତ୍‌ମାନେ ସ୍ଥିର କରିଛନ୍ତି ଯେ ବାଉରୀମାନେ ବୌଦ୍ଧ ଥିଲେ । ପ୍ରତାପରୁଦ୍ରଦେବ ଏମାନଙ୍କ ଧର୍ମବିଶ୍ୱାସ ଯୋଗୁଁ ଏମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିବାରୁ, ଏମାନେ ପ୍ରକାଶ୍ୟରେ ବ୍ରାହ୍ମଣ୍ୟ, (ହିନ୍ଦୁ) ଧର୍ମ ଗ୍ରହଣ ଗ୍ରହଣ କଲେ ଏବଂ ହିନ୍ଦୁ ଦେବାଦେବୀଙ୍କୁ ମାନିଲେ । ଏହି ଦିନଠାରୁ ଏମାନେ ଅସ୍ପୃଶ୍ୟ ବୋଲି ଗଣ୍ୟ ହେଲେ ।"

ଲେଖକ ଏହି ଜାତି ସମ୍ବନ୍ଧରେ ଗବେଷଣା କରି ଜାଣି ପାରିଛି ଯେ ଏମାନେ ପୂର୍ବେ ପଇତା ପିନ୍ଧୁଥିଲେ । ଏମାନଙ୍କ ବିବାହ ସମୟରେ ମଧ୍ୟ ଏମାନେ ପଇତା ପକାନ୍ତି ଏବଂ ବିବାହ ବିଧି ସହ ବ୍ରାହ୍ମଣମାନଙ୍କ ବିବାହ ବିଧିର ବହୁ ସାମଞ୍ଜସ୍ୟ ଅଛି । ଏହି ଜାତି ଦ୍ୱାରା ଆରମ୍ଭ ହୋଇଥିବା କୁଜ କଂଗ୍ରେସ ଆନ୍ଦୋଳନ ସମୟରେ ଏମାନଙ୍କର ପଇତା ଏମାନେ ବ୍ରାହ୍ମଣମାନଙ୍କ ପକାଶେ ହରାଇ ଥିବାର ଆପତ୍ତି କରିଥିଲେ ।

N. N. Vasu ମହାଶୟ ସ୍ୱରଚିତ ପୁସ୍ତକରେ ମଧ୍ୟ କହିଛନ୍ତି ଯେ ବିଶ୍ୱାମିତ୍ର ଓ ପଦ୍ମାଳୟାଙ୍କଠାରୁ ବାଉରୀମାନେ ଜାତ । ବିଶ୍ୱାମିତ୍ରଙ୍କଠାରୁ ଜାତ ବାଉରୀମାନେ ବେଦ ପଢୁଥିଲେ ।

ପୁରୀ ଜିଲ୍ଲାରେ ବାସ କରୁଥିବା 'ବାଉରୀ'ମାନଙ୍କଠାରୁ ସେମାନଙ୍କର ଉତ୍ପତ୍ତି ସଂପର୍କରେ ଲେଖକ ସଂଗ୍ରହ କରିଥିବା ଗଳ୍ପର ସାରାଂଶ ଏଠାରେ ପ୍ରଦତ୍ତ ହେଲା ।

"ଥରେ ରାଜା (?) ଙ୍କୁ ସ୍ୱପ୍ନାଦେଶ ହେଲା ଏକ ମନ୍ଦିର ନିର୍ମାଣ କରିବାପାଇଁ । ଏବଂ ତତ୍‌କ୍ଷଣାତ୍ ସେ ତାଙ୍କର ପ୍ରଧାନମନ୍ତ୍ରୀଙ୍କୁ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା ପାଇଁ ଆଦେଶ ଦେଲେ । କିନ୍ତୁ ମନ୍ଦିର ଅଧା ହେବାବେଳକୁ ଏକ ରାକ୍ଷସ ଆସି ରାତିରେ ତାହାକୁ ଭାଙ୍ଗିଦିଏ । ରାଜା ଏଥିରେ ବଡ଼ ହତୋତ୍ସାହ ହୋଇ ମହାପ୍ରଭୁଙ୍କୁ ପ୍ରାର୍ଥନା କରନ୍ତେ, ମହାପ୍ରଭୁ ନିଜେ ମନ୍ଦିରର ମୁଖ୍ୟ ଦ୍ୱାରରେ ପ୍ରହରୀ ସ୍ୱରୂପ ରହି ଅନ୍ୟ ଦୁଇ ଦ୍ୱାରରେ ପହରା ଦେବାକୁ କାଳନ୍ଦୀ (ଏକ କାଳ୍ପନିକ ନାମ) ଓ ଏକ କୁକୁରର ସୃଷ୍ଟି କଲେ । ଏକଦା ଉକ୍ତ ରାକ୍ଷସ ଧରାପଡ଼ି, ମହାପ୍ରଭୁଙ୍କଦ୍ୱାରା ନିହତ ହେଲା । ତାହାର ଚର୍ମରେ ମହାପ୍ରଭୁ ଏକ ବାଦ୍ୟ ତିଆରି କଲେ ଯାହାକି ବାଉରୀମାନେ ବଜାଉଥିବା 'ଢ଼ୁମୁରା ବାଦ୍ୟ' ।" ଏହି କାଳନ୍ଦୀକୁ ପୁରୀ ଜିଲ୍ଲାର ବାଉରୀମାନେ ସେମାନଙ୍କର ପୂର୍ବପୁରୁଷ ବୋଲି ବର୍ଣ୍ଣନା କରନ୍ତି ।

ଯଦିଓ ବାଉରୀମାନେ ଅନ୍ୟାନ୍ୟ ଉଚ୍ଚ ହିନ୍ଦୁ ଜାତିମାନଙ୍କ ଅପେକ୍ଷା ସମାଜରେ ନିମ୍ନସ୍ଥାନ ପାଆନ୍ତି ତେବେ ସୁଦ୍ଧା ଏମାନେ ହାଡ଼ି, ପାଣ, ଚମାର, ଗୋଖା, ଶବର ଇତ୍ୟାଦିଙ୍କଠାରୁ ଉଚ୍ଚ ସ୍ଥାନ ଦାବୀ କରନ୍ତି । ଏପରିକି ଏମାନେ ସୁବର୍ଣ୍ଣ ବଣିଆ, ଧୋବା, କାଉରା ଓ ରାଜପୂତ ଜାତିମାନଙ୍କ ହାତରେ କଞ୍ଚା ଖାଦ୍ୟ (ଭାତ, ଡାଲି, ତରକାରୀ) ଏବଂ ଜଳ ସ୍ପର୍ଶ କରନ୍ତି ନାହିଁ । ଆହୁରି ମଜାକଥା ହେଉଛି ଯେ—ଏମାନେ ମୁସଲମାନମାନଙ୍କୁ କାନ୍ଧରେ ବା ପାଲିଙ୍କିରେ ବୋହି ନେବାକୁ ରାଜି ହୁଅନ୍ତି । ଅବଶ୍ୟ ଲେଖକ ଏ ଘଟଣା ସମ୍ପର୍କରେ କେବେ ଖବର ପାଇନାହିଁ । ପଶ୍ଚିମ ବଙ୍ଗରେ ବାସ କରୁଥିବା ବାଉରୀମାନେ ପାଲିଙ୍କି କାନ୍ଧରେ ବୋହି ନେବାର ଅନେକ ପ୍ରମାଣ ଅଛି ଯାହାକି ଓଡ଼ିଶାରେ ଦେଖାଯାଏ ନାହିଁ । ଏମାନେ ଧୋବା ଘରେ ଶଙ୍ଖ ବଜାନ୍ତି ନାହିଁ କିମ୍ବା ସେମାନଙ୍କ ଘର ଛପର କରନ୍ତି ନାହିଁ । ଏପରିକି ସେମାନଙ୍କ ବଗିଚାରୁ ଖାଉ ଫଳକୁ ନିଅନ୍ତି ନାହିଁ । କିନ୍ତୁ କାଳକ୍ରମେ ଏହା ଆସ୍ତେ ଆସ୍ତେ ଲୋପ ପାଇଗଲାଣି । ଏ ସମ୍ପର୍କରେ ବାଉରୀମାନେ କହନ୍ତି—"ଯେହେତୁ

ଧୋବାମାନେ ନାନାରକମ ମଇଳା ଲୁଗା ସଫା କରନ୍ତି, ସେହେତୁ ସେମାନଙ୍କର କୌଣସି କାର୍ଯ୍ୟ କରନ୍ତି ନାହିଁ । କଥାରେ ଅଛି—'ଗୁହ ଧୂଆ ବଣିଆ' । ବଣିଆ ଜାତି କେବେ ବସ୍ତ୍ର ସଫା କରୁଥିବାରୁ ଏମାନେ ତାଙ୍କ ହାତରେ ଜଳ ମଧ୍ୟ ସ୍ପର୍ଶ କରନ୍ତି ନାହିଁ । ସେମାନଙ୍କର କୌଣସି କାର୍ଯ୍ୟ ମଧ୍ୟ କରନ୍ତି ନାହିଁ । ଏପରିକି ସେମାନଙ୍କ ମୁଣ୍ଡକୁ କୌଣସି ବୋଝ ମଧ୍ୟ ଉଠାନ୍ତି ନାହିଁ ।

ଏକ ସ୍ୱତନ୍ତ୍ର ଜାତି ହିସାବରେ ବାଉରୀମାନେ ଖ୍ୟାତ । ଏମାନଙ୍କ ମଧ୍ୟରେ ସେମାନଙ୍କ ଭଣ୍ଡାରୀ, ପୁରୋହିତ ଇତ୍ୟାଦି ଅଛନ୍ତି । ହିନ୍ଦୁମାନଙ୍କ ଚତୁଃବର୍ଣ୍ଣ ପରି ଏମାନେ ମଧ୍ୟ ଚାରି ଭାଗରେ ବିଭକ୍ତ । ଯଥା:—

## (୧) ମହାଭୋଇ :—

ବାଉରୀମାନଙ୍କ ମଧ୍ୟରେ ଏମାନେ ଶ୍ରେଷ୍ଠ । ଭୁବନେଶ୍ୱରରେ ବାସ କରୁଥିବା ବାଉରୀମାନେ ତୀର୍ଥ କ୍ଷେତ୍ରରେ ଥିବାରୁ ନିଜକୁ 'ସିଂହ ସ୍ଥାନ ବାଉରୀ' ମଧ୍ୟ କହନ୍ତି ।

## (୨) ଛହଁରା ବା ଛିଁଅଳା ବାଉରୀ :—

ଏମାନେ ନୟାଗଡ଼ ଓ ଖଣ୍ଡପଡ଼ା ଅଞ୍ଚଳରେ ଦେଖାଯାନ୍ତି । ଏମାନେ ହେଁସ ବୁଣନ୍ତି ଓ କୃଷିବାସ କରନ୍ତି । ଆଜିକାଲି ଏମାନଙ୍କ ମଧ୍ୟରେ ଅନେକ ରିକ୍ସା ଟାଣୁଛନ୍ତି ।

## (୩) ଢମୁରା ବାଉରୀ :—

ଏମାନେ ଆମର ହାଡ଼ିମାନଙ୍କ ପରି, ବାଉରୀମାନଙ୍କ ବିବାହ ଇତ୍ୟାଦିରେ ଢମୁରା ବଜାନ୍ତି ।

## (୪) ବୁଣା ବାଉରୀ :—

ଏମାନେ ଲୁଗା ବୁଣି ଅନ୍ୟ ବାଉରୀମାନଙ୍କୁ ଯୋଗାନ୍ତି । ଏମାନେ ବାଉରୀ ତନ୍ତୀ ନାମରେ ଖ୍ୟାତ ।

ଉପରୋକ୍ତ ଗୃହ ଜାତି ମଧ୍ୟ ଧୋବା, ଭଣ୍ଡାରି ପୁରୋହିତ ନାହାନ୍ତି । ଏଁ ସଂପର୍କରେ ସଂକ୍ଷେପରେ ଏତିକି କୁହାଯାଇପାରେ ଯେ, ବାଉରୀମାନଙ୍କ ଦେଶ ବା ପଡ଼ା ସର୍ଦ୍ଦାର ମୁଖିଆ ( ବେହେରା ଓ ଗଞ୍ଜାହାରୀ ) ନ୍ୟାୟ କରିବା ସଙ୍ଗେ ସଙ୍ଗେ ଭଣ୍ଡାରିର କାର୍ଯ୍ୟ କରନ୍ତି । ଏମାନଙ୍କ ମଧ୍ୟରେ ଏକ ସ୍ୱତନ୍ତ୍ର ପୁରୋହିତ ଗୋଷ୍ଠୀ ଅଛନ୍ତି ଏବଂ ସେମାନେ 'ଗୁରୁ ବୈଷ୍ଣବ' ଓ 'ମହାପାତ୍ର' ବୋଲି ଖ୍ୟାତ । ଏମାନେ ବାଉରୀ-ମାନଙ୍କ ପୁରୋହିତ କାର୍ଯ୍ୟ କରନ୍ତି । ହିନ୍ଦୁମାନଙ୍କ ପରି ଏମାନଙ୍କର (ଲେଖକର ଜାଣିବାମତେ) କୌଣସି ସ୍ୱତନ୍ତ୍ର ଗୋଷ୍ଠୀ ନାହାନ୍ତି ଯେଉଁ-ମାନେ କି ଧୋବା କାର୍ଯ୍ୟ କରନ୍ତି ।

ଉପର ଲିଖିତ ୦ଟି ଜାତି ଏବଂ ପୁରୋହିତ ଇତ୍ୟାଦି ମଧ୍ୟରେ ବିବାହ, ଖାଦ୍ୟ ପାଣୀୟ ଇତ୍ୟାଦି ନିଷେଧ । ବାଉରୀମାନଙ୍କ ମଧ୍ୟରେ ପ୍ରଚଳିତ ଏବଂ ଏହି ପ୍ରବନ୍ଧରେ ଆଲୋଚିତ ଜାତି ପ୍ରଥା ଓ ସମାଜିକ ମାଡ଼ନପ୍ରମ ବାସ୍ତବିକ କୌତୁକପୂର୍ଣ୍ଣ ।

(କ୍ରମଶଃ)

## ସହାୟକ ଗ୍ରନ୍ଥାବଳୀ


1) Russel, V—1916— The Tribes and castes of Central Provinces of India Vol. I.

2) Thurston —1909— Tribes and castes of Bengal.

3) Vasu, N.N—1931— Modern Buddhism and its followers in Orissa.

4) Misra, —1963— A study of begger problem at Cuttack.

5) Senapati, N. — District Gazetters, Koraput

6) Mahapatra, M.— Urbanization processes in a scheduled caste. (Typed script, un published)

7) do — Organization of caste among Bauris of Bhubaneswar.


———

# ଓଡ଼ିଆ ଭାଷାରେ ଆଦିବାସୀ ଭାଷାର ପ୍ରଭାବ

ଅଧ୍ୟାପକ ଡକ୍ଟର **ବଂଶୀଧର ମହାନ୍ତ**
ଓ
ଅଧ୍ୟାପକ **ହେମନ୍ତ କୁମାର ଦାସ**

ଯେଉଁମାନେ ବଣ ଜଙ୍ଗଲ ଓ ପାହାଡ଼ ଅଞ୍ଚଳରେ ଲକ୍ଷ ଲକ୍ଷ ସଂଖ୍ୟାରେ ବାସ କରୁଥିବା କୋହ୍ଲ, କନ୍ଧ, ସାନ୍ତାଳ, ଶବର, ମୁଣ୍ଡା ଓ ଗଣ୍ଡ ପ୍ରଭୃତି ଲୋକମାନଙ୍କୁ ଅସଭ୍ୟ, ବର୍ବର ବା ଜଙ୍ଗଲି ବୋଲି ଭାବନ୍ତି, ସେମାନଙ୍କର ଭାବିବା ମଧ୍ୟ ଉଚିତ ଯେ, ଏହି ଜଙ୍ଗଲିମାନେହିଁ ହେଉଛନ୍ତି ଏ ଦେଶର ଆଦିମ ଅଧିବାସୀ । ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କ ଆଗମନର ବହୁ ହଜାର ବର୍ଷ ପୂର୍ବରୁ ସେମାନେ ପୃଥିବୀର ବିଭିନ୍ନ ଦେଶ ମହାଦେଶରେ ନିରଙ୍କୁଶ ପ୍ରତିପତ୍ତି ସ୍ଥାପନ କରିଥିଲେ । ଭାଷାତତ୍ତ୍ୱ-ବିତ୍‌ଗଣ ଏହି ଆଦିମ ଅଧିବାସୀମାନଙ୍କୁ ଅଷ୍ଟ୍ରିକ୍, ମୁଣ୍ଡା ବା କୋଲାରିଆନ୍ ଗୋଷ୍ଠୀ ନାମରେ ନାମିତ କରିଅଛନ୍ତି । ଏକ ସମୟରେ ଏହି ଆଦିମ ଅଧିବାସୀ ବା ଆଦିବାସୀମାନଙ୍କର ଜୀବନ ପ୍ରବାହ କେବଳ ଭାରତ ନୁହେଁ, ଇଣ୍ଡୋଚୀନ, ବ୍ରହ୍ମଦେଶ, ମାଳୟ, ନିକୋବର, ଇଣ୍ଡୋନେସିଆ, ପୋଲିନେସିଆ ଓ ଅନ୍ୟାନ୍ୟ ଛୋଟବଡ଼ ଅନେକ ପ୍ରଶାନ୍ତ ମହାସାଗରୀୟ ଦ୍ୱୀପପୁଞ୍ଜ ଲଗାଏତ୍ ସୁଦୂର ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ବ୍ୟାପିଥିଲା । ଭାରତ ଓ ପ୍ରଶାନ୍ତ ମହାସାଗରୀୟ ଆଦିମ ଅଧିବାସୀମାନଙ୍କର ଭାଷା ସହିତ ଅଷ୍ଟ୍ରେଲିଆରେ ବାସ କରୁଥିବା ନିଗ୍ରୋ ଓ ମୁଣ୍ଡା ଜାତୀୟ ଅଧିବାସୀ-ମାନଙ୍କର ଭାଷାରେ ସାମ୍ୟ ଲକ୍ଷ୍ୟ କରି ଭାଷାତତ୍ତ୍ୱବିତ୍‌ଗଣ ସେହି ବିରାଟ ଛିନ୍ନବିଚ୍ଛିନ୍ନ ଭୂଖଣ୍ଡର ଆଦିମ ଅଧିବାସୀମାନଙ୍କୁ ଅଷ୍ଟ୍ରିକ୍ (Austric) ନାମରେ ନାମିତ କରିଅଛନ୍ତି । ଅନ୍ୟାନ୍ୟ କେତେକ ଭାଷାତତ୍ତ୍ୱବିତ୍

ସେମାନଙ୍କୁ ମୁଣ୍ଡାରୀ, (Mundarian) ଓ କୋଲ୍ହଜାତୀୟ (Kolarian), ଏହିପରି ବିଭିନ୍ନ ନାମ ପ୍ରଦାନ କରିଅଛନ୍ତି । ଭୌଗୋଳିକ, ଐତିହାସିକ ପ୍ରଭୃତି ବିଭିନ୍ନ ବିଭବର ବଶବର୍ତ୍ତୀ ହୋଇ ସେମାନେ ବହୁକାଳରୁ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଥିଲେ ସୁଦ୍ଧା କେବଳ ଭାଷାଗତ ନୁହେଁ, ସେମାନଙ୍କର ରୀତିନୀତି, ଚାଲିଚଳଣ ପ୍ରଭୃତିରେ ମଧ୍ୟ ଅନେକ ସୌସାଦୃଶ୍ୟ ପରିଲକ୍ଷିତ ହୋଇଥାଏ । ବହୁଶତ ବର୍ଷ ପୂର୍ବେ ଏହି ମୁଣ୍ଡା ଶ୍ରେଣୀୟ ଲୋକମାନଙ୍କ ଦ୍ୱାରା ଓଡ଼ିଶା, ବ୍ରହ୍ମଦେଶ ଓ ମାଳୟର ଉପକୂଳ ଅଞ୍ଚଳ ଅଧ୍ୟୁଷିତ ହେଉଥିଲା ବୋଲି ନୃତତ୍ତ୍ୱ ଓ ଭାଷାତତ୍ତ୍ୱବିତଗଣ ଅନୁମାନ କରନ୍ତି । ଆଜି ମଧ୍ୟ ଭାରତୀୟ ପୂର୍ବ ଦ୍ୱୀପପୁଞ୍ଜ ଓ ମାଳୟର ସିମ୍ବିରିଂ (Simbiring) ଶ୍ରେଣୀର ଆଦିମ ଅଧିବାସୀମାନେ ଏହି ମୁଣ୍ଡାଜାତୀୟ ଲୋକ ଭାବରେ ପରିଗଣିତ । ସେମାନଙ୍କର ବିଶ୍ୱାସ ଯେ, ସେମାନେ ବିଦେଶାଗତ କ୍ଳିଂ (Kling) ନାମକ ଜାତିରୁ ଉଦ୍ଭୂତ । ଏହି କ୍ଳିଂ ଶବ୍ଦ କଳିଙ୍ଗ ଶବ୍ଦର ଅପଭ୍ରଂଶ ରୂପ ବୋଲି ଅନେକ ମନେ କରିଥାନ୍ତି । ପୁଣି ମଧ୍ୟ ଦେଖାଯାଉଛି ଯେ ମାଳୟ, ପେଗୁ ପ୍ରଭୃତି ଅଞ୍ଚଳରୁ ମିଳୁଥିବା ପ୍ରାଗୈତିହାସିକ ଯୁଗର ଅନେକ ପ୍ରସ୍ତର ନିର୍ମିତ ଅସ୍ତ୍ରଶସ୍ତ୍ର ସହିତ ଓଡ଼ିଶାର କେନ୍ଦୁଝର ପ୍ରଭୃତି ବଣ ଜଙ୍ଗଲରେ ବାସ କରୁଥିବା ନଗ୍ନ ଜୁଆଙ୍ଗ ଜାତିର ଅସ୍ତ୍ରଶସ୍ତ୍ରର ଆକାରପ୍ରକାରରେ ଅନେକ ମେଳ ରହିଛି । ଏହାଛଡ଼ା ଢେଙ୍କାନାଳ, ତାଳଚେର, ଅନୁଗୋଳ ଓ ପର୍ଯ୍ୟାପ୍ତ ଭାବରେ ମୟୂରଭଞ୍ଜରୁ ମିଳିଥିବା ପ୍ରାଚୀନ ଓ ନୂତନ ପ୍ରସ୍ତରଯୁଗର ଅନେକ ପ୍ରସ୍ତରାସ୍ତ୍ର ସହିତ ସେହି ମାଳୟର ସିମ୍ବିରିଂ ବ୍ରହ୍ମଦେଶ ଓ ପୂର୍ବ ଦ୍ୱୀପପୁଞ୍ଜର ଆଦିମ ଅଧିବାସୀ ତଥା ଆସାମର ଖାସି ଅଞ୍ଚଳର ଆଦିମ ଅଧିବାସୀମାନଙ୍କଠାରୁ ବା ସେହି ଅଞ୍ଚଳରୁ ମିଳିଥିବା ପ୍ରସ୍ତରାସ୍ତ୍ରସମୂହ ଏକପ୍ରକାର ଅସ୍ତ୍ରଶସ୍ତ୍ର ବୋଲି ଜଣାଯାଇଛି । ପ୍ଲିନି ଓ ଟେଲେମିଙ୍କ ଭାଷାରେ ଯଥାକ୍ରମେ ସୁରାଇ (Surai) ଓ ଶବରାଇ (Sabarai) ଅଞ୍ଚଳ ହେଉଛି ଏହି ମୁଣ୍ଡା ଗୋଷ୍ଠୀର ଦେଶ । ଏହି ମୁଣ୍ଡା ଗୋଷ୍ଠୀର ଭାଷା ମଧ୍ୟ ବିଭିନ୍ନ ଉପଭାଷା ଓ ଉପଗୋଷ୍ଠୀରେ ବିଭକ୍ତ । ଏହି ମୁଣ୍ଡା ଗୋଷ୍ଠୀର ଦଳଗୁଡ଼ିକ ହେଉଛନ୍ତି ସାନ୍ତାଳ, ଭୂମିଜ ବା ଭୂୟାଁ, ଖାରିଆ, କୋଡ଼ା, ହୋ, ଅସୁରୀ, କରୱା,

କୁରୁଙ୍ଖ୍, ଖଡ଼ିଆ, ଜୁଆଙ୍ଗ, ଶବର, ଗଦବା ଓ ପରଜା ପ୍ରଭୃତି ବିଭିନ୍ନ ଦଳ, ବିଭିନ୍ନ ସ୍ଥାନରେ ବାସ କରୁଥିବା ଏହି ମୁଣ୍ଡା ଗୋଷ୍ଠୀର ଅଧିବାସୀ-ମାନଙ୍କର କଥିତ ଭାଷା ରହିଛି; କିନ୍ତୁ ସେମାନଙ୍କର କୌଣସି ସ୍ୱତନ୍ତ୍ର ଲିପି ନାହିଁ । ସୁପ୍ରାଚୀନ ବୈଦିକ ଯୁଗରେ ମଧ୍ୟ ଏକ ସମୟରେ ଆର୍ଯ୍ୟଭାଷା ବେଦର କୌଣସି ଲିପି ନ ଥିଲା । ସେଥିନିମିତ୍ତ ଆର୍ଯ୍ୟ-ମାନଙ୍କର ବେଦ ଶ୍ରୁତି ନାମରେ ପ୍ରସିଦ୍ଧି ଲାଭ କରିଥିଲା । ବଣଜଙ୍ଗଲର ଏହି ଆଦିମମାନଙ୍କର ଆଦିମ ନିବାସ ବଣଜଙ୍ଗଲର ନିର୍ଜନ ପରିସର ମଧ୍ୟରେ ଅବଦ୍ଧ । ସମୟ ଥିଲା ଏମାନେ ମଧ୍ୟ ବଣଜଙ୍ଗଲର ପରିସୀମା ଅତିକ୍ରମ କରି ପୁରାଣ ବର୍ଣ୍ଣିତ ସେମାନଙ୍କର ବିଶାଳ କରାତ ରାଜ୍ୟ, ଅସୁର ରାଜ୍ୟ, ନିଷାଦ ରାଜ୍ୟ, ଓ ନାଗ ରାଜ୍ୟ ପ୍ରଭୃତି (Asura Institution J. B. O. R. S. 1926) ପ୍ରତିଷ୍ଠା କରିଛନ୍ତି ଓ ଅସୀମ ସମୁଦ୍ରର ପରପାରରେ ବହୁଦୂର ବିଦେଶର ରାଜ୍ୟମାନଙ୍କରେ ସେମାନଙ୍କର ପ୍ରଭାବ ବିସ୍ତାର କରିଅଛନ୍ତି । ଏହି ମୁଣ୍ଡା ଗୋଷ୍ଠୀର ଲୋକମାନଙ୍କ ମଧ୍ୟରେ ଅଦ୍ୟାପି ଅସୁର ନାମରେ ଏକ ସ୍ୱତନ୍ତ୍ର ଦଳର ଲୋକ ରହିଛନ୍ତି । ପାଟଣା ଜିଲ୍ଲାର ଅସୁରଗଡ଼ ଆଜି ମଧ୍ୟ ଅତୀତ ସ୍ମୃତିର ଉଦ୍‌ବୋଧକ ହୋଇ ରହିଛି । କିନ୍ତୁ ପରେ ଏହି ଆଦିମ ଅଧିବାସୀମାନଙ୍କ ଉପରେ ସୁମେରୁ ଅଞ୍ଚଳ ବା ଦ୍ରାବିଡ଼ ଓ ବିଦେଶୀୟ ଆର୍ଯ୍ୟମାନଙ୍କର ଶକ୍ତିଶାଳୀ ପ୍ରଭାବ ବିଶେଷ ଆଘାତ ଦେଇଛି । ଆର୍ଯ୍ୟ, ଅନାର୍ଯ୍ୟ ଓ ଦ୍ରାବିଡ଼ମାନଙ୍କ ମଧ୍ୟରେ ପରସ୍ପର ସଂଘର୍ଷ ଓ ଆକ୍ରମଣ ଫଳରେ ଏହି ଅନାର୍ଯ୍ୟ ଆଦିବାସୀ-ଗଣ ସେମାନଙ୍କର ପ୍ରାଚୀନର ବିପୋଳ ଗୌରବମୟ ଐତିହ୍ୟ ହରାଇ ପୁଣି ଫେରିଯାଇଛନ୍ତି ସେମାନଙ୍କ ପୂର୍ବର ଆଦିମ ବାସସ୍ଥାନ ସେହି ବଣ-ଜଙ୍ଗଲ-ପାହାଡ଼ର ଅନ୍ଧକାରମୟ ପ୍ରଦେଶକୁ ।

ଓଡ଼ିଶା ପ୍ରସଙ୍ଗରେ ଏହି ଅଷ୍ଟ୍ରିକ ଓ ମୁଣ୍ଡାଗୋଷ୍ଠୀର ଅଧିବାସୀ-ମାନଙ୍କର ବିଷୟ ବିଗ୍ଭର କଲେ ଜଣାଯାଏ ଯେ, ଏହି ମୁଣ୍ଡାଗୋଷ୍ଠୀର ଲୋକସଂଖ୍ୟା ଓଡ଼ିଶାର ସମଗ୍ର ଲୋକସଂଖ୍ୟାର ପ୍ରାୟ ଏକ-ତୃତୀୟାଂଶ ହେବ । ଓଡ଼ିଶାର ସଂସ୍କୃତି ଓତଃପ୍ରୋତ ଭାବରେ ଏହି ଆଦିମ ଅଧିବାସୀ-

ମାନଙ୍କର ସଂସ୍କୃତି ସହିତ ବିଜଡ଼ିତ । ନାମକୁ ଆର୍ଯ୍ୟ ବୋଲାଉଥିବା ଓଡ଼ିଶାର ଆର୍ଯ୍ୟମାନଙ୍କର ଆଚାର ବ୍ୟବହାର, ରୀତିନୀତି ପ୍ରଭୃତି ଏହି ଆଦିବାସୀ ସଂସ୍କୃତିର ଅନେକ ପରିଚ୍ଛଦ ଗ୍ରହଣ କରିଛି । ଓଡ଼ିଆର ଲୋକସଙ୍ଗୀତ, ଲୋକକଥା, ଲୋକବିଶ୍ୱାସ, ପୂଣ୍ୟ-ପର୍ବ, ଉପାବ୍ରତ, ଶିଳ୍ପବାଣିଜ୍ୟ ପ୍ରଭୃତି ଦୈନନ୍ଦିନ ବିଭିନ୍ନ କ୍ରିୟାର ବିଭିନ୍ନ ବିଭାଗରେ ଏହି ଅନାର୍ଯ୍ୟ ସଂସ୍କୃତିର ପ୍ରଭାବ ଅନେକାଂଶରେ ରହିଛି ଓ ତାହା ଆଲୋଚନା-ସାପେକ୍ଷ । ଭାରତ ପ୍ରସିଦ୍ଧ ଶ୍ରେଷ୍ଠ ଧର୍ମପୀଠ ଜଗନ୍ନାଥ ମନ୍ଦିରର ସୁଦୃଢ଼ ଭିତ୍ତି ଓ ବିରାଟ ଜଗନ୍ନାଥ ବିଗ୍ରହ ଏହି ଅନାର୍ଯ୍ୟମାନଙ୍କର । ମଧ୍ୟ-ପ୍ରଦେଶର ବିଳାସପୁର ଲଗାଏତ ଓଡ଼ିଶାର ଶବରମାନଙ୍କର ଉତ୍ପତ୍ତି ଆଖ୍ୟା ମୂଳରେ ପ୍ରାଚୀନ ସାରଳା ମହାଭାରତର ଶବରୀନାରାୟଣ ( Castes & Tribes of C. P. Page 503 ) ବିଦ୍ୟମାନ । ମହାଭାରତ ଯୁଦ୍ଧରେ ନିଷାଦ, କିରାତ, ଆନ୍ଧ୍ର ପ୍ରଭୃତି ଅନାର୍ଯ୍ୟଗଣ ଏକ ପ୍ରଧାନ ଅଂଶ ଗ୍ରହଣ କରିଛନ୍ତି । ସେହିପରି ସାରଳା ମହାଭାରତରେ ମଧ୍ୟ ଶବରୀ ରାଜା, ଭୂୟାଁ ରାଜା, କନ୍ଧ ରାଜା ପ୍ରଭୃତି ଓଡ଼ିଶାର ଅନାର୍ଯ୍ୟ ରାଜାମାନଙ୍କର ମହାଭାରତ ଯୁଦ୍ଧରେ ସେମାନଙ୍କର ବିଶାଳ ସେନାବାହିନୀ ସହିତ ଅଂଶଗ୍ରହଣ ଓ କାଳଜ୍ୱରାକ୍ଷସୀ ପ୍ରଭୃତିର ବର୍ଣ୍ଣନା ପ୍ରସଙ୍ଗରେ ଓଡ଼ିଶାର ଅନାର୍ଯ୍ୟ ସଭ୍ୟତାର ଯଥେଷ୍ଟ କିଛି ସୂଚନା ମିଳିଥାଏ । ଆଗରୁ କୁହାଯାଇଛି ଯେ, ଓଡ଼ିଆ ସଭ୍ୟତା ସଂସ୍କୃତିର ମୂଳ ଏହି ଅନାର୍ଯ୍ୟ ସଭ୍ୟତା । ଆମ୍ଭେମାନେ ଆଜସୁଦ୍ଧା ଓଡ଼ିଆ ସଭ୍ୟତାର ପ୍ରକୃତ ସ୍ୱରୂପ ଦେଖି ପାରୁନାହୁଁ । କିନ୍ତୁ ବିଶେଷ ଭାବରେ ଅନାର୍ଯ୍ୟ ଓ ଦ୍ରାବିଡ଼ ସଂସ୍କୃତିର ବିଶ୍ଳେଷଣାତ୍ମକ ପର୍ଯ୍ୟାଲୋଚନାରେ ଆମେ ପ୍ରକୃତରେ ପାଇ ପାରିବା ପ୍ରାଚୀନ ଓଡ଼ିଆ ସଂସ୍କୃତି ଓ ସଭ୍ୟତାର ପ୍ରକୃତ ପ୍ରକାଶ ।

ଭାଷାପ୍ରସଙ୍ଗ ଆଲୋଚନାରେ ଦେଖାଯିବ ଯେ, ଓଡ଼ିଆ ଭାଷାର ମୂଳରେ ମଧ୍ୟ ଏହି ଅନାର୍ଯ୍ୟ ବା ଆଦିବାସୀମାନଙ୍କ ଭାଷାର ଅପ୍ରତିହତ ପ୍ରଭାବ ରହିଅଛି । ପ୍ରାଚୀନରେ ଏମାନଙ୍କର ଭାଷା ବିଭାଷା ନାମରେ ସଂସ୍କୃତ ଅଳଙ୍କାରଗ୍ରନ୍ଥ ଓ ନାଟ୍ୟଗ୍ରନ୍ଥ ସମୂହରେ କଥିତ । ଭରତ ନାଟ୍ୟଶାସ୍ତ୍ରରେ—

"ବେବୁାଖାର୍ ଚଣ୍ଡାଳ ସଚର ଦ୍ରବଡ଼ୋଡ୍ରଜାଃ
ହୀନା ବନେ.ଚରେଣାଞ୍ଚ ବିଭାଷା ନାଟକେ ସ୍ମୃତା।"
ନା: ଶ୍ଳୋ: ୩୭

ସଂସ୍କୃତ ଅଳଙ୍କାରଶାସ୍ତ୍ରରେ ବର୍ଣ୍ଣିତ ସତେଇଶ ପ୍ରକାରର ଅପଭ୍ରଂଶ ମଧ୍ୟରେ ଔଡ୍ରୀ ଓ କାଳିଙ୍ଗ୍ୟ ଅପଭ୍ରଂଶ ଭାଷାର ନାମୋଲ୍ଲେଖ ରହିଛି । ଓଡ଼ିଶାର ସପ୍ତଦଶ ଶତାବ୍ଦୀର ଅନ୍ୟଜଣେ ବିଶିଷ୍ଟ ସଂସ୍କୃତ ଆଳଙ୍କାରିକ ମାର୍କଣ୍ଡେୟ ତାଙ୍କର 'ପ୍ରାକୃତସର୍ବସ୍ୱ'ରେ ଔଡ୍ରୀ ଅପଭ୍ରଂଶ ସମ୍ବନ୍ଧରେ କହିଅଛନ୍ତି ଯେ, ଔଡ୍ରୀ ଓ ଶୌରସେନୀର ସମ୍ମିଶ୍ରଣରେ ସାବର ଔଡ୍ରୀ ନାମକ ଶଙ୍କର ଭାଷାର ଉତ୍ପତ୍ତି ଘଟିଛି । ପୁଣି ପୁରୁଷୋତ୍ତମଦେବଙ୍କ ପ୍ରାକୃତାନୁଶାସନ ନାମକ ଗ୍ରନ୍ଥରେ (Prakrit Prakash edited by D. G. Sarkar, Appendix] ଔଡ୍ରୀ ଅପଭ୍ରଂଶର ଲକ୍ଷଣ ସ୍ୱରୂପ ପ୍ରଦତ୍ତ ହୋଇଛି । ଔଡ୍ରୀ ବା କାଳିଙ୍ଗ୍ୟ ଅପଭ୍ରଂଶ ଭାଷା ଯାହାହେଉ ନା କାହିଁକି ତାହାର ମୂଳରେ ଅନାର୍ଯ୍ୟ ବା ଆଦିମ ଅଧିବାସୀମାନଙ୍କର ପ୍ରଭାବ ବିଶେଷ ଭାବରେ ଦେଖାଯାଇ-ଥାଏ । ପ୍ରାଚୀନ ଓଡ଼ିଶା ଦେଶର କଳିଙ୍ଗ ନାମକରଣରେ ମଧ୍ୟ ଏହି ଅନାର୍ଯ୍ୟ ପ୍ରଭାବ ରହିଛି ବୋଲି ଅନେକ ଐତିହାସିକ ଓ ଭାଷାତତ୍ତ୍ୱ-ବିତ୍‌ମାନଙ୍କର ମତ । କୁଇ ବା କୁଲି (Kuli) ଭାଷାରେ ଧାନକୁ କୁଇଙ୍ଗ (Kuing) ଓ ବଳଦ ଏବଂ ଗାଈଗୋରୁଙ୍କୁ କୁଡ଼ିଙ୍ଗ (Koding) କୁହା-ଯାଏ । 'ଙ୍ଗ' ଏହି ବହୁବଚନ ପ୍ରତ୍ୟୟଟି କେବଳ କୁଇ ଭାଷାରେ ବହୁ ଶବ୍ଦମାନଙ୍କରେ ଦେଖିବାକୁ ମିଳିଥାଏ । ଯେପରି କୋଡ଼ିଙ୍ଗ, ବଡ଼ିଙ୍ଗ, କୁଇଙ୍ଗ ପ୍ରଭୃତି ଶବ୍ଦ । କୁଇ ବା କୁଲି ଜାତିର ଲୋକସମୂହ (କୁଇ ବା କୁଲି+ଙ୍ଗ) ଶବ୍ଦରୁ କୁଳିଙ୍ଗ ବା କଳିଙ୍ଗ ଶବ୍ଦର ସୃଷ୍ଟି ଓ ତାହାର ମୂଳରେ ଆଦୌ ଆର୍ଯ୍ୟଭାଷାର ସମ୍ବନ୍ଧ ନାହିଁ । (I. A. 1925 P. 221) ବୋଲି ଜାଣିବାକୁ ହେବ । କୁଇ ଭାଷାର ଅନୁସନ୍ଧାନରେ ଅନେକ ଶବ୍ଦ ଦେଖିବାକୁ ମିଳିଥାଏ, ଯେଉଁ ଶବ୍ଦଗୁଡ଼ିକ ସେହି ଅର୍ଥ ବା ସାମାନ୍ୟ ପରିବର୍ତ୍ତିତ ଅର୍ଥରେ ଓଡ଼ିଆ ଭାଷାକୁ ଆସିଥିବାର ମନେହୁଏ ।

| କୁଇ | ଓଡ଼ିଆ |
|---|---|
| ଆବା (ବାପା) | ଆପ୍ପ, ପ୍ପ |
| ଇଅ (ମା) | ଆଈ |
| କୋଡ଼ଙ୍ଗ (ବଳଦ) | କଳଙ୍ଗା ବଳଦ |
| ବଡ଼୍ରେ (ବାଡ଼) | ବାଡ଼ (stick) |
| କୋଡ଼ (କୋଡ଼ିଏ ସଂଖ୍ୟା) | କୋଡ଼ି |
| ପଗ୍ (ବିଭକ୍ତ କରିବା) | ପଗ (ଅଂଶ) |
| ଢ଼ୋ (ନଦ) | ଢୋଳ (ଘୂରିମଇବା) |
| ପଡ଼ (ଗାଁ) | ପଡ଼ା (ଗାଁ) |
| ପଣ୍ଡି (ଘୁଷୁରୀ) | ପଣ୍ଡା (ମଇଁଷି ପଣ୍ଡା) |

ମୁଣ୍ଡାରି ଭାଷାରେ ଅନେକ 'ଶ' ରହିଛି । ସେଗୁଡ଼ିକର ତାଲିକା ଏଠାରେ ପ୍ରଦାନ କରିବା ଅସମ୍ଭବ । 'ଚିରଗୁଣୀ' ଶବ୍ଦଟି ଓଡ଼ିଆ ଭାଷାରେ ବିଶେଷ ଭାବରେ ପ୍ରଚଳିତ । ଗାଁ-ଗଣ୍ଡାରେ ଲୋକବିଶ୍ୱାସ ଏପର୍ଯ୍ୟନ୍ତ ରହିଛି ଯେକୌଣସି ସ୍ତ୍ରୀଲୋକ ଯଦି ଗର୍ଭାବସ୍ଥାରେ ମରିଯାଏ, ତାହାହେଲେ ସେ ଚିରଗୁଣୀ ପାଲଟିଯାଏ । କେବଳ ମୁଣ୍ଡା ନୁହେଁ କି ଅଧିକାଂଶ ଅନାର୍ଯ୍ୟ ଭାଷାରେ ଏହି ଶବ୍ଦଟି ବିଭିନ୍ନ ସ୍ୱରୂପ ନେଇ ପ୍ରଚଳିତ ଓ ପୂର୍ବୋକ୍ତ ଅର୍ଥରେ ମଧ୍ୟ ବ୍ୟବହୃତ । ଯେପରି, ମୁଣ୍ଡାରି=ଚୁରିନ୍, ସାନ୍ତାଳୀ=ଚୂରିନ୍, କୁରୁଖ=ଚୂରିଲ୍ ଇତ୍ୟାଦି । ମୁଣ୍ଡାରୀ ଭାଷାରେ 'ଓର୍' (Ora) ଶବ୍ଦଟି ଘର ଅର୍ଥରେ ପ୍ରଯୁକ୍ତ; କିନ୍ତୁ ଓଡ଼ିଆରେ ତାହା ଘରକୁ ନ ବୁଝାଇ ଘର ଛାତ ନିମିତ୍ତ ବଡ଼ କାଠଖଣ୍ଡକୁ ବୁଝାଇଥାଏ । ସେହି ଓର ଶବ୍ଦର ଏହିପରି ବିଭିନ୍ନ ଅନାର୍ଯ୍ୟ ଭାଷାରେ ଘର ଅର୍ଥରେ ହିଁ ବ୍ୟବହୃତ ହେଉଛି ।

ମୁଣ୍ଡାରି=ଓର୍, ସାନ୍ତାଳୀ=ଓର୍, କରଓ୍ୱା=ଓରାଓ, ଖଡ଼ିଆ=ଓ, ହୋ=ଓଆ, କୋଡ଼ା=ଓର୍ ଇତ୍ୟାଦି ।

| ମୁଣ୍ଡାରୀ | ଓଡ଼ିଆ |
|---|---|
| କୁଡ଼ (କୋଡ଼ଏ) | କୋଡ଼ |
| ଆଙ୍ଗ (ଆଁକର ଗୁହିଁବା) | ଆଁ |
| କୁର (ସ୍ତ୍ରୀ) | ଖଡ଼ (ଦାନ୍ଦର ସ୍ତ୍ରୀ) |
| ଗୃଡଲ | ଗୃଡଲ |
| ଟୁକିଓ | ଟୋକେଇ |
| ମୋଟେ | ମୋଟା |
| କଜ (କହିବା) | କଜିଆ (କଳହ) |

ଚେନ୍‌ଟର (କ୍ଷୁଦ୍ର ପକ୍ଷୀବିଶେଷ) ଚେମଣ—

ଓଡ଼ିଆରେ ହେଟା ଶବ୍ଦ କୁକୁର ପରି ଏକ ପଶୁକୁ ହେଟାବାଘ ବୁଝାଇଥାଏ; କିନ୍ତୁ ପରିବର୍ତ୍ତିତ ହେଟା ଶବ୍ଦଟି ଆଦିମ ଅଧିବାସୀମାନଙ୍କ ଭାଷାରେ ସାଧାରଣ କୁକୁରକୁ ବୁଝାଇଥାଏ । ଶବ୍ଦଟିର ରୂପ ହେଉଛି—

ମୁଣ୍ଡାରୀ—ସେଟା, ସାନ୍ତାଳୀ—ସେଟା, ଜୁଆଙ୍ଗ—ସେଟାଗ୍, ହୋ—ସେଟା, କୋଡ଼ା—ସେଟା ଇତ୍ୟାଦି ଓ ଅନାର୍ଯ୍ୟ ଭାଷାରେ ଲିଖିତ 'ସ' ଓଡ଼ିଆରେ 'ହ'ରେ ପରିଣତ ହୋଇ 'ହେଟା' ଶବ୍ଦରେ ପରିଣତ ହୋଇଛି । 'ଲଙ୍କା' ଶବ୍ଦ ଜୁଆଙ୍ଗ ଭାଷାରେ ଦୂର ବାଟକୁ ବୁଝାଇଥାଏ । ଆଦିମ ଅଧିବାସୀମାନଙ୍କ ଭାଷାରେ ଏହି ଲଙ୍କା ଶବ୍ଦର ବହୁ ପ୍ରଚଳନ ରହିଛି । କୋରଓ୍ୱା ଭାଷାରେ ଲଙ୍କା ଶବ୍ଦ ଲଙ୍‌କାର (Langkar) ଓ ଗଣ୍ଡ ଭାଷାରେ ତାହା ଲାକ୍ (Lak) ଭାବରେ ପୂର୍ବୋକ୍ତ ଅର୍ଥରେ ପ୍ରଚଳିତ । ଓଡ଼ିଆ ଭାଷାରେ ସେହି ଏକ ଅର୍ଥରେ ପ୍ରୟୋଗ ରହିଛି 'ପର୍ବତ ପର୍ବତ ଲଙ୍କା ଯିବା' । ଅସୁର ବା ଅନାର୍ଯ୍ୟମାନେ ନୌ-ବାଣିଜ୍ୟରେ ବିଶେଷ ଦକ୍ଷ ଓ ପ୍ରାଚୀନରେ ଓଡ଼ିଶାର ସିଂହଳ ପ୍ରଭୃତି ଦେଶ ସହିତ ନୌ-ବାଣିଜ୍ୟର ସଂକ୍ଷିପ୍ତସାର ଇତିହାସ ଯେ ଏହି ବଣଜଙ୍ଗଲର ନଗ୍ନ ଆଦିବାସୀମାନଙ୍କଠାରେ ପ୍ରଚ୍ଛନ୍ନ ଭାବରେ ରହିଛି, ଏହା କଦାପି ଅସ୍ୱୀକାର କରିହେବ ନାହିଁ ।

ଗଣ୍ଡ, ସାନ୍ତାଳୀ ପ୍ରଭୃତି ଆଦିବାସୀ ଭାଷାରୁ ମଧ୍ୟ ବହୁ ସଂଖ୍ୟାରେ ଅନେକ ଶବ୍ଦ ସମୟକ୍ରମେ ଓଡ଼ିଆ ଭାଷାରେ ସ୍ଥାନଲାଭ କରିଛି । ଆମ ଓଡ଼ିଆ ଭାଷାରେ ଅନେକ ଶବ୍ଦ ଅନାଲୋଚିତ ଭାବରେ ରହିଛି, ଯାହାର ସମ୍ବନ୍ଧ ଅନାର୍ଯ୍ୟ ଭାଷାସମୂହରେ ନିବଦ୍ଧ । ଆଜିକାଲି ଏପରି ଅନେକ ଶବ୍ଦର ଆଲୋଚନା କେବଳ 'ଦେଶଜ' ସଂଜ୍ଞାରେହିଁ ସମାପ୍ତି ଲାଭ କରୁଛି । ଗଣ୍ଡ ଓ ସାନ୍ତାଳୀ ଭାଷାର ଆଲୋଚନାରେ ମଧ୍ୟ ଅନେକ ଶବ୍ଦ ଓଡ଼ିଆ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିବାର ଦେଖାଯାଏ ।

| ଗଣ୍ଡ | ଓଡ଼ିଆ |
|---|---|
| ଖୂରସ୍ | ଖୁରଙ୍ଗ |
| ଗୁଧି (ଘାଲୁ) | ଗୋଧିସାପ |
| କଇଁଆ (ଫଳ) | (କଇଁଆ ଚେଲ୍ଲୁଳ ଫଳ) |
| ଘୂଷର | ଘୁଷୁରି |
| ଭୂଲ୍ | ଭୃଉଳ |

| ସାନ୍ତାଳୀ | ଓଡ଼ିଆ |
|---|---|
| ଅଡ଼ା | ଅଡ଼ା (ବେଗ) |
| ବଟା | ବଟା (ବାଉଁଶ ଫାଳ) |
| ଅରମୁ (ଝାମୁଲଗଛ) | ଅରମା (ଜଙ୍ଗଲିଆ) |
| ଭୂଳ | ଭୂଳ (ଛପର) |
| ବାଓର, ବାଉର (ଗେଡ଼ା) | ବାଉର (ଜାତିବିଶେଷ) |
| ଚୂଆ (ଝରଣା) | ଚୁଆ (ଗ୍ରେଷ୍ଟପୋଖରୀ) |

ଏହାଛଡ଼ା ଜୁଆଙ୍ଗ ଭାଷାରେ ଅନେକ ଶବ୍ଦ ଓଡ଼ିଆ ଶବ୍ଦ ସହିତ ସାମ୍ୟ ଅଛି । ଜୁଆଙ୍ଗ ଭାଷାର ଅନେକ ଶବ୍ଦ ଓଡ଼ିଆ ଭାଷାରେ ଅନେକ ବନରୁ ମିଶିଅଛି । ଯେପରି :—

| ଜୁଆଙ୍ଗ | ଓଡ଼ିଆ |
|---|---|
| ବା (ବାପା) | ବା |
| କା (ଭାଇ) | କାକା |
| ମେରମ୍ (ଛେଳି) | ମେଣ୍ଢା |
| ବୁଆ (ଧାନ) | ବୁଆ [ଶ୍ରେଷ୍ଠଧାନ] |
| ଅଣ୍ଡିଆ [ପୁରୁଷ] | ଅଣ୍ଡିରା [ପୁରୁଷ] |

କୁରୁଖ୍‌ମାନଙ୍କର ଭାଷାରେ ମଧ୍ୟ ସେହିପରି ଅନେକ ଶବ୍ଦ ଦେଖାଯାଏ, ଯାହାର ପ୍ରଭାବ ଓଡ଼ିଆ ଭାଷା ଉପରେ ପଡ଼ିଅଛି ।

| କୁରୁଖ୍ | ଓଡ଼ିଆ |
|---|---|
| ପଡ଼ା (ଘର) | ପଡ଼ା (ଗାଁ) |
| ଅଡ୍ଡୋ (ବଳଦ) | ହଡ଼ା |
| ଅ'ଖରନା (ଆଖଡ଼ା) | ଆଖଡ଼ା |
| ଅଣ୍ଡ୍ରା | ଅଣ୍ଡିରା |
| କୋନ୍ (ଶ୍ରେଷ୍ଠ) | କୁନ |
| ଓଲ୍ଲା (ଧନ) | ଓଳ, ଓଳା |
| ଆର (ବନ୍ଧ) | ଆଡ଼ |
| ବେଲ୍ (ଭୂମି) | ବିଲ |
| ବିଣ୍ଡି | ବିଣ୍ଡା |
| ଭୁସ୍‌ସୁ (କୁଣ) | ଭୁଷି (ଭୁଷିକଣା) |
| ଝୁଳୀ (ଶ୍ରେଷ୍ଠଘର) | ଝୁଳୀ |
| ପୋକ | ପୋକ |
| ଝେପା | ଝେପା |
| ଚୁଟେ | ଚୁଟି |
| ଚେରନା | ଛେରା |

| କୁଡ଼ୁଖ୍ | ଓଡ଼ିଆ |
|---|---|
| ଡାହ୍ରସ୍ୱା | ଡାହ୍ରୁ (ଶ୍ରେଷ୍ଠଡାଳ) |
| ଦାଣ୍ଡି (ଗୀତ) | ଦାଣ୍ଡି 'ମହାଭାରତ ଓ ରାମାୟଣ' ପ୍ରଭୃତ |
| ଡେବ୍ବା (ବାମ) | ଡେବରି (ହାତ) |
| ଡୋଙ୍ଗା | ଡଙ୍ଗା |
| ଢମ୍ପା | ଢପ୍‌ପା (ଗୀତ) |
| ଢୋକ | ଢୋକ |
| ପୋଛା | ପେଟ |
| ଢେକ୍‌ବା (ଟେକା) | ଟେକା |
| ଢିଙ୍କି | ଢିଙ୍କି |
| ଢୁଲକ | ଢୋଲକ |
| ଫସ୍‌କୋ | ଫସ୍‌କା (ଫସ୍‌କାମାଟି) |
| ଗଇଣ୍ଡା | ଗଣ୍ଡା |
| ଗିଙ୍ଗଟି | ଗେଙ୍ଗୁଟି |

ଗୋଠା—ଗୋଠା, ଗୁଣ୍ଡା—ଗୁଣ୍ଡା (ଭାତଗୁଣ୍ଡା), ଜାଗୁ (ପଖାଳ ) —ଜାଉ, ଯୋଗ୍ରା—(ସନ୍ତସନ୍ତିଆ ଜାଗା) ଯୋଗ୍ରା, ଝମର (ବହୁତ ଲୋକ ଜମାହେବା)—ଝାମଲ, ଝପି (ଟୋକେଇ ଘୋଡ଼ଣି)—ଝାମ୍ପି, ଝର (ଝରଣା) —ଝରଣା, ଝଟା (ବଣ)—ଝଟା, କାବୁ (ପୋଷା)--କାବୁ (ବଶକରିବା), କଚରନା (ପକେଇ ଦେବା) କଚଡ଼ିବା, କକା—କକା, କାକା—କାକା, କରଖା (ବୃକ୍ଷ)—ଖଡ଼କା (ନଡ଼ିଆପତ୍ରର ଡାଙ୍ଗ), କୁନା (ଶ୍ରେଷ୍ଠ) – କୁନ (କୁନପୁଅ, କୁନଝିଅ), କେନ୍ଦ୍ରା (ବାଦ୍ୟଯନ୍ତ୍ର)—କେନ୍ଦରା, କୋକୋ (କୁକୁଡ଼ା)—କୁକୁଡ଼ା, କୋସା (ପଣସ ଫଳ)—କୋସା, ଖୋସା, କୁଡା (ଗଦା) କୁଡ଼ାଇବା, କୁଡ଼, କୁଡ୍‌କ—କୋଡ଼, (ହାଣିବା ନମିତ୍ତ କୋଡ଼), କୁଣ୍ଡୋ (କୁଣ୍ଡା, ଧାନରଖାପା)—କୁଣ୍ଡା, କୁରିଆ – କୁରିଆ, କୁଛା—କୁଟା,

କ୍ଟଣୀ (ଦୁଷ୍ଟଲକ୍ଷଣା ସ୍ତ୍ରୀ)—କୁଟ୍ଣୀ, ଖଲ୍ଲି—ଖଲ, ଖସି—ଖାସି, ଖୋଲପା (ଗାତ, ଗାଡ଼ )—ଖୋଲପା, ଖୋଲ, ଖାଲ୍ (ଚଷା ହୋଇଥିବା ଜମି, ବିଲ) —ଖାଲ (ଗହ୍ୱଡ଼ିଆ ଜମି), ଖାର୍ (ନଈ, ପାଣିଜାଗା) —ଖାଲ, ଖରସୁଆଁ —(ଖରସ୍ରୋତା), କ୍ଲୁଣ୍ଡି (କଣ୍ଡା) —ଲୁଣ୍ଡି, ମଢ଼, (ତେଲବାଜ)—ମାଘି ତେଲ, ମହ୍ନ (ଦହ୍ନ) —ମହ୍ନ (ଦହ୍ନପକାଇବା ନିମନ୍ତେ ମୃତ୍ତରୁ ରଖାଯାଇଥିବା ଦହ୍ନ) ମହ୍ନସ [ବର୍ଷ] ମହ୍ନର, ମଣ୍ଡି (ରନ୍ଧାଭାତ) —ମଣ୍ଡ, ଟୋଙ୍ଗେ (କୁରାଡ଼)—ଟାଙ୍ଗିଆ [ଶ୍ରେଷ୍ଠ କୁରାଡ଼ି]—ମେଣ୍ଢା —ମେଣ୍ଢା, ମେଡ଼ା, ମିଟକ [ଆଖିମାରିବା]—ମିଟ୍କା, ଓଣ୍ଡି (ସ୍ତ୍ରୀ)— ଅଣ୍ଡିରୀ, ଯେପରି ଅଣ୍ଡିରଚଣ୍ଡୀ, ମୁରହ୍ନ—ମୁଡ଼ୀ, ଓର—ଓର (ଦାବ) ପଗା [ପଗଳ]—ପାଗ, ପାଢା [ଦଉଡ଼]—ପଢା, ପାଇକ—ପାଇକ, ପାଳ [ସମୟ]—ପାଳ [ଥର], ଦାଣ୍ଡି ପାରନା (ଗୀତ ବୋଲିବା ) —ଦାଣ୍ଡିପରପୁଣ ଅର୍ଥାତ୍ ଦାଣ୍ଡିପୁରଣ ବୋଲିବା, ପସରା [ଦୋକାନ]— ପସରା [ହାଣ୍ଡି, ମାଟିଆ ଅର୍ଥରେ], ବଣ୍ଡ ପେଲ୍, [ଝିଅ]—ପିଲ୍, ପିଣ୍ଡା —ପିଣ୍ଡା, ପିଟନା—ପିଟିବା, ପୋଟ୍ଟା—ପେଟ, ପୁଡ଼ା [ଶ୍ରେଷ୍ଠ]— ପୁଡ଼ିଆ, ଅରଖା [ଗୋଟାଏ ପ୍ରକାର ଗଛ], ଅରଖ ଗଛ, ସରୁଆ— ସରୁଆ, ସୋଗ—ସୋହାଗ, ସୋଗ, ତଡ୍ଡା [ବାଡ଼]—ତଡ଼ା [ବାଡ଼ ଅର୍ଥରେ], ଟୋପର (ଛତା)—ଟୋପ, ଟ୍କି (ଟୋକେଇ)—ଟୋକେଇ, ଟାଙ୍ଗର [ଟାଙ୍ଗର ଭୂଇଁ]—ଟାଙ୍ଗର, ଟାଙ୍ଗର, ଟାଟି—ତାଟି, ଠେକ୍ନା [ମାଟିର ଶ୍ରେଷ୍ଠଘଡ଼]—ଠେକ ।

ଏହି କୁରୁଖ୍ ଭାଷାରେ ମଧ୍ୟ ଅନ୍ୟର ଅନ୍ୟ ନାମ ଅନେକ ଓଡ଼ିଆ ଶବ୍ଦ ରହିଛି । କୁରୁଖ୍ ଭାଷାର ଅନ୍ୟ ନାମ ଓରାଓଁ ଭାଷା ।

ଶବରମାନେ ଓଡ଼ିଶାର ପ୍ରାଚୀନ ଅଧିବାସୀ । କେତେକ ଓଡ଼ିଶାର ସଭ୍ୟତାକୁ ଶବର ସଭ୍ୟତା ବୋଲି ମଧ୍ୟ କହିଥାଆନ୍ତି । ବହୁ ପ୍ରାଚୀନ କାଳରୁ ଓଡ଼ିଆର ପ୍ରାକୃତ ବୈୟାକରଣିକମାନେ କହିଛନ୍ତି ଯେ, ଓଡ଼ିଆ ଭାଷାରେ ଶବର ବା ଆଦିବାସୀ ଭାଷାର ସମ୍ମିଶ୍ରଣ ଘଟିଛି । ଆମ୍ଭେମାନେ

ଶବର ଭାଷାରେ ଅନେକ କଣ୍ଠୁ ପ୍ରାଚୀନ ଓଡ଼ିଆ ଶବ୍ଦ ରୂପରେଖ ପାଇପାରିବା । ତାହାର କେତେକ ନମୁନା ଏଠାରେ ଦିଆଗଲା । ଶବର ଓ ଓଡ଼ିଆ ଭାଷାର ସମ୍ପର୍କ :—

ଭଗା [ଗାଳିଦେବା]—ଉଦେଇବା, ଧାଙ୍ଗଡ଼ା — ଧାଙ୍ଗଡ଼ା, ଗୋଡ଼େନ [ଅଞ୍ଚଳ]—ଗଡ଼ [ଦୁର୍ଗ] । ଗୃଷ ଅର୍ଥରେ ଶବର ଭାଷାରେ 'ଓର୍' ଶବ୍ଦଟି ବହୁଳ ଭାବରେ ପ୍ରଚଳିତ । ସେମାନେ ଗୃଷକୁ 'ଅର୍' 'ଓରସୋନ୍' କହନ୍ତି ଓ ଗୃଷୀକୁ ସେମାନେ 'ଅନ୍‌ଓର୍ ବ୍ରେମାରେନ୍' ବୋଲି କହିଥାଆନ୍ତି । ଏହି ଶବର ଭାଷାର 'ଓର୍'ରୁ "ଓଡ୍ର" ଦେଶ ଓ ଓଡ଼ିଆ ପ୍ରଭୃତି ଶବ୍ଦର ଉଦ୍ଭବ ହୋଇଥିବା ସମ୍ଭବ ।

ପିଣ୍ଡି [ମଦଦୋକାନ]—ଶୁଣ୍ଢୀ, କଡ଼ୁନ୍ [ଖଡ଼]—ଖଡ଼ୁ, [ଝାଙ୍କେଲେନ୍ ଝୋଟକଇ]—ଝୋଟକେଇ, ପଢୁଆ [ଡଙ୍ଗା]—ପଢୁଆ, ଜୋଡନ୍ (ଝରଣା)—ଜୋଡ଼ [ପାଣିଜାଗା], କକୁନ୍ [କକା]—କକା, ଗୁଡ଼ନ୍ [ଢେଲା]—ଗୋଡ଼, ଗଡ଼ନ—ଗଡ଼ [ଦୁର୍ଗ], ଏଡ଼ନ (ଭୁଲା) ଏଣ୍ଡି, ଶଗଡନ୍—ଶଗଡ, ପିପାନ୍—ପିମ୍ପା, କଡ୍ଡୁ ବୁଡ଼େନ୍ [ଧାଁବାକୁଆ] —ବୁଢ଼ିଆଣୀ (ପୋକ), କଜନ୍ (ଗାଳିଦେବା)—କଜିଆ, ଗଡ୍ ଗଡ୍ (ଖଣ୍ଡ)—ଗଡ଼ (କାଠଗଡ଼), ଙ୍ଖୁନ୍ [କଫ]—ଙ୍ଖ ଙ୍ଖ, କୁକୁ [କୋଇଲି] —କୋଇଲି, କେ-କେ-କେ—କେକା [ସଂ], ଓର୍, ଓର୍,-ଓର୍··· ଧାନ ଚଷିବା, ଓଡ଼ିଆରେ ଓଡ଼େ ବା ଓଡ଼େ ଗୃଷ, ଓଡ଼ଚଷା ପ୍ରଭୃତି ଶବର ମୌଳିକ ଧାତୁ ଏହି 'ଓର୍' ଓରେନ୍—ଗୃଷ, ଓରେମାରେନ୍— ଗୃଷୀ ଓ ଓଡ଼ଚଷା, କୁମ୍ଭିନ୍ (ଗ୍ରୀଷ୍ମପାନ)—କୁମ୍ଭି, କୁମ୍ଭା, କଲନ୍— କାଲ, କାଲ, ଓମ୍ଡା—ଅମଡ଼ା, କେନ୍ତାରେନ୍ (ଅନାବୃଷ୍ଟି)—କାନ୍ତାର, କୋଡ଼ଏ—କୋଡ଼ି, କୁଣ୍ଡୁ (ଆଲିଙ୍ଗନ ଅର୍ଥରେ)—କୁଣ୍ଢେଇବା, ଡ଼ିଆନେନ୍ (ଡାଆଣୀ)—ଡାଆଣୀ, ଅଗେଡ୍‌ଡା (ବାଜେ)—ଅଗାଡ଼, ଓଡ଼ିଆ, ଶରବେ ମାରେନ୍ (ମାରେନ୍—ଲୋକ—ଗୃଷୀ, 'ଶବର' ଶବ୍ଦ ବର୍ଣ୍ଣ ବିପର୍ଯ୍ୟୟରେ 'ଶରବୋ' ହୋଇଥିବା ସମ୍ଭବ, ଶରବୋନ୍—

ଗୃଷଜମି, ରେଡ଼ାଇଝ୍‌ଡେନ୍ (ରଡ଼ନଅାଁ)—ରଡନଅାଁ, ଉମ୍ମାଏନ୍—ଉମ୍‌ଦେଇ ଟବେଣ୍ଟିବଡ଼୍ (ଚଡ଼େଇମଗଳ)—ବେଣ୍ଟକାର, ଉଡ଼୍ ଉଡ଼୍ ମଡ଼୍ (ଢଗରେ ଉଡ଼ମଡ଼ ହେବା)—ଉଡ଼ମଡ଼, ଡୋଡେନ୍ (ପାଟି ଆଁ କରିବା)—ଡୋଡ଼ବା (ଗାଲଚୋଡ଼ବା), କୁରୁନ୍ (ମୁଣ୍ଡବାଳ)—ଓ କୁରୁଳ, ଲଙ୍କାନ୍ (ଉଚ)—ଦୂରତା ଓ ବଡ଼ ଅର୍ଥରେ ଅନ୍ୟାନ୍ୟ ଆଦିବାସୀ ଭାଷାରେ ଲଙ୍କା ଶବ୍ଦ ମଧ୍ୟ ବ୍ୟବହୃତ । ବେଣ୍ଟାନ୍ (ଶିକାରୀ)—ବେଣ୍ଟକାର, କୁଟେଣ୍ଡ଼ଇ (ଖେଳନା)—କୁଟେଣ୍ଡ଼ଇ, ଏଡେନ୍ ଏଡେନ୍ [ଏତେ ଏତେ]—ଏତେ ଏତେ, ବୁଡ଼୍‌ବୁଡେନ୍ (କାଠପତଙ୍ଗ)—ବୁଢିଆଣୀ କୁକ୍କାଳ [ଟୋକାଳ]—କୁହ୍ଲିଆ (ସମ୍ବଲପୁରୀ) କୋଙ୍ଗିଣିରେନ୍ (କଇଁଫୁଲ) କଇଁ, କହ୍ଲାଇ ବାହ୍ଲାଇ [ଅନୁଆ]—ଜଳବଳ, କଣ୍ଡେ—(ଜଡ଼ା)—କାଣ୍ଟି [ତେଲର ମଇଳା], ଓଗ୍ରେମାରେନ୍—ଗୃଷୀ, ପୋ—(ଫଟେଇବା, ଫୋଡ଼ବା)—ଫୋଡ଼ବା, ଓର୍, ଓର୍‌ବେ, (ଲଙ୍ଗଳ), ଲଙ୍ଗଳ ସିଆର—ଅର୍ ଓର୍‌ବେ ସବୁ "ଓର୍" ଧାତୁନିଷ୍ପନ୍ନ ଏବଂ ଏହି ଶବ୍ଦରୁ ଓଡ଼ିଆ ବା ଓଡ଼୍ର ଶବ୍ଦ ହୋଇଛି ।

ଡାଙ୍ଗନ୍—ଡାଙ୍ଗ, ଗାଡ଼ିଲେନ୍ (ଛାତ)—ଗର (ଘର ଛପରରେ ଗର ଶବ୍ଦ ଓଡ଼ିଆରେ ବ୍ୟବହୃତ ) । ସରୁ—ସରୁ, ଓବ୍ରୋନ୍-ଓର୍ ବା ଓଡ଼, ମାଡ଼େ (ଝିଙ୍କିବା, ମୋଡ଼ବା)—ମୋଡ଼ିବା, କେଣ୍ଡାରନ୍ (କେଣ୍ଡା, ପେନ୍ଥା)—କେଣ୍ଡା, ପକ୍କେନ୍ (ପକ୍ଷୀ,ପକ୍ଷୀ)—ପକ୍ଷୀ,ପକ୍ଷୀ ।

ପେଲ୍ଲନ୍—ପେଡ଼ା, କଇତ—କଇନ୍ଥ, ଚାଟିଆ—ଚାଟିଅ ଇତ୍ୟାଦି ।

ହୋ :—ପାଡଶୋ—ପଣସ, ଗୃଡଳ—ଗୃଡଳ, ଥାଉଡ଼—ଥାଳ, ଡବାର-ଡବ, ଟୁକ—ଟୋକେଇ, କଳା—କଳା, ଡ଼ୋଲ୍—ଢ଼ୋଲ୍, ହଡା—ହଡ଼ା, ଗେଣ୍ଡା—ଗେଣ୍ଡା, ବାଦୁଡ—ବାଦୁଡ଼, ନଇ—ନଇ (ଲଟା), ପାଇଟି—ପାଇଟି, ବୋକା—ବୋକା, କାଳ୍—କାଳ, ଦୋରଆ—ଦାରଆ ।

ସାନ୍ତାଳୀ ଭାଷାର ପ୍ରଭାବ ମଧ୍ୟ ଓଡ଼ିଆ ଭାଷାରେ ବହୁ ପରିମାଣରେ ପଡ଼ିଛି । ସାନ୍ତାଳିମାନେ ଓଡ଼ିଆ ଭାଷାରୁ ଅନେକ ଶବ୍ଦ ଗ୍ରହଣ କରିଅଛନ୍ତି । ଓଡ଼ିଆ ଭାଷାରେ ଅନେକ ଶବ୍ଦ ଯାହାର ମୌଳିକ ଧାତୁ ସଂସ୍କୃତ ବା ଅନ୍ୟାନ୍ୟ ଭାଷାରେ ମିଳେ ନାହିଁ; ତନ୍ମଧ୍ୟରୁ ଅନେକ ଶବ୍ଦ ସାଓଁତାଳୀ ଭାଷାରେ ରହିଛି । ଅନ୍ୟାନ୍ୟ ଆଦିବାସୀ ଭାଷାରେ ଯେତେ ଓଡ଼ିଆ ଶବ୍ଦ ଦେଖାଯାଏ ନାହିଁ ତନ୍ମଧ୍ୟରେ ଅନେକ ଶବ୍ଦ ସାନ୍ତାଳୀ ଭାଷାରେ ରହିଥିବାର ଦେଖାଯାଏ । ଓଡ଼ିଆ ଭାଷା ଅନେକାଂଶରେ ସାନ୍ତାଳୀ ଭାଷାରୁ ଶବ୍ଦ ଗ୍ରହଣ କରିଥିବା ଓ ଓଡ଼ିଆ ସାନ୍ତାଳୀକୁ ପ୍ରଭାବିତ କରିଥିବା ସାନ୍ତାଳୀ ଭାଷା ଆଲୋଚନାରେ ସ୍ପଷ୍ଟଭାବରେ ପ୍ରତୀୟମାନ ହୁଏ । ସାନ୍ତାଳୀ ଓ ଓଡ଼ିଆ ସମରେ କେତେକ ଶବ୍ଦର ଉଦାହରଣ ଦିଆଗଲା ।

ଅଡ଼ (ଢୋରୁ ରହିବା ନିମିତ୍ତ ଘେରା) – ଅଡ଼ା, ଅଡ଼ାଅଡ଼ (ଶତ୍ରୁତା) – ଅଡ଼ାଅଡ଼, ଅଦଭୁତ [ଶତ୍ରୁତା] – ଅଦଭୁତ, ଅଗରା (ଧାନବିଶେଷ) – ଅଗରା, ଅଟ୍ଟ – ଅଟ୍ଟା, ଅକାବକାଓ – ଅକାବକା, ଆଖଡ଼ା – ଆଖଡ଼ା, ଅଲଘା – ଅଲଘ୍ନ, ବତା – ବଚା, ଅଣ୍ଡିଆ, ଅଣ୍ଡିରା, ଅଲ୍ – ଅଓଲ, ଅର୍ – ଅଡ଼ବା [ବାଙ୍କିବା] ଅର – ଅକ (ଚକର ଅର), ଅରମୁ – ଅରମା, ଅରଣା – ଅରଣା [ବଣୁଆ], ଅସ୍‌ନଆ – ଅସନା, ଅସରଙ୍ଗି – ଅସରପି, ଅସକେତ୍ – ଅସକତ (ଅଳସୁଆ ଲାଗିବା); ଅସୁର (ପେଟୁ) – ଅସୁର, ଅନ – ଅଟେଇ, ଗୁଳ – ଗୁଳ, ଅଣ୍ଡକୁରା – ଆଣ୍ଡୁକୁଡ଼ା; ଅଉଳକାଉଳ – ଆଉଳକାଉଳ; ବଡ଼୍‌ଡ଼େଇ – ବଡ଼େଇ- ବାଜୁ [ଅଳଙ୍କାର] – ବାଜୁ, ବନ୍ଧା – ବନ୍ଧି; ବାଓର (ବାଙ୍ଗରା) – ବାଉର – [ଜାତି], ବାର – ବାର (ଘର ବାର), ବରସି – ବଡ଼ଶୀ, ମରା – ମଡ଼ା [ମୁର୍ଦ୍ଦାର], ବସ୍‌ନ—ବାସନ, ବତର (ଠିକ ସମୟ)— ବତର, ବାଟି – ବାଟି (ପାତ୍ର), ବଟକରା – ବଟକରା, ବଉରାଓ – ବଉରେଇବା, ବଟୁ (ଗ୍ଲେଟଥାଳ) – ବଟୁଆ, ବେଠିବେଗାର – ବେଠି ବେଗାର, ବେକେ ବେକେ – ବକ ବକ, ବେଲ – ବେଲ, ଭଲ – ଭଲ, ଭଣ୍ଡୁର (ଅଜାମି) – ଭଣ୍ଡୁର, ଭଉ – ଭଉ, ଖୁଣ୍ଟି – ଖୁଣ୍ଟି, ବାଉଁଟିଆ – ବାଉଟିଆ (ହରିଣ), ଭେଡ଼ – ଭେଡ଼ା, ଭିଲ (ମୁଣ୍ଡାଏ

ଗୁଡ଼ ଭେଲି (ଗୁଡ଼), ଭଟ୍ (କାନ୍ଥ) – ଭଟା (ମାଟି), ଭେଗଡ଼ୋ (ମୋଟା) - ବଗଡ଼ା (ଗୁଉଳ), ଭେକୋକୋଟୋ – ଭଜକଟ (ଅଖାଡ଼ୁଆ), ଗୋଲମାଲ, ଭେସ—ଭୁକିବା, ପୋଟ – ପେଟ, ଭେସେଣ୍ଡୋନ୍— (ମଇଳା, ଅପନା – ଭୁଷୁଣ୍ଡା, ଭୁଆ – ଭୁଆଁ [ବୁଲିବା], ଭୁମ୍ଭି ଘିମିର, ଭୁସ (ହଠାତ୍) ଭୁସ୍‌ଭୁସ୍, ବୁଟେଲ ଭୋଟା, ବଲ୍‌ବଲାଉ [ଉପୁଖତ ହେବା] ବଳବଳେଇବା, ବଣ୍ଡ ବଣ୍ଡା, ବୋଡ଼—ବୋଦା, ବୁଦ— ବୁଦା ଡୁଙ୍ଗି ଡୁଙ୍ଗା, ଗୁଲ – ଗୁଲ, ଗୁଉଳ - ଗୁଉଳ, ଚପ—ଚମଡ଼ା —ଛମୁଣ୍ଡିଆ, ଚର ଚର୍—ଚର୍ ଚର, ଛେଗ୍ରେର (ଅବାଧ) ଗ୍ରେଚଡ଼ା, ଚେମେନ୍ (ନେଉଳ)—ଚେମଣି, ଚେମଡ଼, ଚକମକ, ଝକମକ, ଚକମକ —ଚକ୍‌ମକ୍, ଛପର (କୁଡ଼ିଆ)—ଛପର, ଛଟିପଟାଓ—ଛଟପଟ ହେବା, ଚିଟ୍‌କାଉ—ଛିଟକାଇବା, ଚୁଣ୍ଡୀ (ଝିଅ) - ଚଣ୍ଡୀ, ବଭ—ବଭା (ବାଉଁଶ ଫାଳ), ଚିର (ଅଯୁ)—ଚିର୍‌ଚିରେଇବା, ଚିତ୍ତବନ୍ (ଚିତ୍ତସାପ) – ଚିତ୍ତସାପ ଚିତୋଲ୍ ଚିତଳ (ମାଛ), ଚଟ୍ – ଚଟ (ଶୀଘ୍ର), ଚୂଆ (ଝରଣା) – ଚୂଆ [ଗ୍ରେଟପୋଖରୀ], ଚୂହ୍ଲା – ଚୂହ୍ଲା, ଚୂନ (ଗ୍ରେଟ) ଚୂନ, ଚୂର— ଚୂଡ଼, ଚୂରନ୍ – ଚିରୁଗୁଣୀ, ଚୂଟିଆ (ମୂଷା) – ଚୂଟିଅ; ଚୂଟକ (ଗ୍ରେଟଖଣ୍ଡ) – ଚୂଟକ; ଡହଲ – ଡାହାଳ କୁକୁର; ଡାହାଲ ସେଟା – ଡାହାଳ ହେଟା, ଡହପ୍ ଡହପ୍—ଡପ୍ ଡପ୍, ଡାନ—ଡାକବା, ଡଲ୍—ଡାଲ୍, ଡାର୍—ଡାଳ, ଦାରେ (ଗଛ)—ଦାରୁ, ପୁସି (ବଲେଈ)—ପୁସି, ଜଗରନାଥ ( ଏକପ୍ରକାର ଧାନ ) ଜଗନ୍ନାଥ, ଚଉଁସ – ଚଉଁସ [ଅଳଙ୍କାର], ଧଡ୍ରା—ଧଡ଼ର; ଢକ୍—ଢକ୍‌କା; ଡଙ୍ଗ—ଡେଙ୍ଗା, ଢେଲ୍‌କ୍ – ଢେଲା, ଢେଙ୍କ (ଏକପ୍ରକାର ବଗ) – ଢେଙ୍କିଆବଗ, ଢେଙ୍କି— ଢିଙ୍କି, ଢିପ – ଢିପ, ଧିଟାଓ [କଜଆଟୋର]—ଧିଟ [ଗାଳ], ଢୋଲ —ଢୋଲ [ବାଜା], ଢୋଲେ [ମୋଟା]--ଢୋଲ, ଢୋଣ୍ଡ—ଧଣ୍ଡ [ସାପ] ଧୂଆଁରତ—ଧୂଆଁରଡ଼ଆ, ଢୂଲ (ଧାନରଖିବା ନମିତ୍ତ ବଡ଼ ପାତ୍ର) – ଢୋଳି, ଢୂଲକ – ଢୂଲକ (ବାଦ୍ୟଯନ୍ତ୍ର), ଡହୁ (ଗାଁ) – ଡହୁ, (ଗାଁ)—ଡିହ, ଢଙ୍ଗର, ଡଙ୍ଗ୍ର(ବଗୁର, ଦୁର୍ବଳ, ଅଳସୁଆ) – ଡଙ୍ଗର, ଢୋହର – ଦୋଅର, ବାଠି – ବାଠି [ଡାଠିଆ], ଉଭ – ଉବ, ଉବଡ଼, ବୋଜ – ବୋଝାପାର,

ଡୁଙ୍ଗି (ଗ୍ଲେଟଡଙ୍ଗା)—ଡଙ୍ଗା,: ଦୁର [ମାଛ]—ଡୋଡ଼; ଦୁରଆ—ଡୋରଆ [ଲୁଗା], ଗଡେଲ୍ [ଗୁଡ଼ାଏ] ଗୁଡ଼ାଏ, ଙେଣ୍ଡା—ଗଣ୍ଡ ଇତ୍ୟାଦି ।

ଏହାଛଡ଼ା ଦେଖିବାକୁ ମିଳେ ଯେ, ଆଦିବାସୀ ଭାଷାଗୁଡ଼ିକ ମଧ୍ୟରେ ବହୁ ସାଦୃଶ୍ୟ ରହିଛି । ଆମର ଓଡ଼ିଆ, ବଙ୍ଗଳା, ଆସାମୀ, ହିନ୍ଦୀ, ପଞ୍ଜାବୀ ପ୍ରଭୃତି ବିଭିନ୍ନ ଭାଷା ମଧ୍ୟରେ ଅନେକ ଶବ୍ଦ ସାଦୃଶ୍ୟ ଥିବା ପରି କନ୍ଧ, କୋହ୍ଲ, ହୋ, ମୁଣ୍ଡାରୀ ପ୍ରଭୃତି ଭାଷା ଭିତରେ ମଧ୍ୟ ଅନେକ ସାଦୃଶ୍ୟ ରହିଛି । ଆଦିବାସୀ ଭାଷାରେ ତୁଳନାତ୍ମକ ଭାଷା ବିଜ୍ଞାନ ଏପର୍ଯ୍ୟନ୍ତ ଭଲ ଭାବରେ ଠିକ୍ କରଯାଇନାହିଁ । ତଥାପି ଆଦିବାସୀ-ମାନଙ୍କର ଭାଷା ମଧ୍ୟରେ ବହୁ ସାଦୃଶ୍ୟ ପରିଲକ୍ଷିତ ହୁଏ । ଏଠାରେ ତହିଁର କେତେକ ଉଦାହରଣ ଦିଆଗଲା ।

| ମୁଣ୍ଡାରୀ | ଓରାଓଁ (କୁରୁଖ୍) |
|---|---|
| କୁଢ଼ (ଖୁଢ଼ି) | ଖୁରଆ (ସ୍ତ୍ରୀ) |
| ହଡ଼ା (ବଳଦ) | ଅଡ୍ଡୋ |
| ମଗା (ତଳ) | ମଘା (ମାଘିତଳ) |
| ଗୋଟା | ଗୋଟା (ପୂର୍ଣ୍ଣ) |

| ମୁଣ୍ଡାରୀ | ସାନ୍ତାଳୀ |
|---|---|
| ହିସି (୨୦) | ଇସି |
| ମୋଗ୍ଧ (ମୁହଁ) | ମୋଗ୍ଧ |
| ଆପୁ (ପିତା) | ଆପୁ |
| କୁଢ଼ (ଖୁଢ଼ି) | କୁର |
| ଓଣ୍ଡ (ଘର) | ଓଣ୍ଡ (ଘର) |
| ପୁସି | ପୁସି |
| ସେଟା (କୁକୁର) | ସେଟା |
| ସଣ୍ଡିଆ | ଅଣ୍ଡିଆ ହୋ ସଣ୍ଡିଆ |

ଏହିସବୁ ଭାଷାର ଆଲୋଚନାରେ ଜଣାପଡ଼େ ଯେ, ଏହି ଆଦିବାସୀ ଭାଷାର ସାମ୍ୟ, ଆସାମର ଖାସୀ ଭାଷା, ବ୍ରହ୍ମଦେଶର ମନ୍‌ଭାଷା ଓ ଆଣ୍ଡାମାନ, ନିକୋବରର ପ୍ରଭୃତି ଭାଷା ସହିତ ସାମ୍ୟ ରହିଛି । ଏପରି କି ନିଗ୍ରିଟୋମାନଙ୍କର ଭାଷାରେ ଯେଉଁ ବ-ଦୁ-ଡ଼ ଶବ୍ଦଟି ପକ୍ଷୀ ଅର୍ଥରେ ପ୍ରଚଳିତ, ସେହି ଶବ୍ଦଟି 'ବାଦୁଡ଼' ଭାବରେ ବଙ୍ଗଳା ତଥା ଓଡ଼ିଆ ଭାଷାରେ ମଧ୍ୟ ପ୍ରଚଳିତ ।

ପୁଣି ଦେଖାଯାଏ ଯେ ତେଲୁଗୁ, ତାମିଲ, କାନାଡ଼ୀ, ମାଲାୟାଲମ୍ ଓ ଟୁଲୁ ପ୍ରଭୃତି ଭାଷା ଉପରେ ଏହି ଆଦିବାସୀ ଭାଷାର ବହୁତ ପ୍ରଭାବ ପଡ଼ିଛି ।

ଆଗରୁ କୁହାଯାଇଛି ଯେ, ଆମ ସଂସ୍କୃତି କହିଲେ ହିଁ ସେହି ପ୍ରାଚୀନର ଆଦିବାସୀ ସଂସ୍କୃତିକୁ ପ୍ରଧାନ ଭାବରେ ବୁଝାଏ । ଆମ ସଂସ୍କୃତିର ମୂଳଦୁଆ ବା ଭିତ୍ତିଭୂମି ବହୁ ଅଂଶରେ ସେହି ଆଦିବାସୀ ସଭ୍ୟତା । ଆମ ଦେଶର ନାମ 'କଳିଙ୍ଗ' ପଛରେ ସେହି କୁଲ, କୁଇ ବା କନ୍ଧ ସଭ୍ୟତାର ପ୍ରଚ୍ଛନ୍ନ ପ୍ରଭାବ ରହିଛି । କୁଇ ଭାଷାରେ ବୃଷ ସମ୍ବନ୍ଧୀୟ 'ବଳଦ' ଅର୍ଥରେ 'କୋଡିଙ୍ଗ' ଶବ୍ଦ ପ୍ରଚଳିତ ଥିବାର ଆଜି ମଧ୍ୟ ଜଣାଯାଇଥାଏ ।

କୋଡଗ, କୋରଗ, କୋଳ, କୁଳ, କୁରୁବ ଓ କୁଇ ପ୍ରଭୃତି ଶବ୍ଦ ସେହି କୁଳିଙ୍ଗ, କୁଳିନ୍ଦ ବା କଳିଙ୍ଗ ଶବ୍ଦ ସହିତ ସଂପୃକ୍ତ । କଳିଙ୍ଗ ଶବ୍ଦକୁ ଯେଉଁମାନେ ସାଂସ୍କୃତିକ ଶବ୍ଦ ଗୁଚ୍ଛରେ ପକାଇଥାନ୍ତି ଓ ନୂତନ ଅର୍ଥ ପ୍ରତିପାଦନ କରିଥାନ୍ତି, ସେମାନେ ମୌଳିକ ଆଦିବାସୀ ଭାଷାର ମହତ୍ତ୍ୱକୁ ଭୁଲିଯାଇଥାନ୍ତି ।

ଆଗରୁ କୁହାଯାଇଛି ଯେ, ଯେଉଁ କନ୍ଧମାନେ ପାର୍ବତ୍ୟ ଭୂମିରେ ବାସ କରନ୍ତି, ସେମାନଙ୍କୁ ମାଳିଆ କୋଇଙ୍ଗ ଓ ସମତଳ ଅଞ୍ଚଳରେ ବାସ କରୁଥିବା କନ୍ଧମାନେ ସାସୀ କୋଇଙ୍ଗ ଭାବରେ ପରିଚିତ । ଯେ କୌଣସି କନ୍ଧ ମଧ୍ୟ କୁଇଙ୍ଗ ଭାବରେ ପରିଚିତ । 'ଙ୍ଗ' କନ୍ଧ ଭାଷାରେ ବହୁବଚନାନ୍ତ ପ୍ରତ୍ୟୟ । କନ୍ଧ ଭାଷାରେ ମାରଙ୍ଗ

(ଗଛସମୂହ), ଗୋଗୋଡ଼୍ଙ୍ଗ (କୁକୁଡ଼ାସମୂହ), କୋଡଙ୍ଗ (ବଳଦସମୂହ), ଖଡଙ୍ଗ (ଟେଳାସବୁ) ପ୍ରଭୃତି ଶବ୍ଦରେ 'ଙ୍ଗ' ବହୁବଚନ ପ୍ରତ୍ୟୟ ପ୍ରଚଳିତ । ମନେହୋଇଥାଏ ଯେ, 'କଳଙ୍ଗ' ଶବ୍ଦ ସେହି କୁକଙ୍ଗ ଶବ୍ଦରୁ ଆସିଅଛି ।

ଶବର ଭାଷାର ଆଲୋଚନାରେ ମଧ୍ୟ ଆମେ ଦେଖିଛୁ ଯେ, 'ଓର', 'ଓର୍‌ବୋ' ପ୍ରଭୃତି ଶବ୍ଦ ଚଷା, କୃଷି, ହଳ ପୁଣି ଭୂମି ଅର୍ଥରେ ବ୍ୟବହୃତ । ଆମର 'ଓଡ଼ଚଷା', 'ଓଡ଼ରୁଖ', 'ଓଡ଼ଶା', 'ଓଡ଼ବିଷ', 'ଓଡ୍ର', 'ଉଡ୍ର', 'ଓଡ଼ିଆ' ପ୍ରଭୃତି ଶବ୍ଦ ସେହି ପ୍ରାଚୀନର ଆଦିବାସୀ ଶବରମାନଙ୍କୁ ବୁଝାଇଥାଏ । ଓଡ଼ିଶାର ଜଗନ୍ନାଥ ସଂସ୍କୃତି ମୂଳରେ ସେହି ଓଡ଼ିଆ ସଂସ୍କୃତି ବା ଶବର ସଂସ୍କୃତି ରହିଅଛି ।

ମନୁଙ୍କର ଧର୍ମଶାସ୍ତ୍ରରେ ଓଡ୍ରମାନେ ଏକ ସ୍ୱତନ୍ତ୍ର ଜାତି ଭାବରେ ପରିଚିତ । ରାମାୟଣ, ମହାଭାରତ ଓ ବିଭିନ୍ନ ପୁରାଣରେ 'ଓଡ୍ର' ଜାତି ଓ ଦେଶ ଭାବରେ ମଧ୍ୟ ଖ୍ୟାତିଲାଭ କରିଛି । ଭରତ ନାଟ୍ୟଶାସ୍ତ୍ରରେ 'ଓଡ୍ର' ବିଭାଷା ନାମରେ ବା ଅନାର୍ଯ୍ୟ ଭାଷା ଭାବରେ ପରିଚିତ । ପୁଣି ମାର୍କଣ୍ଡେୟଙ୍କର ପ୍ରାକୃତସର୍ବସ୍ୱ ଗ୍ରନ୍ଥରେ ଔଡ୍ରୀ ଅପଭ୍ରଂଶରେ ଶବର ଭାଷାର ପ୍ରଭାବ ପଡ଼ିଛି ବୋଲି ସେ କହିଅଛନ୍ତି । ପୁରୁଷୋତ୍ତମଦେବଙ୍କର ପ୍ରାକୃତାନୁଶାସନ ନାମକ ପ୍ରାକୃତ ବ୍ୟାକରଣରେ ଔଡ୍ରୀ ଅପଭ୍ରଂଶର ସୂଚନା ଦିଆଯାଇଛି ।

ମାନ୍ଦ୍ରାଜ ପ୍ରଦେଶରେ 'ଓଡଆ' ବା 'ଓଡ୍ରେ' ନାମରେ ସ୍ୱତନ୍ତ୍ର ଭାବରେ ଦଳେ ଲୋକ ଆଜପର୍ଯ୍ୟନ୍ତ ମଧ୍ୟ ବାସ କରୁଅଛନ୍ତି । ଏହାଛଡ଼ା ଗଞ୍ଜାମରେ 'କାଳଞ୍ଜି' ନାମରେ ମଧ୍ୟ ଆଜକାଲି କେତେକ ବାସ କରୁଛନ୍ତି । ଏମାନେ ପ୍ରାୟ ସେହି ପ୍ରାଚୀନ 'ଓଡ୍ର' ଓ 'କଳଙ୍ଗ' ଜାତିର ଅବଶେଷ । ଏମାନଙ୍କର ସଭ୍ୟତା ଓ ସଂସ୍କୃତିକୁ ବିଶ୍ଳେଷଣ କରିବା ଦୂରେଥାଉ, ଏହି ଶବ୍ଦର ବିଶ୍ଳେଷଣରେ ଜଣାଯାଇଥାଏ ଯେ ଏମାନଙ୍କର ମୌଳିକ ସଂସ୍କୃତି ସେହି ଆଦିବାସୀ ସଂସ୍କୃତି ।

ପ୍ରାଚୀନ୍ ତାମିଲ୍ ଭାଷାରେ 'ଓର୍' ବୋଇଲେ 'ଏକ' ବା ଥରକୁ ବୁଝାଏ । ଆମର ଓଡ଼ିଆ ଭାଷାରେ ଏହି ଥରେ ଭୃଷକୁଁ ମଧ୍ୟ ଅଜ କୁହାଯାଏ 'ଓଡ଼େ ବା ଓରେଭୃଷ' । ଭୃଷ ସମ୍ବନ୍ଧୀୟ ଏହି 'ଓର' ଶବ୍ଦଟି ବହୁ ପ୍ରାଚୀନ ଶବର ଭାଷାରୁ ତାମିଲକୁ ଯାଇଛି । ମାଲୟାଲମ୍ ଭାଷାରେ ତାହା ଓରୁ, ଓର, କାନାଡ଼ୀ ଭାଷାରେ 'ଓର୍' ଓ ଟୁଲୁ ଭାଷାରେ ମଧ୍ୟ ସେହି ଓର୍'ଭାବରେ ବ୍ୟବହୃତ । ତେଲଗୁ ଭାଷାରେ 'ଉରୁ' ଅର୍ଥ ହଳ କରିବା ଓ ହଳ କରିପାରିବା ଅର୍ଥରେ 'ଉରୁତୁ' ଶବ୍ଦ ବ୍ୟବହୃତ ହୋଇଥାଏ । ତାମିଲ ଭାଷାରେ କୃଷୀକୁ 'ଉରବେର' ମଧ୍ୟ କୁହାଯାଇ-ଥାଏ । ସମ୍ଭବତଃ ସେହି ଶବ୍ଦରୁ 'ଉର୍' ଗ୍ରାମ ବା ଦେଶ ଅର୍ଥରେ ତାମିଲ ଭାଷାରେ ଶବ୍ଦଟି ବ୍ୟବହୃତ ହୋଇଅଛି ।

କୁରୁଖ୍ ଭାଷା ବା ଓରାଓଁ ଭାଷାରେ 'ଉର' ଅର୍ଥ କୃଷୀ । ଶବର ଭାଷାରେ 'ଓରେମାରେନ୍' ଅର୍ଥ ମଧ୍ୟ ସେହି କୃଷୀ ।

ଏହି 'ଓଡ଼' ବା 'ଓର୍' ଶବ୍ଦଟି 'ଓଡ୍ର' ଭାବରେ ସଂସ୍କୃତ ରୂପ ଧାରଣ କରିଛି । ମନୁଙ୍କ ଦରେ 'ଓଡ୍ର'ମାନେ କ୍ରମେ ଆର୍ଯ୍ୟ ସଂସ୍କୃତିର ପ୍ରଭାବରେ ଆସିଯାଇ ଅଛନ୍ତି । ତଥାପି ସେମାନେ ଅନାର୍ଯ୍ୟ ଓ ସେମାନ-ଙ୍କର ଭାଷା ବିଭାଷା ଭାବରେ କଥିତ । ପଞ୍ଜାବୀ ଭାଷାରେ 'ଓଡ଼' ଶବ୍ଦର ଅର୍ଥ ହେଉଛି ଘର ତୋଳିବା ଜାତି । ସିନ୍ଧି ଭାଷାରେ 'ଓଡ୍ର' ସେହି ମାଟିଘର ତୋଳାଳୀ ଅର୍ଥରେ ଓ ଗୁଜରାଟୀ ଭାଷାରେ 'ଓଡ୍ର' ମଧ୍ୟ ସେହି ମାଟି ତୋଳାଳୀ ଓ ମାଟିଘର ତୋଳାଳୀ ।

ଏହି ଓଡ୍ରମାନେ ଯେ ପ୍ରାଚୀନରେ ବହୁ ଉନ୍ନତ ଥିଲେ, ମାଟିକାମ ବିଶେଷ ଭାବରେ ଗୃହବାସ ଓ ମାଟି କାମରେ ଦକ୍ଷତା ଅର୍ଜନ କରି-ଥିଲେ ତାହା ଏହି ତୁଳନାତ୍ମକ ଆଦିବାସୀ, ଦ୍ରାବିଡ଼ ଓ ଆର୍ଯ୍ୟ ଭାଷା-

ସମୂହର ବର୍ଣ୍ଣନରୁ ଜଣା ପଡ଼ିଥାଏ । ମୂଳ ଶବ୍ଦଟି 'ସୈନ୍ଧ ଶବର ଭାଷାର ଶବ୍ଦ 'ଓର' ସହିତ ଯେ ସଂପୃକ୍ତ, ତାହା ସହଜରେ ଜଣା ପଡ଼ୁଥାଏ । ତେଣୁ ଓଡ଼ୁଆ ସଭ୍ୟତାର ବର୍ଣ୍ଣନରେ 'ଓଡ଼ିଆ' ଶବ୍ଦ ମୂଳରେ ଯେ ଶବର ବା ଆଦିବାସୀ ସଭ୍ୟତାର ସ୍ପଷ୍ଟ ପ୍ରକାଶ ରହିଅଛି—ତାହା କହିବା ବାହୁଲ୍ୟ ହେବ ।



# ଆଦିବାସୀ ଓ ଆଦିମତା

**ରାଜକିଶୋର ପାଢ଼ୀ**

ମାନବ ପ୍ରକୃତି କେତେଗୁଡ଼ିଏ ପ୍ରବୃତ୍ତିର ସମାହାର । ଏହି ପ୍ରବୃତ୍ତିଗୁଡ଼ିକର ବିକାଶ, ନିୟନ୍ତ୍ରଣ ଓ ପ୍ରକାଶ ବ୍ୟକ୍ତିର ଚରିତ୍ର ଓ ବ୍ୟକ୍ତିତ୍ୱକୁ ନିର୍ଦ୍ଦିଷ୍ଟ ରୂପଦିଏ । ତେଣୁ ପ୍ରକୃତିର ଶିଶୁ ପ୍ରବୃତ୍ତିର ସ୍ତନନ୍ଧୟ । ଏହା ଆଦିମ, ସ୍ୱାଭାବିକ, ସ୍ୱୟଂପ୍ରକାଶ ଓ ସୃଜନଶୀଳ ।

ଏହି ପ୍ରବୃତ୍ତିଗୁଡିକର ପ୍ରକାଶରେ ଯେଉଁ ସ୍ୱାଭାବିକ ଆଦିମତା ରହିଛି ତାହା ଆଦିବାସୀର ପ୍ରକୃତି ଅଧ୍ୟୟନ ଓ ଅନୁଶୀଳନରେ ଲକ୍ଷଣୀୟ । ସଭ୍ୟତାର ସକଳ ଶୋଭାମୟ, କୃତ୍ରିମ ଛଦ୍ମବେଶ ପାଖେ ପାଖେ କେଉଁ ଏକ ପାର୍ବତ୍ୟ ଝରଣାର ନିଃସଂକୋଚ ଝର୍ଝର ନିନାଦ ଭଳି ଆଦିମାନବର ଅନ୍ତରାତ୍ମା ଏବେ ବି ବହୁ ବେଷ୍ଟିତ ଓ ପରିବେଶରେ ପ୍ରାକୃତିକ ରହିଛି । ଏହା ବିସ୍ମୟକର ହେଲେ ବି ସତ୍ୟ ଯେ ପ୍ରକୃତି ସହ ନିରବଚ୍ଛିନ୍ନ ସଂଗ୍ରାମ ଭିତରେ ଶିକ୍ଷା, ସଂସ୍କୃତି, ବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ ବହୁ ପରିବର୍ତ୍ତନ ସଂଘଟିତ ହୋଇଥିଲାବେଳେ ମଣିଷ ପ୍ରକୃତିର କୌଣସି ଉଲ୍ଲେଖଯୋଗ୍ୟ ବିବର୍ତ୍ତନ ଘଟିନାହିଁ ।

ତଥାପି ଅନ୍ୟମାନେ ଆଦିମ ଓ ଆମେ ସଭ୍ୟ ନାଗରିକ । ଆଦ୍ୟ ଅଧିବାସ କରିଥିବା ହେତୁ ଆଦିବାସୀ ନାମଟି ଯଦି କେବଳ ଗୃହୀତ ହେଉଥାଆନ୍ତା ତେବେ ଆମ ସମସ୍ତଙ୍କ ଭିତରେ ଆଜି ଏତେ ବ୍ୟବଧାନ ରହିପାରି ନ ଥାନ୍ତା । କିନ୍ତୁ 'ଆଦିମ ଅଧିବାସୀ' ସହିତ ବହୁ କ୍ଷେତ୍ରରେ ଅନ୍ୟମାନେ ଏକ ମନସ୍ତାତ୍ତ୍ୱିକ ପ୍ରତିହିଂସାରୁ ମାନବିକ ଅନୁନ୍ନତ

(ଅର୍ଥନୈତିକ ନୁହେଁ)କୁ ସଂପୃକ୍ତ କରିଥାଆନ୍ତି । ଏହାହିଁ ପାରସ୍ପରିକ ସଂପ୍ରୀତି ଓ ବିଶ୍ୱାସବୋଧ ପ୍ରତି ପ୍ରତିକୂଳ ବାତାବରଣ ସୃଷ୍ଟିରେ ସହାୟକ ।

ଖାଲି ଧାରଣା ରଖିବାକୁ ନୁହେଁ, ଆବଶ୍ୟକସ୍ଥଳେ ପ୍ରୟୋଗ କରିବାକୁ ଆମକୁ ଜାଣି ରଖିବାକୁ ହେବ ଯେ ଆମେ ସମସ୍ତେ (ଆଦିବାସୀ ଓ ଅଣଆଦିବାସୀ) ମାନବିକ ମୂଲ୍ୟବୋଧ ନେଇ ସମାନ ଓ ସମତଳ । ଯେଉଁ କ୍ଷେତ୍ରରେ ଆମେ ନିଜକୁ ରୁଚିସମ୍ପନ୍ନ, ମାର୍ଜିତ, ଶିଷ୍ଟ, ଭଦ୍ରୋଚିତ, ଋଦ୍ଧିରବନ୍ତ ଓ ଉତ୍କୃଷ୍ଟ ବୋଲି ଭାବନ୍ତି ସେ ସବୁକୁ ଗଭୀର ଅନୁଧ୍ୟାନ କଲେ ଆମର ଆଦିମତା ଆଦିବାସୀର ଆଦିମତାସହ କିପରି ଅଭିନ୍ନ ଓ ଅଭେଦ ସହଜରେ ବୁଝିହୁଏ । ସେହି ଆଦିମତା ମାନବ ପ୍ରକୃତିର ଆଦିମତା; ତେଣୁ ସାର୍ବଜନୀନ । ଏତିକବେଳେ ଭାବିବାକୁ ହୁଏ ଆମର ସମସ୍ତ ସଂସ୍କାର ବିକାରର ସୁଦୃଶ୍ୟ ସଂସ୍କରଣ ନୁହେଁ ତ ? ଦୃଷ୍ଟାନ୍ତ ଲାଗି ଗୋଟିଏ ଦୁଇଟି କଥାର ଉଲ୍ଲେଖ କରାଯାଇ ପାରେ ।

ଶ୍ରେଣୀରେ ଜଣେ ଗୋଟାଏ ହସକଥା ପଢ଼ିବାରୁ ସମସ୍ତେ ହସି ଉଠିଲେ । କିନ୍ତୁ ଜଣେ ଆଦିବାସୀ ଛାତ୍ର ଅସ୍ୱାଭାବିକଭାବେ (ନା ସ୍ୱାଭାବିକ ଭାବେ) ଜୋର୍‌ରେ ହସିଲା । ନବାଗତ ଶିକ୍ଷକ ଜଣକ ସେ ପିଲାଟିର ଏପରି ହସ ଶୁଣି ତାକୁ ତିରସ୍କାର କଲେ । ସ୍ମିତ ହସହିଁ ଶିଷ୍ଟଜନର ହସ । ଘର ଫଟାଇ ହସିବା ନିହାତି ଗ୍ରାମ୍ୟ, ଆଦିମ ଓ ନଗ୍ନଭାବର ଦ୍ୟୋତକ । ଏହା ପୁଣି ଏକ ସଂସ୍କାର ! ହସିବା ଏକ ସ୍ୱତଃସ୍ଫୂର୍ତ୍ତ କ୍ରିୟା । ତାକୁ ପୁଣି ନିୟନ୍ତ୍ରିତ କରିବାରେ କି ସ୍ୱାଭାବିକତା ଓ ନିସର୍ଗତା ଅଛି ? ହୃଦୟର ପ୍ରକାଶରେ ଭଦ୍ରଜନର ମାର୍କା ପୁଣି କଣ ? ପିଲାଟିର "ଏହି ହସ ମଧ୍ୟରେ ଯେଉଁ ହୃଦୟୋଲ୍ଲାସକାରୀ ଆନନ୍ଦ ପ୍ରଚ୍ଛନ୍ନ ଭାବରେ ଅଛିଅଛି" ତାର ଆବେଗକୁ ରୁଦ୍ଧ କରିବାର ଆବଶ୍ୟକତା କଣ ?

ସେହିପରି କେଉଁ ଆଦିବାସୀ ରମଣୀର ପ୍ରାୟ ଉଲଗ୍ନାବସ୍ଥାରେ ଅସଭ୍ୟତାର ବା ଅଶ୍ଳୀଳତାର ଲକ୍ଷଣ ବା କ'ଣ ଅଛି ? ଆମ ପ୍ରେକ୍ଷାଳୟ-

ମାନଙ୍କରେ ପ୍ରଦର୍ଶିତ ଶବ୍ଦ ସମୂହରେ, କ୍ଳବର ନୃତ୍ୟଗୀତରେ, ଖାନାପିଆର କକ୍ଷରେ, ବେଶପୋଷାକ ନେଇ ସୂକ୍ଷ୍ମ ବିଚାରରେ, କଳା ଓ ସାହିତ୍ୟରେ, ଏପରିକି ଷ୍ଟ୍ରେଟ୍ ଓ ବସ୍‌ରେ ଯାଉଥିବେଳେ, ମେଳା ମହୋତ୍ସବରେ ସହରର ଗଳି କନ୍ଦିରେ ଓ ପ୍ରଚାର ମାଧ୍ୟମରେ ଆମେ ଯେଉଁ ଉତ୍କଟ ଅଶ୍ଳୀଳ ରୁଚିଜ୍ଞାନର ପରିଚୟ ଦେଉଅଛନ୍ତି ତାକୁ ଅଘ୍ରାଣ କରିବାରେ ଆମର ବିବେକ ରୂପକ ମେଣ୍ଢା ଶିଶୁଟି ଶାଣିତ ଯୁକ୍ତିର ଶ୍ୱାପଦ ଶ୍ୱାନଟି ବେଶ୍ ଶାସନ କରି ପାରୁଛି । କିନ୍ତୁ ସେ ଆଦିବାସୀ ରମଣୀର ଆଦିମ ଉଲଗ୍ନତା ଭିତରେ ଏକ ଅମୀମାଂସୀ ମନର ମ୍ଳାୟୁବିକ ବିକାର ନାହିଁ । ନିସର୍ଗ ପ୍ରକୃତିର ନିରାଭରଣ ନଗ୍ନ ରୂପର ସେ ଏକ ଅବିଭକ୍ତ ଅଂଶ । ସେଠି ପ୍ରକୃତି ସହ ପ୍ରବୃତ୍ତିର ଏକାକାର ଏକାତ୍ମଭାବ ନିଜକୁ ସ୍ୱତନ୍ତ୍ର ଭାବେ ଓ ସମ୍ଭ୍ରାନ୍ତଭାବେ ଦେଖାଇବାକୁ ଯାଇ ରୁଚି ବିକୃତିର ଅବକାଶ ଏଠି ନାହିଁ ।

ଅଭିବ୍ୟକ୍ତିରେ ଅଲୌକିକତା (informality)ର ସ୍ପଷ୍ଟ ମୁଦ୍ରାଙ୍କନ ରହିଲେ ଅନେକଙ୍କୁ ତାହା ରୁକ୍ଷ ଓ ଅରୁଚିକର ବୋଧହୁଏ । ବରଂ ଠିକଏ ମିଛ କୁହ, କିନ୍ତୁ ଗେହ୍ଲେଇହୋଇ, ତୋଷାମଦ ମରାମତି କରି, ବୁଲେଇ ବଙ୍କେଇ ବିଷକୁମ୍ଭକୁ ପୟୋମୁଖରେ ପ୍ରକାଶ କର । ଅନ୍ତଃ ପ୍ରକୃତି ସହ ବହିଃପ୍ରକୃତିର ସାମୀପ୍ୟ ବା ସମନ୍ୱୟ ଓ ସମୀକରଣର ଅଭାବବୋଧ ମଣିଷକୁ ଏକ ଦୁର୍ବୋଧ୍ୟ ଶ୍ଳେଷରେ ପରିଣତ କରିଛି । ନିରାଭରଣ ବକ୍ତବ୍ୟ ଆମକୁ ଆଦିମ ବୋଧହୁଏ ସେଥିପାଇଁ । ଅବଶ୍ୟ ସେ ଆଦିମତା ଆମ ସମସ୍ତଙ୍କର ଥିଲା, ଅନ୍ୟ ଭାବରେ ଅଛି ଓ ରହିବ, ଏହା ଅନସ୍ୱୀକାର୍ଯ୍ୟ ।

ଏଇଥିପାଇଁ ଆଦିବାସୀର ଆଦିମତା ତାକୁ ତାର ସ୍ୱତନ୍ତ୍ର ଆଇନ୍ ଗଢ଼ିବାକୁ ପ୍ରେରଣା ଦିଏ । ତା ଅନ୍ତର ସରକାର, ସମ୍ବିଧାନ ବା ବିଚାରାଳୟକୁ ଯେତେ ଗ୍ରହଣ କରି ନ ପାରିଛି ତାଠାରୁ ଖୁବ୍ ଅଧିକ ଗ୍ରହଣ କରିଛି ପ୍ରକୃତିର ନିୟମକୁ । ମଣିଷ ଉପରେ ମଣିଷର ଅତ୍ୟାଚାର, ଶୋଷଣ, ଅବିଚାର ଓ ଅବିଶ୍ୱାସ ଦେଖି ସେ ତେଣୁ ବିପ୍ଳବ କରିଛି

କାହାର ମୁଣ୍ଡ କାଟି ବା ଧନୁଷ୍ଠାର ଧର । ତାର ଜୀବନ ଦର୍ଶନରେ ଯେଉଁ ପ୍ରାଗୈତିହାସିକ ସରଳ ବିଶ୍ୱାସ, ନିଷ୍କପଟ ବ୍ୟବହାର,' ଅପ୍ରଚ୍ଛନ୍ନ ଅନ୍ତରିକତା ଓ ନିରଙ୍କୁଶ ସ୍ୱାଧୀନ ଚେତନା ମିଶିଥିଲା ତାର ବ୍ୟତିକ୍ରମ ତା ପକ୍ଷରେ ଅସହ୍ୟ ହେବା ସ୍ୱାଭାବିକ'! ବେଳେ ବେଳେ ଦେଖାଦେଇଛି ଆଦିବାସୀ—ମାନଙ୍କର ସରକାରୀ ସାହାଯ୍ୟ ବା ସଦାଚାର ପ୍ରତି ଅବଜ୍ଞା ବା ଉପେକ୍ଷାର ଭାବ । କାରଣ ତାର ଆଦିମ ପ୍ରକୃତି ତାକୁ ଶିକ୍ଷା ଦେଇଛି ଏ ସାହାଯ୍ୟ ତାର ମୁକ୍ତ, ସ୍ୱାଭିମାନୀ ଓ ସ୍ୱାବଲମ୍ବନଶୀଳ ବନ୍ୟ ହସ୍ତୀର ଜୀବନ ପ୍ରତି ଏକ ଅଙ୍କୁଶ ସ୍ୱରୂପ ।

ସେ ସମାଜବାଦ ବା ସାମ୍ୟବାଦ ଜାଣେନା । ତଥାପି ତାର କଥାରେ, କାର୍ଯ୍ୟରେ, ଆନନ୍ଦ ଉତ୍ସବରେ, ପରିଧାନରେ ଓ ସାମାଜିକ ଆଚାରରେ ଏକ ସମାଜବାଦୀ ଅଭିମୁଖ୍ୟ ସ୍ପଷ୍ଟ ଥିବା ଜଣାପଡ଼େ । ସମାଜବାଦ ଲାଗି ଏକ ଅନୁକୂଳ ମନସ୍ତାତ୍ତ୍ୱିକ ପ୍ରସ୍ତୁତିର ଭିତ୍ତି ଆମ ଭିତରେ ଅନେକଙ୍କର ନ ଥାଇପାରେ; ମାତ୍ର ଆଦିବାସୀର ସେ ଭିତ୍ତି ସୁଦୃଢ଼ । ସେ ମିଳିମିଶି ଜୀବନ ସଂଗ୍ରାମ କରିବାକୁ ଚାହେଁ ଓ ତାର ସୁଫଳକୁ ସମସ୍ତଙ୍କ ସହ ମିଶି ଉପଭୋଗ କରିବାକୁ ସେ ବିନା ଦ୍ୱିଧାରେ ସ୍ୱୀକୃତ ହୁଏ । ତାର ସ୍ୱାଧୀନ ଚେତନା ସାମ୍ୟ ଭିତ୍ତିକ ସମାଜବାଦର ପ୍ରତିକୂଳ ନୁହେଁ ।

ସଂଯମ, ଶୃଙ୍ଖଳା ଓ ଶିଷ୍ଟାଚାରର ପ୍ରଭୂତିର ପ୍ରଚାର କରି ଅନ୍ତରାଳରେ ଯଥେଚ୍ଛାଚାରକୁ ପ୍ରଶ୍ରୟ ଦେଲେ ସମାଜର ମେରୁଦଣ୍ଡ ଦୁର୍ବଳ ହୁଏ । ପ୍ରବୃତ୍ତିର ସ୍ୱାଭାବିକ ଓ ଶୋଭନୀୟ ବିକାଶ ଏହାକୁ ଦୃଢ଼ କରେ । ଅତି ସଭ୍ୟ ବା ସୁସଭ୍ୟମାନଙ୍କ ଭିତରେ ମଦ୍ୟପାନ ସମାଜ ଶରୀରରେ ଯେଉଁ ଉପଦଂଶର ଜୀବାଣୁ ସବୁ ଛାଡ଼ନ୍ତି ଆଦିବାସୀମାନଙ୍କ ଭିତରେ ପ୍ରଚଳିତ ମଦ୍ୟପାନରେ ସେପରି ଆନୁସଙ୍ଗିକ ଉପଦଂଶର ଭୟ ନ ଥାଏ । ମାତ୍ର ମଦ୍ୟପ ସୁସଭ୍ୟ ହେଉ କି ଅସଭ୍ୟ ହେଉ ସମାନ ଆଦିମତାର ବଶବର୍ତ୍ତୀ । କ୍ଷୁଧା, ତୃଷା, ଦୟା, ସମ୍ବେଦନା, ବିଷାଦ, ହର୍ଷ, ଶୃଙ୍ଗାର, ବାତ୍ସଲ୍ୟ, ଯୁଦ୍ଧ, ଜୟ, ହିଂସା, ଈର୍ଷା ଇତ୍ୟାଦି ବହୁ ଆଦିମ ବିଭାବର ବିଚାରବେଳେ ନିଖିଳ ମାନବ ସୃଷ୍ଟି ଏକ ଓ ଅଭିନ୍ନ । ସବୁରି ହୃଦୟରେ ଏ ସବୁ ହିଂସ୍ର

ଘାତପ୍ରତିଘାତର ତରଙ୍ଗ ଅହରହ ତୋଳୁଛନ୍ତି । ସମସ୍ତଙ୍କ ପ୍ରାଣରେ ସମସ୍ତ ମାନବିକ ଆଦିମ ବୃତ୍ତିର ସ୍ପନ୍ଦନ, ଜାତି, ବର୍ଣ୍ଣ, ଧର୍ମ, ଗୋଷ୍ଠୀ, ବାସସ୍ଥାନ ଓ ସଭ୍ୟତା ନିରପେକ୍ଷ । ପ୍ରତ୍ୟେକ ମନୁଷ୍ୟ ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ଅଧିକାରୀ ହେଲେ ବି ପ୍ରବୃତ୍ତିର ଆଦିମତା ସମସ୍ତଙ୍କୁ ସଦୃଶ (Uniform) କରିଛି ।

ସେହି ମହାନ୍ ଆଦିମତାର ଅଖଣ୍ଡ ସ୍ରୋତ ମଣିଷ ଅନ୍ତରକୁ ଚିର ପ୍ଲାବିତ କରି ରଖିଛି । ଆମର ସମସ୍ତ ସଫଳତା ତାର କଲ୍ୟାଣକର ବିକାଶ ଉପରେ ନିର୍ଭର କରୁଛି । ସେହି କଲ୍ୟାଣକାରୀ ଆଦିମତାର ଜୟ ହେଉ ।

"ସର୍ବେ ଭବନ୍ତୁ ସୁଖୀନଃ
ସର୍ବେ ସନ୍ତୁ ନିରାମୟା ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା' କଶ୍ଚିତ ଦୁଃଖ ଭାଗ୍ ଭବେତ୍ ।"



# ଓଡ଼ିଶାର ଆଦିବାସୀ ସଂସ୍କୃତି

ଉପେନ୍ଦ୍ର ମିଶ୍ର

ଆଦିବାସୀର ପ୍ରକୃତ ଅର୍ଥ ଆଦିମ ଅଧିବାସୀ । ତେଣୁ ସଭ୍ୟତାର ଆଦିମତା ମୂଳରେ ନିଶ୍ଚିତ୍ତ ଏହି ଆଦିବାସୀମାନେ ହିଁ ଜନ୍ମାନତ, କେବଳ ଆମ ଦେଶ ଭାରତରେ ଯେ ଆଦିବାସୀ ରହିଛନ୍ତି ତାହା ନୁହେଁ; ଅଷ୍ଟ୍ରେଲିଆ, ଆଫ୍ରିକା, ଆମେରିକା ପ୍ରଭୃତି ଦେଶରେ ମଧ୍ୟ ଆଦିବାସୀ ବାସ କରନ୍ତି, ଆଦିବାସୀମାନଙ୍କର ପ୍ରଥମ ବାସସ୍ଥାନ କେଉଁ ଦେଶ, ତାହା ସଠିକ ଭାବରେ କହି ହେବନାହିଁ । ଏ ସମ୍ପର୍କରେ ଭିନ୍ନ ଭିନ୍ନ ପଣ୍ଡିତଙ୍କର ଭିନ୍ନ ଭିନ୍ନ ମତାମତ ରହିଛି, କେତେକଙ୍କ ମତରେ ଜାଭା ବା ଯବଦ୍ୱୀପ, ମଧ୍ୟ ଏସିଆର ଦକ୍ଷିଣାଞ୍ଚଳରେ କୌଣସି ଏକ ସ୍ଥାନ ବା ଅଷ୍ଟ୍ରେଲିଆ, ଆଫ୍ରିକା ବା ଭାରତର କୌଣସି ଏକ ସ୍ଥାନ ସେମାନଙ୍କ ପୀଠ ସ୍ଥଳୀ ଥିଲା । ଏହିଠାରୁ ହିଁ ଆଦିବାସୀମାନେ ଅନ୍ୟାନ୍ୟ ଦେଶ ପର୍ଯ୍ୟନ୍ତ ସ୍ଥାନାନ୍ତରିତ ହୋଇଛନ୍ତି ।

ଭୌଗୋଳିକମାନେ ମତ ଦିଅନ୍ତି ଯେ, ଆଦିମତମ ସମୟରେ ଦକ୍ଷିଣ ଆଫ୍ରିକା ଓ ଭାରତଠାରୁ ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ଏକ ବିରାଟ ଭୂଖଣ୍ଡ ରହିଥିଲା । ଏହାର ନାମ ଥିଲା ଗଣ୍ଡୱାନାଲାଣ୍ଡ । ସେହି ଭୂଖଣ୍ଡରେ ବାସ କରୁଥିଲେ ଆଦିମ ଅଧିବାସୀମାନେ ।

ଫଳରେ ଗୋଟିଏ ଅଞ୍ଚଳରୁ ସେମାନେ ଅନ୍ୟ ଅଞ୍ଚଳକୁ ଗତିକରି ଯିବା ସହଜ ଓ ସୁବିଧାଜନକ ହୋଇପାରିଥିଲା । ଏପରି ଏକ ପରିକଳ୍ପନାର ମୁଖ୍ୟ ଅର୍ଥ ହେଲା ଯେ ଏପର୍ଯ୍ୟନ୍ତ ସିଂହଳ, ଜାଭା, ବାଲି,

ବର୍ଣ୍ଣିଓ, ସୁମାତ୍ରା, ସେଲ୍‌ବସ୍, ଅଷ୍ଟ୍ରେଲିଆ, ଦକ୍ଷିଣ ଆଫ୍ରିକା ଆଦି ଅଞ୍ଚଳରେ ସମସ୍ୱଭାବ, ସମ୍ପର୍ଣ୍ଣ ଆଦିବାସୀମାନେ ଏପର୍ଯ୍ୟନ୍ତ ରହିଛନ୍ତି । ଭୌଗୋଳିକମାନେ ମଧ୍ୟ ଏହାର ସପକ୍ଷରେ ମତ ଦିଅନ୍ତି । ସେମାନଙ୍କ ମତରେ ପରବର୍ତ୍ତୀ ସମୟରେ ଭୂଗର୍ଭର ଆବର୍ତ୍ତନ ଫଳରେ ଏହି ଗଣ୍ଡ୍‌-ଓ୍ୱାନାଲ୍ୟାଣ୍ଡର ବିସ୍ତୃତ ଭୂଖଣ୍ଡ ସମୁଦ୍ର ମଧ୍ୟରେ ମଗ୍ନ ହୋଇ ବିରାଟ ସମୁଦ୍ରରେ ପରିଣତ ହୋଇଯାଇଛି ।

ଅନ୍ୟ କେତେକ ସମାଲୋଚକ ମତ ଦିଅନ୍ତି ଯେ—ଆଦିବାସୀମାନେ କୋହ୍ଲ ବା ମୁଣ୍ଡାରୀ ଗୋଷ୍ଠୀର । ମୁଣ୍ଡା ଜାତିର ଲୋକେ ପ୍ରଥମେ ଭାରତରୁ ଅଷ୍ଟ୍ରେଲିଆ ଆଡ଼େ ଯାଇଥିଲେ । ତେବେ ଯେ ଯାହାହେଉ, ଛୋଟ ନାଗପୁର ଅଞ୍ଚଳରେ ଏହି ମୁଣ୍ଡାରୀ ଜାତିର ବହୁ ଲୋକ ଏବେ ମଧ୍ୟ ବାସ କରନ୍ତି ।

ଅନ୍ୟ କେତେଜଣ ସମାଲୋଚକ କହନ୍ତି ଯେ—ଆଦିବାସୀମାନଙ୍କ ପୂର୍ବରୁ ଭାରତରେ ଆଉ ଏକ ଗୋଷ୍ଠୀର ଆଦିମତା ରହିଥିଲା । ସେମାନେ ହେଲେ ନିଗ୍ରୋ ଜାତିର । ଆମ ଦେଶରେ ଯେଉଁ ଅଶ୍ୱତ୍ଥ ଗଛର ପୂଜା ଏବେ ମଧ୍ୟ ଲକ୍ଷ୍ୟ କରାଯାଉଛି—ତାହା ନିଗ୍ରୋ ଜାତିର ପ୍ରଭାବରୁ ସମ୍ଭବ ହୋଇ ପାରିଛି । ନିଗ୍ରୋଙ୍କ ପରେ ଆମ ଦେଶକୁ ଯେଉଁ ଜାତିର ଲୋକେ ଆସିଲେ ସେମାନେ ହେଲେ ନିଷାଦ । ନିଷାଦମାନଙ୍କ ସମ୍ପର୍କରେ ଆମ ଭାରତୀୟ ପୁରାଣ ଶାସ୍ତ୍ରରେ ସଂଖ୍ୟାଧିକ ବର୍ଣ୍ଣନା ରହିଛି । ଏମାନଙ୍କ ପରେ ଭାରତକୁ ଆସିଲେ ୟୁରୋପୀୟମାନେ । କେତେକ ସମାଲୋଚକଙ୍କ ମତରେ ଏମାନେ ଆମ୍ବ୍ରିଦ୍ରାବିଡ଼ମାନଙ୍କର ପୂର୍ବବଂଶୀୟ । ତେବେ ଯେ ଯାହା-ହେଉ ଆଦିବାସୀ ସଂସ୍କୃତିର ଆଦିମତା ବିଚାର କଲେ ଜଣାଯାଏ ଯେ, ଏମାନେ ଅକ୍ଷତ ଏବଂ ସ୍ୱୟଂସମ୍ପୂର୍ଣ୍ଣ ପରମ୍ପରାର ବ୍ୟକ୍ତି । ତେଣୁ ଏମାନଙ୍କ ସାମାଜିକ ଚଳଣି ଧର୍ମଧାରଣା, ପ୍ରକୃତି, ସ୍ୱରୂପ, ଆଚାର ବିଚାର ସମ୍ପର୍କରେ ଆଲୋଚନା କଲେ ଅନେକ ଗୁପ୍ତ ତଥ୍ୟ ପ୍ରକାଶ ପାଇପାରେ । ପ୍ରକୃତ ପକ୍ଷରେ ଅନୁମିତ ହୁଏ ଯେ— ଏହିମାନଙ୍କ ସଂସ୍କୃତି ହିଁ ଭାରତର ଅସଲ ମୌଳିକ ସଂସ୍କୃତି ବୋଲି କୁହା-ଯାଇପାରେ ।

ଓଡ଼ିଶାରେ ଯେତେ ଜାତିର ଆଦିବାସୀ ଦେଖାଯାଆନ୍ତି ସେମାନଙ୍କ ମଧ୍ୟରେ ଶବର (ଶଉରା), କନ୍ଧ, କୋନ୍ଧ, ଭୂୟାଁ, ବାଥଡ଼ି, ଖଡ଼ିଆ, ସାନ୍ତାଳ, ମୁଣ୍ଡା, କୋୟା ଇତ୍ୟାଦି ପ୍ରଧାନ। ଏହିସବୁ ଆଦିବାସୀମାନଙ୍କ ମଧ୍ୟରେ ଶବର ବା ଶଉରା ସମ୍ପ୍ରଦାୟ ଅତୀବ ପୁରାତନ ବୋଲି ଐତିହାସିକମାନେ ସ୍ଥିର କରିଛନ୍ତି। ବର୍ତ୍ତମାନ ଗଞ୍ଜାମ ଓ କୋରାପୁଟ ଅଞ୍ଚଳରେ ବାସ କରୁଥିବା ଶଉରାମାନେ ଏମାନଙ୍କର ବଂଶଧର। ଏ ସଂପର୍କରେ G.V. Rammurtyଙ୍କ ଦ୍ୱାରା ରଚିତ ଶଉରା ଇଂରାଜୀ ଡିକ୍‌ସିନାରୀର ମୁଖବନ୍ଧ ଦ୍ରଷ୍ଟବ୍ୟ।

ସମାଲୋଚକମାନେ କହନ୍ତି ଯେ, ଭାରତର ଆଦିମ ଇତିହାସ ଏହି ଶଉରାମାନଙ୍କର ଇତିହାସ। ଟାଇଗ୍ରିସ, ୟୁଫ୍ରେଟିସଠାରୁ ଦକ୍ଷିଣ ଭାରତରେ ଥିବା ସୁଦୂର ସୁମେରୀୟ ଗୋଷ୍ଠୀ ଓ ସିଂହଳର ବ୍ୟାଧ ଗୋଷ୍ଠୀଙ୍କ ସହିତ ଶଉରାମାନଙ୍କର ସଂପର୍କ ଥିଲା। ଗ୍ରୀକ୍ ପଣ୍ଡିତ ପ୍ଲିନି ଏହାଙ୍କୁ 'ସୁଆରି', ଟଲେମି ସାହେବ ଏହି ଜାତିକୁ ଶବରାଇ ଜାତି ବୋଲି ଅଭିହିତ କରିଛନ୍ତି। ଆମର ଆଦିମ ଗ୍ରନ୍ଥ ଋଗ୍‌ବେଦରେ ଏ ଜାତିର ନାମ ଶବର ବୋଲି ରହିଛି। ଏମିତିକି ଐତରେୟ ବ୍ରାହ୍ମଣରେ ଶବର ଜାତିର ନାମୋଲ୍ଲେଖ ଦେଖିବାକୁ ମିଳେ ଓ ରାମାୟଣର ଗୁହ ଶବର, ମହାଭାରତର ଜରାଶବର କଥା ନ ଜାଣେ କିଏ?

ତେଣୁ ଓଡ଼ିଶାର ଆଦିବାସୀ ବା ଶବର ଜାତି ଏ ଜାତିର ପ୍ରାଥମିକ ଇତିହାସର ଉତ୍ସ କହିଲେ ଅତ୍ୟୁକ୍ତି ହେବନାହିଁ।

ଏମାନେ ପଶୁ-ପକ୍ଷୀ ଶୀକାର କରି ଜୀବିକା ଅର୍ଜନ କରୁଥିଲେ। ଏମାନଙ୍କର ଜୀବନ ଥିଲା ସରଳ ଓ ନିରାଡ଼ମ୍ବର। ଦାରୁ ଦେବତାର ଲେଖକ ଡକ୍ଟର ବେଣୀମାଧବ ପାଢ଼ୀ ମତ ଦିଅନ୍ତି ଯେ—"ଏମାନେ ଝାଡ଼ ଅରଣ୍ୟରେ କାଷ୍ଠ ସଂଘର୍ଷରୁ ଜାତ ଅଗ୍ନି ଦେଖି ବିସ୍ମୟରେ ଅଭିଭୂତ ହୋଇ ପଡ଼ୁଥିଲେ ଓ ତାକୁ ଅଲୌକିକ ଶକ୍ତି ସଂପନ୍ନ ଦେବତାର କର୍ମ ବୋଲି ଭୟ କରୁଥିଲେ। ଏହି ବାଦଶୂନ୍ୟ ବାତାବରଣରେ ଜଙ୍ଗଲ ମଧ୍ୟସ୍ଥିତ ଦ୍ରୁମ ବିଶେଷକୁ ଏକ କଲ୍ୟାଣମୟ ଶକ୍ତି

ବୋଲି ଖାଡ ମିଶ୍ରିତ ଭକ୍ତଙ୍କର ଅନୁଥିଲେ । ଏହା ଗାବୋପାସନା ପୂର୍ବର ଦେବଧାରଣା ବୋଲି ପଣ୍ଡିତମାନେ ମତ ଦିଅନ୍ତି ।" Encyclyopaedia Britarica ପୁସ୍ତକରେ ଏ ମତକୁ ସ୍ୱୀକାର କରଯାଇଛି । ତେଣୁ ଏହି ହେଉଛି ବୃକ୍ଷ ଓ ଦାରୁ ପୂଜାର ପ୍ରାଥମିକ ପ୍ରୟାସ । ବୃକ୍ଷ ନିର୍ବିବାଦରେ ଅଗ୍ନି ଓ ଛାୟା ପ୍ରଦାନ କରୁଥିବା ହେତୁ ତାକୁ ଶବରମାନେ ଦିଅଁ ଭଳି ପୂଜା କରୁଥିଲେ ।

ଏହି ଦାରୁ ପୂଜକ ଶବର ସମ୍ପ୍ରଦାୟ ହିଁ ଆମ ଜଗନ୍ନାଥ ସଂସ୍କୃତର ମୂଳ ଆଧାର । ଦେବ ଦେବ ଜଗନ୍ନାଥ ଦାରୁରୁ ନିର୍ମିତ ବୋଲି ସମସ୍ତେ ଜାଣନ୍ତି । ତେଣୁ ଶବର ସମ୍ପ୍ରଦାୟର ମୌଳିକତାରେ ଆଉ ସନ୍ଦେହ ନାହିଁ ।

ଦାରୁ ଶବ୍ଦଟି ଗୋଟିଏ ଅର୍ବାଚୀନ ଶବ୍ଦ ନୁହେଁ । ଋଗ୍‌ବେଦରେ ଅଛି—

"ଆଦୋ ଯଦ୍ଦାରୁ ପ୍ଲବତେ
ସିନ୍ଧୋଃ ପାରେ ଅପୁରୁଷମ୍
ତଦାରଭସ୍ୱ ଦୁର୍ହଣୋ
ତେନ ଗଚ୍ଛ ପରଦରମ୍" (୨୪)

ସେହିପରି କପିଳ ସଂହିତାରେ ଅଛି—

କ୍ଷେତ୍ରଂ ନୀଳାଚଳଂ ପୁଣ୍ୟଂ ଦାରୁବ୍ରହ୍ମ ସ୍ୱରୂପିଣଃ

ସ୍କନ୍ଦ ପୁରାଣରେ ଏହି ଦାରୁ ମୂର୍ତ୍ତିର ବର୍ଣ୍ଣନାରେ ଲେଖାଅଛି ଯେ—

ଅହୋ ତବାୟୁଂ ଖଳୁ ଭାଗ୍ୟରାଶି—
ଯେନାବତୀର୍ଣ୍ଣୀଦ୍ ଭୁବ ଦାରୁ ମୂର୍ତ୍ତିଃ ।

ଶାରଳା ମହାଭାରତରେ ଏହି ଦାରୁ ମୂର୍ତ୍ତିର ବିଷୟ ମଧ୍ୟ ବର୍ଣ୍ଣିତ ହୋଇଅଛି । ଶବରୀ ଚନ୍ଦନବନ ଭିତରେ ବାପକୁ ଅନ୍ଧପୁଟୁଳି ବାନ୍ଧି ନେଇ

ଦାରୁବ୍ରହ୍ମଙ୍କୁ ଦେଖାଇବା ପରେ ସେ ଯାଇ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ଆଗରେ କହିଲ—

ଦାରୁବ୍ରହ୍ମ ମୂରତି ମୁଁ ଦେଖିଲି ବୋଲିବ
ଯମନିକ ବନେ ଏବେ ଚଳନ୍ତୁ ହେ ଦେବ ।

ତେଣୁ ଦାରୁବ୍ରହ୍ମର ଐତିହାସିକତା ସଂପର୍କରେ ସନ୍ଦେହ କରିବାର କାରଣ ନାହିଁ । ଅବଶ୍ୟ କେତେକ ପଣ୍ଡିତ ମତ ଦିଅନ୍ତି ଯେ—ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବୌଦ୍ଧ ମତାବାଦର ଦେବତା । କାରଣ ବୌଦ୍ଧ ଶାସ୍ତ୍ରରେ ଜଗନ୍ନାଥଙ୍କ ନାମୋଲ୍ଲେଖ ରହିଛି ଓ ଏପରି କି ଗୋଟିଏ ବୌଦ୍ଧମୂର୍ତ୍ତି ତଳେ ଜଗନ୍ନାଥ ବୋଲି ଲିଖିତ ହୋଇଅଛି ।

କିନ୍ତୁ ଗବେଷଣାରୁ ଜଣାଯାଏ ଯେ ଏହା ଠିକ୍ ନୁହେଁ । ଅପର ପକ୍ଷରେ ଜୈନ ଧର୍ମରେ ବରଂ ନାଥ ଶବ୍ଦର ଅଧିକ ପ୍ରଚଳନ ରହିଛି । ଜଗନ୍ନାଥ ବୌଦ୍ଧ ବା ଜୈନ ଦେବତା ନୁହନ୍ତି । ଆଦିବାସୀ ସଂସ୍କୃତିରୁ ସୃଷ୍ଟ ଓ ବ୍ରାହ୍ମଣ୍ୟ ଧର୍ମରେ ପରିପୂର୍ଣ୍ଣ ଦେବତା । ଏ ଦାରୁ କେବଳ ବୃକ୍ଷ ଉପାସନା ଓ ବୃକ୍ଷର ସମନ୍ୱିତ ଗୁଣରୁହିଁ ଜନ୍ମ ନେଇ ଦିଅଁ ରୂପେ ଆଜି ବଡ଼ଦେଉଳରେ ପୂଜିତ । ତେଣୁ ଜଗନ୍ନାଥ ଆଦିବାସୀ ତଥା ଶବର ଦେବତା ବୋଲି ଦୃଃଖିତ ହେବାରେ କୌଣସି ବାଧା ନାହିଁ ।

ଆଜି ମଧ୍ୟ ଓଡ଼ିଶାର ବଣ-ପାହାଡ଼ ଅଞ୍ଚଳରେ ବୃକ୍ଷ ଦେବତା ପୂଜିତ । ସିନ୍ଦୂର-ହଳଦୀ ବୋଳି ଆଦିବାସୀମାନେ ଏକତ୍ରିତ ହୋଇ ବୃକ୍ଷ ଦେବତାର ପୂଜା ସମ୍ପନ୍ନ କରି ଥାଆନ୍ତି । କେବଳ ଦାରୁ ନୁହେଁ··· ଆଦିବାସୀମାନେ ରଥକୁ ମଧ୍ୟ ପୂଜା କରୁଥିବାର ଦେଖାଯାଏ । ବସନ୍ତ ଉତ୍ସବ ସମୟରେ ଏମାନେ ଛୋଟ ଛୋଟ ରଥକରି ପୂଜା କରି ଥାଆନ୍ତି ।

ତେବେ ଯେ ଯାହାହେଉ—ରଥଯାତ୍ରା ମଧ୍ୟ ଜଗନ୍ନାଥ ମହା-ପ୍ରଭୁଙ୍କର ଶ୍ରେଷ୍ଠ ଯାତ୍ରା ବା ପର୍ବ । ଏ ପର୍ବ କେବଳ ଓଡ଼ିଶା ବା ଭାରତ

କାହିଁକି ସମଗ୍ର ପୃଥିବୀରେ ଅଦ୍ୱିତୀୟ କହିଲେ ଠିକ୍ ହେବ । ପୁରୀର ରଥଯାତ୍ରା ନଅଦିନ ହୋଇଥାଏ । ବଡ଼ଦେଉଳରୁ ବଳଭଦ୍ର, ଶୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନଙ୍କୁ ତିନି ରଥରେ ବସାଇ ଗୁଣ୍ଡିଚା ଘରକୁ ନେଇ ସେଠାରୁ ପୁଣି ଏକ ସପ୍ତାହ ପରେ ସେହି ରଥରେ ସେମାନଙ୍କୁ ଫେରାଇ ଅଣାଯାଏ । ଏହି ଯାତ୍ରା ହିଁ ମହାନ୍ ରଥଯାତ୍ରା ଭାବରେ କେଉଁ ଆଦିମ ଯୁଗରୁ ହୋଇଅଛି । ଗୁଣ୍ଡିଚା ମଣ୍ଡପ, ମହାବେଦୀ, ଯଜ୍ଞ ମଣ୍ଡପ, ଜନ୍ମସ୍ଥାନ, କନକପୁରୀ ଭାବରେ ମଧ୍ୟ କଥିତ । ଇନ୍ଦ୍ରଦ୍ୟୁମ୍ନ ରାଜା ଏଠାରେ ଅଶ୍ୱମେଧ ଯଜ୍ଞ କରିଥିଲେ ଲୋକ ପ୍ରବାଦ ରହିଛି ।

ଗୁଣ୍ଡିଚା ମଣ୍ଡପଂ ନାମ ଯାତ୍ରାହମ ଜନଂ ପୁର ।
ଅଶ୍ୱମେଧ ସହସ୍ରସ୍ୟ ମହାବେଦୀ ତଦାଭବତ୍ ।

ଏହି ଗୁଣ୍ଡିଚା ମଣ୍ଡପକୁ ତିନି ଠାକୁର ତିନୋଟି ରଥରେ ଆଗମନ କରିଥାଆନ୍ତି । ବଳଭଦ୍ରଙ୍କ ରଥର ନାମ ତାଳଧ୍ୱଜ, ଶୁଭଦ୍ରାଙ୍କ ରଥର ନାମ ଦେବଦଳନ ଓ ଜଗନ୍ନାଥଙ୍କ ରଥର ନାମ ନନ୍ଦିଘୋଷ, ରଥରେ ଠାକୁର ବିଜେ କରିଥିବା ସମୟରେ ହଜାର ହଜାର ନରନାରୀ ଏକତ୍ରିତ ହୋଇ ଜଗନ୍ନାଥ, ବଳଭଦ୍ର, ଶୁଭଦ୍ରାଙ୍କର ଏ ବିଜୟ ଯାତ୍ରା ଦର୍ଶନ କରିଥାଆନ୍ତି ।

ଦାରୁ ନିର୍ମିତ ଜଗନ୍ନାଥ ମୂର୍ତ୍ତି କାଳକ୍ରମେ ନଷ୍ଟ ହୋଇଯିବା ସ୍ୱାଭାବିକ୍ । ତେଣୁ ଜଗନ୍ନାଥଙ୍କ କ୍ରିୟା, କର୍ମ, ରୀତି ମଧ୍ୟରେ ନବକଳେବର ଏକ ଚମତ୍କାରପ୍ରଦ ଅନୁଷ୍ଠାନ । କିନ୍ତୁ ନବକଳେବର ସଂପର୍କରେ କୁହାପି ସବିଶେଷ ବିବରଣୀ ମିଳେନାହିଁ । କାରଣ ଏଇଟି ଠାକୁରଙ୍କର ଗୁପ୍ତ ଅନୁଷ୍ଠାନ ।

ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଯେଉଁବର୍ଷ ଦୁଇଟି ଆଷାଢ଼ ପଡ଼େ—ସେହିବର୍ଷ ନବକଳେବର ଉତ୍ସବ ଅନୁଷ୍ଠିତ ହୋଇଥାଏ ।

କାରଣ ଦୁଇଟି ଆଷାଢ଼ ନ ହେଲେ ନୂତନ ବିଗ୍ରହ ନିର୍ମାଣ ପାଇଁ ସମୟ ମିଳିବ ନାହିଁ ।

ନବକଳେବର ଦୁଇ ପ୍ରକାର । ପ୍ରଥମତଃ ନବକଳେବର ବା ବିଗ୍ରହ ପରିବର୍ତ୍ତନ ଓ ଶ୍ରୀଅଙ୍ଗପିଣ୍ଡ ।

ନବକଳେବର ହେବା ନିଶ୍ଚିତ ହେଲେ ଚୈତ୍ର ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଶୁଭଦିନ ମଧ୍ୟରେ ଶୁଭଦିନ ନିର୍ଘଣ୍ଟ କରାଯାଏ । ଦେଉଳ କରଣ ଦୈବଜ୍ଞ ଖୁଣ୍ଟିଆଙ୍କ ଏ ଦିନ ନିର୍ଦ୍ଧାରଣ କରନ୍ତି ।

ନବକଳେବର ପୁସ୍ତକର ଲେଖକ ଶ୍ରୀ ଅନିରୁଦ୍ଧ ଦାଶ ଆଇ. ଏ.ଏସ. କହନ୍ତି ଯେ—"ଦିନ ନିର୍ଦ୍ଧାରିତ ହେଲେ, ସେଦିନ ଜଗନ୍ନାଥ-ଙ୍କର ଶିରୋପା ଯାତ୍ରାବାସୀ ଦଳଙ୍କ ସଂଖ୍ୟା ଅନୁସାରେ ଗୃହଙ୍କ ରଖି ଯାଆନ୍ତି × × ସେତେବେଳେ କଳାହାଟ ଦ୍ୱାରରେ ଦାରୁଯାତ୍ରୀ ଦଇତାପତିମାନେ ଠିଆ ହୋଇଥାନ୍ତି । ଭିତରେ ଛ ମହାପାତ୍ର ଓ ଦେଉଳ କରଣଙ୍କ ଉପସ୍ଥିତିରେ ଚାରିକୋଡ଼ି ଅର୍ଥାତ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ନାମରେ ଦଇତାପତିମାନଙ୍କୁ ଶିର ଭାଗରେ ବାନ୍ଧି ଦିଅନ୍ତି । ଦଇତାପତିମାନେ କାକଟପୁର ମଙ୍ଗଳାଙ୍କ ନିକଟରେ ଧାରଣା ଦିଅନ୍ତି । ସେମାନଙ୍କ ମଧ୍ୟରୁ ବଡ଼ ଦଇତା-ମାନଙ୍କୁ ଦେବୀ ସ୍ୱପ୍ନାଦେଶରେ ଦାରୁମାନଙ୍କର ସ୍ଥାନ ବତାଇ ଦିଅନ୍ତି ।

ଏହିପରି ଯୁଗ ଯୁଗ ଧରି ଜଗନ୍ନାଥ ନବକଳେବର ପର୍ବ ପାଳିତ ହୋଇ ଆସୁଛି । ବଂଶ ପୀଢ଼ୀରେ ବିଜ୍ଞାନ ଉଚ୍ଚତର ଆସନରେ ଆସୀନ ହୋଇଛି । ଏପରିକି ସେହି ଏକଇ ରଥଯାତ୍ରା ଦିବସ ୧୬ତାରିଖ-ରେ ଆମେରିକା ଚନ୍ଦ୍ର ଅଭିମୁଖେ ମହାକାଶଯାନ ପଠାଇଛି । ତଥାପି ସେହି ପୁରାତନ ଦାରୁବ୍ରହ୍ମ ଜଗନ୍ନାଥ ଓଡ଼ିଶାର ମାଟି ପାଣିରେ ରହିଛନ୍ତି— ଜଗନ୍ନାଥ ହୋଇ । ଆଜି ମଧ୍ୟ ବୈଜ୍ଞାନିକମାନଙ୍କର କର୍ତ୍ତୃତ୍ୱ ଜଗନ୍ନାଥଙ୍କ ସେବା ପୂଜାରୁ ବାଦ୍ ଦିଅନାହିଁ । ସେମାନଙ୍କ ଇଷ୍ଟଦେବତା ଜଗନ୍ନାଥ

ସିନ୍ଧୁ ତୀରରେ ଅବତୀର୍ଣ୍ଣ ହୋଇଛନ୍ତି ପତିତପାବନ ହୋଇ ସମଗ୍ର ମାନବ ଜାତିର ଦୁଃଖ, ଦାରିଦ୍ର୍ୟ ଲୋପ କରିବା ଲାଗି ।
କବି ଠିକ୍ କହିଛନ୍ତି—

ଜଗନ୍ନାଥ ଯେ ଷୋଳ କଳା
ଚଉଦ କଳାଏ ନନ୍ଦ ବଳା ।

ବାସ୍ତବିକ୍ ଜଗନ୍ନାଥ ପୂର୍ଣ୍ଣ ବ୍ରହ୍ମ । ସେ ଅବତାରୀ, ଅବତାର ନୁହଁନ୍ତି । ତାଙ୍କର ସଂସ୍କୃତି ହିଁ ଆମ ଜାତୀୟ ସଂସ୍କୃତି । ତେଣୁ ଜଗନ୍ନାଥ ଯେପରି ଆମର ପୂଜ୍ୟ, ଶବର ବା ଆଦିବାସୀମାନେ ମଧ୍ୟ ସେହିପରି ଆମର ପୂଜ୍ୟ । ତାଙ୍କର ଇତିହାସ ହିଁ ଆମର ଇତିହାସ ।



# ନୃତତ୍ତ୍ୱ-ବିଜ୍ଞାନ ଓ ଆଦିବାସୀ ମଙ୍ଗଳ

କୁମାରୀ ରେଣୁକା ସରସ୍ୱତୀ, ଏମ୍. ଏସ୍. ସି.

ନୃତତ୍ତ୍ୱ-ବିଜ୍ଞାନର ଜନ୍ମ ଓ ଅନ୍ନପ୍ରାସନ୍ନ ଅନ୍ୟାନ୍ୟ ବିଜ୍ଞାନର ପଛରେ ହୋଇଥିଲେ ହେଁ ଏହା ବର୍ତ୍ତମାନ ଉତ୍ତୁଙ୍ଗ ଗୌରବମୟ ଆସନର ଅଧିନାଶ୍ର । ନୃତତ୍ତ୍ୱ-ବିଜ୍ଞାନ କ'ଣ ସେ ବିଷୟରେ ପ୍ରଥମେ ଦି'ପଦ ବୁଝାଇ କହିଦେବାର ଅଛି । ( Anthropology ) ( ଆନ୍ଥ୍ରୋପୋଲଜି )ର ଆକ୍ଷରିକ ଅର୍ଥ ହେଉଛି ନୃତତ୍ତ୍ୱ । ଏହି ନୃତତ୍ତ୍ୱ ବିଜ୍ଞାନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହେଉଛି ଅଭିନ୍ନ । ଏହି ବିଜ୍ଞାନ ଜନ୍ମଲାଭ କରିବା ପାଙ୍ଗେ ମାନେ ମୌଳିକତାର ଭିତ୍ତିଭୂମି ଉପରେ ଦଣ୍ଡାୟମାନ ହୋଇ ବିବର୍ତ୍ତନ ବାଦର ଜୟଗାନ କରି ଆସିଛୁ ।

ନୃତତ୍ତ୍ୱ ବିଜ୍ଞାନ ଦୁଇଭାଗରେ ବିଭକ୍ତ । ପ୍ରାକୃତିକ ନୃତତ୍ତ୍ୱ ଓ ସାମାଜିକ ନୃତତ୍ତ୍ୱ । ପ୍ରାକୃତିକ ନୃତତ୍ତ୍ୱ ପାଠ ଦ୍ୱାରା ମାନବ ସମାଜର ସଭ୍ୟତାର କ୍ରମପରିଣାମ ବିଷୟରେ ସମ୍ୟକ ଧାରଣା କରିହୁଏ । ମାନବର ଜନ୍ମ ଓ ପୃଥିବୀ-ପୃଷ୍ଠର ଅନ୍ୟାନ୍ୟ ଅବିସ୍ମରଣୀୟ ଐତିହାସିକ ଘଟଣାବଳୀ ସମ୍ପର୍କରେ ଅବଗତ ହେବାକୁ ହୁଏ । ବିଭିନ୍ନ ଜାତିର ସାଂସ୍କୃତିକ ମୂଲ୍ୟାଙ୍କନର ସ୍ପଷ୍ଟାଭାସ ଅନୁଭବରେ ଅନାୟାସରେ ଆଣି-ହୁଏ । ପ୍ରାକୃତିକ ନୃତତ୍ତ୍ୱ ଦ୍ୱାରାହିଁ ଏକକୋଷୀ ପ୍ରାଣୀ ଠାରୁ ବହୁ କୋଷୀ ବା କ୍ଷୁଦ୍ର ଆମୋଇବା ଠାରୁ ମାନବ ପର୍ଯ୍ୟନ୍ତ ତତ୍ତ୍ୱ ଓ ତଥ୍ୟ ବେଶ୍ ହୃଦୟଙ୍ଗମ କରିହୁଏ । ଏହି ପ୍ରାକୃତିକ ନୃତତ୍ତ୍ୱ ଅଧ୍ୟୟନ ପାଇଁ ପ୍ରତ୍ନତତ୍ତ୍ୱର ସାହାଯ୍ୟ ଦରକାର ପଡ଼େ ।

ସାମାଜିକ ନୃତତ୍ତ୍ୱ ଦ୍ୱାରା ମାନବ ସମାଜର ସାମାଜିକ ଚଳଣି, ଆନୁସଙ୍ଗିକ ଅବସ୍ଥା, ପାରିପାର୍ଶ୍ୱିକ ପରିସ୍ଥିତି, ବିଭିନ୍ନ ଉନ୍ନତିର ସୂଚନା

ସମ୍ବନ୍ଧରେ ସମ୍ୟକ ପରିଚୟ ଦିଲେ । ସାମାଜିକ ନୃତତ୍ତ୍ୱର ପ୍ରଥମ ପ୍ରଫେସର ହେଲେ- ମିଷ୍ଟର ଲିଭରପୁଲ ଓ ସାର୍ ଜେମ୍ସ୍ ମେଜର ଇତ୍ୟାଦି ପ୍ରାଜ୍ଞ ନୃତତ୍ତ୍ୱବିତ୍ ପଣ୍ଡିତଗଣ ।

ଏହିପରି କଲ୍ୟାଣକାରୀ ନୃତତ୍ତ୍ୱ ବର୍ତ୍ତମାନ ପୃଥିବୀର ଆଦିବାସୀ-ମାନଙ୍କର ସମସ୍ୟା ଦକ୍ଷିତ କେବଳ ପରୋକ୍ଷ ଭାବରେ ଜଡ଼ିତ ନୁହେଁ, ସେମାନଙ୍କର ଉନ୍ନତି ଓ ମଙ୍ଗଳ କରିବା ଉଦ୍ଦିଷ୍ଟ । କହିବା ବାହୁଲ୍ୟ ମାତ୍ର ଯେ ନୃତତ୍ତ୍ୱବିତ୍ମାନେ ଆଦିବାସୀମାନଙ୍କର ବହୁବିଧ ସମସ୍ୟା ସମ୍ପର୍କରେ ସ୍ୱାର୍ଥହୀନ, ସ୍ୱଚ୍ଛ, ଉଦାର ଦୃଷ୍ଟି ପ୍ରଦାନ କରିଥାନ୍ତି । ସେମାନଙ୍କର ଜୀବନ ଦର୍ଶନ ପୁଙ୍ଖାନୁପୁଙ୍ଖ ରୂପେ ଅଧ୍ୟୟନ କରିବାରେ ଗଭୀର ଭାବରେ ମନୋନିବେଶ କରିଥାନ୍ତି ।

ପ୍ରକୃତି କୋଳରେ ପରିପାଳିତ, ବାସ୍ତବତାର ପରିପ୍ରେକ୍ଷୀରେ ଜୀବନ ସଂଗ୍ରାମରେ ରତ, ଦୈବକୃତ ଓ ମନୁଷ୍ୟକୃତ ନାନାଦି ଦାରୁଣ ଦୁଃଖ, ଦୁର୍ବିପାକ, ଦୈନ୍ୟ ଜଞ୍ଜାଳରେ ଜର୍ଜରିତ, ଆଦିବାସୀମାନଙ୍କର ଅନ୍ତରର ଗଭୀରତମ ପ୍ରଦେଶର ଅଶ୍ରୁଳ ବାର୍ତ୍ତାକୁ କେବଳ ନୃତତ୍ତ୍ୱବିତ୍-ମାନେ ଅଧିକ ସହଜ ପ୍ରୟାସ କରି ବୁଝିବାକୁ ଚେଷ୍ଟା କରନ୍ତି । ଅନ୍ୟଥା ଅନ୍ୟମାନେ ଟାଳି ଅନେକ ସମୟରେ କୁମ୍ଭୀର କାନ୍ଦଣା କାନ୍ଦି ନିଜର କର୍ତ୍ତବ୍ୟ ସାଙ୍ଗ କରନ୍ତି ମାତ୍ର । ସେମାନଙ୍କର ଆଦିବାସୀ ମଙ୍ଗଳ ନିମିତ୍ତ ଆଦୌ ଆନ୍ତରିକତା ନ ଥାଏ ।

ଭାରତର ଅନ୍ୟାନ୍ୟ ଅଞ୍ଚଳ ପରି ଆମର ଜନ୍ମଭୂମି ଉତ୍କଳ ଉତ୍କଳର ବିଭିନ୍ନ ଜିଲ୍ଲା ଯଥା:—ଗଞ୍ଜାମ, କୋରାପୁଟ, ମୟୂରଭଞ୍ଜ, କେନ୍ଦୁଝର, କଳାହାଣ୍ଡି, ବଲାଙ୍ଗୀର, ସୁନ୍ଦରଗଡ଼, ଫୁଲବାଣୀ ପ୍ରଭୃତିରେ ଆଦିବାସୀମାନେ ବହୁ ସଂଖ୍ୟାରେ ରହିଛନ୍ତି । ଏମାନେ କନ୍ଧ, କୋହ୍ଲ, ସାଆନ୍ତାଳ, ଗଣ୍ଡା, ଜୁଆଙ୍ଗ, ପରଜା ପ୍ରଭୃତି ବିଭିନ୍ନ ନାମରେ ପରିଚିତ । ଓଡ଼ିଶାର ମୋଟ ଲୋକସଂଖ୍ୟା ପ୍ରାୟ ଏକ କୋଟି ୭୫ ଲକ୍ଷ । ସେଥି ମଧ୍ୟରୁ କେବଳ ଆଦିବାସୀ ହେଉଛନ୍ତି ମୋଟ ଲୋକସଂଖ୍ୟାର ୨୪ ଭାଗ ଅର୍ଥାତ୍ ୪୩ ଲକ୍ଷ । ଏମାନଙ୍କ ଭିତରୁ ଏବେ ବି ଅଧିକାଂଶ ଅସଭ୍ୟ

ଅବସ୍ଥାରେ ବଣ, ପାହାଡ଼ ଭିତରେ ରହି, କନ୍ଦ, କଳ ନାହିଁମା ସ୍ୱଚ୍ଛ ଝରଣାର ଜଳ ପିଇ, ଫଳ ମୂଳ ଖାଇ, ଶିକ୍ଷା, ସଭ୍ୟତାର ଦୂରରେ ରହିଛନ୍ତି ।

ସ୍ୱାଧୀନତା ପ୍ରାପ୍ତି ପରେ ପାଞ୍ଚ ଦେଡ଼ ଗୁଣରୁ ଊର୍ଦ୍ଧ୍ୱ ବିତିଗଲେ ମଧ ସେମାନଙ୍କ ନିକଟରେ ସ୍ୱାଧୀନତାର ବାର୍ତ୍ତା ପହଞ୍ଚ ପାରିନାହିଁ । ଓଡ଼ିଶାର ଲୋକସଂଖ୍ୟା ତୁଳନାରେ, ସମୁଦାୟ ଲୋକସଂଖ୍ୟାର ଶତକଡ଼ା ୨୨ ଭାଗ ସାକ୍ଷର ଥିବା ସ୍ଥଳେ ଆଦିବାସୀମାନଙ୍କର ସାକ୍ଷରତାର ହାର ଶତକଡ଼ା ୭ ମାତ୍ର ।

ଅବଶ୍ୟ ସେମାନଙ୍କର ସାକ୍ଷରତାର ହାର ବଢ଼ାଇବା ପାଇଁ ବିଭିନ୍ନ ଆଦିବାସୀ ଅଞ୍ଚଳମାନଙ୍କରେ ୨୦ଟି ଆଶ୍ରମ ହାଇସ୍କୁଲ ଓ ପ୍ରାୟ ଶତାଧିକ ମଧ ଇଂରାଜୀ ବିଦ୍ୟାଳୟ ଖୋଲିଯାଇଛି । ଆଦିବାସୀ ସନ୍ତାନ ସନ୍ତତିମାନଙ୍କୁ ମାଗଣାରେ ଅଧ୍ୟୟନ କରିବା ପାଇଁ ଗ୍ରାସାଚ୍ଛାଦନ ସହିତ ବହିପତ୍ର ଯୋଗାଇ ଦିଆଯାଉଛି । ସେମାନଙ୍କ ପାଇଁ ବୃତ୍ତି ମଧ ଖଞ୍ଜା ଯାଇଛି, ମାତ୍ର ଏହା ସମୁଦ୍ରକୁ ଶଙ୍ଖେ ପାଣି ପରି । ବୃତ୍ତି ବଣ୍ଟନରେ ଅନେକ ସମୟରେ ବିଭ୍ରାଟ ପରିଲକ୍ଷିତ ହେଉଛି । ନିରୀହ, ନିରହଂକାର ଆଦିବାସୀମାନେ ଅନେକ ସମୟରେ ରାଜନୈତିକ ଦୁରଭିସନ୍ଧର ଶୀକାର ହୋଇ ସର୍ବସ୍ୱାନ୍ତ ହେଉଛନ୍ତି । ଆଦିବାସୀ ଗ୍ରାମମଙ୍ଗଳ ବିଭାଗ ତୀକ୍ଷ୍ଣ ଦୃଷ୍ଟି ନ ଦେଲେ ଆଦିବାସୀମାନେ ଯେଉଁ ତିମିରେ ଥିଲେ ସେହି ତିମିରେ ହିଁ ରହିଯିବେ ।

ଆଦିବାସୀମାନଙ୍କର ମଙ୍ଗଳ ସାଧନ କରିବାକୁ ହେଲେ ପ୍ରଥମେ ସେମାନଙ୍କର ସାକ୍ଷରତାର ହାର ବଢ଼ାଇବାକୁ ପଡ଼ିବ । ଦ୍ୱିତୀୟରେ ସେମାନଙ୍କ ଭିତରେ ଥିବା କୁସଂସ୍କାରର ବଦ୍ଧମୂଳ ଧାରଣାକୁ ଦୂର କରିବାକୁ ପଡ଼ିବ । ତୃତୀୟରେ ଆଦିବାସୀ ବହୁଳ ଅଞ୍ଚଳରେ ଚାଲିଥିବା ମଦ୍ୟ-ବ୍ୟବସାୟକୁ ବନ୍ଦ କରିବାକୁ ପଡ଼ିବ । ଏହା କରାଯାଇ ପାରିଲେ ଆଦିବାସୀମାନଙ୍କର ଅପବ୍ୟୟର ମାତ୍ରା ରୋକାଯାଇ ପାରିବ । ଏହାର ଅର୍ଥ ଯେପରି କେହି ନ ବୁଝନ୍ତୁ ଯେ ମୁଁ ଆଦିବାସୀମାନଙ୍କୁ ମଦ୍ୟ ପାନରୁ

ନିବୃତ୍ତ କରିବାକୁ ପଡ଼ୁଛି । ଆଦିବାସୀ ସଂସ୍କୃତିର ପ୍ରାଣ କେନ୍ଦ୍ର ହେଉଛି ଢାଣ୍ଡିଆ । ଦେବ ଅର୍ଚ୍ଚନା ଠାରୁ ଧାଙ୍ଗିଡ଼ୀ ନାଚ ପର୍ଯ୍ୟନ୍ତ—ଏହାର ଆବଶ୍ୟକତା ରହିଛି । ମୋର କହିବାର କଥା ଯେ ଆଦିବାସୀମାନେ ମହୁଲ ପ୍ରଭୃତି ପଦାର୍ଥରୁ ତିଆରି କରୁଥିବା ମଦ୍ୟ ଖାଇ ପାରନ୍ତି, ମାତ୍ର ବାହାରର କୁଚର୍ଚ୍ଚା ମଦ୍ୟ ବ୍ୟବସାୟୀମାନଙ୍କର ବ୍ୟବସାୟ ବନ୍ଦ କରି ଦେବାକୁ ହେବ ।

ଚତୁର୍ଥରେ ସାହୁକାରମାନଙ୍କର ନିଷ୍ପେଷଣରୁ ସେମାନଙ୍କୁ ରକ୍ଷା କରିବାକୁ ହେବ । ସେମାନେ ଆଦିବାସୀମାନଙ୍କର ସର୍ବସ୍ୱ ଲୁଣ୍ଠନ କରୁଛନ୍ତି । ସେମାନେ ବ୍ୟାଘ୍ର ଠାରୁ ହିଂସ୍ର ଓ ଭଲ୍ଲୁକ ଠାରୁ ଭୟଙ୍କର ।

ପଞ୍ଚମରେ ଗୌନ୍ତିଆମାନଙ୍କର ଉପଦ୍ରବରୁ ସେମାନଙ୍କୁ ରକ୍ଷା କରିବାକୁ ହେବ । ଜଣେ ଜଣେ ଲୋକ ଶହ ଶହ ଏକର ଜମି ରଖି ହେଣ୍ଡି ମାରୁଛନ୍ତି ଅଥଚ ଆଦିବାସୀମାନଙ୍କୁ ସୂଚ୍ୟଗ୍ର ପରିମାଣ ଭୂମି ମିଳୁନାହିଁ ।

ଷଷ୍ଠରେ ସେମାନଙ୍କର ହୃଦୟ ପରିବର୍ତ୍ତନ କରି ସେମାନଙ୍କ ମନ ଭିତରୁ ହୀନମନ୍ୟତା—(Infesionty Complex)କୁ ଦୂର କରିବାକୁ ପଡ଼ିବ ।

ସପ୍ତମରେ ଖ୍ରୀଷ୍ଟିଆନ ପାଦ୍ରୀମାନଙ୍କର ପ୍ରାଦୁର୍ଭାବରୁ ସେମାନଙ୍କୁ ବି ରକ୍ଷା କରିବାକୁ ପଡ଼ିବ ।

ଉପରୋକ୍ତ ବିଷୟମାନଙ୍କ ପ୍ରତି ଦୃଷ୍ଟି ଦିଆ ନ ଗଲେ ସରକାର ଆଦିବାସୀମାନଙ୍କ ମଙ୍ଗଳ ନିମନ୍ତେ ଯେତେ ଆଇନ, ଯୋଜନା କଲେ ବି ତାହା ସିବେଇ ସାଆନ୍ତର ଦେଉଳ ତୋଳିଲା ଭଳି ହେବ ।

———

# ଆମର ଆଦିବାସୀ ଗୀତ

ଶ୍ରୀ ହାଡ଼ିବନ୍ଧୁ ମିର୍ଦ୍ଧା

ଓଡ଼ିଶାର ଅନେକ ଆଦିବାସୀମାନଙ୍କ ମଧ୍ୟରେ ମିର୍ଦ୍ଧା ଜାତି ଅନ୍ୟତମ । ଏମାନେ କିଶାନ, କୋଡ଼ା ବା କୁଡ଼ା ସମଜାତୀୟ । ରୀତି, ନୀତି, ଚାଲିଚଳନ ଯାନ ଜନକତା ପରମ୍ପରା ସବୁ ସମାନ । ଅବଶ୍ୟ ଦେଶକାଳ ପାତ୍ର ଦେଖି କିଛି କିଛି ପରିବର୍ତ୍ତନ ହେଲଣି । ଏମାନଙ୍କର ଭାଷାର ସ୍ୱାତନ୍ତ୍ର୍ୟ ରହିଛି । କେଉଁ ଆଦିମ କାଳରୁ କାହାର ଶ୍ରୀମୁଖରୁ ଏହି ଭାଷାର ଉତ୍ପତ୍ତି ଏବଂ ଗୀତ, ସଂସ୍କୃତିର ସୃଷ୍ଟି ହୋଇଛି ଯେ କହିବା ମୁସ୍କିଲ । ହଜାର ହଜାର ବର୍ଷ, ଯୁଗ ନେଇ ଏ ଯାଏ ରହି ଆସିଛି । କିନ୍ତୁ ଏହି ଆଦି ମଣିଷ ବନବାସୀ ଗିରିଜନଙ୍କର ଗୀତ, ଭାଷା ମଧ୍ୟରେ ପ୍ରଚ୍ଛନ୍ନ ଭାବେ ମହନୀୟତାର ଅଭେଦ୍ୟତା ରହିଛି । ସଙ୍ଗୀତର ମାଧୁରିମା ସହିତ ରୁଚିଶୀଳ, ରୁଚିମନ୍ତ ଭାବ ଓ ସଂସ୍କୃତିର ଗାମ୍ଭୀର୍ଯ୍ୟ ସଞ୍ଜୀବିତ । ଅବଶ୍ୟ ଏହି ଜାତିର ଗୀତକୁ ଅନୁଶୀଳନ କଲେ ଅବଚ୍ଛିନ୍ନ ସଂସ୍କୃତିର ଆଧାର ମିଳି ଆଧୁନିକ ସଂସ୍କୃତିକୁ ନୂତନ ଭାବେ ଉପାଦାନ ଯୋଗାଇ ପରିପୁଷ୍ଟ କରିବ ନିଶ୍ଚୟ । କିନ୍ତୁ ଐତିହ୍ୟର ନୂତନ ପୃଷ୍ଠା ଉଦ୍‌ଘାଟନ ନିମିତ୍ତ ତନ୍ନ ତନ୍ନ ବିଶ୍ଳେଷଣ କରିବାକୁ ହେଲେ ଗବେଷଣା ସାପେକ୍ଷ । ଏଠାରେ ଏହି ଜାତିର ବିଶଦ ବିବରଣୀ ଓ ଭାଷା ଉଲ୍ଲେଖ କରିବା ଆଗରୁ କେତୋଟି 'ବେଞ୍ଜା' ବା ବିବାହ କାଳୀନ ଗୀତର ଅବତାରଣା କରୁଛି । ପରେ ଏହି ଜାତିର ଅନ୍ୟାନ୍ୟ ଦିଗର ଧାରାବାହିକ ଆଲୋଚନା କରାଯିବ ।

ଗୀତ—"ଚହଲ୍ ପାଲିଆ, ଏ ସୁନା ବାରିହା
ଧାଉଁରି କାଠା ଆମ୍ଭନ୍‌କା ଲଗି··· ।"

ଭାବାନ୍ତର—"ହେ ସମ୍ବଲପୁରିଆ ସେନାପତି ବନ୍ଧୁ ଅର୍ଥାତ୍ ହେ ପରିଚାଳକ (ବିବାହ ଉତ୍ସବର) ଅସମ୍ଭବ ଧରଣର ଶୋଷ ହୋଇ

ଚଣ୍ଟି ଶୁଖିଯାଉଛୁ ।" ପକ୍ଷାନ୍ତରେ ଇଙ୍ଗିତ ସ୍ୱରରେ କହୁଛନ୍ତି ଶୋଷରେ ଚଣ୍ଟି ଶୁଖି ଯାଉଛୁ, ଆମକୁ ମଦ ହାଣ୍ଡିଆ ଦିଅନ୍ତୁ । ଏହା ପରେ ପରେ ଅପର ପକ୍ଷରୁ ପ୍ରତି ଉତ୍ତର ଆସେ—

ଗୀତ—"ଝୋଗ ମାଛା ହେଲେ ଭସାମ୍ ବାସାମ୍
କଁଣେ ବସିନ୍ ଗେଲ ଝିଗଆ କସାନ ।"

ଭାବାନ୍ତର—"ମଦ ହାଣ୍ଡିଆ ନ ମିଳେ ବାସୀ ତୋରାଣି ଅଛୁ । ହେ ! ସୁନ୍ଦରଗଡ଼ିଆ ବନ୍ଧୁ କଣ ବସି ଯାଉଛୁ ? (ସୁନ୍ଦରଗଡ଼ ଅର୍ଥାତ୍ ସମ୍ବଲପୁର ଉତ୍ତରାଞ୍ଚଳ ମିର୍ଦ୍ଧାଙ୍କୁ କସାନ ଭାବେ ଅଭିହିତ । ଆଜି ସମ୍ବଲପୁର ପଶ୍ଚିମାଂଶକୁ ଗାଲ୍‌ସା ବା ପଞ୍ଚଲ ପାରଆ ବୋଲି ଚିହ୍ନଣ କରନ୍ତି ।

ବିବାହ ବେଳେ ବହୁପ୍ରକାର କୌତୁହଳପ୍ରଦ ଗୀତ ମଧୁର ଛନ୍ଦ ଅନ୍ତରରେ, ମାଦଳ ଓ ନୃତ୍ୟର ତାଳେ ତାଳେ ପଲ୍ଲୀ ବୁକୁ ପ୍ରତି-ଧ୍ୱନିତ କରୁଥାଏ ଯେ ଶ୍ରୋତା ବି ଅସ୍ପଷ୍ଟ ଗୀତ ଶୁଣି ମୁଗ୍ଧ ଚକିତ ହୋଇଉଠେ । ସେ ବୁଝି ନ ପାରିଲେ ମଧ୍ୟ ରହସ୍ୟ ଉଦ୍‌ଘାଟନ କରି ତାର ମନ ବିପୁଳ ଆନନ୍ଦରେ ବିଭୋର ହୋଇ ଉଠେ ।

ଗୀତ—"ଏ ବାବୁ ନସେ ସାଆଡ଼ ବାବଲଗି
ଏଦେରେନ୍ ପିଟ ଏ···

ତାନ ବୁଡ଼ିନ୍ ପିଟଏ···ଆରୁ···ପାଞ୍ଚ କାମ ଏ···
ମାଛା କଲ୍ ପଟାନ୍ କାଞ୍ଜି ଲଦଏ ।"

ଭାବାନ୍ତର—"ନିଜର ସାଥୀ ବନ୍ଧୁମାନେ ଗୀତର ଲହର ତୋଳି କହନ୍ତି, "ଏ ବାବୁ ତୋର ଶାଳୀ ଆସୁଛୁ । କ'ଣ ମାରିବୁ । କର୍ କର୍ କରୁଥିବା ମାଇ କୁକୁଡ଼ାକୁ ମାରି କୁଣିଆ କରିବୁ ନା ! ଆଉ ପିଠ ଥିବା ପୁଟାକୁ ଖୋଲି ରାନ୍ଧିବୁ ! !" ବାସ୍ତବିକ୍ ବନ୍ଧୁମାନଙ୍କର କପଟ ରଙ୍ଗ-ରଙ୍ଗିଆ ରସିଆ ଗୀତ ଏ । ଏବଂ ଶାଳୀଙ୍କର ଆଗମନ ପ୍ରତି ବ୍ୟଙ୍ଗୋକ୍ତି ତାହା ସହଜେ ଅନୁମେୟ ।

ଏଠାରେ ଶାଶୂ ଶ୍ୱଶୁର ନବ ବିବାହିତ କନ୍ୟାକୁ ପ୍ରବୋଧନା ଦେଇ ଗାଉଛନ୍ତି—

ଗୀତ—"ନଙ୍ଗ୍ ପୁ ନଙ୍ଗ୍ମା କୁକାଏ ବାପ୍ ଲଗାନାର୍
ଘାଡ ବନ୍‌କ ଅଃର୍‌ଗା ଲଗି (ଘୋଷା)
ଏ···ପାଇଶ ନା,···ବଜ୍ ବାଡ୍‌କେ
ମାଛା ପୁତ୍ ବାଡ୍‌କେ···ଘାଡ଼···।"

ଭବାନ୍ତର—"କଲେ ଟ୍‌କେଲ୍ ! ( ଭୁଆସୁଣି ଝିଅ ପ୍ରତି )

ତୋର ମା' ବାପା ଅଃସୁଛନ୍ତି । ଏଇ ଘଡମାଣ ତାଙ୍କ ଉଇଁ ଅଃସୁଛି । ( ଏଠାରେ ଶୁକତାରା ଶୁଭାଗମନର ସଙ୍କେତ ସ୍ୱରୂପ ଗ୍ରହଣ-କରାଯାଇଛି ) ସେମାନେ ଏଇ ସକାଳେ କମ୍ବା ଦ୍ୱିପ୍ରହରରେ ପହଞ୍ଚିବେ । ନଚେତ୍ ସନ୍ଧ୍ୟାକୁ ଆସିଯିବେ । ମା' ବାପାଙ୍କୁ ଝୁରନ୍ତୁ ନାହିଁ ବୋଲି ଆଶ୍ୱାସନା ଦେଉଛନ୍ତି ।

ଅର୍ଥାନ୍ତର— ( ଘାଡ଼ବନ୍‌କ—ଶୁକତାରା ଅର୍‌ଗାଲଗି ଉଇଁ ଆସୁଛି )

( ଗୀତ ) —"ନାମ୍ନେଁ ପୁରୁବୁନ୍ତା ବନ୍ଧୁସ୍‌କୋ ବାବୁ
ଆମ୍‌କେ ଝାଗାଡ଼ା ମାନା ···।
ଗୁରସ୍ ଗୁଚର୍ କାଇ କୋ ବାବୁ
ମ-ଲ ଗୁଚର୍ ଗୁଇ ଦେ । ଆମନେ···"

ଭବାନ୍ତର—ଏଠାରେ ବନ୍ଧୁତାର ସମ୍ପର୍କ ନବତ୍ତ ବୋଲି ପ୍ରତିବାଦିତ ହୋଇଛି । "ହେ ବାବୁ, ସେମାନେ ଆମର ବହୁ ପୁରୁବର ବନ୍ଧୁ । ଯୁଗ ଯୁଗର ସମ୍ପର୍କ ରହି ଆସିଛି । ତେଣୁ ମୋଟେ ଗୋଳମାଳ ବାଦବିବାଦ କରିବ ନାହିଁ । ଅଖଣ୍ଡ ସଂହତ ମୈତ୍ରୀ ରକ୍ଷା କରିବ । କାରଣ ଗୁଡ଼ପଣ କୌଣସି ସ୍ତ୍ରୀକୁ କରିଦେଲେ ହୁଏତ ସୁ-ସମ୍ପର୍କ ରହେ ନାହିଁ । ବନ୍ଧୁତାରେ ତିକ୍ତତା ଅଃସେ । ମଧୁର ଭାବ ଦୂରେଇ ଯାଏ । ମାତ୍ର ବିବାହିତ ସ୍ତ୍ରୀ ଯଦି ସାଏଦ୍ ମତେଯାଏ, ସେହି ସମ୍ପର୍କ ଚିରନ୍ତନ ରହି-

ଥାଏ । ନଚେତ ବନ୍ଧୁତା ଯାଏ ନାହିଁ । ତେଣୁ ବନ୍ଧୁ ବନ୍ଧୁ ମଧ୍ୟରେ ବିବାଦ ନ କରି ମିଳିମିଶି ଚଳିବା । ଏ ଜାତି ମୈତ୍ରୀଭାବାପନ୍ନ ଥିବାକଥା ଲକ୍ଷଣୀୟ ।

ନିମ୍ନଲିଖିତ ଗୀତ, ବିବାହ ବେଦୀ ସ୍ଥାନର ଗୀତ । ଏଠାରେ ଉପମା, ଚିତ୍ରକଳ୍ପ ଜନିତ ଚମତ୍କାରିତା ପ୍ରକାଶ କରୁଛି ତାହାହିଁ ଅକ୍ଷଣୀୟ । ଗୀତର ମର୍ମ ଯେପରି ହୃଦୟସ୍ପର୍ଶୀ ସେପରି ବୈଚିତ୍ର୍ୟ ଉପଯୁକ୍ତ ମଧ୍ୟ—

ଗୀତ—"ଝାଲ ଝାଲ ମାଣ୍ଡୁଆ, ହାଜ୍ ଚେନ୍ନା ଗାଣୁଆ
ହୁ ବେଲ୍ସ୍ ବେଞ୍ଜେର୍ କେରସ··· ।

ଅର୍ଥାନ୍ତର— ଝାଲ ଝାଲ—ଝଲ ଝଲ ଦେଖାଯାଉଥିବା ।
ମାଣ୍ଡୁଆ—ମଣ୍ଡୁଆ (ମଣ୍ଡପ ଉପରିସ୍ଥ ଡାଳ ପତ୍ର ଦ୍ୱାରା ଆଚ୍ଛାଦିତ)
ହାଜ୍ ଚେନ୍ନା—ମାଟି ବୋହିବା, ଗାଣୁଆ—ଡାଲା
ହୁ—ସେ
ବେଲ୍ସ—ବ୍ୟପିଲ, ବେଞ୍ଜେର୍—ବିବାହ କରିଯିବା
କେରସ୍—ଗଲା ।

ଭାବାନ୍ତର—ଅର୍ଥାତ୍, ବିବାହ ବେଦୀର ଉପରିସ୍ଥ ଆମ୍ବ, ଜାମୁ, ମହୁଳ ଆଦି ଡାଳରେ ଆଚ୍ଛାଦିତ ହୋଇଥାଏ । ଠିକ୍ ମାଟି ବହିବା ଡାଲା ଯେପରି ଜାଲି ପରି କଣା କଣା ହୋଇ ଝଲ ଝଲ ଦେଖାଯାଉଥାଏ । ଅର୍ଥାତ୍ ନବଡ଼ମ୍ବର ମଣ୍ଡୁଆ ତଳୁ ଆମର ରାଜା ପଟ୍ ପୁଅ ବର୍ ବେଶରେ ବାହା ହେବାକୁ ଗଲା । (ଡାଳ ପତ୍ର ଦ୍ୱାରା ଆଚ୍ଛାଦିତ ମଣ୍ଡୁଆର ତୁଳନା ଡାଲା ସହିତ ଏବଂ ଗରିବ ଘର ପିଲା ହେଲେ ବି ସେଇ ବରବେଶ ସମୟରେ ରାଜକୁମାର ସହିତ ତୁଳନା ଅର୍ଥାତ୍ ହସ ଖୁସି ଆନନ୍ଦ, ମହୋତ୍ସବ ଜନିତ ହୃଦୟସ୍ପର୍ଶ ଏଥିରେ ରହିଛି )

ଆଉ ଗୋଟିଏ ଅତି ରସିଆ ତଥା କୌତୁକପ୍ରଦ ଗୀତଟିଏ ଦେଇ ସମାପ୍ତିର ସୀମାରେଖା ଟାଣି ଦେଉଛି ।

ଗୀତ—"ପାବୁନ୍ଦା ଓେଗଙ୍ଗ···ଓେଗ ଖାଡ଼େ ଶଦାରବ ମାଲ୍ଲା,
ଶପୁମ ହେଲେ ଶପୁମ୍ ବାକେ
ମାଲ୍ଲା ହେଲେ ମାଲ୍ଲା ବାକେ,
ମାଲ୍ଲା ହେଲେ ଭର୍ ଭଗତେ ହେଞ୍ଜମ୍ ଶପୁମ୍ ।"

ଭବାନ୍ତର—"ହେ, ଘସ୍ତାର ଓେଗ୍ ବାଲ୍ଲ (ଘରବାଲ୍ଲ) ଓେଗ ବା ଆଶ୍ରପ୍ନ ଟିକଏ ଦେବ କି ନାହିଁ । ଯଦି ଦେବ, ଦେବୁ ବୋଲ କୁହ ନାହିଁ । ହେଲେ ନାହିଁ ବୋଲି କହିବେ । ଯଦି କିଛି ଉତ୍ତର ନ ଦିଅନ୍ତ, ତାହାହେଲେ ଜୋର ଜବରଦସ୍ତ ପଶିଯିବୁ ।

ଆଜ ଟିକଏ ଭିନ୍ନ ଦୃଷ୍ଟିକୋଣରୁ ଗୀତର ସାରକଥାକୁ ନେଲେ ଜଣାଯାଏ ଯେ ପ୍ରେମିକ ପରୋକ୍ଷରେ ତାର ପ୍ରେମିକାକୁ ଇଙ୍ଗିତ କରୁଛି । ମୋତେ ଆଶ୍ରପ୍ନ ଦିଅ । ଭଲ ପାଉଛ କି ନାହିଁ କୁହ । କିଛି ନ କହିଲେ ଜୋର ଜବରଦସ୍ତ ତମ ଘରକୁ ପଶିଯିବ ।" ଏପରି ଶତ ଶତ ଗୀତ ରହିଛି ।



# ଦାରୁବ୍ରହ୍ମ ଜଗନ୍ନାଥ

(ଶବର-ସଂସ୍କୃତିର ଏକ ରୂପାନ୍ତର)

**ଶ୍ରୀ ଅର୍ଜୁନ ସିଂହ**

( ଆଦିବାସୀ ନେତା ଓ ବିଧାନସଭା ସଦସ୍ୟ )



ବିଭିନ୍ନ ମାନବ ସଭ୍ୟତାର ପ୍ରସୂତ ପୀଠ, ନଦ ନଦୀ ପର୍ବତ, ଅରଣ୍ୟାନୀ ସମାକୀର୍ଣ୍ଣ, ନାନାବିଧ ପଶୁପକ୍ଷୀ ଅଧ୍ୟୁଷିତ, ତରଙ୍ଗାୟିତ ନୀଳ ସାଗର ପରିବେଷ୍ଟିତ, ଉଦ୍ଭିଦ, ଲତାସଙ୍କୁଳ, ସବୁଜ ଶସ୍ୟଶାଳିନୀ ଆମର ଜନ୍ମଭୂମି ଭାରତବର୍ଷ ଆଦିମାନବର ଆଦିମ—ବାସସ୍ଥଳୀ ନାମରେ ପରିଚିତ । ଏ ଦେଶର ସଂସ୍କୃତି ଓ ପରମ୍ପରା ଅତି ପ୍ରାଚୀନ । ଆର୍ଯ୍ୟ, ଅନାର୍ଯ୍ୟ, ଦ୍ରାବିଡ଼ ପ୍ରଭୃତି ବିଭିନ୍ନ ଜାତି ତଥା ବିଭିନ୍ନ ଧର୍ମର ସମନ୍ୱୟରେ ଏ ଦେଶର ସଭ୍ୟତାର ଉଦ୍ଭବ ।

ଏ ଦେଶର ପ୍ରାଚୀନ ନାମ ଜମ୍ବୁଦ୍ୱୀପ । ଆର୍ଯ୍ୟମାନଙ୍କର ଏ ଦେଶକୁ ଆଗମନ ପରେ ଏହାର ନାମ ହେଲା ଆର୍ଯ୍ୟାବର୍ତ୍ତ । ପରବର୍ତ୍ତୀ କାଳରେ ଏହାର ନାମ ହେଲା ଭାରତବର୍ଷ । ଆର୍ଯ୍ୟମାନଙ୍କ ଆଗମନ ପୂର୍ବରୁ ଏ ଦେଶର ପଶ୍ଚିମାଂଶରେ ବାସ କରି ରହୁଥିଲେ ଦ୍ରାବିଡ଼ମାନେ । କିନ୍ତୁ ସେମାନଙ୍କ ନାମାନୁସାରେ ଏ ଦେଶର ନାମକରଣ ହୋଇ ପାରିଲା ନାହିଁ, କାରଣ ଆର୍ଯ୍ୟମାନଙ୍କର ଧୀଶକ୍ତି, ଶିକ୍ଷା, ସଂସ୍କୃତି ତୁଳନାରେ ସେମାନେ ଥିଲେ ବହୁ ନିମ୍ନରେ ।

ଏ ଦେଶକୁ ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କର ଆଗମନର ବହୁକାଳ ପୂର୍ବରୁ ଏ ଦେଶ ଅନ୍ୟ ଏକ ମାନବ ସମାଜ ଦ୍ୱାରା ଅଧ୍ୟୁଷିତ ଥିଲା । ସେମାନେ ହିଁ ପ୍ରକୃତରେ ସର୍ବପ୍ରଥମ ସନ୍ତାନ ଥିଲେ ଏ ଦେଶର ଏବଂ ଏ ମାଟିର ।

ଆର୍ଯ୍ୟ ଏବଂ ଦ୍ରାବିଡ଼ମାନଙ୍କ ତୁଳନାରେ ସେମାନେ ଥିଲେ କଷ୍ଟସହ, ନିରାଡ଼ମ୍ବର, ଧବଳ ବର୍ଣ୍ଣାଭି, ଶାନ୍ତିପ୍ରିୟ, ସ୍ୱାବଲମ୍ବୀ, ଆମୋଦ ପ୍ରମୋଦ ପ୍ରିୟ ଓ ସ୍ୱାଧୀନମନା । କିନ୍ତୁ ଜୀବନ ସଂଗ୍ରାମରେ ସେମାନେ ଦ୍ରାବିଡ଼ ଏବଂ ଆର୍ଯ୍ୟମାନଙ୍କ ସହିତ ସମକକ୍ଷ ନ ଥିଲେ । ପରବର୍ତ୍ତୀ କାଳରେ ଜୀବନ ସଂଗ୍ରାମରେ ସେମାନେ ଆର୍ଯ୍ୟ ଏବଂ ଦ୍ରାବିଡ଼ମାନଙ୍କ-ଦ୍ୱାରା ପରାସ୍ତ ହୋଇ ପ୍ରକୃତିର ଶାନ୍ତିମୂର୍ତ୍ତି ଅରଣ୍ୟ ଉପତ୍ୟକାରେ କଣ୍ଟକ ସଙ୍କୁଳ ହିଂସ୍ର ମାନବର ଦୃଷ୍ଟିର ଅନ୍ତରାଳରେ ଆତ୍ମଗୋପନ କରି ରହି ଅନ୍ନଦାତ୍ରୀ, ଅଭୟ ଓ ଅଭୟଦାୟିନୀ ମାତୃରୂପା ପ୍ରକୃତିକୁ ପୂଜା କରୁଥିଲେ ।

ଉପରୋକ୍ତ ପ୍ରକୃତି ପୂଜକ ଏବଂ ପ୍ରକୃତି ପାଳିତ ମାନବ ସମାଜ ହିଁ ପ୍ରକୃତରେ ଏ ଦେଶର ସନ୍ତାନଗଣ ଯେଉଁମାନଙ୍କୁ କି ଆଧୁନିକ ଯୁଗରେ ଶବର, ଶଅର, ଶଉର ପ୍ରଭୃତି ନାମରେ ନାମିତ କରାଯାଏ । ଆର୍ଯ୍ୟ ଏବଂ ଦ୍ରାବିଡ଼ମାନଙ୍କ ଦ୍ୱାରା ପରାସ୍ତ ଓ ବିତାଡ଼ିତ ହୋଇ ଶବର-ମାନେ ବହୁ ସଂଖ୍ୟାରେ ପଶ୍ଚିମ ଭାରତରୁ ଉତ୍ତର ଭାରତ, ଦକ୍ଷିଣ ପୂର୍ବ-ଭାରତ ଓ ପୂର୍ବ ଭାରତ ଅଞ୍ଚଳକୁ ପଳାୟନ କଲେ ଏବଂ ବନକୁ

ସେଠାରେ ନିବସତି ମନେ କରି ଶାନ୍ତିକା ନିର୍ବାହ ପୂର୍ବକ କାଳ ଯାପନ କରି ରହିଲେ । ଯେଉଁ ଶବରମାନେ ପୂର୍ବ ସାଗର କୂଳରେ ବସତି ସ୍ଥାପନ କରିଥିଲେ, ସେମାନେ ସର୍ବପ୍ରଥମେ ବୃକ୍ଷ ପୂଜା ଆରମ୍ଭ କରିଥିଲେ । ଶ୍ୟାମଳ ଶସ୍ୟକ୍ଷେତ୍ରର ସବୁଜିମା ଏବଂ ଫଳ ପୁଷ୍ପଭରା ବୃକ୍ଷଗଣଙ୍କୁ ଶବରମାନଙ୍କର ହୃଦ୍‌ବୋଧ ହେଲା ଯେ ସେଗୁଡ଼ିକୁ ପ୍ରକୃତିରେ ପ୍ରକୃତିର ରୂପାନ୍ତର ବୋଲି । ପ୍ରକାରାନ୍ତରେ ବୃକ୍ଷ ବା ଗଛର କାଠରେ ସେମାନେ ଅସ୍ତ୍ରଶସ୍ତ୍ରଠାରୁ ଆରମ୍ଭ କରି ଯାବତୀୟ ଗୃହୋପକରଣ ପର୍ଯ୍ୟନ୍ତ ନିର୍ମାଣ କରୁଥିଲେ । ଉକ୍ତ ବୃକ୍ଷ ବା ଦାରୁ ଦେହରୁ ସେମାନେ ବଲ୍‌କଳ, ଫଳ, ପୁଷ୍ପ ଓ ପତ୍ର ସଂଗ୍ରହ ପୂର୍ବକ ସେଗୁଡ଼ିକୁ ଯଥାକ୍ରମେ ନିଜ ନିଜର ଖାଦ୍ୟ, ବସ୍ତ୍ର ଓ ପାନୀୟର ଆଧାର ଏବଂ ଔଷଧ ରୂପରେ ବ୍ୟବହାର କରୁଥିଲେ । ଅଦ୍ୟାବଧି ଶବର ଜାତୀୟ ଜନସାଧାରଣ ଉପରୋକ୍ତ ପଦାର୍ଥ ସମୂହ ପୂର୍ବପରି ବ୍ୟବହାର କରି ଆସୁ ଅଛନ୍ତି । ଓଡ଼ିଶାର ଶବର ଅଧ୍ୟୁଷିତ ଅଞ୍ଚଳରେ ଏହାର ପ୍ରତ୍ୟକ୍ଷ ପ୍ରମାଣ ଦେଖିବାକୁ ମିଳେ ।

ବୃକ୍ଷ ବା ଦାରୁଠାରୁ ସେମାନେ ମହୋପକାର ଲାଭ କରୁଥିବା ଯୋଗୁଁ ସର୍ବଶ୍ରେଷ୍ଠ ମଙ୍ଗଳପ୍ରଦ ଦେବତା ଜ୍ଞାନରେ ତାହାକୁ ପୁରୁଷାନୁକ୍ରମେ ପୂଜା କରୁଥିଲେ । କ୍ରମଶଃ ତାହା ଏକ ଅପରିହାର୍ଯ୍ୟ ଶାଶ୍ୱତ ସଂସ୍କୃତିରେ ପରିଣତ ହୋଇ ପାରିଥିଲା ।

ଭାରତୀୟ ଦର୍ଶନ ଶାସ୍ତ୍ରାନୁସାରେ, କୌଣସି ବସ୍ତୁକୁ ପୂଜିବା ଦ୍ୱାରା ଯଦି ଦୁଃଖର ଲାଘବ ହୁଏ ଏବଂ ସୁଖାନନ୍ଦର ଅଭ୍ୟୁଦୟ ଘଟେ, ତାହାହେଲେ ବସ୍ତୁରେ ବିଭିନ୍ନ ଗୁଣରାଶିର ସମାବେଶ ନିଶ୍ଚିତ ଭାବରେ ଘଟିଥାଏ ବୋଲି ଦାର୍ଶନିକମାନଙ୍କର ମତ । ସାଧାରଣ ମାନବ ଉକ୍ତ ଗୁଣ ସମୂହର ଆଧାରକୁ ଦେବତା ଜ୍ଞାନରେ ପୂଜା କରେ ।

ବୃକ୍ଷ ବା ଦାରୁଠାରେ ଦୟା, କ୍ଷମା, ତିତିକ୍ଷା ପ୍ରଭୃତି ଗୁଣରାଜିର ଏକତ୍ର ସମାବେଶ ଯୋଗୁଁ ଏବଂ ଆଶ୍ରୟ, ଖାଦ୍ୟ, ପରିଧେୟ ଉକ୍ତ ବୃକ୍ଷ

ବା ଦାରୁଠାରୁ ଲାଭ କରୁଥିବା ଯୋଗୁଁ ଶବର ବା ଶବର ଜାତିପ୍ର ମାନବ ସମାଜ ବୃକ୍ଷକୁ ଜଗତର ସର୍ବମଙ୍ଗଳ କାରକ ଦେବତା ଜ୍ଞାନରେ ପୂଜା କରୁଥିଲେ । କିନ୍ତୁ ସର୍ବଦା ହବୁ ରତ୍ନୁରେ ଦାରୁ ବା ବୃକ୍ଷ ଦେବତାଙ୍କୁ ପୂଜା କରିବା ଶବର ପକ୍ଷରେ ସମ୍ଭବ ହୋଇ ପାରୁ ନ ଥିଲା । କାରଣ ହେଉଛି ଯେଉଁଦିନ ପ୍ରବଳ ଝଡ଼ ବାତ୍ୟା ଜମ୍ପା ବର୍ଷା ହେଉଥିଲା, ସେତେବେଳେ ଶବରମାନେ ଦାରୁ ବା ବୃକ୍ଷ ପୂଜାରୁ ବଞ୍ଚିତ ହେଉଥିଲେ । ଉପରୋକ୍ତ କାରଣ ଯୋଗୁଁ ନିତ୍ୟ ପୂଜା ଉପାସନାର କାମନା କରି ପଥର ଗୁହା ବା ଗୁମ୍ଫାରେ ବିଶାଳ ବୃକ୍ଷର କାଠ ଗଣ୍ଡିକୁ ମସୃଣ ଓ ଚିକ୍କଣ କରି ରଖି ଜୀବନର ସର୍ବମଙ୍ଗଳକାରକ ଜଗତର ନାଥ ଦାରୁ ଦେବତାଙ୍କୁ ପ୍ରକୃତିର ବାଧାବିଘ୍ନର ଅନ୍ତରାଳରେ ନାନାବିଧ ପୂଜା ଉପକରଣରେ ପୂଜା କରି ଆସୁଥିଲା ଶବର । ପୁରାଣ ବର୍ଣ୍ଣିତ ବିଶ୍ୱାବସୁ ଶବରର ଦାରୁ ପୂଜା ଉପରୋକ୍ତ ମନ୍ତବ୍ୟର ଜ୍ୱଳନ୍ତ ଉଦାହରଣ ।

ପ୍ରାଚୀନ କବିମାନେ ଜଗନ୍ନାଥଙ୍କୁ ଦାରୁବ୍ରହ୍ମ, ନୀଳାଚଳବାସୀ, ନୀଳଗିରି ବାସୀ ବୋଲି ତାହାଙ୍କ ରଚିତ ଜଣାଣ ତଥା ଭଜନ ସମୂହରେ ବର୍ଣ୍ଣନା କରି ଅଛନ୍ତି । ଉଦାହରଣ ସ୍ୱରୂପ "ଭଜମନ ଜଗନ୍ନାଥଙ୍କୁ, ନୀଳାଚଳବାସୀ ଦାରୁବ୍ରହ୍ମଙ୍କୁ ।"

"ଜୟ ଜୟ ଜଗନ୍ନାଥ କମଳାର ବର, ନୀଳଗିରି କନ୍ଦରେ ସର୍ବଦା ବାସ ଯାର ।" ଗିରି କନ୍ଦର ନିବାସୀ ଅରଣ୍ୟର ନାଗରିକ, ଶବର ବ୍ୟତୀତ ଅନ୍ୟ କାହାରିକୁ ବୁଝାଯାଏ ନାହିଁ । ଗିରିର ଅର୍ଥ ପର୍ବତ । ନୀଳ ନାମକ ଶବର ଜାତିର ଲୋକମାନେ ଯେଉଁ ଗିରି ବା ପର୍ବତରେ ବାସ କରୁଥିଲେ, ତାଙ୍କର ଜାତିର ନାମ ଅନୁସାରେ ଉକ୍ତ ଗିରି ବା ପର୍ବତର ନାମ ବୋଧହୁଏ ନୀଳଗିରି ରଖା ଯାଇଥିଲା । ଉକ୍ତ ନୀଳଗିରିର ପଥର ଗୁହାରେ ବା ଗୁମ୍ଫାରେ ସର୍ବଦା ବାସ କରି ରହୁଥିଲେ ଦାରୁବ୍ରହ୍ମ ଜଗନ୍ନାଥ ।

ପୁରାଣ ବର୍ଣ୍ଣିତ "ନୀଳଗିରି"ର ଅବସ୍ଥିତି ସମ୍ପର୍କରେ ବିଭିନ୍ନ ଗବେଷକ, ସାହିତ୍ୟିକ, ଐତିହାସିକ, ଲେଖକ ତଥା ପ୍ରତ୍ନତାତ୍ତ୍ୱିକ ବିଭିନ୍ନ

ମତ ପ୍ରଦାନ କରିଅଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ମତ ଯେ ବର୍ତ୍ତମାନ ଯେଉଁଠାରେ ପୁରୀ ଜଗନ୍ନାଥ ମନ୍ଦିର ଅବସ୍ଥିତ ଉକ୍ତ ସ୍ଥାନରେ "ନୀଳଗିରି" ବିଦ୍ୟମାନ ଥିଲା । ପ୍ରାଚୀନ କାଳରେ ନୀଳ ଶବରମାନେ ନିଜର ଇଷ୍ଟଦେବ "ଦାରୁ ଦେବତାଙ୍କୁ" ତତ୍ରସ୍ଥ "ନୀଳଗିରି" ଗୁମ୍ଫାରେ ସ୍ଥାପନ କରି ପୁରୁଷାନୁକ୍ରମେ ପୂଜା କରି ଆସୁଥିଲେ । କିନ୍ତୁ କାଳର କୁଟିଳ ଗତିରେ ପରବର୍ତ୍ତୀ କାଳରେ ଶବରେତର ଜାତିର ରାଜା ମହାରାଜାମାନେ, ବ୍ରାହ୍ମଣମାନଙ୍କର ପ୍ରରୋଚନାରେ ନୀଳଶବର ବା ଶବରମାନଙ୍କୁ ଆକ୍ରମଣ କରି ସେମାନଙ୍କର ରାଜ୍ୟ, ବସତି ତଥା ଇଷ୍ଟ ଦେବତା "ଦାରୁଙ୍କୁ" ଅଧିକାର କରି ନେଇ କାଳକ୍ରମେ ତାହାଙ୍କୁ ନିଜର ନିଜସ୍ୱରେ ପରିଣତ କରିଥିଲେ ।

"ଦାରୁ" ସହିତ "ବ୍ରହ୍ମ"ର ସଂଯୋଗ ଫଳରେ "ଦାରୁବ୍ରହ୍ମ" ଶବ୍ଦର ଉତ୍ପତ୍ତି । କିନ୍ତୁ କୌଣସି ଭାରତୀୟ ଦର୍ଶନ ଶାସ୍ତ୍ରରେ ଦାରୁବ୍ରହ୍ମ ଶବ୍ଦର ଉଲ୍ଲେଖ ନାହିଁ । ଉଦାହରଣ ସ୍ୱରୂପ ଭାରତୀୟ ଦର୍ଶନ "କେନୋ-ପନିଷଦରେ" ବ୍ରହ୍ମଙ୍କୁ ନିମ୍ନୋକ୍ତ ମତେ ବର୍ଣ୍ଣନା କରାଯାଇଅଛି ।

ଯଥା:—

"ଯଦ୍ୱାଚାନଭ୍ୟୁଦିତଂ, ଯେନ ବାଗଭ୍ୟୁଦ୍ୟତେ
ତଦେବ ବ୍ରହ୍ମତ୍ୱଂ ବିଦ୍ଧି ନେଦଂ ଯଦିଦ ମୁପାସତେ ।" ( ୧-୫ )

ଭାଷାରେ ଯାହାକୁ କୁହାଯାଇ ପାରିବ ନାହିଁ କିନ୍ତୁ ଯାହାର ଶକ୍ତି-ଦ୍ୱାରା ଭାଷାର ପରିପ୍ରକାଶ ସାଧିତ ହୋଇପାରେ, ଯିଏ କି ପ୍ରମାଣାତୀତ ଅଥଚ ଅସୀମ, ବିରାଟ ଏବଂ ସୃଷ୍ଟିର ମୂଳକାରଣ ସର୍ବୋପରି ଯିଏ କି ସୃଷ୍ଟିର ଜ୍ୟୋତି-ପ୍ରକାଶର ପ୍ରଧାନ ଦ୍ୟୋତକ ଓ ନିର୍ଦ୍ଦେଶକ, ତାହାଙ୍କୁ ହିଁ ବ୍ରହ୍ମ ନାମରେ ଅଭିହିତ କରାଯାଏ ।

ବିଭିନ୍ନ ଭାରତୀୟ ଦର୍ଶନ ଶାସ୍ତ୍ର ପ୍ରଣେତାମାନେ ବ୍ରହ୍ମଙ୍କୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରିଅଛନ୍ତି—ଯଥା:—୧-ସଗୁଣ ବ୍ରହ୍ମ, ୨-ନିର୍ଗୁଣ ବ୍ରହ୍ମ । କିନ୍ତୁ କୌଣସି ବୈଦିକ ପ୍ରାଚୀନ ଦର୍ଶନ ଶାସ୍ତ୍ରରେ "ଦାରୁ

ବ୍ରହ୍ମ" ଶବ୍ଦର ଉଲ୍ଲେଖ ଥିବା ପରିଲକ୍ଷିତ ହୁଏନାହିଁ । ଉପରୋକ୍ତ କାରଣରୁ ବା ସୂଚନାରୁ ଅନୁମିତ ହୁଏ ଯେ ବୈଦିକ ଯୁଗପରେ ଏ ଦେଶର ବିଶେଷକରି ପୂର୍ବସାଗର ଉପକୂଳବର୍ତ୍ତୀ ଶବରମାନଙ୍କ ଦ୍ୱାରା "ଦାରୁ" ପୂଜା ଆରମ୍ଭ ହୋଇଥିବା ଯୋଗୁଁ ପ୍ରାଚୀନ ଭାରତୀୟ ଦର୍ଶନ ଶାସ୍ତ୍ର ବେଦରେ "ଦାରୁବ୍ରହ୍ମ"ର ବର୍ଣ୍ଣନା ସ୍ଥାନ ପାଇପାରି ନ ଥିବା ସ୍ୱାଭାବିକ । ତଥାପି ନିତ୍ୟ ନୂତନତାର ଗ୍ରାହକ ବିଜ୍ଞ, ଚତୁର—ବ୍ରାହ୍ମଣ ସମାଜ "ଦାରୁ" ଦାରୁ ସହିତ "ବ୍ରହ୍ମ"ର ସଂଯୋଗ କରି "ଦାରୁବ୍ରହ୍ମ" ଶବ୍ଦ ସୃଷ୍ଟି କରି ଅଛନ୍ତି ଏବଂ ଏହି ନାମକରଣ ଶବର ଓ ବ୍ରହ୍ମ ସଂସ୍କୃତିର ମିଳନ ବା ମିଶ୍ରଣରୁ ସୃଷ୍ଟି ବୋଲି ବିଜ୍ଞ ସୁଧୀବୃନ୍ଦଙ୍କ ଦ୍ୱାରା ସ୍ୱୀକୃତ । ତେଣୁ ଉପରୋକ୍ତ ବିଷୟରୁ ସ୍ପଷ୍ଟ ଅନୁମିତ ହୁଏ ଯେ ପରବର୍ତ୍ତୀ କାଳରେ ଶବର ସମାଜର ଉପାସ୍ୟ ଦେବତା "ବୃକ୍ଷ ବା ଦାରୁ ଦେବତା"ଙ୍କୁ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ହେଉ କିମ୍ବା ଦେବତା ଜ୍ଞାନରୁ ହେଉ ଶବରେତର ଜାତିମାନେ ବିଶେଷତଃ ବ୍ରାହ୍ମଣ ଓ କ୍ଷତ୍ରିୟମାନେ କଳେ ବଳେ କୌଶଳରେ ଅଧିକାର କରିନେଇ ଆଧୁନିକ ପ୍ରସିଦ୍ଧ ତୀର୍ଥକ୍ଷେତ୍ର ପୁରୀ ଧାମରେ ଜଗତର ନାଥ — ଜଗନ୍ନାଥ ନାମରେ ପ୍ରତିଷ୍ଠିତ କରାଇ ନାନାବିଧ ପୂଜାବିଧି ବିଧାନର ବ୍ୟବସ୍ଥା କରାଇଥିଲେ । ପରବର୍ତ୍ତୀ କାଳରେ ଜଗନ୍ନାଥ ଦାରୁବ୍ରହ୍ମ ତଥା ଜଗନ୍ନାଥ କ୍ଷେତ୍ରର ମହାତ୍ମ୍ୟ ବିଭିନ୍ନ ପୁରାଣ ମାଧ୍ୟମରେ ଏକାଧିକ କବି, ଭକ୍ତ ସଂସ୍କାରକ, ଧର୍ମ ପ୍ରଚାରକ ତଥା ରାଜା ମହାରାଜାମାନଙ୍କଦ୍ୱାରା ସମଗ୍ର ଭାରତ ବର୍ଷରେ ସଂପ୍ରଚାରିତ ତଥା ସଂପ୍ରସାରିତ ହୋଇଥିଲା ।

ଭାତ ହାଣ୍ଡିରୁ ଗୋଟିଏ ଚିପିଲାପରି ଏ ଦେଶର ପୌରାଣିକ କିମ୍ବଦନ୍ତୀରୁ ଗୋଟିକର ବିଶ୍ଳେଷଣ କଲେ ଦାରୁବ୍ରହ୍ମ ଜଗନ୍ନାଥ ଶବରର ଇଷ୍ଟ ଦେବତା ବୋଲି ସ୍ପଷ୍ଟଭାବେ ଜଣାଯାଏ । ଅବଶ୍ୟ ବହୁ ଗବେଷକ ଆୟାସ ସାଧ୍ୟ ଚେଷ୍ଟାକରି ଏ ବିଷୟରେ ଏକାଧିକ ପୌରାଣିକ, ଐତିହାସିକ, ପୌରାଣିକ ତଥା ସାମାଜିକ ତଥ୍ୟ ସମୃଦ୍ଧ ପ୍ରମାଣ ସ୍ୱରୂପ ଉଲ୍ଲେଖ କରି ଯାଇଅଛନ୍ତି ।

"ଅଲ୍ପ ଶବରଣୀ ହସ୍ତେ ମାଣିକ
ତାହା ଛାଡ଼ି ଦେଲ୍ନ ଗଲ୍ପ ଗୁଣିକ ।"

ପ୍ରାଚୀନ ଓଡ଼ିଆ କବି ଦନେଇ ଦାସ ତାହାଙ୍କ ରଚିତ "ଗୋପୀଭାଷା" ନାମକ ପୁସ୍ତିକାରେ ଉପରୋକ୍ତ ବିଷୟର ଉଲ୍ଲେଖ କରିଅଛନ୍ତି । ଏହାର ବିଶ୍ଳେଷଣ କଲେ ଜଣାଯାଏ ଯେ ଶବରଣୀ ଶବର ବୃଦ୍ଧ କିମ୍ବା ବିଶ୍ୱାବସୁ ଶବରଙ୍କ କନ୍ୟା ଲଳିତା—ଅଥବା ଶବର ସନ୍ତାନ—ଶବର ସମାଜ । ମାଣିକ—ଦାରୁବ୍ରହ୍ମ ଜଗନ୍ନାଥ ।

ଗୁଣିକ=ବଙ୍ଗ ଚତୁର ବ୍ରାହ୍ମଣ ବିଦ୍ୟାପତି 'ବା' ବ୍ରାହ୍ମଣ ସମାଜ । ସାଧାରଣ ଭାବରେ ଆଲୋଚନା କଲେ ଜଣାଯାଏ ଯେ ବହୁ ପ୍ରାଚୀନ କାଳରୁ ଭାରତ ଭୂଖଣ୍ଡରେ ବ୍ରାହ୍ମଣମାନେ ଗୁଣୀ, ପଣ୍ଡିତ, କବି, ସଂସ୍କାରକ, ଧର୍ମଯାଜକ, ଶିକ୍ଷକ, ଶାସକ ତଥା ହିନ୍ଦୁ ଧର୍ମର ସଂସ୍ଥାପକ ଭାବରେ ସକଳ ପ୍ରକାର ଗୁଣର ଅଧିକାରୀ ହୋଇ ବର୍ତ୍ତମାନ ସୁଦ୍ଧା ସମାଜରେ ଚଳି ଆସୁଅଛନ୍ତି । ତେଣୁ ପ୍ରାଚୀନ କବି ଦନେଇ ଦାସ ବଙ୍ଗ ବ୍ରାହ୍ମଣ ସମାଜକୁ ଯେ ଗୁଣିକ ନାମରେ ସ୍ୱରଚିତ "ଗୋପୀଭାଷା" ପୁସ୍ତିକାରେ ବର୍ଣ୍ଣନା କରିଅଛନ୍ତି, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଅବଶ୍ୟ "ଗୋପୀଭାଷା"ର ଆଭ୍ୟନ୍ତରିଣ ବ୍ୟାଖ୍ୟାନ ଭିନ୍ନ ପ୍ରକାରର; କିନ୍ତୁ କିମ୍ବଦନ୍ତୀ ଦୃଷ୍ଟିରୁ ସେଇଥିରୁ ଉଦ୍ଧୃତ ବିଷୟଟି ନିଶ୍ଚିତ ସତ୍ୟ ଓ ବାସ୍ତବ ।

ରଥଯାତ୍ରା ସମ୍ବନ୍ଧରେ ଶବରମାନଙ୍କର ପ୍ରାଚୀନ ସାଂସ୍କୃତିକ ପ୍ରଥା ଅଦ୍ୟାବଧି ଓଡ଼ିଶାର ପୁରପଲ୍ଲୀରେ ଗୋପନତାବସ୍ଥାରେ ପ୍ରଭାବ ବିସ୍ତାର କରି ଆସୁଅଛି । ବସନ୍ତ ଋତୁର ଆଗମନରେ ପ୍ରକୃତି ଯେତେବେଳେ ନୂତନ ପଲ୍ଲବ, ପୁଷ୍ପ ଓ ଫଳ ରାଜିରେ ବିଭୂଷିତା ହୋଇ ଅଭିନବ-ମନୋହାରିଣୀ ସୌନ୍ଦର୍ଯ୍ୟର ଅଧିକାରିଣୀ ହୁଏ, ସେତେବେଳେ ଶବର ଜାତୀୟ ଲୋକେ କ୍ଷୁଦ୍ର ରଥ ତିଆରି କରି ସେଥିରେ ନାନାବିଧ ପୂଜା ଉପକରଣ ରଖି ପଲ୍ଲୀ ଉପକଣ୍ଠରେ ପ୍ରତିଷ୍ଠିତ ସେମାନଙ୍କର ଆରାଧ୍ୟ ଦେବତାଙ୍କ ନିକଟକୁ ପୂଜା ଉଦ୍ଦେଶ୍ୟରେ ଆନନ୍ଦ କୋଳାହଳର ସହିତ

ବାଦ୍ୟଧ୍ୱନି କରି ଯାଇଥାନ୍ତି । ଉକ୍ତ ଶବର ଦେବତାଙ୍କର ମନ୍ଦିର ନ ଥାଏ । ବିଭିନ୍ନ ବୃକ୍ଷ ସମାକୀର୍ଣ୍ଣ ଶୀତଳ ଛାୟାଯୁକ୍ତ ସ୍ଥାନରେ କାଠ କୀଲକ ରୂପ ଧାରଣ କରି ସିନ୍ଦୂର, ହରିଦ୍ରା ଏବଂ ଚନ୍ଦନ ଚର୍ଚ୍ଚିତ ନଗ୍ନ ରୂପରେ ଦେବତା ଶତ୍ୟମାନେ ଥାଆନ୍ତି । ଶବରମାନଙ୍କର ବାସନ୍ତୀ ଉତ୍ସବ ଏବଂ ଦେବତାରାଧନା ଦେଖି ମନରେ ସ୍ୱତଃ ପ୍ରବୃତ୍ତି ଭାବରେ ଏହି ପ୍ରଶ୍ନ ଜାଗି-ଉଠେ—ପାଷାଣର ବା କୌଣସି ଧାତୁର ପ୍ରତିମୂର୍ତ୍ତି ପରିବର୍ତ୍ତେ ଶବରମାନେ ଦାରୁ ବା କାଠ କୀଲକ ସମୂହଙ୍କୁ ପୂଜା କରିବାର ଉଦ୍ଦେଶ୍ୟ କ'ଣ ଏବଂ ବସନ୍ତ ଋତୁର ଆଗମନରେ କ୍ଷୁଦ୍ର କ୍ଷୁଦ୍ର ରଥରେ ବିବିଧ ପୂଜାର ଉପ-କରଣ ଆଡ଼ମ୍ବର ସହକାରେ ବାଦ୍ୟଧ୍ୱନି ସହ ଦେବତାଙ୍କ ନିକଟକୁ ପରମ୍ପରା କ୍ରମେ ନଅନ୍ତି କାହିଁକି ? ଏହାର ଏତିକି ମାତ୍ର ଉତ୍ତର ହୋଇ ପାରେ ଯେ ବୃକ୍ଷ ବା ଦାରୁ ପୂଜାର ଏହା ଏକ ଜୀବନ୍ତ ନିଦର୍ଶନ ଏବଂ ରଥଯାତ୍ରାର ମଧ୍ୟ ଏହା ଏକ ଆଦିମକାଳୀନ ନମୁନା ଯାହାକି ପ୍ରାଣବନ୍ତ ଅବସ୍ଥାରେ ଶବର ପଲ୍ଲୀରେ ଅଦ୍ୟାବଧି ପ୍ରଚଳିତ । ଉପରୋକ୍ତ ଶବର ସଂପ୍ରଦାୟର ଉକ୍ତ ପୂଜା ଏତେ ବ୍ୟାପକ ଏବଂ ପ୍ରଭାବଶାଳୀ ଯେ ଉକ୍ତ ପ୍ରଥାକୁ ଶବରେତର ଜାତିମାନେ ମଧ୍ୟ ବହୁ ସ୍ଥାନରେ ବହୁଳାଂଶରେ ଅନୁକରଣ କରି ଆସୁଅଛନ୍ତି ଏବଂ ଶବର ଓ ଶବରେତର ଉଭୟେ ମିଳିତ ଭାବରେ ଉକ୍ତ ପୂଜା ଉତ୍ସବକୁ ନିୟମିତ ପାଳନ କରନ୍ତି । ଓଡ଼ିଶାର ଶବର ଅଧ୍ୟୁଷିତ ଅଞ୍ଚଳରେ ଏହାର ପ୍ରତ୍ୟକ୍ଷ ପ୍ରମାଣ ଦେଖିବାକୁ ମିଳେ । ଏଣୁ ଦାରୁବ୍ରହ୍ମ ପୂଜା ରଥଯାତ୍ରାର ସୃଷ୍ଟି ଶବର ସଂସ୍କୃତିର ଯେ ଏକ ରୂପାନ୍ତର ଏଥିରେ ସନ୍ଦେହର ତିଳେମାତ୍ର ଅବକାଶ ନାହିଁ ।

ଅତ୍ୟନ୍ତ ଗୌରବ ଏବଂ ଆନନ୍ଦର ବିଷୟ ଯେ ଶବରର ଇଷ୍ଟଦେବ ଭାବରେ କେବଳ ଶବର ସମାଜ ଦ୍ୱାରା ପୂଜିତ ନ ହୋଇ ଦାରୁବ୍ରହ୍ମ ଜଗନ୍ନାଥ ଆଜି ସମଗ୍ର ହିନ୍ଦୁ ଜଗତର ପରମାରାଧ୍ୟ କୈବଲ୍ୟ ଦାୟକ ଦେବତାର ବିଗ୍ରହ ଓ ବିଶ୍ୱ ବିଶ୍ରୁତ । ଏହାଠାରୁ ବଳି ଅଧିକତର ଆନନ୍ଦ ଏବଂ ଗୌରବର ବିଷୟ ଆଉ କ'ଣ ଥାଇପାରେ ?



# ଆଦିବାସୀମାନଙ୍କ ଆର୍ଥିକ ଅବସ୍ଥା

**ଶ୍ରୀ ନେତ୍ରାନନ୍ଦ ଷେତ୍ରିଆ, (ବଲାଙ୍ଗିର) ଆଦିବାସୀ ଗ୍ରନ୍ଥ**

ଆଦିବାସୀ ଜାତି ଦରିଦ୍ର । ଦାରିଦ୍ର୍ୟର ବୋଝରେ ମେରୁଦଣ୍ଡ ତା'ର ବଙ୍କା ହୋଇଯାଇଛି । ତଳର ଗୋଡ଼, ପଥର, ମାଟିରେ ତା'ର ଦୃଷ୍ଟି ଆଜି ସୀମିତ; ସୁନେଲି ଆକାଶକୁ ଚାହିଁବ କ'ଣ ! ତା'ର ବା କାହିଁ ବଳ କାହିଁ ବେଳ !! କାହିଁ ବା ସୁଯୋଗ !!! ଉଦରର କରୁଣ କ୍ରନ୍ଦନ ନିକଟରେ ମସ୍ତିଷ୍କର ସମସ୍ତ ଅନୁବୋଧ ଶୁଷ୍କ ପରି ଜଣାପଡ଼େ । ମନେପଡ଼େ ଚିରନ୍ତନ ସତ୍ୟ ବାଣୀ— ଅନ୍ନ ବିହୁନେ ହଂସ ହାନି, ଯୋଗ ସାଧିବ କାହା ସେନି ।

ଆର୍ଥିକ ଦୁରବସ୍ଥା ଆଦିବାସୀମାନଙ୍କ ପକ୍ଷେ ଏକ ବିରାଟ ସମସ୍ୟା । ଏହି ସମସ୍ୟାକୁ କେନ୍ଦ୍ରକରି ଅନ୍ୟାନ୍ୟ ସମସ୍ୟାର ସୃଷ୍ଟି । ଅର୍ଥନୈତିକ ସମସ୍ୟା ପ୍ରକୃତରେ ଯେ କୌଣସି ଦେଶ ବା ଜାତି ପକ୍ଷରେ ଅଶୁଭ ସୂଚନା ଦିଏ । ମଣିଷ ବଞ୍ଚିବା ପାଇଁ ଖାଇଥାଏ; କିନ୍ତୁ ଖାଇବାକୁ ନ ପାଇଲେ ବଞ୍ଚିବ କପରି ? ଦର୍ଶନର ଇତିହାସ ( History of Philosophy ) ରୁ ଜଣାପଡ଼େ ଯେ, ପୂର୍ବେ ମଣିଷ କେବଳ ତା'ର ବଞ୍ଚିବା ପାଇଁ (For his very surviva ) ତା'ର ସମସ୍ତ ଚିନ୍ତା ଶକ୍ତିର ବିନିଯୋଗ କରୁଥିଲା । ଯେତେବେଳେ ବଞ୍ଚିବା ସମସ୍ୟାର ଏକ-ପ୍ରକାର ସମାଧାନ ହୋଇଗଲା, ମଣିଷ ଉଚ୍ଚ ଚିନ୍ତାମାନ କରିବାପାଇଁ ବଞ୍ଚିବାକୁ ଚାହିଁଲା; କିନ୍ତୁ ଏହି ପ୍ରଗତିଶୀଳ ଦୁନିଆରେ ପଶ୍ଚାତ୍‌ଗାମୀ ଆଦି-ବାସୀ ଜାତି ଆଜି ମଧ୍ୟ ବଞ୍ଚିବା ଚିନ୍ତାରୁ ମୁକ୍ତ ହେବା ଭଳି ଅବସ୍ଥାକୁ ଆସି ପାରିନାହିଁ । ଏହାର ଗୋଟିଏ ପ୍ରମାଣ ( Evidence ) ହେଲା, ବଲାଙ୍ଗିର ଜିଲ୍ଲାର ସଇନ୍ତଳା ନିକଟବର୍ତ୍ତୀ କର୍ଲାମୁଣ୍ଡା ଗ୍ରାମର ଜଣେ ନିଃସ୍ୱ ଆଦିବାସୀ ଯୁବକ, ଉଦରର ଜ୍ୱାଳା ସହି ନ ପାରି ନିକଟସ୍ଥ

ପରିବାର ନିୟନ୍ତ୍ରଣ କେନ୍ଦ୍ରକୁ ଯାଇ ଅସ୍ତ୍ରୋପଚାର କରାଇ ପନ୍ଦର ଟଙ୍କା ଆଣିଥିବା କଥା ସେହି ଅଞ୍ଚଳର ଲୋକମାନେ ସମସ୍ତେ ଜାଣନ୍ତି । ଅନୁଧ୍ୟାନ କରି ଦେଖିଲେ ଜଣାଯାଏ ଯେ, ଏହି ଆର୍ଥିକ ଦୁରବସ୍ଥାର କାରଣଗୁଡ଼ିକ ମଧ୍ୟରୁ କେତେକ ପରକାର୍ଯ୍ୟ ( Caused by external agencies ) ଓ କେତେକ ଆଦିବାସୀମାନଙ୍କର ସ୍ୱକାର୍ଯ୍ୟ ( Self-caused )

ଆଦିବାସୀମାନେ କୃଷକ କିମ୍ବା କୃଷିଶ୍ରମିକ ହେଲେହେଁ, ବିଭିନ୍ନ ଚାଷକରି କିପରି ଆର୍ଥିକ ଅଭାବ ଦୂର କରାଯାଇପାରେ—ଏ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ । ଧାନଚାଷ ବ୍ୟତୀତ ଅନ୍ୟ କୌଣସି ଚାଷ ବିଷୟରେ ତାଙ୍କର ଜ୍ଞାନ ନାହିଁ କିମ୍ବା କରିବା ପାଇଁ ଇଚ୍ଛା ନାହିଁ । ଅବଶ୍ୟ ଯେଉଁମାନେ ପାହାଡ଼ ପର୍ବତ ତଳେ ବାସ କରୁଛନ୍ତି, ସେମାନେ ଜଙ୍ଗଲ ସଫାକରି ହଳଦୀ, କାନ୍ଦୁଲ ( ହରଡ଼ ) ଚାଷ କରୁଛନ୍ତି । କିନ୍ତୁ ଏହି ଚାଷରେ ବିନିଯୋଗ କରିଥିବା ଶ୍ରମ ଓ ଅର୍ଥ ( Invested labour and capital ) ତୁଳନାରେ ସେମାନେ ଲାଭ ପାଇପାରନ୍ତି ନାହିଁ । ତାଙ୍କର ଅଜ୍ଞତା ଓ ଅଶିକ୍ଷାର ସୁଯୋଗ ନେଇ ବ୍ୟବସାୟୀମାନେ ହଳଦୀ ଓ କାନ୍ଦୁଲ ପାଇଁ ଆଗରୁ ଟଙ୍କା ଅଗ୍ରୀମ ଦେଇଥାଆନ୍ତି ଓ ଅମଳ ହେବା ସାଥେ ସାଥେ ଅତି କମ ଦରରେ ନେଇ ଯାଆନ୍ତି । ପୁଣି ଅନେକ ଜାଗାରେ ଆଦିବାସୀମାନେ ନିଜର ଅଜ୍ଞତା ବଶତଃ ସେସବୁ ଫସଲ ନିଜେ ଅମଳ ନ କରି ବ୍ୟବସାୟୀମାନଙ୍କଠାରେ ଫସଲ ଜିଆଗଛିକୁ ଅତି କମ ଟଙ୍କାରେ ବିକ୍ରୀ କରିଥାନ୍ତି । ସେହି ଫସଲ ଅମଳ କରି ବେପାରୀ ଯେ ତା' ଦେଇଥିବା ଟଙ୍କାର ପାଞ୍ଚ ଛଅ ଗୁଣ ପାଇ ପାରିବ— ଏକଥା ସେମାନେ ଆଦୌ ଜାଣି ପାରନ୍ତି ନାହିଁ ।

ଆଦିବାସୀମାନଙ୍କ ଚାଷଜମି କଟକ, ପୁରୀ ଜିଲ୍ଲାର ଚାଷ ଜମି ପରି ନୁହେଁ । ତାଙ୍କର କେତେକ ଜମିରେ ଆକାଶରୁ ବର୍ଷା ହେଉଥିବା ପର୍ଯ୍ୟନ୍ତ ପାଣିଥାଏ ଓ ବର୍ଷା ଛାଡ଼ିଗଲେ ପାଣି ଶୁଖିଯାଏ; ପୁଣି କେତେକ ଜମିରେ ବାଲିଆ ଭଳି ବଡ଼ ବଡ଼ ମାଛ ସ୍ୱଚ୍ଛନ୍ଦରେ

ରହିପାରନ୍ତି । ଏହି ଦୁଇ ପ୍ରକାରର ଜମିକୁ ଯଥାକ୍ରମେ ଡ଼ିପ ଓ ଗାଡ଼ିଆ କୁହାଯାଇପାରେ । ଏଇଥିରୁ ଆଦିବାସୀମାନଙ୍କ ଜମିର ମୂଲ୍ୟାୟନ କରାଯାଇପାରେ । ପୁଣି ଫୁଲବାଣୀ ଓ ଗଞ୍ଜାମ ଜିଲ୍ଲାର କେତେକ ଅଞ୍ଚଳରେ ଜମିଜମାର ବନ୍ଦୋବସ୍ତ ଏ ପର୍ଯ୍ୟନ୍ତ ହୋଇ ନ ଥିବାରୁ ବ୍ୟବସାୟିକ ଓ ଧନୀ ଶ୍ରେଣୀର ଲୋକେ ଆଦିବାସୀମାନଙ୍କଠାରୁ ଅତି କମ ଦରରେ ଜମି କିଣିବାରେ ସୁବିଧା ପାଉଛନ୍ତି । ଏଣୁ ଭୂମିହୀନ ଆଦିବାସୀଙ୍କ ସଂଖ୍ୟା ଦିନକୁ ଦିନ ବଢ଼ିବାରେ ଲାଗିଛି ।

ବସ୍ତୁତଃ ଦେଖିବାକୁ ଗଲେ, ଆଦିବାସୀ ଅଞ୍ଚଳରେ ଜଳସେଚନର ବ୍ୟବସ୍ଥା ହୋଇନାହିଁ । ଏଣୁ ବଲାଙ୍ଗିର, କଳାହାଣ୍ଡି ଓ ବଉଦର ଆଦିବାସୀ ଅଞ୍ଚଳର ଲୋକମାନେ ଯଥାର୍ଥରେ କହିଥାନ୍ତି, "ଆମର ସରଗ ଆଶ୍ରା, ଇନ୍ଦର ରଜା" ( ଆମର ଆଶ୍ରୟର ସ୍ଥଳ ସ୍ୱର୍ଗ, ରାଜା ଇନ୍ଦ୍ର ) । ( କେତେକ ଶିକ୍ଷିତ ଲୋକଙ୍କୁ ଛାଡ଼ିଦେଲେ ) ସେମାନେ ପ୍ରକୃତରେ ଦେଶ ଓ ସରକାରର ମହତ୍ତ୍ୱ, ଆବଶ୍ୟକତା ତଥା ଉପକାରିତାକୁ ଆଦୌ ଉପଲବ୍ଧି କରିପାରି ନାହାନ୍ତି ଏବଂ ଏହା ମଧ୍ୟ ତାଙ୍କ ପାଖରେ ଏ ପର୍ଯ୍ୟନ୍ତ ପହଞ୍ଚି ପାରିନାହିଁ । କିନ୍ତୁ ସ୍ୱାଧୀନତା ପୂର୍ବରୁ ଅର୍ଥାତ୍ ଯେତେବେଳେ ରାଜତନ୍ତ୍ର ଥିଲା, ରାଜା ଓ ଜମିଦାରମାନେ ଆଦିବାସୀ-ମାନଙ୍କ ହାରିଗୁହାରି ଆଗ ଶୁଣୁଥିଲେ । ଏଣୁ ଆଦିବାସୀମାନଙ୍କ ମନୋଭାବ ଦେଶ ଓ ସରକାରଠାରୁ ବିଚ୍ଛିନ୍ନ ନ ଥିଲା । ସେମାନଙ୍କ ପକ୍ଷେ ରାଜା ଥିଲେ ଦେବତା ସ୍ୱରୂପ ଏବଂ ସେମାନେ କହୁଥିଲେ 'ଆମର ରଜା' । ଏହାର ପ୍ରମାଣ ସ୍ୱରୂପ ଆଜି ପର୍ଯ୍ୟନ୍ତ ଆଦିବାସୀମାନଙ୍କର ରାଜଭକ୍ତି ରହିଛି; କିନ୍ତୁ ,ବଡ଼ ଦୁଃଖର ବିଷୟ ଏହି ଯେ, ନାଗରିକ-ମାନଙ୍କର ଦେଶ ଶାସନରେ ଜଡ଼ିତ ରହିବା ଗଣତନ୍ତ୍ରର ନିର୍ଯ୍ୟାସ ହେଲେହେଁ ଆଦିବାସୀମାନେ ଜାତୀୟ ତଥା ପ୍ରତିନିଧିମୂଳକ ସରକାରକୁ 'ଆମର ସରକାର' ବୋଲି କହିବେ କ'ଣ, 'ସରକାର' କହିଲେ ତାଙ୍କର ଭୟ ।

ଆଦିବାସୀଅଞ୍ଚଳରେ ଥିବା ଧନୀ ଲୋକମାନେ ଆଦିବାସୀମାନଙ୍କୁ ଋଣ ଦେଇଥାନ୍ତି । ସେମାନଙ୍କ ଋଣ ସୁଧର ହାର ଶତକଡ଼ା ୫୦, ପୁଣି

ଏହା ଚକ୍ରବୃଦ୍ଧି ହାରରେ ଅସୁଲ କରାଯାଇଥାଏ । ସାଧାରଣତଃ ଧାନ ଚକ୍ରବୃଦ୍ଧି ହାର୍‌ରେ ଋଣ ଦିଆଯାଏ । ଏହି ଋଣ ଆଷାଢ଼ ମାସ (ଧାନବୁଣା ସମୟ) ଏବଂ ଶ୍ରାବଣ ଓ ଭାଦ୍ରବ (ଯେତେବେଳେ ଆଦିବାସୀମାନଙ୍କର ଖାଇବାପାଇଁ ଘରେ କିଛି ନ ଥାଏ) ମାସରେ ଦିଆଯାଏ । ଅସୁଲ ହୁଏ ପୌଷ ପୂର୍ଣ୍ଣିମା ସୁଦ୍ଧା । ଖାତକ ଯଦି ଋଣ ଶୁଝିବାକୁ ଅକ୍ଷମ ହୁଏ, ତା ହେଲେ ସାହୁକାର ତାଠୁଁ ଘିଅ, ଡାଲି, କୁକୁଡ଼ା ଇତ୍ୟାଦି ନେଇ ସେ ବର୍ଷ ଋଣ ଆଦାୟ କରେ ନାହିଁ । ପ୍ରତିବର୍ଷ ଋଣ ଅସୁଲ ନ ହୋଇ ଯଦି ଘିଅ, ମୁଗଡାଲି, କୁକୁଡ଼ା ମିଳିଲା, ସେଥିକିରେ ସାହୁକାର ବେଶ୍ ଖସି; କାରଣ ତାର ମୂଳଧନ ଚକ୍ରବୃଦ୍ଧିହାରରେ ବଢ଼ିଗଲେ, ଆଉ ଶେଷରେ ଅସୁଲ ହୁଏ ଋଣ ନୁହେଁ—କୃଷିଜମି । ଆଦିବାସୀ ଖାତକ ହୁଏ ସେହି ସାହୁକାରର କୃଷି ଶ୍ରମିକ (ହଳିଆ) । ଆଉର ଏକ ବେଆଇନ ଋଣ 'କଲର' ନାମରେ ବଲାଙ୍ଗିର, କଳାହାଣ୍ଡି, ସମ୍ବଲପୁର, ସୁନ୍ଦରଗଡ଼ ଓ ବଉଦରେ ପରିଚିତ । ଏହି ପ୍ରକାରର ଋଣ କାରବାର ଓଡ଼ିଶାର ସବୁ ଜିଲ୍ଲାରେ ମଫସଲ ଅଞ୍ଚଳମାନଙ୍କରେ (କଟକ ଜିଲ୍ଲାରେ ମଧ୍ୟ ) ଅଛି । ବିହାରି ଓ ମାଡ୍ରାସିମାନେ ଏପ୍ରକାରର ଋଣ ଦେଉଛନ୍ତି । ସେମାନେ ସରଳସୁଧ ବା ଚକ୍ରବୃଦ୍ଧି ହାରରେ ଋଣ ଦିଅନ୍ତି ନାହିଁ । ସମୂଳସୁଧ ଅସୁଲ କରିବା ପାଇଁ ତାଙ୍କର ଏକ ଅଭିନବ ପନ୍ଥା ଅଛି । ସାଧାରଣତଃ ଏପରି ଋଣ କୌଣସି ଖାତକକୁ ଦଶଟଙ୍କାରୁ ଅଧିକ ଦିଆଯାଇ ନ ଥାଏ । ଏହି ଋଣକୁ ଖାତକ ପ୍ରତି ସପ୍ତାହରେ ଏକ ଟଙ୍କା ପଚିଶ ପଇସା ଲେଖାଏଁ ଦେଇ ଦଶ ସପ୍ତାହରେ ପରିଶୋଧ କରିଥାଏ । ଅର୍ଥାତ୍ ଏହି ଋଣର ଶତକଡ଼ା ବାର୍ଷିକ (୫୨ ସପ୍ତାହ) ସୁଧ ପ୍ରଥମ ସପ୍ତାହରୁ ଦଶମ ବା ଶେଷ ସପ୍ତାହ ପର୍ଯ୍ୟନ୍ତ ଯଥାକ୍ରମେ ଟ୧୩୦-୦୦, ଟ୧୦୪-୦୪, ଟ୧୬୨-୫୦, ଟ୧୮୫-୭୧, ଟ୨୧୬-୬୬, ଟ୨୬୦-୦୦ ଟ୩୨୫-୦୦, ଟ୪୩୩-୩୩, ଟ୬୫୦-୦୦ ଓ ଟ୧୩୦୦-୦୦ । ଏଥିରୁ ଆଦିବାସୀ ଓ ଓଡ଼ିଶାର ପଲ୍ଲୀ ଅଞ୍ଚଳର ଅଣଆଦିବାସୀମାନଙ୍କର ଅର୍ଥନୀତି ଜର୍ଜରିତ କରୁଣ ଦୈନ୍ୟର ସମ୍ୟକ ଧାରଣା ହୁଏ ।

ସମାଜରେ ପ୍ରଚଳିତ ରହିଥିବା କୁସଂସ୍କାର, ଅନ୍ଧବିଶ୍ୱାସ ଓ ଭ୍ରାନ୍ତ ଧାରଣା ଯୋଗୁଁ ଆଦିବାସୀମାନେ ଅନେକ ସମୟରେ ଆର୍ଥିକ ସଂକଟର ସମ୍ମୁଖୀନ ହୋଇଥାନ୍ତି । ଅନେକ କ୍ଷେତ୍ରରେ ଦେଖାଯାଏ ଯେ, ଆଦିବାସୀମାନେ ଖର୍ଚ୍ଚପ୍ରିୟ । ନିଜ ଆୟ ତୁଳନାରେ ଅଧିକ ଖର୍ଚ୍ଚ କରିବାକୁ ମଧ୍ୟ କୁଣ୍ଠାବୋଧ କରନ୍ତି ନାହିଁ; ସଞ୍ଚୟ କରି ଶିଖିବା ତ ବହୁତ ଦୂରର କଥା । ବିବାହାଦି କର୍ମରେ ଅଧିକ ଖର୍ଚ୍ଚ କରିବା ସମ୍ମାନର ବିଷୟ ବୋଲି ଆଦିବାସୀମାନେ ଭାବନ୍ତି । ବିବାହରେ କିଏ କେତେ ଖର୍ଚ୍ଚ କରିପାରିବ—ଏ ବିଷୟରେ ବରପିତା ଓ କନ୍ୟାପିତା ମଧ୍ୟରେ ଏକପ୍ରକାର ପ୍ରତିଯୋଗିତା ଚାଲେ । ଉଭୟେ ଶହ ଶହ ସଂଖ୍ୟାରେ ଉଭୟଙ୍କ ଘରକୁ ଅତିକମରେ ଥରେ ଲେଖାଏଁ ଯାଇଥାନ୍ତି; କାରଣ ସାଙ୍ଗରେ ବହୁତ ଲୋକ ନେବା ବଡ଼ଲୋକ ବୋଲି ବିବେଚନା କରାଯାଏ । ଯାହା ପକ୍ଷରୁ ଯେତେ ଅଧିକ ଲୋକ ଆସିଲେ, ତା'ର ସମ୍ମାନ ସେତେ ଅଧିକ ବୋଲି ଉଭୟଙ୍କର ଧାରଣା । ଏହାଦ୍ୱାରା ଉଭୟ ପକ୍ଷ କ୍ଷତିଗ୍ରସ୍ତ ହୋଇଥାନ୍ତି । ଅନେକ କ୍ଷେତ୍ରରେ ଋଣ କରି ବିବାହାଦି କାର୍ଯ୍ୟ ଅତି ଯାକଜମକରେ ସଂପାଦନ କରୁଥିବା ଦେଖାଯାଏ ।

ନିଜର ଅଶିକ୍ଷାଯୋଗୁଁ ଆଦିବାସୀମାନେ ପରିବାର ନିୟନ୍ତ୍ରଣର ଉପକାରିତା ଆଦୌ ବୁଝି ନାହାନ୍ତି । ଏଣୁ ଜଣେ ଦରିଦ୍ର ଆଦିବାସୀର ଦଶ ବାରଟି ପୁଅଝିଅ ଥିବା ସବୁବେଳେ ଦେଖାଯାଏ । ପୁଣି ସମାଜର କୁସଂସ୍କାର ଓ ଅଶିକ୍ଷା ଯୋଗୁଁ ପୁନର୍ବିବାହ ପାଇଁ କୌଣସି ସାମାଜିକ କଟକଣା ନ ଥିବାରୁ ଅନେକ କ୍ଷେତ୍ରରେ ଦ୍ୱିପତ୍ନୀ ବା ଦ୍ୱିପତି ଗ୍ରହଣ ( Bigamy ) ଦେଖାଯାଏ । ଅର୍ଥାତ୍ ପୁନର୍ବିବାହ ସମାଜାନୁମୋଦିତ ହୋଇଥିବାରୁ ଆଦିବାସୀମାନେ ଏହାକୁ ନୈତିକ ବିଚାରର ମାନଦଣ୍ଡ (criterion of moral judgement ) ରେ ପରଖ କରିବା ପାଇଁ ଆଦୌ ପ୍ରସ୍ତୁତ ନୁହନ୍ତି । ଏହାଦ୍ୱାରା ତାଙ୍କର ଆର୍ଥିକ ଅବସ୍ଥା ଆହୁରି ଶୋଚନୀୟ ହୋଇ ପଡ଼େ ।

ଅପରିଣାମଦର୍ଶିତା ଯୋଗୁଁ ମଧ୍ୟ ଅନେକ ସମୟରେ ଆଦିବାସୀମାନେ ତାଙ୍କ ଆର୍ଥିକ ଅବସ୍ଥାକୁ ବିପନ୍ନ କରିଥାନ୍ତି । ସୀମିତ ଆୟରେ କିପରି ତାଙ୍କ କୁଟୁମ୍ବକୁ ଚଳାଇବେ—ଏଥିପାଇଁ ଆଦିବାସୀଙ୍କର ଆଦୌ ଚିନ୍ତା ନାହିଁ ବା କୌଣସି ଯୋଜନା ନାହିଁ । ପାଇଲେ ତ ବାଘର ଆହାର, ନ ପାଇଲେ ପେଟରେ ଓଦାକନା । ମଦମାଂସ ଭୋଜନ ତାଙ୍କ ପର୍ବପର୍ବାଣିର ଏକ ବିଶେଷ ଅଂଶ ।

ମଦ ପାଇଁ ଆଦିବାସୀମାନଙ୍କୁ ଦୂରକୁ ଯିବାକୁ ପଡ଼େ ନାହିଁ । ପ୍ରତ୍ୟେକ ଗାଁରେ ଥାଏ ବେଆଇନ ଖର୍ଜୁରୀ ଦେଶୀ ମଦ ଦୋକାନ । ଏପରି ମଦ ଦୋକାନ ଗାଁରେ ରଖିବା ପାଇଁ ପ୍ରତ୍ୟେକ ଗାଁକୁ ମଦଭାଟି ଠିକାଦାରଠାରୁ କୋଡ଼ିଏ ପଚିଶ ଟଙ୍କା ମିଳିଥାଏ । ଏହି କୋଡ଼ିଏ ପଚିଶ ଟଙ୍କାର ବିନିମୟରେ ଠିକାଦାର ଯେ ଆଦିବାସୀ ତଥା ଅଶିକ୍ଷିତ ଅଣ-ଆଦିବାସୀଙ୍କୁ ସର୍ବସ୍ୱାନ୍ତ କରି ହଜାର ହଜାର ଟଙ୍କା ଲାଭ ଉଠାଉଛି—ଏ କଥା ସେମାନେ ଚିନ୍ତା କରି ପାରନ୍ତି ନାହିଁ ।

ଅଳ୍ପରେ ସନ୍ତୋଷ ଲାଭ କରିବା ଗୁଣ କେତେକ ଦୃଷ୍ଟିରୁ ଭଲ ହେଲେ ମଧ୍ୟ ଏହା ଏକ ଅନୁନ୍ନତ ତଥା ଦରିଦ୍ର ଜାତିର ଉତ୍ତରୋତ୍ତର ଉନ୍ନତିର ପରିପନ୍ଥି । ଏହି ଗୁଣ ଆଦିବାସୀଙ୍କର ଏତେ ଅଧିକ ଯେ, ଚାଷ ବ୍ୟତୀତ ଅନ୍ୟ କୌଣସି ଉପାୟରେ କିଛି ଆୟ କରିବାପାଇଁ ଭାବନ୍ତି ମଧ୍ୟ ନାହିଁ । ଆଦିବାସୀମାନେ ବ୍ୟବସାୟକୁ ଘୃଣା କରନ୍ତି । କେତେକ ଆଦିବାସୀ ବ୍ୟବସାୟ କରି ମୂଳଧନ ବୁଡ଼ାଇଥାନ୍ତି; କାରଣ ବ୍ୟବସାୟ କରିବା ପାଇଁ ଆବଶ୍ୟକ କୌଶଳ ଓ ଜ୍ଞାନ ସେମାନଙ୍କର ନ ଥାଏ । ଏ କ୍ଷେତ୍ରରେ ହରିଜନମାନେ ଆଦିବାସୀଙ୍କଠାରୁ ଅଗ୍ରଗତି କରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଆହୁରି ମଧ୍ୟ ଆଦିବାସୀ-ମାନଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ପାଇଁ ଆଦିବାସୀ ଅଞ୍ଚଳମାନଙ୍କରେ କର୍ମଯୋଗାଣ ଓ ସାମୟିକ ନିଯୁକ୍ତିର କୌଣସି ସୁବିଧା ସୁଯୋଗ ନ ଥିବାରୁ ସେମାନେ ବାଧ୍ୟ ହୋଇ ବର୍ଷର ଅଧିକାଂଶ ସମୟ ବେକାର ହୋଇ ରହନ୍ତି ।

କିନ୍ତୁ ଆଦିବାସୀମାନଙ୍କର ଆର୍ଥିକ ଦୁର୍ଗତିର କାରଣ ଯାହା ହେଉନା କାହିଁକି ସେ ସବୁର ମୂଳରେ ରହିଛି ଅଶିକ୍ଷା—ଘୋର ଅଶିକ୍ଷା । କିନ୍ତୁ ଶିକ୍ଷାର ବ୍ୟବସ୍ଥା କରିଦେଲେ ଆର୍ଥିକ ଦୁରବସ୍ଥା ଆପେ ଆପେ ସୁଧୁରିଯିବ ବୋଲି ଭାବିବା ଭ୍ରମାତ୍ମକ ।

ଭୋକ ଉପବାସରେ କୋଉ ପିଲା ସ୍କୁଲକୁ ଯିବ ବା କେଉଁ ବାପା ମା ପୁଅକୁ ସ୍କୁଲକୁ ପଠାଇବେ ? ଏଣୁ ଆଦିବାସୀମାନଙ୍କର ଆର୍ଥିକ ଦୁର୍ଗତିର ଆଲୋଚ୍ୟ କାରଣ ଗୁଡ଼ିକର ନିରାକରଣ ସହିତ ଶିକ୍ଷାର ସୁବନ୍ଦୋବସ୍ତ କରିବା ଉଚିତ । ଏହା ହେଲେ ଆଦିବାସୀ ସମସ୍ୟା ଆଦୌ ରହିବ ନାହିଁ ।



# ଆଦିବାସୀ ଧର୍ମ ଓ ଧର୍ମ ବିଶ୍ୱାସ

ଅଧ୍ୟାପକ **ଆଦିକନ୍ଦ ପତି**

ଧର୍ମର ସୃଷ୍ଟି ସ୍ୱତନ୍ତ୍ର ନୁହେଁ । ଏକ ନିର୍ଦ୍ଦିଷ୍ଟ ପଥରେ ମଣିଷ ଜୀବନର ଧାରାକୁ ନିୟନ୍ତ୍ରଣ କରିବା ଅର୍ଥ ଧର୍ମ । ସାର୍ବଜନୀନ ଜୀବନର ପ୍ରକୃତି ପ୍ରତି ଭୟ ଦେବତା ବିଶ୍ୱାସରେ ରୂପାନ୍ତରିତ ହୋଇଛି । ଏହି ବିଶ୍ୱାସ କେବଳ ଭୟରୁ ଜାତ ନୁହେଁ, ପ୍ରକୃତି ପ୍ରତି କୃତଜ୍ଞତାରୁ ମଧ୍ୟ ଜାତ । ତେଣୁ ଖ୍ରୀ: ପୂ: ୫୦୦୦ ବର୍ଷ ପୂର୍ବର ଇଜିପ୍ଟ ମେସୋପଟାମିଆ ସଭ୍ୟତାରୁ ଏହି ଧର୍ମର ପ୍ରାଚୀନତା ସମ୍ବନ୍ଧରେ ଜଣାଯାଇଥାଏ । ଏହି ଧର୍ମବିଶ୍ୱାସ ସେତେବେଳେ ହିଁ ମୂର୍ତ୍ତି ପୂଜାରେ ରୂପାୟିତ ହୋଇଥିଲା । ତେଣୁ ଏହି ଧର୍ମବିଶ୍ୱାସ ଓ ମୂର୍ତ୍ତିପୂଜା ପୃଥିବୀର ଆଦି ସଭ୍ୟତା ସହ ସଂଶ୍ଳିଷ୍ଟ । ଏହି ଧର୍ମବିଶ୍ୱାସ କ୍ରମଶଃ ଦାର୍ଶନିକ ତତ୍ତ୍ୱରୂପେ ପ୍ରତିଷ୍ଠିତ ହେଲା ଓ ସାଧାରଣ ମାନବଠାରେ ଭଗବାନଙ୍କର ଅସ୍ତିତ୍ୱ ସ୍ୱୀକୃତ ହେଲା ବିଭିନ୍ନ ଧର୍ମ ତତ୍ତ୍ୱସବେ ।

ଉଚ୍ଚ ସ୍ତରର ଧର୍ମଦର୍ଶନ ସର୍ବଦା ସାଧାରଣ ମଣିଷଙ୍କ ମାନସିକ ସ୍ତର ସହ ତାଳଦେଇ ଚାଲି ପାରେନା । ତେଣୁ ଏକ ସମୟରେ ସମାଜରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ମାତ୍ର ପରସ୍ପର ମଧ୍ୟରେ ଏ ଚିନ୍ତାଧାରାର ଆଦାନପ୍ରଦାନ ହୁଏ, ଯେତେବେଳେ ଉଭୟର ବିକାଶ ସମାନ୍ତରାଳ ଗତିରେ ଆଗେଇ ଚାଲେ ।

ସାଧାରଣ ଲୋକ ଜୀବନର ଧର୍ମବିଶ୍ୱାସ ଯେପରି ଉଚ୍ଚ ସ୍ତରର ଦାର୍ଶନିକ ଧର୍ମଭାବନାଠାରୁ ସ୍ୱତନ୍ତ୍ର, ସେହିପରି ସମାଜରେ ରହିଥିବା ନିମ୍ନସ୍ତରର ଆଦିବାସୀ ସଂପ୍ରଦାୟ ମଧ୍ୟରେ ରହିଥିବା ଧର୍ମବିଶ୍ୱାସର ମଧ୍ୟ ସ୍ୱାତନ୍ତ୍ର୍ୟ ରହିଛି । କିନ୍ତୁ ଏହି ଧର୍ମବିଶ୍ୱାସ ଲୋକ-ଜୀବନର ଧର୍ମ

ବିଶ୍ବାସ ସହ ଅନେକ ସାଦୃଶ୍ୟ ରକ୍ଷା କରି ପାରିଛି । ଅବଶ୍ୟ ଏମାନଙ୍କର ଧର୍ମ ଓ ଧର୍ମବିଶ୍ବାସ ତାଙ୍କ ଚତୁର୍ଦ୍ଦିଗରେ ବାସକରୁଥିବା ଅନ୍ୟମାନଙ୍କ ଦ୍ବାରା ପ୍ରଭାବାନ୍ବିତ ।

ଆଦିବାସୀ ଧର୍ମ ସେମାନଙ୍କ ଜୀବନର ମୂଲ୍ୟବୋଧ ସହ ଜଡ଼ିତ । ଜୀବନର ଯାବତୀୟ ସୁଖ ଦୁଃଖରେ ସେମାନେ ଏକ ଐଶ୍ବରିକ ଶକ୍ତି ଦ୍ବାରା ଚାଳିତ ବୋଲି ଭାବନ୍ତି । ଦେବତାର ଭୟ ତା ଜୀବନକୁ ସଂକୋଚିତ କରିଦିଏ । ଏଇ ଦେବତା ଭୟ କେତେକ ସ୍ଥଳରେ ସେ ସମାଜକୁ ନିୟନ୍ତ୍ରିତ କରିଛି ତ ଅନ୍ୟ କେତେକ ସ୍ଥଳରେ ତା' ଜୀବନକୁ ଚଳଶକ୍ତି-ହୀନ କରିଛି, ସେ ଅଥର୍ବ ହୋଇଛି ।

ଲୋକ ଜୀବନର ସୁଖ ଦୁଃଖ, ଭଲ ମନ୍ଦ ସବୁର ବିବରଣୀ ଲୋକଗୀତ ବା ଲୋକ ଗଳ୍ପରୁ ଜଣାଯାଏ । ଲୋକ ଜୀବନରେ ତା ସ୍ରଷ୍ଟାର ପରିଚୟ ଲୋକସ୍ମୃତିର ଅତଳ ଗର୍ଭରେ ସତ୍ତା ହରାଇଥାଏ । ସଭିଙ୍କ ଜୀବନର ଭାବସମ୍ପଦ ବା ଅନୁଭୂତି ପ୍ରବଣତାରେ ତାହା ଭରପୂର । ତେଣୁ ସେଇ ଏକ ଜୀବନରେ ଅନେକ ଜୀବନର ଆତ୍ମିକତା ତାକୁ ସତ୍ୟ-ଶିବ କରି ଗଢ଼ି ତୋଳେ । ଆଦିବାସୀଙ୍କ ମଧ୍ୟରେ ପ୍ରଚଳିତ ଜୀବନଧାରା ପ୍ରଣାଳୀ ଓ ଧର୍ମବିଶ୍ବାସର ବିବରଣୀ ମିଳେ ସେମାନଙ୍କ ଗୀତ ଗଳ୍ପରୁ ଓ ପ୍ରଚଳିତ ଧର୍ମଧାରଣାରୁ । ପୂର୍ବୋକ୍ତ ଧର୍ମଧାରଣା ଏବେ ବି ସେମାନଙ୍କ ଜୀବନକୁ ନିୟନ୍ତ୍ରଣ କରୁଛି । ସେମାନଙ୍କ ଜୀବନର ଏଇ ଘଟଣାପ୍ରବାହ, ଜୀବନଧାରା ତାଙ୍କ ଚତୁର୍ଦ୍ଦିଗରେ ବାସକରୁଥିବା ତଥା-କଥିତ ଅତ୍ୟାଧୁନିକ ସମାଜର ମୂଳ ଉତ୍ସ ଏକ ଜୀବନ୍ତ ସ୍ବାକ୍ଷର । ଏକ ବିଶାଳ ସ୍ରୋତସ୍ବିନୀର ଉଦ୍ଭବ ସ୍ଥଳ ଯେପରି ପାହାଡ଼ କନ୍ଦରର ଏକ କ୍ଷୁଦ୍ର ଜଳଧାରା, ସେହିପରି ଆଦିମତାର ସ୍ବାକ୍ଷର ବହନକରି ପାହାଡ଼ରେ ବସବାସ କରୁଥିବା ଆଦିବାସୀଙ୍କଠାରେ ଆଧୁନିକ ସମାଜର ପ୍ରାଚୀନତା ସୁସ୍ପଷ୍ଟ ।

ତେବେ ଏହା ସତ୍ୟ ଯେ ସେମାନଙ୍କ ମଧ୍ୟରେ ଦେବତା ବିଶ୍ବାସ ରହିଛି ଓ ସମଭାବରେ ଦେବତା ନାମରେ ଏପରି ଅନ୍ଧବିଶ୍ବାସ ରହିଛି,

ଯାହା ସେମାନଙ୍କୁ ଏବେ ବି ଜୀବନବୋଧ ସମ୍ପର୍କରେ ସମ୍ୟକ ପରିଚିତ କରି ପାରିନି । ସେମାନଙ୍କର ଧର୍ମ କଣ ? ସେମାନେ ସନାତନ ହିନ୍ଦୁ । ସନାତନ ହିନ୍ଦୁ ବୋଲି ଆଖ୍ୟାତ କରିବାର ଅର୍ଥ ମାନବିକତା ଓ ସଂସାରରେ ନିଜକୁ ପ୍ରତିଷ୍ଠିତ କରିବାର ସୂତ୍ର । ଯେଉଁ ସନାତନ ହିନ୍ଦୁ ଧର୍ମର ବାହକ ଏହି ଭାରତ ଭୂମିର ନୁହନ୍ତି, ଏକ ଯାଯାବର ଜାତି ସେଇ ଗୋଷ୍ଠୀର ଏକ ଶାଖା ଭାରତ ଭୂଇଁରେ ନିଜକୁ ପ୍ରତିଷ୍ଠିତ କରି କ୍ରମେ ସ୍ୱକୀୟତାକୁ ଧରି ରଖି ସଂକୀର୍ଣ୍ଣ ହିନ୍ଦୁ ଧର୍ମ ବା ସମାଜରେ ପରିଣତ ହେଲା । ଏହି ଆଦିବାସୀମାନେ ହେଲେ ସେଇ ହିନ୍ଦୁ ଧର୍ମର ଘୃଣ୍ୟ ଜୀବ । ଏହି ହିନ୍ଦୁ ଧର୍ମର ପ୍ରାଚୀନତା ନୀଳ, ଟାଇଗ୍ରୀସ, ଇଉଫ୍ରେଟିସ ନଦୀ କୂଳମାନଙ୍କରୁ ମିଳୁଛି, ତେବେ ସେମାନେ କି ଦିନେ ହିନ୍ଦୁ ଥିଲେ । କିନ୍ତୁ ଭୂଗର୍ଭର କେତେକ ଜୀର୍ଣ୍ଣ ମନ୍ଦିର, ଦେବତା ବିଗ୍ରହ ବ୍ୟତୀତ ତା'ର ପରିଚୟ ବା ଦେବ କିଏ ? ସେଇ ଧର୍ମଧାରା କେବଳ ପଞ୍ଚନଦୀ ଗଙ୍ଗା ଅବବାହିକା ଧରି ରଖି ପାରିଲା । ତେଣୁ ଯେଉଁ ତଥାକଥିତ ଆର୍ଯ୍ୟମାନେ ହିନ୍ଦୁ ନାମରେ ପରିଚୟ ଦେଲେ ତଥାକଥିତ ଅନାର୍ଯ୍ୟ ବା ଆଜିର ଆଦିବାସୀମାନଙ୍କୁ ସେମାନେ ସେଇ 'ହିନ୍ଦୁ'ର ପରିଚୟରୁ ବଞ୍ଚିତ କରିପାରି ପାରିବେ ନାହିଁ କି ତାଙ୍କ ନିମ୍ନସ୍ତରର ବୋଲି ଅଭିହିତ କରିବା ଅବିମୃଶ୍ୟକାରିତା ।

ଆଦିବାସୀଙ୍କ ମଧ୍ୟରେ ଅଟଳ ଦେବତା ବିଶ୍ୱାସ ରହିଛି । ସେମାନଙ୍କର ଦେବତା ହିନ୍ଦୁ ଦେବତା । ପୃଥିବୀରେ ମାନବ ସମାଜ ଗଠନ ଦିନଠାରୁ ଦେବତା ପ୍ରତି ଭୟ ଓ ଭକ୍ତି ରହି ଆସିଛି । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେଉଁମାନଙ୍କ ସହ ମଣିଷର ପ୍ରତି ପଦେ ପଦେ ସମ୍ପର୍କ, ସେଇମାନଙ୍କର ବିଭିନ୍ନ ରୂପ ଦେଖି ସେ ବିସ୍ମୟାଭିଭୂତ ହୋଇଛି, ଭୟାଭିଭୂତ ହୋଇଛି ଚନ୍ଦ୍ର, ସୂର୍ଯ୍ୟ, ତାରା, ପାଣି, ପବନକୁ ଦେଖି ପ୍ରାଚୀନ ମେସୋପଟାମିଆ, ଇଜିପ୍ଟ ମଣିଷ ଯେପରି ମୁଣ୍ଡ ନୁଆଁଇଥିଲା, ବେଦ ଯେପରି ଶତମୁଖ ହୋଇ ଉଠିଥିଲା, ଏହି ଆଦିବାସୀମାନେ ସେଥିରୁ ମୁକ୍ତ ନୁହନ୍ତି । ସେମାନଙ୍କ ଉଦ୍ଦେଶ୍ୟରେ ପୂଜା ଅର୍ଚ୍ଚନା ପ୍ରାଚୀନ ପ୍ରକୃତି

ପୂଜାର ପରିଚୟ ଦେଇଥାଏ । ପ୍ରକୃତିର ନାନା ରୂପ ଦେଖି ତା ମନରେ ପ୍ରଶ୍ନ ଉଠେ । କାଳ୍ପନିକତା ଦ୍ୱାରା ପ୍ରଭାବିତ ହୁଏ । ସେ ଦେବତାର ପ୍ରତିଷ୍ଠା ଉଦ୍ଦେଶ୍ୟରେ ମନରୁ ପାଞ୍ଚକଥା ଆଣି ଯୋଡ଼େ, ଗପଟିଏ ଗଢ଼େ । ତାହା ସମସ୍ତଙ୍କ ମନରେ ଛାପ ପକାଏ । ଧର୍ମବିଶ୍ୱାସ ସ୍ୱାଭାବିକ ଭାବରେ ଆସ୍ଥାନ ଜମାଏ ।

ସେ ମୂର୍ଖ । ବିଶ୍ୱାସ ହିଁ ତାର ସବୁ ପ୍ରାଚୀନ ପରମ୍ପରା ଉପରେ ସେ ତିଷ୍ଠି ରହିଛି । ତା ଜୀବନକୁ ପରିଚାଳିତ କରିଛି । ଆଧୁନିକ ଯୁଗରେ ରହି ବି ତାଠାରୁ ବହୁ ଦୂରରେ ଆତ୍ମଗୋପନ କରିଛି । ଏ ସମାଜ କଥା ସେ ବୁଝେନି କି ଏ ସମାଜ ତା କଥା ବୁଝେନି । ବଣଜଙ୍ଗଲ ତା ଚାରଭୂଇଁ । ସେ ଦେଖେ ତା ଚାରିଆଡ଼େ ପ୍ରକୃତି ତାକୁ ଘେରି ରହିଛି । ସେଇଥିରେ ସେ ବିସ୍ମୟାଭିଭୂତ ହୁଏ । ସବୁ ଦେଖି ଦେବତାର ସୃଷ୍ଟି କଳ୍ପନା କରେ । ଦେବତା ଉଦ୍ଦେଶ୍ୟରେ ମୁଣ୍ଡ ନୁଆଁଏ । ପୃଥିବୀ, ବଣଜଙ୍ଗଲ, ନଦୀନାଳ, ପଶୁପକ୍ଷୀ, ଚନ୍ଦ୍ର, ସୂର୍ଯ୍ୟ ପ୍ରଭୃତିଙ୍କର ସୃଷ୍ଟିର ବୈଚିତ୍ର୍ୟ ସମ୍ବନ୍ଧରେ ନାନାକଥା ଭାବେ । ସେମାନଙ୍କର ଅଲୌକିକତା ସମ୍ବନ୍ଧରେ ଶତମୁଖ ହୁଏ ।

ପ୍ରାକୃତିକ ବିପର୍ଯ୍ୟୟରେ ଭୟ କରେ । ଦେବତାଙ୍କଠାରେ ଅପାର ବିଶ୍ୱାସ ରଖି ପ୍ରଣତି ଜଣାଏ । ମୁକ୍ତି ପାଇଁ ବଳି ଦିଏ । ପ୍ରତି ପଦେ ପଦେ ସେ କୌଣସି ନା କୌଣସି ଦେବତାଙ୍କ ରୂପ ଦେଖେ ।

ହିନ୍ଦୁ ପୁରାଣମାନଙ୍କରେ ଭୂ-କମ୍ପ ସମ୍ବନ୍ଧରେ ବିଭିନ୍ନ ଉପାଖ୍ୟା-ନର ବର୍ଣ୍ଣନା ଅଛି । ବାସୁକୀ ମସ୍ତକରେ ପୃଥିବୀ ଧାରଣ କରିଥାଏ । ତା ପାର୍ଶ୍ୱ ପରିବର୍ତ୍ତନ ଭୂ-କମ୍ପର କାରଣ ।

ସେହିପରି ବଣ୍ଡା ମାନଙ୍କ ମଧ୍ୟରେ ପ୍ରଚଳିତ କଥା ଅନୁସାରେ ମହାପ୍ରଭୁଙ୍କ ଆଦେଶ ଅନୁସାରେ କଙ୍କାଳୀ ପୃଥିବୀକୁ ନିଜ ମୁଣ୍ଡରେ ଧାରଣ କରେ । ଖାଇବାକୁ ଇଚ୍ଛା କଲେ ପୃଥିବୀ ଥରାଇ ସମସ୍ତଙ୍କୁ ମନେ ପକାଇଦିଏ ।

ଗଦବାଙ୍କ କଥା ଅନୁସାରେ ଧର୍ମପ୍ରଭୁ ତାଙ୍କ ସ୍ତ୍ରୀ ବସୁମତୀଙ୍କ ସହ ମିଳିତ ହେଲେ ପୃଥ୍ୱୀ କମ୍ପିଉଠେ ।

କୁଟିଆ କନ୍ଧମାନେ ମନେ କରନ୍ତି ଧାରନ୍ଦେଲୀ ସହ ଅନ୍ୟ ଦେବତାମାନେ ଗୁମ୍ଫାରେ ବାସ କଲେ ଓ କବାଟ ଦେଲେ । ଯେତେବେଳେ କବାଟ ଖୋଲି କେହି ବାହାରକୁ ଆସନ୍ତି ସେତେବେଳେ ପୃଥିବୀ ଥରିଉଠେ । କବାଟ ବନ୍ଦ କଲେ ଭୂମିକମ୍ପ ବନ୍ଦ ହୁଏ ।

ଏହିପରି ପ୍ରକୃତିର ବିପର୍ଯ୍ୟୟକୁ ସେମାନେ ଧର୍ମ ବା ଈଶ୍ବରଙ୍କ ସହ ଜଡ଼ିତ କରନ୍ତି । ଏପରି ପରିସ୍ଥିତିରେ ଦେବତା ପ୍ରତି ବିଶ୍ବାସ ଓ ଭୟ ପ୍ରଗାଢ଼ ହୁଏ ।

ପ୍ରକୃତି ବିପର୍ଯ୍ୟୟରେ ଉପୁଜିତ ହେବାଛଡ଼ା ଭୂତପ୍ରେତ, ଡାହାଣୀମାନଙ୍କ ପ୍ରତି ମଧ୍ୟ ଭୟ । ଏଇ ଭୂତ ପ୍ରେତ ବିଶ୍ବାସ ପୃଥିବୀର ଏକ ପ୍ରାଚୀନ ପରମ୍ପରା। ଏହାର ସମାଧାନ ଏ ପର୍ଯ୍ୟନ୍ତ ମଧ୍ୟ ସନ୍ତୋଷଜନକ ଭାବେ ହୋଇ ପାରିନି । ସେମାନଙ୍କ ସହ ସମ୍ପର୍କ ସ୍ଥାପନ କରିବା ପାଇଁ ଆଜିର ବିଜ୍ଞାନ ଲାଳାୟିତ ମଣିଷର ମୃତ୍ୟୁପରେ ତା ସଂସ୍କାର ପଦ୍ଧତି ଏବେ ବି ଏକ ବିବାଦୀୟ ପ୍ରଶ୍ନ । ଏମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ଅଛି ସତ, ମାତ୍ର ଶବ ପୋଡ଼ା ହେଲେ କିମ୍ବା ପୋତା ହେଲେ କ୍ଷତି ନାହିଁ । ସଓରାଙ୍କ ମଧ୍ୟରେ ପ୍ରଚଳିତ ପ୍ରଥା ଅନୁସାରେ ପୋତା ହେଉଥିବା ଲୋକଙ୍କ ଭୂତ ଶୁଭ୍ର ବର୍ଣ୍ଣ ଓ ପୋଡ଼ା ହେଉଥିବା ଶବର ଭୂତ କୃଷ୍ଣବର୍ଣ୍ଣ; କିନ୍ତୁ ମଣିଷ ତା ମୃତ୍ୟୁପରେ ଭୂତ ହେବ ସତ କିନ୍ତୁ ରହିବାକୁ ବା ଖାଇବାକୁ କିଛି ନ ପାଇ ଅନ୍ୟମାନଙ୍କର ଅନିଷ୍ଟ କରିବ । ଏହାର ସମାଧାନ (ସଓରା) ସେମାନେ କରିଛନ୍ତି । କାହାର ମୃତ୍ୟୁ ପରେ ତା ଉଦ୍ଦେଶ୍ୟରେ ଗୋଟିଏ ପଥର ନିର୍ଦ୍ଦିଷ୍ଟ ରହେ ଓ ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ ଲୁଗା, ଖାଦ୍ୟ, ମଦ ଦିଆଯାଏ । ଏପରି ପ୍ରଥା ପୀରାମାଡ଼ ସଭ୍ୟତାରେ ପ୍ରଚଳିତ ଥିଲା । ମଣିଷର ମୃତ୍ୟୁପରେ ତାର ଅନ୍ୟ ଏକ ଅବସ୍ଥାର କଳ୍ପନା ପ୍ରାୟ ସବୁ ଧର୍ମ କରିଛି ।

କୌଣସି ଆଦିବାସୀ ରୋଗରେ ପଡ଼ିଲେ ବି ଡାକ୍ତରଖାନାକୁ ଯିବାକୁ ଉଚିତ ମନେ କରେନି । ସେ ଦୌଡ଼େ ବଇଦ ଗୁଣିଆ ପାଖକୁ । କୁ କର୍ମର ଫଳ ସ୍ୱରୂପ ସେ ରୋଗକୁ ଗ୍ରହଣ କରେ ।

ଚୋରି କଲେ ବି ପାପ । ଯେତେ ଅଭାବ ଅସୁବିଧାରେ ପଡ଼ିଲେ ବି ଆଦିବାସୀ ଚୋରି କରିବାକୁ ଭୟକରେ । ଏକ ଗୁହ୍ନା ସଂପ୍ରଦାୟ ଗଳ୍ପରେ ଏହାର ବର୍ଣ୍ଣନା ଅଛି । ଚୋରି କଲେ ଅତିଶୀଘ୍ର କୁଷ୍ଠରୋଗାକ୍ରାନ୍ତ ହୋଇ ହାତ ଗୋଡ଼ ହରାଇବାକୁ ହୁଏ ବୋଲି ସେ ବିଶ୍ୱାସ କରେ ।

ଦିଦାୟୀ ( Diday ) ମାନଙ୍କର ବିଶ୍ୱାସ ଦେବତାହିଁ ରୋଗର ସ୍ରଷ୍ଟା । ସେମାନେ ଖାଇବାକୁ ନ ପାଇ ରୁମରୋକଙ୍କ ନିକଟରେ ଆପତ୍ତି କଲେ । ତାଙ୍କ ନିର୍ଦ୍ଦେଶରେ ଜ୍ୱର, କାଶ ଓ ଝାଡ଼ା ହେଲା । ଗୃହକର୍ତ୍ତା ମଧ୍ୟ ଏଥିରୁ ମୁକ୍ତି ପାଇଁ ରୁମରୋକଙ୍କ ପାଖରେ ନିବେଦନ କଲେ । ଏଥିରୁ ମୁକ୍ତି ପାଇବାପାଇଁ ସେ ଏହାର ଦେବତା କୋଟ, ପାର୍ବୀ ଓ ବିରହୁଇଙ୍କୁ ଛେଳି, କୁକୁଡ଼ା ଓ ଅଣ୍ଡା ଦେଇ ରୋଗମୁକ୍ତ ହେବାକୁ ନିର୍ଦ୍ଦେଶ ଦେଲେ ।

ଗଦବାଙ୍କ ମଧ୍ୟରେ ପ୍ରଚଳିତ କଥା ଅନୁସାରେ ଉଇରନ ମହାପ୍ରଭୁଙ୍କ ଭଉଣୀ କଙ୍କାଳୀ ମାଝିଙ୍କ ପିଲାମାନେ ପୃଥିବୀକୁ ଆସି କଲେରାରେ ଲୋକଙ୍କୁ ଆକ୍ରାନ୍ତ କଲେ । ସେମାନଙ୍କୁ ସନ୍ତୁଷ୍ଟ କରି ରୋଗମୁକ୍ତ ହେବା ପାଇଁ ଲୋକମାନେ ଭଲ ଭଲ ଖାଦ୍ୟ ଦେଲେ ।

ସଓରାଙ୍କ ଗଳ୍ପ ଅନୁସାରେ ଜଣେ ପାଣର ସ୍ତ୍ରୀ ପ୍ରସବପରେ ସେ ମଇଳା ଲୁଗା ନଦୀରେ ଧୋଇବାରୁ ଓ ସେ ଜଳ ଅନ୍ୟମାନେ ବ୍ୟବହାର କରିବାରୁ ପୃଥିବୀରେ ରୋଗ ବ୍ୟାପିଗଲା ।

ଏଥିରୁ ସୂଚୀତ ହୁଏ, ସେମାନଙ୍କର ପରିଷ୍କାର, ପରିଚ୍ଛନ୍ନ ଜୀବନଧାରା । ମଇଳା ସମ୍ପର୍କରେ ଆସିଲେ ରୋଗ ହେବାର କାରଣ

ସେମାନେ ମଧ୍ୟ ଆବିଷ୍କାର କରି ପାରିଛନ୍ତି । କିନ୍ତୁ ରୋଗର କାରଣ ସେମାନେ ଯେପରି ଦେବତାଙ୍କଠାରେ ଉପସ୍ଥାପନା କରି ଔଷଧ ବ୍ୟବହାର କରନ୍ତି ନାହିଁ ଏହା ସେମାନଙ୍କର ଅଜ୍ଞତାର ପରିଚୟ ।

ରୋଗ ତଥା ଅନ୍ୟପ୍ରକାର ବିପଦ ଆପଦରୁ ମୁକ୍ତ ପାଇବା ପାଇଁ ସେ ଦେବତାଙ୍କ ଉଦ୍ଦେଶ୍ୟରେ ବଳି ଯାଚେ । ଏ ବଳି ପ୍ରଥା ଅନ୍ୟ ହିନ୍ଦୁ ସମାଜରେ ମଧ୍ୟ ଚଳେ । ବଳି ପ୍ରଥାର ସୃଷ୍ଟି ସମ୍ବନ୍ଧରେ କୁଟିଆ କନ୍ଧମାନଙ୍କ ମଧ୍ୟରେ ଏକ ଗଳ୍ପର ପ୍ରଚଳନ ଅଛି । ତା ଅନୁସାରେ ମାରନ୍ତଲ ରାମାଆନ୍‌ର ମୁଣ୍ଡ କାଟିଦେଲାରୁ ତା ରକ୍ତରୁ ପାହାଡ଼ ପର୍ବତର ସୃଷ୍ଟି ହେଲା । ତା ପରେ ସେ ତାକୁ ପୁନର୍ଜୀବନ ଦେଇ ପାହାଡ଼ ପର୍ବତ ଉପରେ ନିର୍ଭର କରି ଚଳିବାକୁ ନିର୍ଦ୍ଦେଶ ଦେଲେ । ପାହାଡ଼ ପର୍ବତରୁ କାଠ, ପଶୁ ପ୍ରଭୃତି ନେଲେ ରକ୍ତ ଦେଇ ନେବାକୁ ଆଦେଶ ଦେଲେ । ସେମାନଙ୍କ ମଧ୍ୟରେ ପ୍ରଚଳିତ ଏ କାହାଣୀ କ୍ରମଶ ବହୁଳଭାବେ ବଳି ପ୍ରଚଳନର ସହାୟକ ହୋଇଛି ।

ଆଦିବାସୀମାନେ ଛେଳି, ପାରା, କୁକୁଡ଼ା ଓ ପୋଡ଼ ପ୍ରଭୃତି ବଳି ଦିଅନ୍ତି । ଶାକ୍ତମାନଙ୍କ ମଧ୍ୟରେ ପୋଡ଼ ବଳିର ପ୍ରଚଳନ ଦୁର୍ଗାପୂଜା ଉପଲକ୍ଷେ ମହାପଶୁ ରୂପେ ଦିଆଯାଇଥାଏ । ମେରିଆ ଭାବେ ପୋଡ଼ ବଳିର ବହୁଳ ପ୍ରଚଳନ ଅଛି । ସୁବିଧାରେ ବର୍ଷକ ପାଇଁ ଗଣ୍ଡେ ଫସଲ ଆମଦାନି ପାଇଁ ସେମାନେ ଧରଣୀ ଦେବୀଙ୍କୁ ଏଇ ମେରିଆ ବଳି ଦିଅନ୍ତି ।

ମେରିଆ ବଳି ପାଇଁ ନରବଳି ପ୍ରଥା ପ୍ରଚଳନ ଥିଲା । ଏହା ନାରକୀୟ ହେଲେ ବି ଧର୍ମବିଶ୍ୱାସ ରୂପେ ସେମାନଙ୍କ ମଧ୍ୟରେ ପ୍ରଚଳନ ଥିଲା । ଯେତେବେଳେ ସରକାରୀ ସ୍ତରରେ ଏହାକୁ ବନ୍ଦ କରାଯାଇଛି, ଯେ ବନ୍ଦ କରାଇଛି ତାକୁ ସେମାନେ ଦୋଷୀ ମନେ କରିଛନ୍ତି । ମଣିଷ ବଦଳରେ ପୋଡ଼ ଗ୍ରହଣ କରିବାକୁ ସେମାନେ ଦେବତାଙ୍କୁ ନିବେଦନ ଜଣାଇଛନ୍ତି ।

ମେରିଆ ପ୍ରଥା କନ୍ଧମାନଙ୍କ ଭିତରେ ବିଶେଷ ପ୍ରଚଳିତ । ଧରଣୀପିନୁ ସ୍ୱଇଚ୍ଛାରେ ନରବଳି ମାଗିଲ । କିନ୍ତୁ ନରବଳି ଦେବାକୁ କନ୍ଧମାନେ ମନାକଲେ । ଧରଣୀପିନୁ ନିକଟରେ ଗୋଟିଏ ପ୍ରାର୍ଥନା ମଣିଷ ବଦଳରେ ଆଉ ଯାହା ମାଗିବୁ ଦେବୁଁ ପଛେ ନରବଳି କଥା କହନି । କିନ୍ତୁ ଦେବତାର ଏକା ଜିଦ ମଣିଷ ଲୋଡ଼େ । ତା ମହିମାରେ ନଦୀ ନାଳ ଶୁଖିଲ । ଫସଲ ଉପରେ ବିପଦ । ନିରୀହ ସରଳ କନ୍ଧମାନଙ୍କ ବିଶ୍ୱାସ ଦୃଢ଼ୀଭୂତ ହେଲା । ଗୋଟେ ମଣିଷ ବଦଳରେ ଏତେ ମଣିଷଙ୍କର ଜୀବନ ରହିବ । ସେମାନେ ରାଜି ହେଲେ । ମାତ୍ର ଗୋଟିଏ ସର୍ତ୍ତ । ଦେବୀ ତା ଆଡୁ ପିଲା ଆଣି ଯୋଗାଇବ । ତା ମହିମା ଅନନ୍ତ ସେ ପବନ ପଠାଇ ପିଲା ଉଡ଼ାଇ ଆଣିଲା । ବଳି ବିଆଗଲା । ଏଇ ବଳି ପ୍ରଥା ପରେ ଏକ ସ୍ୱାଂସ୍ତ୍ର ନାରକୀୟ ପ୍ରଥାରେ ପରିଣତ ହେଲା ।

ଗୋମାଂସ ଭକ୍ଷଣ ସପକ୍ଷରେ ଓ ବିପକ୍ଷରେ ଏବେ ବି ବିଭିନ୍ନ ସଂପ୍ରଦାୟ ମଧ୍ୟରେ ଧ୍ୱନିମାନ ଉଠୁଛି, ମାତ୍ର ନିମ୍ନ ଜାତିର ହିନ୍ଦୁ ଗୋମାଂସ ଖାଏ । ଏପରି ଦେଖାଯାଉଛି ସେମାନଙ୍କ ମଧ୍ୟରୁ ଯେଉଁମାନେ ଖାଆନ୍ତି ସେମାନେ ସମସ୍ତେ ଗୋହତ୍ୟା କରନ୍ତି ନାହିଁ । ଗୋରୁ ମଲେ ଖାଆନ୍ତି । ଆଉ ବି ଦେଖାଯାଏ, କେହି କେହି ଖାଆନ୍ତି ଓ ଗୋରୁ ମଧ୍ୟ ମାରନ୍ତି । ସମୟେ ସମୟେ ଗ୍ରାମ ପାଇଁ ନିମ୍ନ ଜାତୀୟ ହିନ୍ଦୁମାନେ ମଧ୍ୟ ଅତି ନିଷ୍ଠୁର ଭାବେ ଗୋହତ୍ୟା କରନ୍ତି, ଯେପରି ଗ୍ରାମ ଉପରେ କୌଣସି କ୍ଷତି ହେବନାହିଁ ।

ଗୋମାଂସ ଭକ୍ଷଣ ସପକ୍ଷରେ ବିଭିନ୍ନ ଆଦିବାସୀମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ କଥାର ପ୍ରଚଳନ ଅଛି । ସଓରମାନଙ୍କ ମଧ୍ୟରେ ପ୍ରଚଳିତ କାହାଣୀ ଅନୁସାରେ କିଟୁଙ୍ଗଙ୍କର ଜନୈକପତି ଗାଇ ହେଇ ଗାଈ ବନ୍ଧୁତା ପ୍ରତି ଅବମାନନା କରିଥିବାରୁ ତା ମାଂସ ଖାଇବାକୁ ସେ ନିର୍ଦ୍ଦେଶ ଦେଇଛନ୍ତି ।

ଗାଈଠାରୁ ମଣିଷ ଦୁଧ ପାଏ, ମାଂସ ପାଏ । ମହାପ୍ରଭୁ ଅନ୍ୟ-ମାନଙ୍କୁ ଡାକି ଗାଈ ଦୁଧ ଖାଇବାକୁ ଦେଲେ । ବଣ୍ଡ ଓ ଡମମାନେ ପଛରେ ଗଲାବେଳକୁ ଦୁଧ ନାହିଁ । ତେଣୁ ସେମାନଙ୍କୁ ଗାଈ ମାଂସ ଖାଇବାର ଆଦେଶ ମିଳିଲା ।

ଗଦବାମାନଙ୍କ ମଧ୍ୟରେ ପ୍ରଚଳିତ କାହାଣୀ ଅନୁସାରେ ଗାଈକୁ ଦେବତା ଉଦ୍ଦେଶ୍ୟରେ ବଳି ଦିଆଯାଇ ତା ମାଂସ ଖାଇବ ସିନା; କିନ୍ତୁ ବିନା କାରଣରେ ଗାଈ ମାଂସ ଖାଇବା ପାପ ।

ପରଜାମାନଙ୍କ ମଧ୍ୟରେ ପ୍ରଚଳିତ କାହାଣୀ ଅନୁସାରେ ଈଶ୍ୱର ମହାପ୍ରଭୁଙ୍କ ଆଦେଶ ଅନୁସାରେ ସେମାନେ ମୃତ ଗାଈ ଗୋରୁଙ୍କ ମାଂସ ଖାଇ ପାରିବେ ।

ଜୀବନର ବିଭିନ୍ନ ବିଭବରେ ସେମାନେ ଦେବତାଙ୍କର ଆଶୀର୍ବାଦ ବା ଅଭିଶାପ ଅନୁଭବ କରନ୍ତି । ରୋଗ ହେଲେ ଦେବତା ପୂଜା, କୌଣସି ପ୍ରାକୃତିକ ବିପର୍ଯ୍ୟୟରେ ମଧ୍ୟ ଦେବତା ପୂଜା । ଚନ୍ଦ୍ର, ସୂର୍ଯ୍ୟ, ତାରା ପ୍ରଭୃତି ନାକ୍ଷତ୍ରିକ ବସ୍ତୁମାନଙ୍କ ସମ୍ବନ୍ଧରେ ମଧ୍ୟ ସେମାନଙ୍କ ମଧ୍ୟରେ ଅନେକ ପ୍ରକାର କଥାମାନଙ୍କର ପ୍ରଚଳନ ଅଛି । କିନ୍ତୁ ଗୋଟିଏ କଥା—ସେମାନଙ୍କ ମଧ୍ୟରେ ତିନି ଭୁବନର ବର୍ଣ୍ଣନା ଥିଲେ ମଧ୍ୟ, ଦେବତାମାନେ ମଣିଷ ସହ ରହିବାକୁ ଭଲ ପାଆନ୍ତି । ତେଣୁ ସେମାନଙ୍କର ଦେବତା ସହ ସମ୍ପର୍କ ନିରବଚ୍ଛିନ୍ନ ବୋଲି ବିଶ୍ୱାସ । ବିଭିନ୍ନ ବିଷୟରେ ପ୍ରଚଳିତ ଧର୍ମବିଶ୍ୱାସ ସେମାନଙ୍କ ସ୍ୱାତନ୍ତ୍ର୍ୟ ତଥା ହିନ୍ଦୁ ଧର୍ମର ପ୍ରାଚୀନତା ସମ୍ବନ୍ଧରେ ଏକ ଜୀବନ୍ତ ସାକ୍ଷ୍ୟ ।

[ ବିଭିନ୍ନ ଜାତି ସମ୍ବନ୍ଧରେ ଗ୍ରହଣ କରାଯାଇଥିବା ଆଦିବାସୀ ଗପ Verrier Elluin ଙ୍କ Tribal myths of Orissa ରୁ ଅନୁସୃତ ]



# ଆଦିବାସୀ ଉନ୍ନୟନର କେତୋଟି ଦିଗ

**ଦାମୋଦର ରାଉତ**, ବି: ଭି: ଏସ: ସି: ଆଣ୍ଡ୍ ଏ: ଏଚ୍:

ପ୍ରାସାଦମୟୀ ସହର ଭୁବନେଶ୍ୱର କିମ୍ବା ବନ୍ଧବଶାଳୀ କଟକ ନଗରର ବକ୍ଷ ଦେଶରେ ଦଣ୍ଡାୟମାନ ହୋଇ ନିଜକୁ ଏକ ସଭ୍ୟ ଏବଂ ଧନାଢ଼୍ୟ ରାଜ୍ୟର ଅଧିବାସୀ ଭାବି ଗର୍ବକଲାବେଳେ ଯଦି ଅକସ୍ମାତ୍ ଏଇ ରାଜ୍ୟର ଏକ ବୃହତ୍ତ ଅଞ୍ଚଳରେ ବାସକରୁଥିବା ଅନୁନ୍ନତ, ଅବହେଳିତ ଆଦିବାସୀଙ୍କ କଥା ମନକୁ ଆସିଯାଏ—ତେବେ ସ୍ୱତଃ ଲଜ୍ଜାରେ ମସ୍ତକ ଅବନତ ହୁଏ । ଦେଶରୁ ଦାରିଦ୍ର୍ୟ ମୋଚନ, ନିରକ୍ଷରତା ଦୂରୀକରଣ, ଶ୍ରେଣୀବିହୀନ ସମାଜ ଗଠନ ଆଦି ଯେତେ ଧ୍ୱନି ଗତ ୨୨ ବର୍ଷ ଧରି ଆମେ ଦେଇ ଆସିଛୁ—ସେ ସବୁ କେବଳ ଯେ ଧ୍ୱନି ଭିତରେ ହିଁ ରହିଛି—ଏକଥା ଅନୁଭବ କରିହୁଏ, ଏଇ ଆଦିବାସୀମାନଙ୍କ ଅବସ୍ଥା ବିଷୟ ଚିନ୍ତା କଲାବେଳେ । ଯୋଜନା ପରେ ଯୋଜନା ବିତିଛି, ଗଦା ଗଦା କାଗଜକାଲର କାର୍ଯ୍ୟକ୍ରମ ଶେଷ ହୋଇଛି; ଯୋଜନାର ବ୍ୟୟ ବରାଦ ବୃଦ୍ଧି ପାଇଛି. ଅନେକ ଅନେକ ଆବେଗମୟ ଭାଷଣ ଶୁଣାଯାଇଛି—ତଥାପି ଏ ସମ୍ପ୍ରଦାୟଟା କିମିତି କେଜାଣି ଅବହେଳିତ ହୋଇ ରହିଗଲା ଭଳି ବେଳେ ବେଳେ ମନେ ହେଉଛି । ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ଯେ ୨୨ ବର୍ଷ ତଳର ସେହି ଆଦିମ ଅଧିବାସୀ କିଛି ପାହାଚ ଆଗକୁ ଆସିଛନ୍ତି । ତଥାପି ଏଇ ସାମାନ୍ୟତମ ଅଗ୍ରସରତା କ'ଣ ଏକ ସନ୍ତୋଷଜନକ ବିବର୍ତ୍ତନର କାରଣ ହୋଇ ପାରିବ ? ସାମାଜିକ ତଥା ଅର୍ଥନୈତିକ କ୍ଷେତ୍ରରେ ଗୋଟିଏ ରାଜ୍ୟର ଉଭୟ ପ୍ରାନ୍ତରେ ଯେଉଁ ଯୋଜନ ବ୍ୟାପି ବ୍ୟବଧାନ ରହିଛି, ତାକୁ କିପରି ଏବଂ କେତେ ସମୟ ଭିତରେ ଅତିକ୍ରମ କରାଯାଇ ପାରିବ—ଏହା ହିଁ ହୁଏତ ଏକ ଜଟିଳ ପ୍ରଶ୍ନ ।

ଏ ରାଜ୍ୟର ଏକ ସୁବୃହତ୍ତ ଭୂଖଣ୍ଡ ବହୁ ସମ୍ପ୍ରଦାୟର ଆଦିବାସୀମାନଙ୍କ ଦ୍ୱାରା ଅଧ୍ୟୁଷିତ । ପାହାଡ଼, ପର୍ବତ, ବଣ ଜଙ୍ଗଲ ଘେରା ଏଇ ଅସମତଳ ଅଞ୍ଚଳ ସେମାନଙ୍କର ଲୀଳାଖେଳାର ଭୂମି । ପ୍ରକୃତିର ସନ୍ତାନ ଭଳି ଏମାନେ ନିର୍ବିବାଦରେ ସଭ୍ୟତାର ବହୁଦୂରରେ ଏକ ଶୃଙ୍ଖଳବିହୀନ ଜୀବନ ଯାପନରେ ନିମଜ୍ଜିତ । ଏଣେ ରାଜ୍ୟର ଅନ୍ୟ ଏକ ପ୍ରାନ୍ତରେ ଶିକ୍ଷା ସଭ୍ୟତାର ଲହଡ଼ି ଭାଙ୍ଗୁଛି । ଏଇ ବିରାଟ ବ୍ୟବଧାନ ଯେତେଶୀଘ୍ର ସମ୍ଭବ ସଂକୁଚିତ ହେଉ, ସାମାଜିକ ତଥା ଅର୍ଥନୈତିକ ବୈଷମ୍ୟ ଦୂରୀଭୂତ ହେଉ—ଏହାହିଁ ସମ୍ଭବତଃ ଆମପାଇଁ ଏକ ସାମ୍ବିଧାନିକ ନିର୍ଦ୍ଦେଶ । ଏ ନିର୍ଦ୍ଦେଶ ଏବର ନୁହେଁ—ଦୀର୍ଘ ୨୨ ବର୍ଷ ତଳର । ତଥାପି ଏ ନିର୍ଦ୍ଦେଶ ପାଳନରେ ଯେ ସଂପୂର୍ଣ୍ଣ ସଫଳତା ଅଣାଯାଇ ପାରିନି—ଏକଥା ସ୍ୱୀକାର ନ କରି ଉପାୟ ନାହିଁ । କାରଣ ଏବେ ରାଷ୍ଟ୍ରର ସର୍ବୋଚ୍ଚ ସଂସଦରେ ଆମେ ସଂବିଧାନରେ ସଂଶୋଧନ ଆଣି ଏଇ ଅବହେଳିତ ହରିଜନ ଆଉ ଗିରିଜନଙ୍କୁ ସ୍ୱତନ୍ତ୍ର ସୁବିଧା ପ୍ରଦାନ ବ୍ୟବସ୍ଥାକୁ ଆହୁରି ଦଶବର୍ଷ ପାଇଁ ବୃଦ୍ଧି ପ୍ରସ୍ତାବକୁ ଗ୍ରହଣ କରି ନେଇଛୁ । ସମ୍ବିଧାନର ନିର୍ଦ୍ଦେଶାନୁଯାୟୀ ସଫଳତା ଯେ ଅର୍ଜନ କରାଯାଇ ପାରିନି—ଏହାହିଁ ବୋଧହୁଏ ତା'ର ପରୋକ୍ଷ ସ୍ୱୀକୃତି ।

ସମଗ୍ର ଦେଶରେ ହରିଜନ ଆଉ ଗିରିଜନଙ୍କ ସଂଖ୍ୟା ଭିତ୍ତିରେ ଓଡ଼ିଶାର ସ୍ୱତନ୍ତ୍ର ସ୍ଥାନ ରହିଛି । ଗତ ୧୯୬୧ ମସିହାର ଜନଗଣନା ହିସାବରୁ ଜଣାଯାଇଛି କି ଓଡ଼ିଶାର ସମୁଦାୟ ଲୋକସଂଖ୍ୟା ୧୭୫୪୮୮୪୬ ମଧ୍ୟରୁ କେବଳ ଆଦିବାସୀ ଏବଂ ଅନ୍ୟାନ୍ୟ ତଫସିଲ-ଭୁକ୍ତ ସଂପ୍ରଦାୟର ଲୋକସଂଖ୍ୟା ପ୍ରାୟ ୭୦ ଲକ୍ଷ । ଏହା ସମଗ୍ର ରାଜ୍ୟର ଲୋକସଂଖ୍ୟାର ଶତକଡ଼ା ୪୦ ଭାଗ । ପ୍ରାୟ ସମଗ୍ର ଦେଶରେ ରହିଥିବା ଆଦିବାସୀ ସଂପ୍ରଦାୟ ଲୋକସଂଖ୍ୟାର ୧୪.୫ ଭାଗ କେବଳ ରହିଛନ୍ତି—ଆମର ଏଇ ଓଡ଼ିଶାରେ । ପୁଣି ଏମାନେ ରାଜ୍ୟର ଯେଉଁ ଅଂଶରେ ବାସ କରନ୍ତି—ତାହା ବହୁମୂଲ୍ୟ ଖଣିଜ ସଂପଦ ଆଉ ବନ୍ୟ ସଂପଦରେ ଭରପୂର । ଆଧୁନିକ ବଳିଷ୍ଠ ଶକ୍ତିଶାଳୀ ଓଡ଼ିଶା ଗଠନର ସ୍ୱପ୍ନ

ଏ ଅଞ୍ଚଳକୁ ବାଦ୍ ଦେଇ ସଫଳ ହେବାର ସଂଭାବନା ଆଦୌ ନାହିଁ । ତେଣୁ ଏ ଅଞ୍ଚଳରେ ବାସକରୁଥିବା ଅବହେଳିତ ଆଧୁନିକ ଜୀବନ ସ୍ରୋତରୁ ବିଚ୍ଛିନ୍ନ ଅଧିବାସୀମାନଙ୍କର ସାମାଜିକ ତଥା ଅର୍ଥନୈତିକ ବିକାଶର କ୍ଷିପ୍ରତା ଯେ ସମଗ୍ର ରାଜ୍ୟର ସମୂହ ସ୍ୱାର୍ଥ ଦୃଷ୍ଟିରୁ ଅପରିହାର୍ଯ୍ୟ —ଏହା ଅସ୍ୱୀକାର କରାଯାଇ ପାରେନା । ପ୍ରାୟ ୨୨୦୦୦ ବର୍ଗମାଇଲ ପରିମିତ ଅଞ୍ଚଳ, ଯାହାକି ରାଜ୍ୟ ଆୟତନର ଏକ ତୃତୀୟାଂଶ, ଏଇ ଅନୁନ୍ନତ ଆଦିବାସୀ ସଂପ୍ରଦାୟ ଦ୍ୱାରା ଅଧ୍ୟୁଷିତ ଏବଂ ଏହାକୁ ଆମର ସମ୍ବିଧାନରେ ତଫସିଲଭୁକ୍ତ ଅଞ୍ଚଳ ଭାବରେ ଘୋଷଣା କରାଯାଇଛି । କୋରାପୁଟ, ସୁନ୍ଦରଗଡ଼, ମୟୂରଭଞ୍ଜ, ଗଞ୍ଜାମ ଓ ଫୁଲବାଣୀ ଜିଲ୍ଲାର କିଛି ଅଂଶ ମୁଖ୍ୟତ ଏଇ ତଫସିଲଭୁକ୍ତ ଅଞ୍ଚଳର ଅନ୍ତର୍ଭୁକ୍ତ । ଏତଦ୍ ବ୍ୟତୀତ ସମ୍ବଲପୁର, କେନ୍ଦୁଝର ଓ ବଲାଙ୍ଗିର ଆଦି ଜିଲ୍ଲାମାନଙ୍କରେ ବହୁସଂଖ୍ୟାର ଏଇ ଆଦିବାସୀମାନେ ବିକ୍ଷିପ୍ତ ଭାବରେ ବସବାସ କରନ୍ତି । ଏ ସଂପର୍କୀୟ ସମୀକ୍ଷାରୁ ସୂଚିତ ହୋଇଛି ଯେ ଓଡ଼ିଶାରେ ମୋଟ ୭୨ଟି ତଫସିଲଭୁକ୍ତ ସମ୍ପ୍ରଦାୟ, ୯୪ ମୋଟି ତଫସିଲଭୁକ୍ତ ଜାତି ଓ ଅନ୍ୟାନ୍ୟ ୧୧୬ ଗୋଟି ଅନୁନ୍ନତ ସଂପ୍ରଦାୟ ରହିଛନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ବାସ କରୁଥିବା ଅଞ୍ଚଳଗୁଡ଼ିକ ଯେପରି ବହୁମୂଲ୍ୟ ଖଣିଜ ସଂପଦରେ ବିଭବଶାଳୀ ରାଜ୍ୟର ଶିଳ୍ପ ଅର୍ଥନୀତି ଦୃଷ୍ଟିରୁ ସେହିପରି ଅତି ଗୁରୁତ୍ୱପୂର୍ଣ୍ଣ । ତେଣୁ ଏସବୁ ଖଣିଜ ଆଉ ବନ୍ୟ ସଂପଦର ଦ୍ରୁତ ବିକାଶ ଓ ବିନିଯୋଗ କରି ରାଜ୍ୟର ଅର୍ଥନୀତିକୁ ସମୃଦ୍ଧ କରିବାକୁ ହେଲେ ସର୍ବପ୍ରଥମେ ଏ ଅଞ୍ଚଳର ଅଧିବାସୀମାନଙ୍କର ସାମାଜିକ ଓ ଅର୍ଥନୈତିକ ଜୀବନକୁ ଅନ୍ଧାର ଭିତରୁ ଉଦ୍ଧାର କରିବାକୁ ହେବ । ଏ ଅବହେଳିତ ସମ୍ପ୍ରଦାୟ ପ୍ରତି ଏହା କେବଳ ଆମର ନୈତିକ ଦାୟିତ୍ୱ ନୁହେଁ—ନିଜ ସ୍ୱାର୍ଥ ଦୃଷ୍ଟିରୁ ମଧ୍ୟ ଏକାନ୍ତ ବାଞ୍ଛନୀୟ । ତେଣୁ କେବଳ ନୀତିଦୃଷ୍ଟିରୁ ସାମ୍ବିଧାନିକ ନିର୍ଦ୍ଦେଶ ଦୃଷ୍ଟିରୁ ଆଦିବାସୀ ଉନ୍ନୟନ ଲାଗି ବ୍ୟବସ୍ଥାମାନ ଗ୍ରହଣ ନ କରି ପୂର୍ଣ୍ଣ ଆନ୍ତରିକତା ଏବଂ ଗଭୀର ସେବା ମନୋଭାବ ନେଇ ଏ ସଂପର୍କୀୟ ସକଳ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ଉଚିତ । ଏମାନଙ୍କର ଐତିହ୍ୟ, ପରମ୍ପରା ତଥା ବର୍ତ୍ତମାନର

ଜୀବନ ପ୍ରବାହକୁ ସତର୍କତାର ସହ ବର୍ତ୍ତରକୁ ନେଇ ଏମାନଙ୍କୁ ସଭ୍ୟତାର ଆଲୋକ ଆଡ଼କୁ ଆକର୍ଷିତ କରିବାକୁ ପଡ଼ିବ। ଆଧୁନିକ ଓଡ଼ିଶାର ସେମାନେ ଯେ ଭାଗ୍ୟବାନ ଅଧିବାସୀ ଏବଂ ରାଜ୍ୟର ସକଳ ବିଭବରେ ସେମାନଙ୍କର ସମ ଅଧିକାର ରହିଛି—ଏକଥା ସେମାନେ ବୁଝିବା ଉଚିତ । ମାତ୍ର ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମ ଗ୍ରହଣ କ୍ଷେତ୍ରରେ ନାସିକା କୁଂଚନ ଅଥବା ଅନୁକମ୍ପା ପ୍ରଦର୍ଶନର ଅଭିନୟ କେବେହେଲେ ମଙ୍ଗଳପ୍ରଦ ହୋଇ ନ ପାରେ ।

ଦେଶ ସ୍ୱାଧୀନ ହେବା ପୂର୍ବରୁ ବହୁକାଳ ଧରି ଅନେକ କାରଣରୁ ଏଇ ଆଦିବାସୀ ସମ୍ପ୍ରଦାୟ ଆମର ସାଧାରଣ ଜୀବନ ସ୍ରୋତରୁ ବିଚ୍ଛିନ୍ନ ହୋଇ ଯାଇଥିଲେ । ମାତ୍ର ସେମାନେ ଯେ ଏକଦା ହିନ୍ଦୁଧର୍ମ ଓ ସମାଜ ସହ ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ ଥିଲେ—ଏକଥା ନିଶ୍ଚିତ ଭାବରେ କୁହାଯାଇ ପାରେ । ବିଗତ ଊନବିଂଶ ଶତାବ୍ଦୀରେ ସମ୍ଭବତଃ ଖ୍ରୀଷ୍ଟିଆନ ମିସେନାରୀମାନଙ୍କ ଦ୍ୱାରା ବହୁ ଆଦିବାସୀ ସଂପ୍ରଦାୟ ଧର୍ମାନ୍ତରୀକରଣ ଗ୍ରହଣ କଲେ । ଖ୍ରୀଷ୍ଟଧର୍ମ ପ୍ରଚାରକମାନଙ୍କର ପ୍ରଚାର କୌଶଳ, ନାନାପ୍ରକାର ସୁଖସଂଭୋଗର ଅନୁଚିତ ପ୍ରଲୋଭନ ପ୍ରଦାନ ଆଦି ଏମାନଙ୍କୁ ହିନ୍ଦୁଧର୍ମ ଅପେକ୍ଷା ଏଇ ଖ୍ରୀଷ୍ଟଧର୍ମ ଆଡ଼କୁ ସମ୍ଭବତଃ ଅଧିକ ଆକର୍ଷିତ କଲା । ଅନ୍ୟପକ୍ଷରେ ହିନ୍ଦୁଧର୍ମରେ ପୃଷ୍ଠପୋଷକତା କରୁଥିବା ତଥାକଥିତ ଧର୍ମ ଗୁରୁମାନେ ସେମାନଙ୍କର ସଭ୍ୟ, ଧନାଢ୍ୟ ତଥା ବହୁ ଉପାୟରେ ବିଭବଶାଳୀ ଭକ୍ତମାନଙ୍କୁ ବିଳାସର ପ୍ରଧାନ ପୀଠମାନଙ୍କରୁ ଧର୍ମବାଣୀ ଶୁଣାଇବା ଛାଡ଼ି—ଏ ଦୁର୍ଗମ ଅଞ୍ଚଳରେ ଅନ୍ଧକାରଚ୍ଛନ୍ନ ଅଧିବାସୀମାନଙ୍କ ସଂପର୍କରେ ଆଗ୍ରହ ପ୍ରକାଶ କରିବାକୁ ବେଳ ପାଇଲେ ନାହିଁ । କିନ୍ତୁ ସହସ୍ର ଯୋଜନ ଦୂରରୁ ସାତ ସମୁଦ୍ର ପାରି ହୋଇ ଖ୍ରୀଷ୍ଟିଆନ ପାଦ୍ରୀମାନେ ଏ ରାଜ୍ୟର ନିଘଞ୍ଚ ବଣ ପାହାଡ଼ ଭିତରେ ପଶି ଭଗବାନ ଯୀଶୁଙ୍କର ବାଣୀ ଅଜ୍ଞାନ ଆଦିବାସୀମାନଙ୍କୁ ଶୁଣାଇ ନିଜ ଧର୍ମର ପ୍ରସାର କାର୍ଯ୍ୟରେ ସଫଳତା ହାସଲ କଲେ । ଅବଶ୍ୟ ନିଜ ଧର୍ମର ପ୍ରସାର ପାଇଁ ଅଜସ୍ର ଧନବ୍ୟୟ ତଥା ପ୍ରଲୋଭନ ଏମାନଙ୍କୁ

ସାହାଯ୍ୟ କଲ୍‌। ତଥାପି ସେବା, ସାହାଯ୍ୟ ତଥା ଆଦିବାସୀମାନଙ୍କ ଜୀବନସହ ନିଜକୁ ଖାପ ଖୁଆଇ ଧର୍ମପ୍ରଚ୍ଚର କ୍ଷେତ୍ରରେ ଅଗ୍ରସର ହେବାକୁ ଏଇ ପାଦ୍ରୀମାନେ ଯେ ଯଥେଷ୍ଟ କଷ୍ଟ ସ୍ୱୀକାର କରିଥିବେ ଏହା ନିଶ୍ଚିତ ଭାବରେ ଅନୁମାନ କରାଯାଇ ପାରେ। ଏବେ ଦେଶ ସ୍ୱାଧୀନତା ଲାଭକଲ୍‌ ପରେ ଏବଂ ଆଦିବାସୀମାନଙ୍କୁ ରାଜ୍ୟର ସ୍ୱୟଂସଂପୂର୍ଣ୍ଣ ଅଧିବାସୀ ଭାବରେ ବିଚ୍ଚର କରାଗଲ୍‌ବେଳେ ସେମାନଙ୍କ ମଧ୍ୟରେ ଏଇ ଧର୍ମାନ୍ତକରଣ ଅନେକଙ୍କ ମନକୁ ଆଲୋଡ଼ିତ କରୁଛି। ହିନ୍ଦୁଧର୍ମ ପରିବର୍ତ୍ତେ ଖ୍ରୀଷ୍ଟଧର୍ମର ପ୍ରସାର ଯୋଗୁଁ ଉଦ୍‌ବେଗ ପ୍ରକାଶ ପାଉଛି। ମାତ୍ର ଏଥିପାଇଁ ବସ୍ତୁତଃ କିଏ ଦାୟୀ—ସେ ସଂପର୍କରେ କିଛି ଶୁଣିବାକୁ ମିଳୁନାହିଁ। ଖ୍ରୀଷ୍ଟଧର୍ମର ପ୍ରସାର ପୂର୍ବରୁ ବହୁକାଳ ଧରି ଏଇ ଆଦିବାସୀ ସମାଜ ବିଶ୍ୱଜନ ସମାଜଠାରୁ ବିଚ୍ଛିନ୍ନ ରହିବା ପରେ ପୁରାଣ ଆଉ ଇତିହାସର ସଂଘର୍ଷରେ ସମ୍ଭବତଃ ସେଠାରେ ବିଚିତ୍ର ପରମ୍ପରାମାନଙ୍କର ସୃଷ୍ଟି ସଂଭବ ହୋଇଥିଲ୍‌। ଏହି ବିଚିତ୍ର ଆଦିବାସୀ ପରମ୍ପରା ହିଁ ଅଧୁନା ଆଦିବାସୀ ସଂସ୍କୃତି ଭାବରେ ପରିଚିତ। ଅବଶ୍ୟ ପରେ ଏଇ ଖ୍ରୀଷ୍ଟଧର୍ମ ପ୍ରସାର ଯୋଗୁଁ ଆଦିବାସୀ ସଂସ୍କୃତି ଭିତରେ କିଛି କିଛି ବିବର୍ତ୍ତନ ପରି ଲକ୍ଷିତ ହେଲ୍‌। ମାତ୍ର ସେମାନଙ୍କର ଅର୍ଥନୈତିକ ଅବସ୍ଥାର କିଛି ଉନ୍ନତି ସଂଭବ ହୋଇ ପାରିଲ୍‌ ନାହିଁ।

ସେ ଯାହାହେଉ ଦେଶ ସ୍ୱାଧୀନ ହେବାର ପରବର୍ତ୍ତୀ କାଳରୁ ରାଜ୍ୟର ଏଇ ବୃହତ୍ତର ଆଦିବାସୀ ସଂପ୍ରଦାୟ ଲୋକମାନଙ୍କର ଆର୍ଥିକ ଅବସ୍ଥାରେ ସ୍ୱଚ୍ଛଳତା ଆଣି ସେମାନଙ୍କୁ ଦେଶର ଅନ୍ୟାନ୍ୟ ସଭ୍ୟ ସମ୍ପ୍ରଦାୟର ଉନ୍ନତ ସାମାଜିକ ଜୀବନଧାରା ସହ ଏକତ୍ରିତ କରିବାର ଉଦ୍ୟମ ଆରମ୍ଭ କରାଗଲ୍‌। ଆଦିବାସୀ ଅଧ୍ୟୁଷିତ ଅଞ୍ଚଳମାନଙ୍କରେ ରହିଥିବା ବହୁ ମୂଲ୍ୟବାନ ବନ୍ୟସମ୍ପଦ ଓ ଖଣିଜ ସମ୍ପଦର ବିକାଶ ମାଧ୍ୟମରେ ଏହି ଉଦ୍ୟମର ଅପୂର୍ବ ମାରମ୍ଭ ହେଲ୍‌ କହିଲେ ଚଳେ। ଏ ଅଞ୍ଚଳରେ ପ୍ରଶାସନିକ ବ୍ୟବସ୍ଥାର ମଧ୍ୟ ଏକ ବଡ଼ ଧରଣର ପରିବର୍ତ୍ତନ କରାଗଲ୍‌। ଫଳରେ ବହୁଯୁଗ ଧରି ସଭ୍ୟ ଜଗତରୁ ବିଚ୍ଛିନ୍ନ ଏଇ ଆଦିବାସୀ ପଲ୍ଲୀରେ

ସଭ୍ୟତାର ମୃଦୁ ପଦଧ୍ୱନି ଶୁଣିବାକୁ ମିଳିଲା । ଦେଶର ରାଜନୈତିକ ଘଟଣା ପ୍ରବାହ ମଧ୍ୟ ବେଳେ ବେଳେ ନବାଚାରମୁଖୀ ହୋଇ ପାହାଡ଼ ପାଦଦେଶରେ ଧକ୍କାଖାଇ ଅସ୍ଥାୟୀ ଭାବରେ ଏବଂ କଥାରେ ଆଦିବାସୀ ପ୍ରାଣରେ ଆଲୋଡ଼ନ ସୃଷ୍ଟି କଲା । ସଂପୂର୍ଣ୍ଣ ଭାବରେ ନ ହେଲେ ମଧ୍ୟ ଆଂଶିକ ଭାବରେ ଆଦିବାସୀମାନଙ୍କର ସରଳ ବଣ୍ୟପ୍ରାଣ ଏକ କୁଟିଳ ସଭ୍ୟତା ଆଡ଼କୁ ଆକର୍ଷିତ ହେବାକୁ ଲାଗିଲା । ଏଣେ ସ୍ୱାଧୀନ ଦେଶର ନାଗରିକ ଭାବରେ ଆଦିବାସୀମାନଙ୍କ ଶିକ୍ଷା, ସ୍ୱାସ୍ଥ୍ୟ ତଥା ଅନ୍ୟାନ୍ୟ ଆନୁସଙ୍ଗିକ ସୁବିଧା ପ୍ରଦାନ ପାଇଁ ବିଧିବଦ୍ଧ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଇ ସେଗୁଡ଼ିକୁ ତ୍ୱରାନ୍ୱିତ କରାଗଲା । କେନ୍ଦ୍ର ସରକାରଙ୍କର ଆଂଶିକ ଏବଂ ପୂର୍ଣ୍ଣ ସାହାଯ୍ୟ ଲାଭ କରି ଅନେକଗୁଡ଼ିଏ ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମ ହାତକୁ ନିଆଗଲା । ରାଜ୍ୟ ସ୍ତରରେ ଏ ସମ୍ପର୍କୀୟ ସକଳ କାର୍ଯ୍ୟକ୍ରମକୁ ନିଖୁଣ ଭାବରେ କାର୍ଯ୍ୟକାରୀ କରିବା ଲାଗି ଏକର ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗର ସୃଷ୍ଟି କରାଗଲା । ପ୍ରଶାସନିକ ବ୍ୟବସ୍ଥାକୁ ଅଧିକରୁ ଅଧିକ ପର୍ଯ୍ୟାପ୍ତ କରାଗଲା । ପଞ୍ଚବାର୍ଷିକ ଯୋଜନାର କାର୍ଯ୍ୟକ୍ରମ ଭିତରେ ଆଦିବାସୀ ଉନ୍ନୟନକୁ ମୁଖ୍ୟତଃ କେତେଗୋଟି ପର୍ଯ୍ୟାୟଭୁକ୍ତ କରାଯାଇ କାର୍ଯ୍ୟ ଆରମ୍ଭ ହେଲା । ଏଗୁଡ଼ିକ ମଧ୍ୟରେ ଆଦିବାସୀମାନଙ୍କର ଶିକ୍ଷା ଓ ସଂସ୍କୃତିର ବିକାଶ, ଅର୍ଥନୈତିକ ଅଭିବୃଦ୍ଧି ଏବଂ ସ୍ୱାସ୍ଥ୍ୟ, ଗୃହଯୋଗାଣ ଇତ୍ୟାଦି ଆନୁସଙ୍ଗିକ ବ୍ୟବସ୍ଥାର ଉନ୍ନତି ଇତ୍ୟାଦି ଅନ୍ତର୍ଭୁକ୍ତ ।

ଆଦିବାସୀ ତଥା ଅନ୍ୟାନ୍ୟ ଅନୁନ୍ନତ ସମ୍ପ୍ରଦାୟ ମଧ୍ୟରେ ଶିକ୍ଷାର ଦ୍ରୁତ ବିକାଶକଳ୍ପେ କେନ୍ଦ୍ର ସରକାରଙ୍କ ସକ୍ରିୟ ସାହାଯ୍ୟ ଓ ସହଯୋଗକ୍ରମେ ରାଜ୍ୟ ସରକାର ଅନେକ ବ୍ୟବସ୍ଥା ଏ ପର୍ଯ୍ୟନ୍ତ ଗ୍ରହଣ କରି ସାରିଛନ୍ତି । ଏ ସମ୍ପ୍ରଦାୟର ଛାତ୍ରମାନଙ୍କର ଶିକ୍ଷା ବ୍ୟବସ୍ଥାକୁ ଅଧିକ ତ୍ୱରାନ୍ୱିତ କରିବା ପାଇଁ ଏ ପର୍ଯ୍ୟନ୍ତ ରାଜ୍ୟରେ ପ୍ରାୟ ୩୬ ଆଦିବାସୀ ହାଇସ୍କୁଲ, ଉଚ୍ଚପ୍ରାଥମିକ ସ୍ତରର ୮୭ ଗୋଟି ସେବାଶ୍ରମ, ୫୩ ଗୋଟି ଆଶ୍ରମ ସ୍କୁଲ, ୧୧୮୪ ଗୋଟି ସେବାଶ୍ରମ, ୧୩୦ ଗୋଟି

ଗୃହଶାଳୀ ଏବଂ ୫ ଗୋଟି ଶିକ୍ଷକ ତାଲିମ ପ୍ରତିଷ୍ଠାନ ପ୍ରତିଷ୍ଠା କରାଯାଇ ସାରିଛି । ଏତଦ୍‌ବ୍ୟତୀତ ମାଗଣାରେ ଛାତ୍ରାବାସ ଓ ପାଠ୍ୟପୁସ୍ତକ ଯୋଗାଣ, ଅବୈତନିକ ଶିକ୍ଷାଦାନ ଆଦି ଅନେକ ବ୍ୟବସ୍ଥା ଏ କାର୍ଯ୍ୟକ୍ରମର ପରିସରଭୁକ୍ତ । ରାଜ୍ୟସ୍ତରରେ ସକଳ ସାଧାରଣ କଲେଜ ତଥା ବୈଷୟିକ କଲେଜମାନଙ୍କରେ ମଧ୍ୟ ଏମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନର ସୁବିଧା ରହିଛି । ଆଦିବାସୀମାନଙ୍କର ଉନ୍ନୟନର ମାର୍ଗ ନିର୍ଦ୍ଦେଶ ପାଇଁ ଗବେଷଣା ପ୍ରତିଷ୍ଠାନ ମଧ୍ୟ ପ୍ରତିଷ୍ଠା କରାଯାଇଛି । ଏବେ ଆହୁରି ଏକ ବ୍ୟାପକ ଆଦିବାସୀ ଶିକ୍ଷା କାର୍ଯ୍ୟକ୍ରମ ହାତକୁ ନିଆଯିବାର ପ୍ରସ୍ତାବ ମଧ୍ୟ କରାଯାଉଛି । ଅଳ୍ପଦିନ ଭିତରେ ରାଜ୍ୟର ଏକ ବିରାଟ ଅବହେଳିତ ସମ୍ପ୍ରଦାୟର ଛାତ୍ରମାନଙ୍କୁ ଶିକ୍ଷାକ୍ଷେତ୍ରରେ ଆଗେଇ ନେବା ପାଇଁ ଯେକୌଣସି ପ୍ରକାର ବ୍ୟୟବରାଦକୁ ଗ୍ରହଣ କରାଯିବ ବୋଲି ଆଶା କରାଯାଉଛି ।

ଆଦିବାସୀ ଆଉ ହରିଜନମାନଙ୍କର ଆର୍ଥିକ ଅବସ୍ଥା ଯେ ଅଦ୍ୟାବଧି ଏକ ଦୟନୀୟ ଅବସ୍ଥାରେ ରହିଛି—ଏ କଥା ବିନା ଯୁକ୍ତିରେ ସ୍ୱୀକାର୍ଯ୍ୟ । ସ୍ୱାଧୀନତା ପରଠାରୁ ଏବଂ ବିଶେଷ କରି ପଞ୍ଚବାର୍ଷିକ ଯୋଜନାର ପ୍ରାରମ୍ଭରୁ ସଂବିଧାନର ନିର୍ଦ୍ଦେଶକୁ ବିନମ୍ର ଭାବରେ ପାଳନ କରି ଆଦିବାସୀ ଓ ହରିଜନ ସମ୍ପ୍ରଦାୟର ଆର୍ଥିକ ଦୁଃସ୍ଥିତିକୁ ଲାଘବ କରିବା ପାଇଁ ଅନେକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଏ ସଂପ୍ରଦାୟର ବହୁମୁଖୀ ମଙ୍ଗଳ ସାଧନ କଲେ ବ୍ୟୟବହୁଳ ଯୋଜନାମାନ ହାତକୁ ନିଆଯାଇଛି । ଗତବର୍ଷ ଶେଷ ସୁଦ୍ଧା ପ୍ରାୟ ୭୫ ଗୋଟି ଆଦିବାସୀ ବ୍ଲକ, ୧୧୩ ଗୋଟି ଆଦିବାସୀ କଲୋନୀ, ୯୮୫ ଗୋଟି ଶସ୍ୟଶାଳା (Grain golas) ଗୋଟିଏ ବୈଷୟିକ ତାଲିମ କେନ୍ଦ୍ର ଓ ଦୁଇଗୋଟି ତାଲିମ ଓ ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରାଯାଇ ଆର୍ଥିକ ଅବସ୍ଥାରେ ସ୍ୱଚ୍ଛଳତା ଆଣିବା ପାଇଁ ପ୍ରଚେଷ୍ଟାମାନ କରାଯିବା ସାଥେ ସାଥେ ଏ ଦିଗରେ ଥିବା ପ୍ରତିବନ୍ଧକଗୁଡ଼ିକୁ ଯଥାସମ୍ଭବ ଦୂରେଇ ଦେବାକୁ କାର୍ଯ୍ୟ କରାଯାଉଛି । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ବହୁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ମାଧ୍ୟମରେ ମଧ୍ୟ କାର୍ଯ୍ୟ କରାଯାଉଛି ।

ଏବେ ୧୯୭୦-୭୧ ମସିହା ବାର୍ଷିକ ଯୋଜନାର ଚଠା ପ୍ରସ୍ତାବରେ ଏକ ଆକର୍ଷଣୀୟ ଅର୍ଥ ବରାଦର ପ୍ରସ୍ତାବ ମଧ୍ୟ କରାଯାଉଥିବାର ସୂଚନା ମିଳୁଛି । ବାସହୀନ, ଭୂମିହୀନ ଆଦିବାସୀମାନଙ୍କୁ ଯଥାସମ୍ଭବ ଆନୁସଙ୍ଗିକ ଆବଶ୍ୟକତା ଯୋଗାଇ ଦେବାକୁ ଅବଶ୍ୟ ଚେଷ୍ଟା କରାଯାଉଛି । ସ୍ୱାସ୍ଥ୍ୟରକ୍ଷା ଓ ଚିକିତ୍ସା ସୁବିଧା ଯୋଗାଣ କ୍ଷେତ୍ରରେ ସରକାରୀ ସ୍ତରରେ କେତେକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇ ଥିଲେ ମଧ୍ୟ ଏଥିପ୍ରତି ଏ ସଂପ୍ରଦାୟ ଲୋକମାନଙ୍କର ଆଗ୍ରହ ଯେ ଯଥେଷ୍ଟ ନାହିଁ, ଏହା ମାନିବାକୁ ହେବ । ଅନେକ ସାମାଜିକ କୁସଂସ୍କାର ଆବଦ୍ଧ ଏହି ନିରୀହ ଅଧିବାସୀମାନେ ଅତ୍ୟାଧୁନିକ ଚିକିତ୍ସା ବ୍ୟବସ୍ଥା ଅପେକ୍ଷା ଅଦୃଶ୍ୟ ଦେବାଦେବୀଙ୍କର ଆଶୀର୍ବାଦକୁ ଅଧିକ ବିଶ୍ୱାସ କରିଥାନ୍ତି । ଏପରିକି ଦୁଗ୍ଧ ଯେ ଏକ ଉପାଦେୟ ଏବଂ ହିତକାରୀ ଖାଦ୍ୟ—ଏକଥା ସେମାନେ ବିଶ୍ୱାସ କରନ୍ତି ନାହିଁ । ତଥାପି ଏମାନଙ୍କର ସ୍ୱାସ୍ଥ୍ୟର ଉନ୍ନତି ତଥା ସଂରକ୍ଷଣ ପାଇଁ ଯେ ସରକାରୀ ଅବହେଳା ପ୍ରଦର୍ଶନ କରାଯାଇଛି — ଏ କଥା କୁହାଯାଇ ପାରିବ ନାହିଁ । ହସପିଟାଲ, ପ୍ରାଥମିକ ଶିକ୍ଷାକେନ୍ଦ୍ର, ଭ୍ରାମ୍ୟମାଣ ଚିକିତ୍ସା ବ୍ୟବସ୍ଥା, ମାତୃମଙ୍ଗଳ କେନ୍ଦ୍ର ଓ ଶିଶୁମଙ୍ଗଳ କେନ୍ଦ୍ର ଆଦି ସ୍ଥାପନ କରାଯାଇ ଏମାନଙ୍କର ସର୍ବବିଧ ଚିକିତ୍ସା ଓ ସ୍ୱାସ୍ଥ୍ୟ ସଂରକ୍ଷଣ ପାଇଁ କାର୍ଯ୍ୟ କରାଯାଉଛି । ଯାହାହେଉ ଏ ପ୍ରବନ୍ଧରେ ଆଦିବାସୀ ଉନ୍ନୟନ କଳ୍ପେ ଆମର ସରକାରୀ କାର୍ଯ୍ୟକ୍ରମର ଏ ବର୍ଣ୍ଣନା ଅବଶ୍ୟ ପର୍ଯ୍ୟାପ୍ତ ନୁହେଁ । ଏଠାରେ ସୂଚିତ ହୋଇଥିବା କାର୍ଯ୍ୟକ୍ରମ ବାହାରେ ସମ୍ଭବତଃ ଆହୁରି ଅନେକ ଉପାଦେୟ ବ୍ୟବସ୍ଥାମାନ ରହିଛି । ଆଦିବାସୀମାନଙ୍କର ବହୁମୁଖୀ ଉନ୍ନୟନ ପାଇଁ ଆମର ସାମ୍ବିଧାନିକ ସରକାର ଯେ ବ୍ୟଗ୍ର ଏବଂ ଉତ୍କଣ୍ଠିତ ଏକଥା ଯେ କୌଣସି ବ୍ୟକ୍ତି ସ୍ୱୀକାର କରିବ— ଅନ୍ତତଃ ଏ ସଂପର୍କରେ ଘୋଷଣା କରାଯାଇଥିବା ବ୍ୟାପକ କାର୍ଯ୍ୟକ୍ରମ ସମ୍ବନ୍ଧରେ ଅବହିତ ହେଲା ପରେ ।

କିନ୍ତୁ ଅନୁଶୋଚନାର କଥା ଯେ ଗତ ୨୨ ବର୍ଷ ଧରି ଏଭଳି ଅନେକ ଉପାଦେୟ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲେ ମଧ୍ୟ ଏବଂ

ଏଥିପାଇଁ ବହୁ କୋଟି ଟଙ୍କା ବ୍ୟୟ କରା ଯାଇଥିଲେ ମଧ୍ୟ ସନ୍ତୋଷ ଜନକ ସଫଳତା ମିଳିପାରିନାହିଁ । ଆର୍ଥିକ, ସାମାଜିକ ତଥା ସାଧାରଣ ଜୀବନଯାତ୍ରା କ୍ଷେତ୍ରରେ ଆଦିବାସୀ ଓ ହରିଜନମାନଙ୍କର ଉନ୍ନତି ଯଥେଷ୍ଟ ଘଟିନାହିଁ । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ଜନ୍ମ ଶତ-ବାର୍ଷିକୀ ଉତ୍ସବରେ ବହୁତ ଆଡ଼ମ୍ବର ଏବଂ ଶାନ୍ତିପୂର୍ଣ୍ଣ ଭାଷଣ ଶୁଣିବାକୁ ମିଳୁଥିଲେ ମଧ୍ୟ ଅସ୍ପୃଶ୍ୟତା ଅଦ୍ୟାବଧି ସମାଜର ବ୍ୟାଧି ହୋଇ ରହିଛି । ଦକ୍ଷ ପ୍ରଶାସନ ଅଫିସର ଏବଂ ବିଚକ୍ଷଣ ରାଜନୈତିକ ନେତାମାନଙ୍କର ସଫଳ-ଭକ୍ତି—ଉପସ୍ଥାପନା ସତ୍ତ୍ୱେ ଆଦିବାସୀମାନେ ଯେ ଏ ପର୍ଯ୍ୟନ୍ତ ଅବହେଳିତ ହୋଇ ରହିଛନ୍ତି—ଏକଥା ସ୍ୱୀକାର କରିବାକୁ ହେଉଛି । ଏ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଭାବରେ କାହାରିକୁ ସମାଲୋଚନା କରାଯିବା ଉଚିତ ନହେଲେ ମଧ୍ୟ ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମକୁ ସଫଳ ଭାବରେ କାର୍ଯ୍ୟକାରୀ କରାଯିବାରେ ପ୍ରଶାସନିକ ତ୍ରୁଟି ଯେ ଅଧିକ ଦାୟୀ—ଏକଥା ଅବଶ୍ୟ ମାନିବାକୁ ହେବ । ପରସ୍ପର ସଂଘର୍ଷ ମୂଖୀ ସରକାରୀ ନୀତି ମଧ୍ୟ କେତେକ ପରିମାଣରେ ଦୁଃଖଦ ଯୁକ୍ତ ଅସଫଳତାର କାରଣ ହୋଇଛି । ପ୍ରଶାସନିକ କ୍ଷେତ୍ରରେ ସକଳ ପ୍ରକାର ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମକୁ ସଫଳ ଭାବରେ କାର୍ଯ୍ୟକାରୀ କରିବା ଦାୟିତ୍ୱରେ ରହିଥିବା ବ୍ୟକ୍ତିମାନଙ୍କଠାରେ ସମ୍ଭବତଃ ଯଥେଷ୍ଟ ପରିମାଣର ମାନବଧର୍ମ, ସେବା ମନୋଭାବ, ତଥା ନିଃସ୍ୱାର୍ଥ କର୍ତ୍ତବ୍ୟବୋଧର ଅଭାବ ରହିଗଲା । ବ୍ୟକ୍ତିସ୍ୱାର୍ଥ, ଅସାଧୁତା ବିଶେଷ କରି ଆନ୍ତରିକତାର ଅଭାବ ଅନେକ କ୍ଷେତ୍ରରେ ଅନ୍ତରାୟ ହୋଇ ଉଠିଛି । ସରଳ, ନିରୀହ, ନିଷ୍କପଟ, ଅବହେଳିତ ଆଦିବାସୀମାନଙ୍କର ଉନ୍ନତି କଳ୍ପେ ଯାହା ଯାହା ଅର୍ଥ ବରାଦ କରାଗଲା—ତା'ର ବହୁ ଅଂଶ ନାନା ଭାବରେ ପୁଣି ସଭ୍ୟ ସାହୁକାର, ସ୍ୱାର୍ଥାନ୍ୱେଷୀ ଅଫିସର ତଥା ସରକାରୀ ରାଜକୋଷକୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଫେରି ଆସିଲା । ଆଦିବାସୀ ଛାତ୍ରମାନଙ୍କ ଶିକ୍ଷାୟତନର ଅପର ପାର୍ଶ୍ୱରେ ସରକାରୀ ସ୍ୱୀକୃତ ମଦ ଭାଟି କ୍ଷେତ୍ର-ମାନଙ୍କର ଛାତ୍ରବୃତ୍ତି, ପାଠ୍ୟପୁସ୍ତକ କମ୍ବା ଛାତ୍ରାବାସ ବ୍ୟୟ ସଂପର୍କୀୟ ଅର୍ଥ ସାହାଯ୍ୟର ବହୁଭାଗ ଫେରି ଆସିବା ଏକ ଅପ୍ରିୟ ସତ୍ୟ ଘଟଣା । ମଦ

ଅଭ୍ୟାସରେ ଅଭ୍ୟସ୍ତ ଆଦିବାସୀ ଅଭିଭାବକ ପିତା-ପୁତ୍ରର ଗୃହବୃତ୍ତି ଟଙ୍କାକୁ ମଦ ଭାଟିରେ ନେଇ ସାହୁକାରର ହାତରେ ଦେଇ ଦେବାର ଅଭିଯୋଗକୁ ସଂଭବତଃ ଅସ୍ୱୀକାର କରାଯାଇ ପାରିବ ନାହିଁ । ମାତ୍ର ଦୃଷ୍ଟିରୁ ଅଧିକ ରାଜସ୍ୱ ପାଇଁ ସରକାରୀ ମାତକୁ ସମାଲୋଚନା କରିବାର ଅଭିପ୍ରେତ ନ ଥିଲେ ମଧ୍ୟ ଏ କ୍ଷେତ୍ରରେ ଯେ ଆଦିବାସୀ ସଂପ୍ରଦାୟ ପ୍ରତି ଆମର ନୈତିକ କର୍ତ୍ତବ୍ୟ ସଂପାଦନରେ ଶିଥିଳ ଘଟୁଛି—ଏହା ଆଦୌ ଉଦ୍ଦେଶ୍ୟମୂଳକ ଆକ୍ଷେପ ନୁହେଁ । ଚଞ୍ଚଳ କାରୀ ସାହୁକାରମାନେ ପ୍ରଶାସନିକ ଅଫିସରମାନଙ୍କର ସହୃଦୟତା ଲାଭ କରିବାରେ ଆଦିବାସୀ-ମାନଙ୍କ ଅପେକ୍ଷା ଯେ ଯଥେଷ୍ଟ ଅଧିକ ଅଗ୍ରସର—ଏକଥାକୁ ଅସ୍ୱୀକାର କରିହେବ ? ଜମିଜମା କ୍ଷେତ୍ରରେ ନିଜର ଅଧିକାର ସାବ୍ୟସ୍ତ ପାଇଁ ଆଦିବାସୀମାନଙ୍କ ମଧ୍ୟରେ ଏବେ ଯେଉଁ କ୍ଷୀଣ ସାମାଜିକ ଚେତନା ପ୍ରକାଶ ପାଇଛି—ତାକୁ ଭିନ୍ନ ରୂପରେ ଚିତ୍ରଣ କରାଯିବା ଅନେକ କ୍ଷେତ୍ରରେ ଦେଖାଯାଉଛି । ବିପ୍ଳବ ଆଉ ଅଧିକାର ନାମରେ କେତେକ ତଥାକଥିତ ଅସାମାଜିକ ଲୋକ ନିରୀହ ଆଦିବାସୀମାନଙ୍କୁ ଭ୍ରମାତ୍ମକ, ହିଂସା ଆଦି ପଥ ଅନୁସରଣ କରିବାକୁ ପ୍ରବର୍ତ୍ତାଇବା କଣ ସତ୍ୟ ନୁହେଁ ? ନାନା ଭାବରେ ସରଳ, ଅଶିକ୍ଷିତ ଆଦିବାସୀମାନଙ୍କୁ ଉତ୍ପୀଡ଼ନ କରି ଅସାଧୁ ସାହୁକାରମାନେ ଯେଉଁ ଅପ୍ରୀତିକର ଘଟଣାମାନ ସୃଷ୍ଟି କରୁଛନ୍ତି—ତାହା କଣ କାହାରିକୁ ଅବିଦିତ ରହିଛି ? ତଥାପି ପ୍ରତିକାର କ୍ଷେତ୍ରରେ ଆମର ଶିଥିଳତା ରହିଛି । ଆଦିବାସୀମାନଙ୍କର ଉନ୍ନତି ପାଇଁ ଆମର ଆନ୍ତରିକତା ଥିଲେ—ସେମାନଙ୍କ ଉପରେ ଆମକୁ ସୁହାଇଲା ଭଳି ଉନ୍ନୟନ କାର୍ଯ୍ୟକ୍ରମମାନ ଲଦି ନ ଦେଇ ପ୍ରଥମେ ସେମାନଙ୍କ ଜୀବନଧାରା ଓ ବାସ୍ତବ ଆବଶ୍ୟକତା ପ୍ରତି ରହିଥିବା ଆଗ୍ରହକୁ ଜାଗ୍ରତ କରାଇବା ଅଧିକ ଉଚିତ ହୁଅନ୍ତା ।

ତେଣୁ ରାଜ୍ୟର ଆଦିବାସୀ ଉନ୍ନୟନ ସଂପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଏ ସଂପର୍କୀୟ କାର୍ଯ୍ୟକ୍ରମରେ ବାହାଦୁରୀ ନେବାର ମନୋଭାବକୁ ପରିହାର କରାଯାଇ ଅଧିକ ଆନ୍ତରିକତା, ପବିତ୍ର ସେବା

ମନୋଭାବ ଓ ନୈତିକତାବୋଧର ପରିସ୍ଫୁଟନ ହେଉ । କଥା ଅପେକ୍ଷା କାର୍ଯ୍ୟ ଅଧିକ ହେଉ । ଅଦିବାସୀ ବନ୍ୟା 'ଫୁଲବଣୀ'ର ଗନ୍ଧରେ ବଣଫୁଲର ପେନ୍ଥା ପରିବର୍ତ୍ତେ ପ୍ଲାଷ୍ଟିକ ଫୁଲ ଦେଖି ଯେପରି ଧାରଣା ନ ଆସୁ ଯେ ଏମାନେ ଅନେକ ପାହାଚ ଆଗକୁ ଆସିଗଲେଣି । ଏମାନଙ୍କ ସରଳ ବନ୍ୟ ପ୍ରାଣରେ ଅନୁଚିତ ଉଚ୍ଛୃଙ୍ଖଳତା ସୃଷ୍ଟି କରି ନ ଯାଇ ନୈତିକ ଭାବନା ଏବଂ ସଭ୍ୟ ସାମାଜିକ ଚେତନାର ପରିପ୍ରେକ୍ଷୀରେ ଉନ୍ନୟନ କାର୍ଯ୍ୟକ୍ରମକୁ ଭୂସନ୍ନ୍ୟୁତ କରାଯାଉ ।



# ଓଡ଼ିଶାରେ ଆଦିବାସୀଙ୍କ ଜୀବନଧାରା

**ଅଧ୍ୟାପକ ଶ୍ରୀ ଧ୍ରୁବ ଚରଣ ଖୁଣ୍ଟିଆ**

ଏମ୍. ଏ. ଡି. ଲିଟ୍

ଗହନ ବନାନୀର ସବୁଜ ଅଙ୍କରେ ଏକ ଚଳଚଞ୍ଚଳ ଗିରିନଦୀ ପରି ଓଡ଼ିଶାର ଆଦିମ ଅଧିବାସୀ ଆଦିବାସୀଙ୍କର ଜୀବନଧାରା ପ୍ରବାହିତ । ପ୍ରକୃତିର ହାସ୍ୟ ଓ ଲାସ୍ୟରେ ହିଁ ସେମାନଙ୍କ ସରଳ ଜୀବନ ପ୍ରଭାବିତ । ସେମାନଙ୍କ ମନରେ ନ ଥାଏ ସଭ୍ୟମାନବର ଅହଙ୍କାର, ଆବିଳତା କି ସଙ୍କୀର୍ଣ୍ଣତା । ସବୁଜ ଫଳପ୍ରସୂ ପାଦପଠାରୁ ସେମାନେ ଶିକ୍ଷାକରନ୍ତି ନିଜକୁ ବଞ୍ଚାଇ ରଖି ଅନ୍ୟର ଉପକାର କରିବା । କାନନର ଧୀର ସମୀରଣ ଠାରୁ ସେମାନେ ଶିକ୍ଷା କରନ୍ତି ଉନ୍ମତ୍ତ ହୋଇ ସଙ୍ଗୀତ ଗାନ କରିବା ଏବଂ ପୁଷ୍ପିତ ଲତା ଓ ପାଦପଠାରୁ ସେମାନେ ଶିକ୍ଷା କରନ୍ତି ନିଜର ଅବୟବକୁ ସୁସଜ୍ଜିତ କରିବା ।

ଏହି ସରଳ ଆଦିବାସୀମାନେ କେବଳ ଓଡ଼ିଶାରେ ନୁହନ୍ତି, କେଉଁ ପୁରାତନ ଯୁଗରୁ ପୃଥିବୀର ଅଧିକାଂଶ ସ୍ଥାନରେ ବସବାସ କରି ଆସିଛନ୍ତି । ଯେଉଁ ଆଦିମ ଯୁଗରେ ସଭ୍ୟତାର ବାହ୍ୟାଡ଼ମ୍ବର ନ ଥିଲା, ବିଜ୍ଞାନର ଆସ୍ଫାଳନ ନ ଥିଲା, ସେହି ଯୁଗରୁ ଏମାନେ ପ୍ରକୃତି ମାତାର କୋଳରେ ସସ୍ନେହେ ଲାଳିତ ପାଳିତ ହୋଇ ଆସିଛନ୍ତି, କିନ୍ତୁ ଆଜି ଆଧୁନିକ ମାନବ ସମାଜର କୃତ୍ରିମ ଭାବଭଙ୍ଗୀ, ରଙ୍ଗଦିଆ ସଂସ୍କୃତି ସେମାନଙ୍କର ସରଳ ନିରାଡ଼ମ୍ବର ଜୀବନ ଉପରେ ଯଥେଷ୍ଟ ପ୍ରଭାବ ପକାଇ ସେମାନଙ୍କର ଆଦିମ ଭାବଭଙ୍ଗୀ, ସଂସ୍କୃତିକୁ କଳଙ୍କିତ କରୁଛି ।

ଭାରତରେ ଏହି ଆଦିବାସୀମାନଙ୍କର ସରଳ ସଭ୍ୟତା ଓ ସଂସ୍କୃତି ବହୁ କାଳରୁ ବିସ୍ତାର ଲାଭ କରି ଆସିଛି । ଏପରିକି ପ୍ରାଚୀନ ଋକ୍‌ବେଦ ସଂହିତାରେ ମଧ୍ୟ ଏହି ଆଦିବାସୀମାନଙ୍କର ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ବେଦ ଓ ପୁରାଣ ବର୍ଣ୍ଣିତ, ଦାନବ, ନିଷାଦ ପ୍ରଭୃତି ଆଉ କେହି ନୁହନ୍ତି, ସେମାନେ ଏହି ପ୍ରାଚୀନ ଆଦିବାସୀ ଗୋଷ୍ଠୀର ଅନ୍ତର୍ଭୁକ୍ତ ।

ସର୍ବଧର୍ମ ସମନ୍ୱୟ ଜଗନ୍ନାଥ ପୀଠ ଓଡ଼ିଶାକୁ ବହୁ ପ୍ରାଚୀନ କାଳରୁ ଏହି ଆଦିବାସୀ ସଭ୍ୟତା ଦ୍ୱାରା ପ୍ରଭାବିତ । ଳ ରାମଦାସ କହନ୍ତି-ହାମ୍ ସାହେବ ଓ ଡକ୍ଟର ବଂଶୀଧର ମହାନ୍ତି ପ୍ରମୁଖ ଆଲୋଚକମାନଙ୍କ ବକ୍ତବ୍ୟରୁ ଏହା ସୁସ୍ପଷ୍ଟ ଯେ ଆଦିବାସୀମାନଙ୍କର ଭାଷାରୁ ହିଁ ଆମର ପ୍ରାଚୀନ କଳିଙ୍ଗର ନାମକରଣ ହୋଇଛି । ଏପରିକି ଓଡ଼ିଆ ବା ଓଡ୍ରମାନେହିଁ ପୁରାଣରେ ଅନାର୍ଯ୍ୟ ଜାତି ଭାବରେ ବର୍ଣ୍ଣିତ ହୋଇଛନ୍ତି । ଓଡ଼ିଆମାନଙ୍କର ଦେହରେ ଚିତା କୁଟିବା, ଦେବଦେବୀଙ୍କ ପାଖରେ ବଳିଦେବା ପ୍ରଭୃତି କାର୍ଯ୍ୟ ଏହି ଆଦିବାସୀ ସଭ୍ୟତା ଦ୍ୱାରାହିଁ ପ୍ରଭାବିତ । ଓଡ଼ିଆମାନଙ୍କର ଇଷ୍ଟଦେବତା ନୀଳାଚଳ ବିହାରୀ ଜଗନ୍ନାଥ ମଧ୍ୟ ପ୍ରଥମେ ବିଶ୍ୱାବସୁ ଶବର ଗୃହରେ ରହି ପୂଜା ପାଉଥିଲେ । ବର୍ତ୍ତମାନ ମଧ୍ୟ ବିଶ୍ୱାବସୁଙ୍କ ବଂଶଧର ବୋଲି ପରିଚୟ ଦେଉଥିବା ଜାତିମାନେ ବଡ଼-ଦେଉଳର ମୁଖ୍ୟକର୍ତ୍ତା । ଆଦିବାସୀ ବଂଶଧର ଦଇତାମାନେ ବର୍ତ୍ତମାନ ମଧ୍ୟ ଜଗନ୍ନାଥଙ୍କ ସେବା ପୂଜା କରନ୍ତି । ଏପରିକି ନବକଳେବର ସମୟରେ ପୁରୁଣା ମୂର୍ତ୍ତିଗୁଡ଼ିକର ଅନ୍ତ୍ୟେଷ୍ଟି କ୍ରିୟା କାର୍ଯ୍ୟ ଏହି ଦଇତାମାନେ ହିଁ ସମାପନ କରନ୍ତି । ଏଥିରୁ ସ୍ପଷ୍ଟ ଅନୁମେୟ ଯେ ନୀଳାଚଳ ପୀଠ ସର୍ବଧର୍ମ ସମନ୍ୱୟ ହୋଇଥିଲେ ବି ପ୍ରଥମରୁ ହିଁ ଏହା ଆଦିବାସୀ ଧର୍ମର ପରିପୋଷକ ଥିଲା ଏବଂ ଏହି ସଭ୍ୟତା ସମସ୍ତ ଓଡ଼ିଆଙ୍କୁ ବହୁଳ ଭାବରେ ପ୍ରଭାବିତ କରୁଥିଲା । ଯେ ଯାହାହେଉ ବହୁ ପ୍ରାଚୀନ ଯୁଗରୁ ଆଦିବାସୀମାନଙ୍କ ଦ୍ୱାରାହିଁ ଏହି ଓଡ଼ିଶା ଅଧ୍ୟୁଷିତ ହେଉଥିଲା । ସାଧାରଣତଃ ଓଡ଼ିଶାର ଆଦିବାସୀ ବୋଇଲେ, କୁଟିଆ ଓରାଓଁ, କନ୍ଧ, କୋଲ୍ହ,

ସାନ୍ତାଳ, ଭୂୟାଁ, ଗଣ୍ଡ, ପରଜା, ମୁଣ୍ଡା, ଶବର, ହଜଗ ପ୍ରଭୃତିଙ୍କୁ ବୁଝାଏ । କେତେକ ଆଦିବାସୀମାନଙ୍କ ସଭ୍ୟତାଂ ଓ ସସ୍କୃତି ପ୍ରତି ଦୃଷ୍ଟି ନିକ୍ଷେପ କଲେ, ସେମାନଙ୍କ ଜୀବନଧାରା କେତେ ଗୌରବବ୍ୟଞ୍ଜକ ଭକ୍ତିଭାବାପନ୍ନ, ନୃତ୍ୟ ଓ ସଙ୍ଗୀତମୟ ଓ ବିଶ୍ୱାସ ସମ୍ପନ୍ନ ତାହା ସହଜେ ପ୍ରତ୍ୟୟିତ ହେବ ।

'ଶବର' ଜାତି ଏହି ଆଦିବାସୀମାନଙ୍କ ମଧ୍ୟରୁ ଅନ୍ୟତମ । ଓଡ଼ିଶା ଦେଶ ଶବର ଦେଶ ବୋଲି ଆଗରୁ ପ୍ରଖ୍ୟାତ ଅଛି । ଟଲେମି କହନ୍ତି ଯେ ଗଙ୍ଗାନଦୀ ପାର ହେଲେ ଯେଉଁଠାରେ ଅତ୍ୟଧିକ ହୀରା ମିଳେ ସେହି ହେଉଛି ଶବର ଦେଶ । 'ହୀରାକୁଦ' ଏହି ହୀରା ମିଳିବା ସ୍ଥାନ ବୋଲି ଦୃଢ଼ ଭାବରେ କୁହାଯାଇ ପାରେ । କାରଣ ବର୍ତ୍ତମାନ ମଧ୍ୟ ସମ୍ବଲପୁରରେ ବହୁତ ଶବରମାନେ ବାସ କରନ୍ତି । ଏହା କହିବା ବାହୁଲ୍ୟ ଯେ ଆମର ଜଗନ୍ନାଥ ମଧ୍ୟ ଶବର ରାଜା ବିଶ୍ୱାବସୁଙ୍କ ଦ୍ୱାରା ପ୍ରଥମେ ପୂଜା ପାଉଥିଲେ । ଏହି ଶବରମାନେ ଓଡ଼ିଶାର ଅଧିକାଂଶ ସ୍ଥାନରେ ବହୁଳ ଭାବରେ ବାସ କରନ୍ତି । ଏହି ଶବର ଜାତି ଭିନ୍ନ ଭିନ୍ନ ଉପଜାତିରେ ବିଭକ୍ତ । କାର୍ଯ୍ୟର ବିଭାଗୀ କରଣ ଯୋଗୁ ଯେପରି ଭିନ୍ନ ଜାତି ସୃଷ୍ଟି ହୋଇଥିଲେ, ଏହି ଶବର ସମ୍ପ୍ରଦାୟରେ ମଧ୍ୟ ବିଭିନ୍ନ କାର୍ଯ୍ୟ କରିବା ପାଇଁ ବିଭିନ୍ନ ଉପଜାତିର ସୃଷ୍ଟି । କେଉଁ ଶବର ବୃକ୍ଷ ବୃତ୍ତି ତ କେଉଁ ଶବରର ଲୁହା କାମ କରିବା ବୃତ୍ତି । କେଉଁ ଶବର ଉପଜାତି ମାଟି କାମ କରେ ତ କିଏ ଧନୁଶର ତିଆରି କରି ନିଜର ଜୀବିକା ନିର୍ବାହ କରେ । କିନ୍ତୁ ଏହି ଶବରମାନଙ୍କ ମଧ୍ୟରେ ଯେଉଁମାନେ ମାଳ ଅଞ୍ଚଳରେ ବାସ କରନ୍ତି, ସେମାନଙ୍କୁ ମାଳିଆ ବା ଜାତି ଶବର କୁହାଯାଏ । ମାନେ ଏ ହେଉଛନ୍ତି ଶ୍ରେଷ୍ଠ ଶବର । ସେମାନେ ଏପରିକି ଗୋ ମାଂସ ମଧ୍ୟ ଭକ୍ଷଣ କରନ୍ତି, କିନ୍ତୁ ଶୁଦ୍ଧ ଶବର ଆଖ୍ୟାଧାରୀ ଶବରମାନେ ପ୍ରକୃତ ଶ୍ରେଷ୍ଠ ଶବର ଜାତିର ଅନ୍ତର୍ଭୁକ୍ତ ନୁହନ୍ତି । ଏଥିରୁ ସହଜେ ଜଣାପଡ଼ୁଛି ଯେ ଆଦିବାସୀ ହେଉଛନ୍ତି, ପ୍ରକୃତିର ସନ୍ତାନ । ଯେଉଁ ପ୍ରକୃତିର ନିଭୃତ କୋଣରେ ନିଜର ଜୀବନ ନିର୍ବାହ କରେ ସେହି ହିଁ ଉପଯୁକ୍ତ ଜାତି ଶବର ବା ମାଳିଆ

ଶବର । ଅନ୍ୟାନ୍ୟ ଆଦିବାସୀମାନଙ୍କ ପରି ଏମାନେ ମଧ୍ୟ ନିଜର ଅଙ୍ଗକୁ ଭଲ ଭାବରେ ସଜାନ୍ତି । ସ୍ତ୍ରୀମାନଙ୍କ ପରି ପୁରୁଷମାନେ ମଧ୍ୟ ମୁଣ୍ଡରେ ଖୋସା ପାରନ୍ତି । ପୁରୁଷମାନେ ଛିଟ କନାର ପଗଡ଼ି ବାନ୍ଧି ସେଥିରେ ମୟୂର ବା ଅନ୍ୟ ପକ୍ଷୀର ପର ଖୋସନ୍ତି । ଏହି ସରଳ, ନିରାଡ଼ମ୍ବର ବେଶରେ ନିଜକୁ ସୁସଜ୍ଜିତ କରି ଶବର ଶବରୀମାନେ ନୃତ୍ୟ ଗୀତରେ ମତ୍ତ ହୁଅନ୍ତି ଆଜି ସେହି ନୃତ୍ୟ ଗୀତର ଜଲସାରେ ନିର୍ଜନ ବନ ପ୍ରଦେଶର ଗିରିଗୁହା ମଧ୍ୟ ଯୋଗଦାନ ଦିଏ, ପବନ ଉତ୍ତଲା ହୁଏ ଓ ବନ ପ୍ରଦେଶର ଅଜଣା ପୁଷ୍ପର ସୁଗନ୍ଧ ସେହି ସଙ୍ଗୀତ ତାନରେ ମହୁଆଳି ହୁଏ ।

ଶବର ଜାତି ବନ୍ୟ ପ୍ରକୃତିର ସନ୍ତାନ । ତେଣୁ ସେମାନଙ୍କର ଗୋଷ୍ଠୀ ଚିହ୍ନ ବନ୍ୟପଶୁ ସମୂହ । ବାଘ, କୁକୁଡ଼ା, ବଣୁଆ ପ୍ରଭୃତି ସେମାନଙ୍କର ସବୁ ଗୋଷ୍ଠୀ । ଧର୍ମଶାସ୍ତ୍ର ଶବର ନାକରେ ଫାଶିଆ କାନରେ କୁଣ୍ଡଳ ଓ ହାତରେ ଖଡ଼୍ଗ ପିନ୍ଧି ତାଙ୍କର ପ୍ରଧାନ ଦେବତା 'କିଟୁଙ୍ଗ'କୁ ପୂଜା କରନ୍ତି । ଭୂତ ପ୍ରେତମାନଙ୍କୁ ମଧ୍ୟ ସେମାନେ ପୂଜା କରନ୍ତି ଏବଂ 'କନି' ନାମକ ବୃକ୍ଷ ଦେବତାଙ୍କୁ ସେମାନେ ଭାରି ଭୟ କରନ୍ତି । କୌଣସି ଆପଦ ବିପଦ ବା ଧର୍ମ କାର୍ଯ୍ୟରେ ସେମାନେ ସାଧାରଣତଃ ଘୁଷୁରି ବଳି ଦିଅନ୍ତି । ସେମାନଙ୍କର ପ୍ରେତ ପୂଜାର ସାମଗ୍ରୀ ହେଲା ମଦ ଓ ମାଂସ । ଶବରମାନେ ମଧ୍ୟ ଦାରୁ ପୂଜା କରନ୍ତି । ସେମାନଙ୍କର ଏକ ପୁରୋହିତ ସମ୍ପ୍ରଦାୟ ଅଛି । ମୁଖ୍ୟ ପୁରୋହିତ 'କୁଲବା' ବୋଲି ପରିଚିତ ।

ସେମାନଙ୍କର ଶବ ସତ୍କାର ଓ ଶ୍ରାଦ୍ଧ କ୍ରିୟା ପ୍ରାୟ ଓଡ଼ିଆମାନଙ୍କର ସହିତ ଯଥେଷ୍ଟ ସାମଞ୍ଜସ୍ୟ ଅଛି । କୌଣସି ବ୍ୟକ୍ତି ମରିଗଲେ ତାହାର ତୃପ୍ତି ସାଧନ ପାଇଁ ସେମାନେ ତା ମୁହଁରେ ପାଣି ଦିଅନ୍ତି ଓ ଶବକୁ ମଶାଣି ଭୂଇଁରେ ନେଇ ପୋଡ଼ନ୍ତି । ଶବ ଯାତ୍ରା ବେଳେ ସେମାନେ ନୀରବତା ପାଳନ କରନ୍ତି । ଶବ ସତ୍କାର ପରେ ଶବର ଅସ୍ଥି ଆଣି ସେମାନେ ସମାଧି ପରି ସେହି ଅସ୍ଥି ଉପରେ ଏକ ଛୋଟିଆ ଘର ତୋଳନ୍ତି ।

ଣବ ହହିତ ସେମାନେ ତା'ର ସମସ୍ତ ବ୍ୟବହାର୍ଯ୍ୟ ପଦାର୍ଥ ପୋଡ଼ି ଦଅନ୍ତି ।

ଭୂୟାଁମାନେ ଏକ ପ୍ରଧାନ ଆଦିବାସୀ ଜାତି । ଏମାନେ ସାଧାରଣତଃ କେନ୍ଦୁଝରରେ ବହୁତ ବାସ କରନ୍ତି । ଶବରମାନଙ୍କ ପରି ଏହି ଭୂୟାଁମାନେ ମଧ ବିଭିନ୍ନ ଉପଜାତିରେ ବିଭକ୍ତ । ଯଥା—ଗଜ-କୋଳ, ମାବନ, ଗଉଡ଼ାଳ, ଦଣ୍ଡସେନା, ପରଜା, ସାନ୍ତାଳ, ଖଣ୍ଡେଇତ ଭୂୟାଁ ପ୍ରଭୃତି । କେଶବ ଚନ୍ଦ୍ର ମିଶ୍ରଙ୍କ ଅନୁସାରେ ଏହି ଭୂୟାଁ ଶବ୍ଦ ଭୂମି ଶବ୍ଦରୁ ହିଁ ଆସିଅଛି । ଏମାନଙ୍କର ଅନ୍ୟ ନାମ ଭୂମିଜ ମଧ ।

ପ୍ରକୃତରେ ଅଧୁନିକ ସଭ୍ୟତା ଠାରୁ ଦୂରରେ ରହିଥିବା ଏଇ ଜାତି ଅତି ଅତିଥିପରାୟଣ । ଯଦି ଅକସ୍ମାତ୍ ଏକ ଅତିଥି ଭୂୟାଁ ଦୁଆରେ ପାଦ ଦିଏ ସେ ତାକୁ ହଳଦି ପାଣିରେ ଗୋଡ଼ ଧୋଇ ଦେଇ ଦେବତୁଲ୍ୟ ପୂଜା କରେ । ସେମାନେ କେବଳ ଅତିଥି ପରାୟଣ ନୁହନ୍ତି, ସେମାନଙ୍କର ବୀରତ୍ୱ ସମଗ୍ର ଆଦିବାସୀ ସମାଜରେ ପ୍ରଖ୍ୟାତି ଲାଭ କରିଛି । କହିଲେ ଅତ୍ୟୁକ୍ତି ହେବ ନେ ଗଡଜାତ ଆନ୍ଦୋଳନରେ ଏହି ଭୂୟାଁମାନେ ହିଁ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ସେମାନଙ୍କର ବିଦ୍ରୋହାତ୍ମକ ଘଟଣାବଳୀ ଦ୍ୱାରା ପକ୍ଷୀର ମୋହନଙ୍କ ଆତ୍ମଜୀବନୀ ଚରିତ ଅନୁରଂଜିତ ହୋଇ ଉଠିଛି । ସମ୍ଭବତଃ ଭୂୟାଁମାନଙ୍କର ଏହି ଅପରିସୀମ ବୀରତ୍ୱ ଯୋଗୁ କେନ୍ଦୁଝରର ରାଜବଂଶ ସହିତ ସେମାନଙ୍କର ଘନିଷ୍ଠ ସମ୍ପର୍କ ଥିଲା । ଏପରିକି ରାଜ ବଂଶର ସମସ୍ତ ପର୍ବପର୍ବାଣୀରେ ଭୂୟାଁମାନଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରି ଦିଆଉଥିଲା ।

ଭୂୟାଁମାନଙ୍କର ବୀରତ୍ୱର ପରାକାଷ୍ଠା ସେମାନଙ୍କର ପ୍ରତ୍ୟେକ ପର୍ବପର୍ବାଣୀ ଏପରିକି ତାଙ୍କର ବିବାହରେ ମଧ ପ୍ରତିପାଦିତ ହୁଏ । ଏକ ଭୂୟାଁ ତରୁଣୀର ବିବାହ ପାଇଁ ଦୁଇ ଦଳଙ୍କ ମଧ୍ୟରେ ଯୁଦ୍ଧ ଲାଗେ । ଯେଉଁ ଦଳ ଶେଷରେ ବିଜୟ ଲାଭ କରେ ସେହି ଦଳର ପୂର୍ବ ନିର୍ଦ୍ଦିଷ୍ଟ ଯୁବକ ସେହି ଯୁବତୀର ପାଣି ଗ୍ରହଣ କରେ । ଏହି ଉଦାହରଣ

ପ୍ରସଙ୍ଗରେ ପୁରାଣ ଯୁଗର କଥା ମନେପଡେ । ଆର୍ଯ୍ୟ ଯୁବତୀ ସମତା, ଦ୍ରୌପଦୀ, ସୁଭଦ୍ରା ପ୍ରଭୃତିଙ୍କର ସ୍ୱୟମ୍ବର ମଧ୍ୟ ଶାରୀରିକ ପରୀକ୍ଷା ଉପରେ ଥିଲା । ଭୂୟାଁ ଜେଁବ ଶାରୀରିକ କେଉଁ ବିଷୟରେ ସେମାନଙ୍କଠାରୁ ନ୍ୟୁନ ? ? ଭୂୟାଁମାନେ ସେମାନଙ୍କର ଅତିଥିମାନଙ୍କୁ ପ୍ରତ୍ୟେକ ପର୍ବ-ପର୍ବାଣୀରେ ବିଧି ପୂର୍ବକ ପୂଜା କରନ୍ତି ।

ଭୂୟାଁମାନେ ଯେତିକି ଅତିଥି ପରାୟଣ, ଶାରୀରିକ ସମ୍ପନ୍ନ ସେତିକି ପରିମାଣରେ ଧର୍ମପରାୟଣ ମଧ୍ୟ । ପ୍ରତ୍ୟେକ ପର୍ବରେ ସେମାନେ ଧର୍ମ-ଦେବତାଙ୍କୁ ପୂଜା କରନ୍ତି ଏବଂ ଯେଉଁ ଭୂମି ତାକୁ ଆହାର ଯୋଗାଏ ଓ ଯେଉଁ ଭୂମିରୁ ସେମାନେ ଜାତ ବୋଲି ପ୍ରଖ୍ୟାତ ଅଛି (ଭୂମିଜ) ସେହି ଭୂମିଦେବୀ ଅର୍ଥାତ୍ ବସୁମାତାଙ୍କୁ ସେମାନେ ସରଳ ଭକ୍ତିପୂର୍ଣ୍ଣ ହୃଦୟରେ ପୂଜା କରନ୍ତି । ଭୂୟାଁ ଜାତି କେବେ କୃତଘ୍ନ ନୁହେଁ, ଯାହାଠାରୁ ସେ ଉପକାର ପାଏ ତାହାର ସେ ପୂଜା କରେ । ଯେଉଁ ପାହାଡ଼ଠାରୁ ସେ ଧୈର୍ଯ୍ୟ ଓ ସାହସର ଶିକ୍ଷା ପାଇଛି, ଯେଉଁ ନଦୀ ଠାରୁ ସେ ଶିକ୍ଷା ନେଇଛି ଚଲ ଚଞ୍ଚଳ ଗତିରେ ପ୍ରବାହିତ ହେବା ପାଇଁ ଏବଂ ଯେଉଁ ଆକାଶ ଠାରୁ ସେ ଶିକ୍ଷା ପାଇଛି ହୃଦୟର ଅସୀମତା, ସେହି ପାହାଡ଼ ଦେବତା, ନଦୀ ଦେବତା ଓ ଆକାଶର ଦେବତା ସୂର୍ଯ୍ୟଙ୍କୁ ସେ ପୂଜା କରେ ।

ଭୂୟାଁମାନଙ୍କର ପ୍ରେତ ଜଗତ ପ୍ରତି ଅଗାଧ ବିଶ୍ୱାସ । ଏହି ଭୂତପ୍ରେତଙ୍କୁ ବଶୀଭୂତ କରିବା ପାଇଁ ସେମାନେ କୋଣ୍ଡା କୁଆଁରୀ ଦେବୀଙ୍କୁ ପୂଜା କରନ୍ତି । ସେମାନେ ଅତି ନୃତ୍ୟଗୀତ ପ୍ରିୟ । ଛଉ ନୃତ୍ୟ ସେମାନଙ୍କର ପ୍ରଧାନ ନୃତ୍ୟ । ବିଭିନ୍ନ ଜୀବମାନଙ୍କର ଚାଲିଚଳଣ, ଗତି-ବିଧି ଏକାନ୍ତ ଭାବରେ ଅନୁକରଣ କରି ସେମାନେ ତାହା ଏହି ନୃତ୍ୟରେ ପ୍ରଦର୍ଶନ କରନ୍ତି । ନୃତ୍ୟଗୀତ ଆଦିବାସୀ ଜୀବନର ଏକ ପ୍ରଧାନ ଅଙ୍ଗ । ସୃଷ୍ଟିର ପ୍ରଥମରୁ ହିଁ ଆଦିମମାନେ ନୃତ୍ୟଗୀତର ସୂଚନା ପାଇଛି । ଭୂୟାଁ ଆଦିବାସୀ । ସେ ସେଥିରୁ ବାଦ୍ ଯିବ କିପରି ?

ପ୍ରକୃତରେ ଭୂୟାଁମାନଙ୍କର ଏହି ବୈଶିଷ୍ଟ୍ୟ ଗୁଣରେ ଅଭିଭୂତ ହୋଇ ସ୍ୱର୍ଗତ ଗୋପାଳ ବଲ୍ଲଭ ଦାସ 'ଭୀମା ଭୂୟାଁ' ନାମରେ ଏକ ଅମୂଲ୍ୟ ଉପନ୍ୟାସକୁ ରଚନା କରି ପାରିଥିଲେ ।

ଭୂୟାଁମାନଙ୍କ ପରି ଓରାଓଁ ଏକ ବିଖ୍ୟାତ ଆଦିବାସୀ ଗୋଷ୍ଠୀ । ଭୂୟାଁ । ଶବ୍ଦ ଯେପରି ଭୂମି ଶବ୍ଦରୁ ଉତ୍ପନ୍ନ ହୋଇଛି ଏହି ଓରାଓଁ ଶବ୍ଦ ସେପରି ଉତ୍ପନ୍ନ ହୋଇଛି 'ଓର' (ଚାଷ କରିବା) ଶବ୍ଦରୁ । ତେଣୁ ଏହା ସ୍ୱତଃ ଅନୁମିତ ହୁଏ ଯେ ଏହି ଓରାଓଁମାନେ ହିଁ କୃଷି ସହିତ ଓତପ୍ରୋତ ଭାବରେ ସଂଶ୍ଳିଷ୍ଟ । ଏମାନେ ମଧ୍ୟ ନିଜକୁ କୋଡ଼ା ବୋଲି ପରିଚୟ ଦିଅନ୍ତି । ଏହି 'କୋଡ଼ା' ଶବ୍ଦ 'କୋଡ଼ିବା'ରୁ ପ୍ରାପ୍ତ ଆସିଛି । ଏହି ଜାତିମାନେ ଓଡ଼ିଶାର ଗାମଣ୍ଡା, ରେଢ଼ାଖୋଲ, ପାଲଲହଡ଼ା ଓ ସମ୍ବଲପୁରର ଅଧିକାଂଶ ସ୍ଥାନରେ ବାସ କରୁଛନ୍ତି ।

ଏମାନେ ଭାରି ଅଳଙ୍କାର ପ୍ରିୟ । ସ୍ତ୍ରୀମାନେ ଯେପରି ହଂସୁଳୀ, ବାଳି, ବେସର, ମୁଦି ପ୍ରଭୃତି ଅଳଙ୍କାରମାନ ବ୍ୟବହାର କରନ୍ତି, ପୁରୁଷମାନେ ମଧ୍ୟ ସେପରି କେତେକ ଅଳଙ୍କାର ବ୍ୟବହାର କରନ୍ତି । ସ୍ତ୍ରୀମାନଙ୍କ ପରି ପୁରୁଷମାନେ ମଧ୍ୟ ନିଜ କେଶକୁ ସୁସଜ୍ଜିତ କରିବା ପାଇଁ ଗଣ୍ଠି ପକାନ୍ତି । ଏମାନେ ମଧ୍ୟ ନିଜ ଦେହର ବିଭିନ୍ନ ଅଂଶରେ ଲତା, ବୃକ୍ଷ, ପକ୍ଷୀ ପ୍ରଭୃତିର ଚିତା କୁଟାନ୍ତି । ଏମାନଙ୍କର ଦୃଢ଼ ଧାରଣା ଯେ ଚିତା କୁଟିଲେ ଦେହରେ କୌଣସି ରୋଗ ହୁଏନାହିଁ ।

ଏମାନେ ମଧ୍ୟ ଭୂତ ପ୍ରେତଙ୍କୁ ଅତ୍ୟଧିକ ପରିମାଣରେ ବିଶ୍ୱାସ କରନ୍ତି । ସେମାନଙ୍କର ବିଶ୍ୱାସ ଯେ ଏହି ଭୂତ ପ୍ରେତ ହିଁ ପୃଥିବୀର ପ୍ରତ୍ୟେକ ଅଂଶରେ ପରି ରହିଛନ୍ତି । ଏହି ଭୂତ ପ୍ରେତଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେମାନେ ବିଭିନ୍ନ ପଶୁଙ୍କୁ ବଳି ଦିଅନ୍ତି । ଚାଷ ଏମାନଙ୍କର ପ୍ରଧାନ ଜୀବିକା ହୋଇଥିବାରୁ ପ୍ରଥମେ ବିଲରେ ଧାନ ବୁଣିଲେ ସେମାନେ ବସୁମାତାକୁ ପୂଜା କରନ୍ତି ଓ ଧାନ ଉଡ଼ା ସମୟରେ ମଧ୍ୟ ସେମାନେ ବସୁମାତାକୁ ବଳିଦାନ ଦିଅନ୍ତି । ଧାନ କଟା ପରେ 'ନୂଆଖିଆ' ପର୍ବକୁ

ଏମାନେ ମନ୍ତ୍ର ସମାଚାରରେ ପାଳନ କରନ୍ତି । 'ଧରମେଶ' ଏମାନଙ୍କର ପ୍ରଧାନ ଦେବତା ଏବଂ ଭବିଷ୍ୟତ ବାଣୀ ବ୍ୟକ୍ତ କରିବା ପାଇଁ ଯେଉଁମାନେ ଅଛନ୍ତି ସେମାନଙ୍କୁ ଏମାନେ 'ଓଝା' କୁହନ୍ତି ।

ଏମାନେ ଅତି ନୃତ୍ୟଗୀତ ପ୍ରିୟ । ନୂଆଖିଆ ପ୍ରଭୃତି ପର୍ବରେ ଏମାନେ ନୃତ୍ୟରତ ହୁଅନ୍ତି । 'କରମା' ଏମାନଙ୍କର ପ୍ରଧାନ ନୃତ୍ୟ । ନୃତ୍ୟ ସମୟରେ ପୁରୁଷମାନେ 'ଘୁଙ୍ଗୁର' ବାଦ୍ୟ ବାଦନ କରନ୍ତି ଓ ସ୍ତ୍ରୀମାନେ ନୃତ୍ୟ ସହିତ ସଙ୍ଗୀତରେ ମଧ୍ୟ ଉନ୍ମତ୍ତ ହୁଅନ୍ତି । ପ୍ରକୃତରେ ଏହି ନୃତ୍ୟ ଗୀତ କୃଷିପ୍ରିୟ ଆଦିବାସୀ ଗୋଷ୍ଠୀର ବର୍ତ୍ତମାନ ଓଡ଼ିଆ କୃଷକ ଗୋଷ୍ଠୀଙ୍କ ସହ ଅପୂର୍ବ ସାମଞ୍ଜସ୍ୟ ରହିଛି ।

ଭୂୟାଁ, ଓରାଓଁ ଓ ଶବରମାନଙ୍କ ପରି ମୁଣ୍ଡା, କନ୍ଧ, ସାନ୍ତାଳ ପ୍ରଭୃତି ଆଦିବାସୀମାନେ ମଧ୍ୟ ଅପୂର୍ବ ବୀରତ୍ୱର ପରିଚୟ ପ୍ରଦାନ କରନ୍ତି । ୧୮୩୭ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କ ବିରୁଦ୍ଧରେ ଘୁମୁସରର କନ୍ଧ ବିଦ୍ରୋହ ଏକ ଐତିହାସିକ ଘଟଣା । ଏହି କନ୍ଧମାନେ ମଧ୍ୟ 'ମେରିଆ' ବଳି ଦେଉଥିଲେ । ତାହା ବୋଲି ସେମାନଙ୍କୁ ନୃଶଂସ କହିବା ମୋଟେ ଉଚିତ ନୁହେଁ । ଏହି ନରବଳି ଦେଲାବେଳେ ସେମାନେ ଅନ୍ତରର ସମସ୍ତ ଶ୍ରଦ୍ଧା ପ୍ରକାଶ କରି କହନ୍ତି "ଆମ୍ଭେ ତୋତେ ପଇସା ଦେଇ କିଣିଛୁ, ଆମ୍ଭର କୌଣସି ପାପ ନାହିଁ । ଏହା କଣ ଏକ ସରଳ ହୃଦୟର ସ୍ୱାକ୍ଷର ନୁହେଁ ? ଏତଦ୍‌ବ୍ୟତୀତ ମହାଭାରତ ଯୁଦ୍ଧରେ ମଧ୍ୟ 'ମୁଣ୍ଡା' ଆଦିବାସୀ ଭାଗ ନେଇଥିଲେ ବୋଲି ବର୍ଣ୍ଣିତ ହୋଇଛି । ସାନ୍ତାଳମାନେ ଅତି ସତ୍ୟପ୍ରିୟ । ମିଥ୍ୟାକୁ ସେମାନେ ଅନ୍ତରର ସହ ଘୃଣା କରନ୍ତି । ସେମାନଙ୍କର ସରଳ ଅମାୟିକ ଜୀବନଧାରା ପ୍ରକୃତରେ ସମସ୍ତଙ୍କର ଅନୁକରଣୀୟ ହେବା ଉଚିତ ଆଉ ପରଜାମାନଙ୍କର ସତ୍ୟବାଦିତା, ସ୍ପଷ୍ଟୋକ୍ତି, ସାରଲ୍ୟ ଗୋପୀନାଥ ମହାନ୍ତିଙ୍କର 'ପରଜା' ଉପନ୍ୟାସର ପ୍ରତି ପଂକ୍ତିକୁ ସମୁଜ୍ଜ୍ୱଳ କରିଛି । ଖଡ଼ିଆମାନେ ମଧ୍ୟ ଏହି ବିଶିଷ୍ଟ ଗୁଣର ଅଧିକାରୀ ।

ଏହାପରେ ଆମ୍ଭେମାନେ ପ୍ରତ୍ୟେକ ଆଦିବାସୀ ଗୋଷ୍ଠୀଙ୍କ ଜୀବନ-ଧାରା ଆଲୋଚନା କଲେ ସମସ୍ତ ମାନବିକ ଗୁଣ ନିର୍ଯ୍ୟାସର ପରଖ ହିଁ ପାଇବା । ବର୍ତ୍ତମାନ ଆଧୁନିକ ସଭ୍ୟତା ସେହି ଆଦିମ ସଭ୍ୟତାକୁ ଧୀରେ ଧୀରେ ଗ୍ରାସ କରିବାକୁ ବସିଲାଣି ଏବଂ ଏହି ସରଳ ଆଦିବାସୀ ଭାଇ ଭଉଣୀମାନେ ଆଜି ସେହି ଅନିର୍ଦ୍ଦିଷ୍ଟ ଅଶ୍ୱାଶତ ବସ୍ତୁ ପାଇବା ପାଇଁ ଧାବମାନ । ତେବେ ଆଉ କେତେଦିନ ପରେ ସେହି ସରଳ ଆଦିବାସୀ-ମାନଙ୍କ ପାଖରୁ କ'ଣ ଶାନ୍ତ ହୃଦୟ ପଳାୟିତ ହେବନାହିଁ ? କି ଆଦିବାସୀ ଲଳନାର ଲଳିତ ନୃତ୍ୟ ସଙ୍ଗୀତରେ କ'ଣ ବନଭୂମି ମୁଖରିତ ହେବନାହିଁ ? ଆଦିବାସୀ କେବେ ଆଧୁନିକ ସଭ୍ୟମାନବ ଏବଂ ସବୁଜ ପ୍ରକୃତିର ସ୍ୱରୁ ଉତ୍ସଙ୍ଗ ପରିତ୍ୟାଗ କରି ସେମାନେ ବୈଚିତ୍ର୍ୟପୂର୍ଣ୍ଣ ସହର ସଭ୍ୟତା ଆଡ଼କୁ ଅଗ୍ରସର ହେବେ । ପ୍ରକୃତ ପୁଅ ହେବେ ସହର ବାସିନ୍ଦା । ଆଉ ସେ ଦିନ ସେଇ ବନ ଝରଣା, ଗିରିତଟିନୀ, ପୁଷ୍ପିତ ପାଦପ ଲତା, ଉନ୍ନତ ଶିଖର, ନିର୍ଜନ ସମତଳ ଭୂମି ଏକାନ୍ତରେ ତାଙ୍କୁ ଝୁରି ହେବେ—କାହାନ୍ତି ତା'ର ଅନ୍ତରଙ୍ଗ, ଚିରଦିନିଆ ସାଥୀ ଏକାନ୍ତ ଆପଣାର ଚିରପରିଚିତ ଆଦିବାସୀ ଭାଇ ଭଉଣୀ ! ! !



# ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମରେ

# ଶିକ୍ଷା

ଶ୍ରୀ ପ୍ରଫୁଲ୍ଲ କୁମାର ସ୍ୱାଇଁ, ଓ: ଏ: ଏସ୍: (୧)

ଆମ ଦେଶ ଜନସଂଖ୍ୟାର ଏକ ବୃହଦାଂଶ ଆଦିବାସୀ ହରିଜନ ଓ ଅନୁନ୍ନତ ଗୋଷ୍ଠୀ ଯାହାକୁ କୌଣସି ସଭ୍ୟ ଓ ଗଣତାନ୍ତ୍ରିକ ସମାଜ ଉପେକ୍ଷା କରି ପାରିବ ନାହିଁ । ଦେଶର ଅନ୍ୟାନ୍ୟ ଅପେକ୍ଷାକୃତ ଉନ୍ନତ ସମ୍ପ୍ରଦାୟ ସହିତ ଏହି ବୃହତ୍ ଗୋଷ୍ଠୀର ଅର୍ଥନୈତିକ, ସାଂସ୍କୃତିକ ଓ ସାମାଜିକ ସ୍ତରରେ ସଂମିଶ୍ରଣ ନହେଲେ ଏ ଦେଶର ସାମଗ୍ରିକ ବା ସର୍ବାଙ୍ଗିନ ଉନ୍ନୟନ କଳ୍ପନାତୀତ । ସେଥିପାଇଁ ଭାରତୀୟ ସଂବିଧାନର ଷୋଡ଼ଶ ଭାଗରେ ଆଦିବାସୀ ଓ ହରିଜନମାନଙ୍କ ପାଇଁ ସ୍ୱତନ୍ତ୍ର ସୁବିଧା ଦେବାର ବ୍ୟବସ୍ଥା ରହିଛି । ଏହି ବ୍ୟବସ୍ଥାର ମିଆଦ ଆସନ୍ତା ଜାନୁଆରୀ ୨୬ ତାରିଖରୁ ପୂରି ଯିବାର କଥା । ମାତ୍ର ବର୍ତ୍ତମାନ ସୁଦ୍ଧା ଆଦିବାସୀ ଓ ହରିଜନମାନେ ସମାଜର ଅନ୍ୟାନ୍ୟ ଗୋଷ୍ଠୀମାନଙ୍କ ସହିତ ଅର୍ଥନୈତିକ, ସାମାଜିକ ବା ସାଂସ୍କୃତିକ ସ୍ତରରେ ସମତୁଲ ହୋଇ ନାହାନ୍ତି ବୋଲି ଉପଲବ୍ଧି କରିପାରି ସଂବିଧାନର ଏହି ସ୍ୱତନ୍ତ୍ର ସୁବିଧା ଦେବାର ମିଆଦ ଦଶବର୍ଷ ପାଇଁ ବଢ଼ାଇ ଦେବାକୁ ପାର୍ଲିଆମେଣ୍ଟରେ ଗତ ଅଧିବେଶନରେ ବିଲ୍ ଗୃହୀତ ହୋଇଛି । ଦେଶର ୫୦ ଭାଗ ବିଧାନ ସଭାରେ ଏହା ଅନୁମୋଦିତ ହେଲେ କାର୍ଯ୍ୟକାରୀ ହେବ । ଅବଶ୍ୟ ଏହି ଆଇନ କାର୍ଯ୍ୟକାରୀ ହେବାରେ କୌଣସି ଅସୁବିଧା ଆସିବ ନାହିଁ । ତଥାପି ଏକଥା ସ୍ୱୀକାର୍ଯ୍ୟ ଯେ ସ୍ୱାଧୀନତାର ୨୨ ବର୍ଷ ପରେ ମଧ୍ୟ ଦେଶରେ ଆଦିବାସୀ ଓ ଅନୁନ୍ନତ ସମ୍ପ୍ରଦାୟର ଉନ୍ନୟନ ପାଇଁ ଯେଉଁସବୁ ବ୍ୟବସ୍ଥା ଗ୍ରହଣ କରାଯାଇଛି ତାହା ଆଶାନୁରୂପ ଫଳପ୍ରଦ ହୋଇ ପାରିନାହିଁ ।

ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ସ୍ୱାଧୀନତାର ପ୍ରାରମ୍ଭରେ ଆଦିବାସୀମାନଙ୍କ ଅବସ୍ଥା ଯାହା ଥିଲ, ଏବେ ମଧ୍ୟ ତାହା ରହିଛି । ସାମାଜିକ ଓ ସାଂସ୍କୃତିକ ବିଶେଷତଃ ଅର୍ଥନୈତିକ ସ୍ତରରେ ଆଦିବାସୀ ସମାଜର ଅନେକେ ସୁବିଧା ପାଇଛନ୍ତି । ବିଶେଷତଃ ଆଦିବାସୀ ବହୁଳ ଅଞ୍ଚଳରେ ବଡ଼ ବଡ଼ ଶିଳ୍ପ ଓ ଖଣିଜ ଯୋଜନା ସବୁ କାର୍ଯ୍ୟକାରୀ ହେବା ଦ୍ୱାରା ସେ ଅଞ୍ଚଳର ଆଦିବାସୀମାନଙ୍କ ଅର୍ଥନୈତିକ ବିକାଶ ଘଟିଛି । ମାତ୍ର ମୋଟାମୋଟି ଭାବରେ କହିବାକୁ ଗଲେ ଦେଶର ସାଧାରଣ ସମାଜ ସହିତ ଏମାନଙ୍କର ସଂମିଶ୍ରଣ ଆହୁରି ଅନେକ ଦୂର ବୋଲି ମନେହୁଏ ।

ସାମାଜିକ ଅବସ୍ଥା ଦୃଷ୍ଟିରୁ ଆଜିର ଆଦିବାସୀ ସଂପ୍ରଦାୟକୁ ପ୍ରଧାନତଃ ତିନି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ । ଏହା ମଧ୍ୟରୁ ପ୍ରଥମ ଶ୍ରେଣୀ ବର୍ତ୍ତମାନ ସୁଦ୍ଧା ଅତି ଅନୁନ୍ନତ ଅବସ୍ଥାରେ ଅଛନ୍ତି । ସେମାନେ ଏବେ ସୁଦ୍ଧା ବଣ-ଜଙ୍ଗଲ ଓ ପାହାଡ଼ ଉପରେ ବସବାସ କରୁଛନ୍ତି । ଓଡ଼ିଶାର କୋରାପୁଟ ଜିଲ୍ଲାର ବଣ୍ଡା, ଓଲଞ୍ଜିଆ ସୌରା ଫୁଲବାଣୀ ଜିଲ୍ଲାର କୁଟିଆ କନ୍ଧ, କେଉଁଝରର ଜୁଆଙ୍ଗ ଇତ୍ୟାଦି ଏଇ ଶ୍ରେଣୀର ଅନ୍ତର୍ଗତ । ଖୁବ୍ ସଙ୍କୋଚ ଓ ସରଳ ଏଇ ଆଦିବାସୀ-ମାନଙ୍କର ଟାଙ୍ଗିଆ କୃଷି ଓ ଜନ୍ତୁ ଶୀକାର ଉପରେ ଭରସା ଏବେ ବି ଅତୁଟ ରହିଛି । କୌଣସି ବିଷୟରେ ସେମାନଙ୍କର ଅଭାବ ଉପଲବ୍ଧି ନାହିଁ । ଆଧୁନିକ ସଭ୍ୟତାର ଜଟିଳତାଠାରୁ ସେମାନେ ଦୂରରେ ରହିଛନ୍ତି ।

ଉପରୋକ୍ତ ଆଦିବାସୀମାନଙ୍କଠାରୁ ଅପେକ୍ଷାକୃତ ଉନ୍ନତ ଆଦିବାସୀ ସମ୍ପ୍ରଦାୟ ଦ୍ୱିତୀୟ ଶ୍ରେଣୀ ଅନ୍ତର୍ଗତ । ଏମାନଙ୍କ ମଧ୍ୟରେ ଅନେକେ ପୋଡ଼ୁ କୃଷି କରୁ ଥିଲେହେଁ, ହଳ ଲଙ୍ଗଳରେ କୃଷି ଆରମ୍ଭ କଲେଣି । ସ୍ୱଉପାର୍ଜିତ ଶସ୍ୟ ଇତ୍ୟାଦି ନିକଟସ୍ଥ ହାଟମାନଙ୍କରେ ବିକି ସେମାନେ ନିଜର ଅନ୍ୟାନ୍ୟ ଗୁଜୁରାଣ ମେଣ୍ଟାଇଥାନ୍ତି । ତଥାକଥିତ ସଭ୍ୟ ସମାଜ ସମ୍ପର୍କରେ ଆସିବା ଦ୍ୱାରା ସେମାନଙ୍କର ବେଶଭୂଷାର

କେତେକ ପରିବର୍ତ୍ତନ ହୋଇଛି । ମାତ୍ର ବର୍ଷ ବର୍ଷ ଧରି ଯେଉଁମାନେ ସେମାନଙ୍କୁ ଶୋଷଣ କରିଛନ୍ତି ସେ ସମାଜର ସଭ୍ୟତା ଉପରୁ ସନ୍ଦେହ ସ୍ୱଭାବରୁ ଦୂରୀଭୂତ ନ ହୋଇଥିବାରୁ ସେମାନଙ୍କ ସାଂସ୍କୃତିକ ପରିବର୍ତ୍ତନର ଗତି ଖୁବ୍ ମନ୍ଥର ।

ଗବ୍ ଅଳ୍ପ ସଂଖ୍ୟକ ଆଦିବାସୀ ଏ ଯୁଗର ସଭ୍ୟତାର ସଂସ୍ପର୍ଶରେ ଆସି, ତା ଦ୍ୱାରା ବାସ୍ତବିକ ପ୍ରଭାବିତ ହୋଇଛନ୍ତି । ଏ ଦେଶର ସଭ୍ୟତାର ମାନଦୃଷ୍ଟିରୁ ଏମାନେ ଯେ କୌଣସି ସଂପ୍ରଦାୟର ସମତୁଲ । ଏହି ଶ୍ରେଣୀ କ୍ରମବର୍ଦ୍ଧିଷ୍ଣୁ । ଆଦିବାସୀ ଉନ୍ନୟନ ପାଇଁ ଦେଶରେ ଯେଉଁ-ସବୁ ଯୋଜନା କାର୍ଯ୍ୟକାରୀ ହେଉଛି ତାର ସୁଯୋଗ ଏମାନେ ନେଇ ପାରିଛନ୍ତି । କିନ୍ତୁ ଦୀର୍ଘ ୨୨ ବର୍ଷର ଯୋଜନା ଓ ପ୍ରଚେଷ୍ଟା ପରେ, ଏହି ଶ୍ରେଣୀ ଏତେ ମୁଷ୍ଟିମେୟ ଯେ, ମନେହୁଏ ଯଦି ପ୍ରଗତିର ଗତି ଏହିପରି ରହେ ତା'ହେଲେ ଆଦିବାସୀ ସମସ୍ୟା ଦୂର କରିବାକୁ ଆଉ ଗୋଟିଏ ଦଶନ୍ଧି କାହିଁକି ଦୁଇଟି ଶତାବ୍ଦୀ ଲାଗିଯିବ । ଆଧୁନିକ ଜୀବନଧାରା ଆଦିବାସୀ କ୍ରମଶଃ ସମାଜରେ ପ୍ରବେଶ କରୁଛି । ସେଥିରୁ ଆଦିବାସୀ ସମାଜ ଅଲଗା ରହି ନ ପାରେ । ଗତି ମନ୍ଥର ହେଲେ ସୁଦ୍ଧା ପରିବର୍ତ୍ତନ ଅବଶ୍ୟମ୍ଭାବୀ, ଯେଉଁ ଯୋଜନା ଦ୍ୱାରା ଏ ପରିବର୍ତ୍ତନର ଗତି ତ୍ୱରାନ୍ୱିତ ହୋଇ ପାରିବ ଏବଂ ବଣ ଜଙ୍ଗଲର ଆଦିବାସୀ ଆଧୁନିକ ଜୀବନ-ଧାରାର ଜଟିଳତାର ସମ୍ମୁଖୀନ ହୋଇ ସ୍ୱାବଲମ୍ବୀ ହୋଇ ପାରିବ ଓ ଆଧୁନିକ ସଭ୍ୟତାର ସୁବିଧା ସୁଯୋଗ ଗ୍ରହଣ କରି ପାରିବ, ସେହି ଯୋଜନା ହିଁ ବାସ୍ତବିକ ଅଧିକ ଫଳପ୍ରଦ ଓ ଅଗ୍ରାଧିକାର ପାଇବା ଉଚିତ ।

ଉପରୋକ୍ତ ପରିପ୍ରେକ୍ଷୀରେ ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମକୁ ପ୍ରଧାନତଃ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ––ଅର୍ଥନୈତିକ ଓ ସାମାଜିକ । ଅର୍ଥନୈତିକ କାର୍ଯ୍ୟକ୍ରମ ମଧ୍ୟରେ ଅଧିବାସ (Colony) ଯୋଜନା, କୃଷି ଯୋଜନା, କଣାବିକା ଓ କ୍ଷୁଦ୍ର ଶିଳ୍ପ ଯୋଜନାମାନ ରହିଛି । ସାମାଜିକ କାର୍ଯ୍ୟକ୍ରମ ମଧ୍ୟରେ ଶିକ୍ଷା ଓ ସ୍ୱାସ୍ଥ୍ୟ ଇତ୍ୟାଦି

ଯୋଜନାମାନ ରହିଛି । ଅବଶ୍ୟ ଏହା ମଧ୍ୟରେ କେଉଁଟା ଆଗ ଓ କେଉଁଟା ପଛ ହେବା କଥା ତାହା ଅଯଥା ଯୁକ୍ତିମୂଳକ । ଅନେକଙ୍କର ଧାରଣା ଯେ ଆର୍ଥିକ ଅବସ୍ଥା ସୁଧୁରିଗଲେ ଆଦିବାସୀମାନେ ସ୍ୱତଃ ସ୍ୱତଃ ସମାଜର ଅନ୍ୟ ଗୋଷ୍ଠୀମାନଙ୍କ ସମକକ୍ଷ ହୋଇଯିବେ । ଅନ୍ୟ ପକ୍ଷରେ ଯୁକ୍ତି ହୁଏ ଯେ ଆଦିବାସୀ ସମାଜର ଶିକ୍ଷା ଓ ସ୍ୱାସ୍ଥ୍ୟ ପରିସ୍ଥିତି ଅନୁକୂଳ ନ ହେଲେ ଅର୍ଥନୈତିକ କାର୍ଯ୍ୟକ୍ରମ ଫଳପ୍ରସୂ ହେବନାହିଁ । ଏପରି ପରସ୍ପର ପ୍ରତିକୂଳ ଯୁକ୍ତି ଅହେତୁକ—"ଗଛରୁ ମଞ୍ଜି ହୁଏ କି ମଞ୍ଜିରୁ ଗଛ ହୁଏ" ଏ ବିଷୟ ନେଇ ଯୁକ୍ତି କରିବାରେ କୌଣସି ଅର୍ଥ ନାହିଁ । ପ୍ରତ୍ୟେକ ଯୋଜନାର କାର୍ଯ୍ୟକାରିତାର ବାସ୍ତବ ଚିତ୍ର ଆମ ଆଗରେ ରହିଛି । ତୁଳନାତ୍ମକ ବିଚାର କଲେ ଦେଖାଯାଏ ଯେ, ଶିକ୍ଷା ଯୋଜନାହିଁ ଉତ୍କୃଷ୍ଟ । ଆଦିବାସୀ ସମାଜର ଶିକ୍ଷାମାନ ନ ବଢ଼ିଥିବାରୁ ବିଭିନ୍ନ ଅର୍ଥନୈତିକ କାର୍ଯ୍ୟକ୍ରମମାନଙ୍କର ସୁଯୋଗ ନେବାକୁ ସେମାନେ ସକ୍ଷମ ହେଉ ନାହାନ୍ତି । ତଥାକଥିତ ସଭ୍ୟ ସମ୍ପ୍ରଦାୟ ପ୍ରତି ଆଦିବାସୀମାନଙ୍କ ମଧ୍ୟରେ ଅତୀତର ଶୋଷଣଜନିତ ଯେଉଁ ଅନ୍ତର୍ନିହିତ ସନ୍ଦେହ ରହିଛି ତାହା ଦୂର ହୋଇ ପାରିବ କେବଳ ସେମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଦ୍ୱାରା । ଆମ ଦେଶର ଶିଳ୍ପ ଓ ଖଣିଜ ଅଞ୍ଚଳରେ ଆଦିବାସୀମାନଙ୍କର ଅର୍ଥନୈତିକ ଅବସ୍ଥା ମନ୍ଦ ନୁହେଁ; ମାତ୍ର ସେ ଅର୍ଥନୈତିକ ବିକାଶ ସେମାନଙ୍କର ସାମାଜିକ ଜୀବନଧାରାରେ ବିଶେଷ ପରିବର୍ତ୍ତନ ଆଣି ପାରିନାହିଁ । ନିରିହ ଓ ସରଳ ଆଦିବାସୀ ଶ୍ରମିକର ଆୟର ବହୁଳାଂଶ ମଦ ପିଇବାରେ ବା ମହାଜନର ସୁଧ ଗଣିବାରେ ଖର୍ଚ୍ଚ ହେଉଛି । ଏହାର କାରଣ ଶିକ୍ଷାର ଅଭାବ ।

ତା ଛଡ଼ା ଶିକ୍ଷା ଯୋଜନା, ବସ୍ତୁତଃ ଆଦିବାସୀ ଉନ୍ନୟନର ଅର୍ଥନୈତିକ କାର୍ଯ୍ୟକ୍ରମ ଅନ୍ତର୍ଗତ ହେବା ଆବଶ୍ୟକ । ସରକାରୀ ଆଦେଶନାମା ଅନୁସାରେ ଚାକିରିବାକିରିରେ ଆଦିବାସୀମାନଙ୍କ ପାଇଁ ଓଡ଼ିଶାରେ ଶତକଡ଼ା ୨୦ ସ୍ଥାନ ସଂରକ୍ଷିତ ବ୍ୟବସ୍ଥା ଅଛି । ମାତ୍ର ଅନେକ ସମୟରେ ସେ ସବୁ ଚାକିରି ପାଇଁ ଯଥେଷ୍ଟ ସଂଖ୍ୟାରେ ଯୋଗ୍ୟ

ଆଦିବାସୀ ପ୍ରାର୍ଥୀ ମିଳୁନାହାନ୍ତି । ଯୋଗ୍ୟତା ନ ଥାଇ କେବଳ ଆଦିବାସୀ ବୋଲି ସରକାରୀ ଚାକିରିରେ ଭର୍ତ୍ତି କରିଦେବା ଦେଶର ସମୃଦ୍ଧ ସ୍ୱାର୍ଥ ଦୃଷ୍ଟିରୁ ଅବାଞ୍ଛନୀୟ । ପ୍ରକୃତ ପନ୍ଥା ହେଉଛି ସେମାନଙ୍କୁ ସୁଯୋଗ୍ୟ କରି ଗଢ଼ିବା ଯେପରି କି ସେମାନେ ଅନ୍ୟମାନଙ୍କ ସହିତ ପ୍ରତିଯୋଗିତା କରି ପାରିବେ । ଯଦି ଜଣେ ଆଦିବାସୀ ଯୁବକ ଉପଯୁକ୍ତ ଶିକ୍ଷା ଲାଭ କରେ ତଦ୍ୱାରା ତାର ମୌଳିକ ସଂସ୍କାର ହୁଏ ଏବଂ ଆଧୁନିକ ଜୀବନଧାରାର ଜଟିଳତା ସତ୍ତ୍ୱେ ତା ପ୍ରତି ତା'ର ଆଗ୍ରହ ହୁଏ ଓ ଆକାଙ୍‌କ୍ଷା ଜନ୍ମେ । ଏହି ଆକାଙ୍‌କ୍ଷାହିଁ ଅନ୍ତର ମଧ୍ୟରେ ସ୍ୱତଃ ଅଭାବ ଉପଲବ୍‌ଧିର ଭାଷାନ୍ତର । ସେହି 'ସ୍ୱତଃ ଅଭାବ ଉପଲବ୍‌ଧି' ତାକୁ ପ୍ରେରଣା ଦିଏ ନିଜ ଆର୍ଥିକ ଓ ସାମାଜିକ ଅବସ୍ଥାର ଉନ୍ନତି ପାଇଁ । ଆଦିବାସୀ ଅଞ୍ଚଳରେ କର୍ମୀ ହିସାବରେ କେତେକ ଆଦିବାସୀ ଯୋଜନାର ବିଫଳତାର ମୌଳିକ କାରଣ ଅନୁସନ୍ଧାନ କରି ମୁଁ ଅନୁଭବ କରିଛି ଯେ ଯଦି କୌଣସି ଉପାୟରେ ସେମାନଙ୍କ ମନସ୍ତତ୍ତ୍ୱରେ ଅଭାବ-ଅନୁଭବ ପ୍ରବେଶ କରାଇ ଦିଆ ଯାଇପାରେ, ତା ହେଲେ ସେମାନେ ନିଜେ ନିଜ ସେମାନଙ୍କର ଆର୍ଥିକ ଓ ସାମାଜିକ ବିକାଶ ପଥରେ ଆଗେଇ ଯିବେ । ଯେତେ ପର୍ଯ୍ୟନ୍ତ ସେମାନଙ୍କ ମନରେ ଏହି 'ସ୍ୱତଃ ଅଭାବ ଉପଲବ୍‌ଧି' ଜାତ ନ ହୋଇଛି ସେ ପର୍ଯ୍ୟନ୍ତ ଆଦିବାସୀ ଉନ୍ନୟନ ପାଇଁ ଉଦ୍ଦିଷ୍ଟ ଅର୍ଥନୈତିକ ବା ସାମାଜିକ କାର୍ଯ୍ୟକ୍ରମଗୁଡ଼ିକ ସଫଳ ହେବାର ଆଶା କ୍ୱଚିତ୍ । ଆଦିବାସୀ ବହୁଳ ଅଞ୍ଚଳରେ ସେମାନଙ୍କର କର୍ମସଂସ୍ଥାନ ପାଇଁ କ୍ଷୁଦ୍ର କ୍ଷୁଦ୍ର ଯୋଜନା କାର୍ଯ୍ୟକାରୀ କରିବାବେଳେ ମୁଁ ଦେଖିଛି ସେମାନେ ୩୦/୪୦ ପଇସା ମୂଲ୍ୟର କନ୍ଦା ଖୋଳିବାରେ ଦିନ କଟାଉଥିବେ; ମାତ୍ର ଦିନକୁ ଦେଢ଼ ଟଙ୍କା ବା ଦୁଇ ଟଙ୍କା ମଜୁରୀରେ କାମକୁ ଡାକିଲେ ଆସିବେ ନାହିଁ । ଦିନେ ଯଦି କାମକୁ ଆସିଲେ ତାହେଲେ ସେ ମଜୁରୀ-ତକ ଖର୍ଚ୍ଚ ହୋଇ ସାରିବା ପର୍ଯ୍ୟନ୍ତ ପୁଣି ତାଙ୍କୁ କାମ କରାଇବା କାଠିକର ପାଠ । ଉପାସ ବା ଅଧା ଉପାସରେ ଥିବେ—ଶୀତ ବର୍ଷାରୁ ରକ୍ଷା ପାଇବା ପାଇଁ ସମ୍ବଳ ନ ଥିବ । ଯଦି ପଚାରନ୍ତି "କିପରି ଅଛ ? କିଛି ଅଭାବ ଅସୁବିଧା ଅଛି କି ?" ଉତ୍ତର ମିଳିବ ଭଲରେ ଅଛୁଁ । କିଛି

ଅସୁବିଧା ନାହିଁ । ଅଭାବ ଅସୁବିଧାର ଅସ୍ତିତ୍ୱ ଯେପରି ତାଙ୍କ ମନରେ ପ୍ରବେଶ କରିପାରେ ନାହିଁ । ଏ ପ୍ରଶ୍ନ ଯଦି ଭରଣ ଭରଣ ଧାନ ମହଜୁଦ ରଖିଥିବା ଓ ହଜାର ହଜାର ଟଙ୍କା କଳନ୍ତର ଲଗାଇଥିବା କଟକ, ପୁରୀ ବା ବାଲେଶ୍ୱର ଜିଲ୍ଲାର ଲୋକଙ୍କୁ ପଚରାଯାଏ, ତାହେଲେ ଅଭାବ ଅସୁବିଧାର ଯେଉଁ ଲମ୍ବା ତାଲିକା ମିଳିବ, ତା ହୁଏତ ଏହି କ୍ଷୁଦ୍ର ରଚନା ଠାରୁ ବେଶୀ ହେବ ।

ଶିକ୍ଷା ଯୋଜନାର ଅନ୍ୟ ଏକ ଦିଗ କଥା ଦେଖାଯାଉ । ଜଣଙ୍କର ଜନ୍ମଗତ କୁସଂସ୍କାର ବା ଅଭ୍ୟାସ ବଦଳାଇବା ବଡ଼ କଷ୍ଟକର ଏବଂ ସମୟ ସାପେକ୍ଷ । ଠାଙ୍ଗିଆ ଚାଷ ବା ପୋଡୁ ଚାଷର ଅପକାରିତା ବିଷୟରେ ବା ଉନ୍ନତତର ଜୀବନଧାରଣର ସୁଖ ଓ ସ୍ୱାଚ୍ଛନ୍ଦ୍ୟ ବିଷୟରେ ଜଣେ ବୟସ୍କ ବା ବୃଦ୍ଧ ଆଦିବାସୀଙ୍କ ହୃଦ୍‌ବୋଧ କରିବା ସହଜ ନୁହେଁ । ମାତ୍ର କୋମଳମତି ଆଦିବାସୀ ବାଳକ ବା ବାଳିକାଙ୍କୁ ଶିକ୍ଷାୟତନ ମଧ୍ୟରେ ଉପଯୁକ୍ତ ତାଲିମ ଦିଆଯାଇ ପାରିବ । ଶିକ୍ଷାୟତନ ମଧ୍ୟରୁ ବାହାରିବା ବେଳକୁ ଆଧୁନିକ ଜୀବନଯାପନ ପ୍ରଣାଳୀ ତାର ଅଭ୍ୟାସଗତ ହୋଇଥିବ । ପୁଣି ଥରେ ବଣ ଜଙ୍ଗଲରେ ପ୍ରକୃତିକୋଳକୁ ଫେରିଯିବାକୁ ତାର ଇଚ୍ଛା ହେବନାହିଁ । ଉପଯୁକ୍ତ ଶିକ୍ଷାମାଧ୍ୟମରେ ପୂର୍ବତନ କୁସଂସ୍କାରଠାରୁ ଦୂରେଇ ନେଇ ଯଦି ବାଳକଟିର ଉପଯୁକ୍ତ କର୍ମସଂସ୍ଥାନ କରାଯାଇ ପାରେ, ତା କେବଳ ତାରି ନୁହେଁ ତା'ର ପରିବାର, କୁଟୁମ୍ବଙ୍କୁ ଓ ଭାବି ବଂଶଧରମାନଙ୍କୁ ମଧ୍ୟ ପ୍ରଗତି ପଥରେ ଆଗେଇ ଯିବାରେ ସହାୟକ ହେବ । ଏଥିପାଇଁ ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମରେ ଶିକ୍ଷା ଯୋଜନା ସ୍ୱୟଂ ଉତ୍ପାଦିକା ଯୋଜନା ବା Self generating scheme ବୋଲି କୁହାଯାଇ ପାରେ ।

ଅନ୍ୟାନ୍ୟ କାର୍ଯ୍ୟକ୍ରମ ମଧ୍ୟରେ ଶିକ୍ଷା କାର୍ଯ୍ୟକ୍ରମର ଉତ୍କର୍ଷ ବିଷୟରେ ଅଧିକ ବଖାଣିବା ବାହୁଲ୍ୟ ମାତ୍ର । ସୁଖର କଥା ଓଡ଼ିଶାରେ ଆଦିବାସୀ ଶିକ୍ଷା କାର୍ଯ୍ୟକ୍ରମ ଉପରେ ଅନେକ ଗୁରୁତ୍ୱ ଦିଆଯାଇଛି । ଆଦିବାସୀ ବହୁଳ ଅଞ୍ଚଳରେ ଚାଟଶାଳୀ, ସେବାଶ୍ରମ ଓ ଆଶ୍ରମ ସ୍କୁଲ୍‌-ମାନ ପ୍ରତିଷ୍ଠା କରାଯାଇଛି । ଆଦିବାସୀ ଛାତ୍ରମାନଙ୍କୁ ମାଧ୍ୟମିକ ଓ ଉଚ୍ଚ

ଶିକ୍ଷାପାଇଁ ବୃତ୍ତି ଦେବାର ବ୍ୟବସ୍ଥା ହୋଇଛି । ଆମ ରାଜ୍ୟର ଆଶ୍ରମ ସ୍କୁଲଗୁଡ଼ିକ ବାସ୍ତବିକ ପଥ ପ୍ରଦର୍ଶକ (Pioneer) ଯୋଜନା । ଏଠାରେ ଆଦିବାସୀ ବାଳକ ବାଳିକାମାନଙ୍କର ଖାଇବା ପିଇବା ଓ ପଢ଼ାପଢ଼ିର ସମସ୍ତ ଖର୍ଚ୍ଚ ସରକାର ବହନ କରନ୍ତି । ୧୯୪୬ରେ ଓଡ଼ିଶାରେ ପ୍ରଥମ ଆଶ୍ରମ ସ୍କୁଲ ପ୍ରତିଷ୍ଠା ହେବାପରେ ତାହାର ସଫଳତା ଦୃଷ୍ଟିରୁ ବର୍ତ୍ତମାନ ସୁଦ୍ଧା ଏ ପ୍ରାୟ ୮୭ଟି ଆଶ୍ରମ ସ୍କୁଲ ପ୍ରତିଷ୍ଠା ହୋଇଛି । ମୋର ମନେହୁଏ ଯେ ଆଦିବାସୀ ଉନ୍ନୟନ ପାଇଁ ଯେତେ ଯୋଜନା କାର୍ଯ୍ୟକାରୀ ହୋଇଛି ତନ୍ମଧ୍ୟରୁ ଏହି ଯୋଜନା ବୋଧହୁଏ ସର୍ବୋତ୍କୃଷ୍ଟ । ଗତ ଦୁଇଟି ଦଶନ୍ଧି ମଧ୍ୟରେ ଆଦିବାସୀ ସଂପ୍ରଦାୟରୁ ଯାହା କିଛି ପ୍ରଗତି ହୋଇଛି ତାର ଅଧିକାଂଶ ଗୌରବ ବଣୁଆ ଅଞ୍ଚଳର ଏହି କ୍ଷୁଦ୍ର କ୍ଷୁଦ୍ର ଅନୁଷ୍ଠାନଗୁଡ଼ିକର ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ତଥାପି ଆଶ୍ରମ ସ୍କୁଲଗୁଡ଼ିକର ପରିଚାଳନା ଓ ସେଗୁଡ଼ିକରେ ପ୍ରଚଳିତ ଦୈନିକ କାର୍ଯ୍ୟକ୍ରମ ଯେ ତ୍ରୁଟିଶୂନ୍ୟ ତାହା କହି ହେବନାହିଁ । ଏହି ଅନୁଷ୍ଠାନଗୁଡ଼ିକ ପ୍ରାରମ୍ଭରେ ମନେ କରାଯାଉଥିଲା ଯେ ଏଗୁଡ଼ିକ ପ୍ରାଚୀନକାଳର ଗୁରୁକୂଳ ଶିକ୍ଷାଶ୍ରମ ଆଦର୍ଶରେ ଅନୁପ୍ରାଣିତ ହେବେ ଏବଂ ଏଠାରୁ ଛାତ୍ରଛାତ୍ରୀମାନେ ଆଦର୍ଶବାଦୀ, ନିରାଡ଼ମ୍ବର ସେବା ମନୋଭାବ ପୂର୍ଣ୍ଣ ହୋଇ ବାହାରିବେ । ସେଥିପାଇଁ ମଧ୍ୟ ଏ ଅନୁଷ୍ଠାନଗୁଡ଼ିକର ନାମକରଣ ହୋଇଥିଲା "ଆଶ୍ରମ ସ୍କୁଲ" । ଏବେ ଅବଶ୍ୟ ଏହି "ଆଶ୍ରମ ସ୍କୁଲ" ନାମ ସରକାରୀ ଫାଇଲରୁ ଉଠାଇ ଦିଆଯାଇ ଆଦିବାସୀ ବିଭାଗ ମାଧ୍ୟମିକ ସ୍କୁଲ ବା ଉଚ୍ଚ ବିଦ୍ୟାଳୟ ବୋଲି କୁହାଯାଉଛି । ସିଲାବସ ଓ ପରୀକ୍ଷା ପାଇଁ ଏଗୁଡ଼ିକୁ ସାଧାରଣ ଶିକ୍ଷାବିଭାଗ ଅଧୀନକୁ ଅଣାଯାଇଛି । ତଥାପି ଏବେ ସୁଦ୍ଧା ପଠନ ଲିଖନ ବ୍ୟତୀତ କୃଷି, ଗୋପାଳନ ଓ ହସ୍ତଶିଳ୍ପ ଇତ୍ୟାଦି ଏହାର ଦୈନିକ କାର୍ଯ୍ୟକ୍ରମର ବିଶିଷ୍ଟ ଅଙ୍ଗ ରହିଛି । ଛାତ୍ର ଛାତ୍ରୀମାନଙ୍କ ବେଶଭୂଷା, ଶଯ୍ୟା ଓ ଖାଦ୍ୟପେୟର ନିରାଡ଼ମ୍ବରତା ଉପରେ ବେଶୀ ଗୁରୁତ୍ୱ ଦିଆଯାଉଛି । ଅବଶ୍ୟ ଅର୍ଥର ଅଭାବ ଏହାର କାରଣ ହେଲେ ତାହା ସ୍ୱତନ୍ତ୍ର କଥା । ମାତ୍ର ସମୟ ସମୟରେ ବିଶ୍ୱାସଥାଇ ହେଉ ବା କେବଳ ଯୁକ୍ତି ଛଳରେ

ହେଉ  ଆଦିବାସୀ  ଉନ୍ନୟନ ବିଭାଗର କର୍ମକର୍ତ୍ତାମାନେ ଏହି ବ୍ୟବସ୍ଥାର ସପକ୍ଷରେ ଅଯଥା ଆଦର୍ଶବାଦ ଯୁକ୍ତି କରିଥାନ୍ତି । ଆଶ୍ରମ ସ୍କୁଲମାନଙ୍କ ବାର୍ଷିକ ରିପୋର୍ଟରେ କେତେ ପିଲା ସ୍କୁଲ ଛାଡ଼ି ଚାଲିଗଲେ ତା'ର ହିସାବ ଦିଆ ଯାଇଥାଏ । ସନ୍ତୋଷଜନକ କାରଣ କ୍ୱଚିତ୍ ମିଳିଥାଏ । ଦୋଷଟା ପିଲା ଉପରେ ବା ପିଲାର ବାପମାଙ୍କ ଉପରେ ଦେଇ ଦେଇ ଆଦିବାସୀ ବିଭାଗର କର୍ମୀ ଓ ଶିକ୍ଷକ ତଥା କର୍ମକର୍ତ୍ତାମାନେ ଆତ୍ମସନ୍ତୋଷ ଲାଭ କରିଥାଆନ୍ତି । କିନ୍ତୁ ଏହାର ମୌଳିକ କାରଣ ଏହା ଯେ, ଆଶ୍ରମ ସ୍କୁଲର ପରିବେଷ୍ଟନୀର ଆକର୍ଷଣୀ ଶକ୍ତିର ଅଭାବ, ବଣ ଜଙ୍ଗଲର ପ୍ରକୃତି କୋଳରେ ମୁକ୍ତ ହୋଇ ଖେଳାବୁଲା କରୁଥିବା ଶିଶୁକୁ ଆଣି ଆଶ୍ରମର ପରିବେଷ୍ଟନୀ ମଧ୍ୟରେ ରଖିବାକୁ ହେଲେ ପରିବେଷ୍ଟନୀକୁ ଯଥେଷ୍ଟ ଆକର୍ଷଣୀୟ କରିବା ଆବଶ୍ୟକ । ଯେପରି କି ତାକୁ ଛାଡ଼ି ଯିବାପାଇଁ ତା'ର ମନ ବଳିବ ନାହିଁ—ବରଂ ଛୁଟି କିପରି ସରିଲେ ସ୍କୁଲକୁ ଯିବ ସେଥିପାଇଁ ସେ ଦିନ ଗଣୁଥିବେ । ଏପରି ବାୟୁମଣ୍ଡଳ ସେଯ, ତକିଆ ନ ଥାଇ ଭୂଇଁରେ ବା ପଟା ଉପରେ ଶୋଇବାରେ, ତରକାରି ବିହୀନ ଭାତ ଓ ପାଣିଆ ଡାଲି ଖାଇବାରେ ବା ପରିଦର୍ଶକ ମାନଙ୍କଠାରୁ ପ୍ରଶଂସା ଖାଇବା ପାଇଁ ପିଲାଙ୍କୁ ହାଡ଼ ଭଙ୍ଗା ପରିଶ୍ରମ କରାଇ ଭଲ ବଗିଚା ଉଠାଇବାରେ କିମ୍ବା ପ୍ରଦର୍ଶନୀକୁ ପଠାଇବା ପାଇଁ କାଠ ଡିଅରି ବା ସିଲେଇ ଜିନିଷ କରିବାରେ ହୋଇପାରେ ନାହିଁ । ଆଶ୍ରମ ସ୍କୁଲରେ କୃଷି ବା ହସ୍ତଶିଳ୍ପ ବିଷୟରେ ସ୍ପଷ୍ଟ ଜ୍ଞାନ ଲାଭ କରୁ ଯେପରିକି ରୁଚି ଅନୁସାରେ ଭବିଷ୍ୟତରେ ସେ ଜଣେ ସୁଯୋଗ୍ୟ କୃଷକ ବା ଶିଳ୍ପୀ ହୋଇ ପାରିବ । ମାତ୍ର ତାକୁ ଶ୍ରମିକ କରି ପରିଦର୍ଶକ ମାନଙ୍କଠାରୁ ପ୍ରଶଂସା ନେବାରେ ଆଦିବାସୀ ଉନ୍ନୟନ ପାଇଁ କଳ୍ପିତ ଶିକ୍ଷା କାର୍ଯ୍ୟକ୍ରମର ମୌଳିକ ଆଦର୍ଶ ନଷ୍ଟ ହୁଏ, ଏଥିପାଇଁ ଦାୟିତ୍ୱ ଶିକ୍ଷାନୁଷ୍ଠାନର ଶିକ୍ଷକ, ପରିଦର୍ଶକ, ଆଦିବାସୀ ଉନ୍ନୟନ ବିଭାଗର କର୍ମୀ ତଥା କର୍ମକର୍ତ୍ତା-ମାନଙ୍କର ।



# ସେମାନେ ଏବେ କେଉଁଠି

ହରିହର ପଟେଲ

"କିରେ, ପାଞ୍ଚମିନଟ ହେଲା ଆସି ଠିଆ ହେଲିଣି, ତୋତେ କିଛି ଜଣା ପଡ଼ୁ ନାହିଁ ? କ'ଣ ଇମିତି ଭାବୁଛୁ କି ?"

"ଆରେ, ସତେ ତ । ବସ, ବସ ।" ଚୌକିଟି ଟାଣି ବସିବା ପାଇଁ ନିର୍ଦ୍ଦେଶ ଦେଲେ ଶ୍ୟାମସୁନ୍ଦର ବାବୁ ।

"କ'ଣ ଇମିତି ଭାବୁଥିଲୁ ।"

"ନାଇଁ, ସେମିତି କିଛି ନାଇଁ—ଭାବୁଥିଲି--"

"କ'ଣ ?"

"ସେମାନେ ଏବେ କେଉଁଠି···"

"କେଉଁମାନେ······"

"ମୋର ଗୋଟିଏ ଭୁଲ ସୃଷ୍ଟି ହୋଇ ଯାଇଛି—ଜାଣି ପାରୁନି ସେମାନେ ଏବେ କେଉଁଠି······"

"କ'ଣ ଭୁଲ୍ ସୃଷ୍ଟି—କିଏ କେଉଁଠି—ଠିକ୍‌କରି କହ । ମୁଁ ଯେ କିଛି ବୁଝି ପାରୁନାହିଁ ।"

"ମୋର ଗୋଟିଏ ପରାମର୍ଶ—ବୋଧହୁଏ ଭୁଲ୍ ହୋଇଯାଇଛି—ଏବେ ତିନୋଟି ପ୍ରାଣୀ—ତା ଫଳରେ କିଏ କେଉଁଠି—ସେଇ କଥା ଚିନ୍ତା କରୁଥିଲି ।"

"ଚିନ୍ତା କଲେ କ'ଣ ଜଣା ପଡ଼ିବ—ଖୋଜ ଖବର ନେଲେ ସିନା—କ'ଣ, କଥାଟା କ'ଣ, କହିଲେ ବା ମୁଁ କିଛି ପରାମର୍ଶ ଦେଇ ପାରନ୍ତି ।"

"ଶୁଣିବାକୁ ଚାହୁଁ । ହଉ ତେବେ ଶୁଣ । ମୂଳରୁ କହିଲେ ଯାଇ ବୁଝି ପାରିବୁ—ବହୁତ ସମୟ ଲାଗିବ ।"

"ହଉ ହେଲା କହ ।"

ଶଙ୍କର କହିବାକୁ ଆରମ୍ଭ କଲେ,

"ଆମ ଗାଆଁ ଏଲ୍. ପି. ସ୍କୁଲରେ ପାଠ ପଢ଼ୁଥିଲୁ । ମୁଁ, ବାସୁଦେବ ଆଉ କାମଦେବ । ଝିଅଟିଏ ମଧ୍ୟ ପଢ଼ୁଥିଲା ଆମ ସାଙ୍ଗରେ— ତା ନାଁ ଜୁଲଆନା । ଏଲ୍. ପି. ସ୍କୁଲ ପଢ଼ା ସରିଲା । ସେଇ ବର୍ଷ ସ୍କୁଲଟିର ଅପର ପ୍ରାଇମେରି ଶ୍ରେଣୀ ମଧ୍ୟ ଖୋଲିଲା । କିନ୍ତୁ ଜୁଲିଆନା ଆଉ ପଢ଼ିଲା ନାହିଁ । ତା ବାପ ବଡ଼ ଗରିବ । ଆଉ ପଢ଼ାଇ ପାରିଲା ନାହିଁ । ଜୁଲିଆନାକୁ ଘରେ ତା' ମାକୁ କାମ ପାଇଟିରେ ସାହାଯ୍ୟ କରିବାକୁ ପଡ଼ିଲା । ବାସୁଦେବ ଏବଂ କାମଦେବ ନୂଆ ଶ୍ରେଣୀରେ ଯୋଗ ଦେଲେ । ମୁଁ ଚାଲି ଆସିଲି ଏଇ ସହରକୁ—ଏଠାକାର ହାଇସ୍କୁଲର ଅପର ପ୍ରାଇମେରୀ ଶ୍ରେଣୀରେ ଭର୍ତ୍ତି ହେଲି ।

ଜୁଲିଆନା ଝିଅଟି ବଡ଼ ସୁନ୍ଦରୀ । ପାଠପଢ଼ା ଛାଡ଼ି ଦେଇଥିଲେ ମଧ୍ୟ ବାସୁଦେବ ଏବଂ କାମଦେବ ସାଙ୍ଗରେ ଅନେକ ସମୟରେ ମିଶି ଖେଳ କୁଦ କରୁଥାଏ । ଅପର ପ୍ରାଇମେରି ପ୍ରଥମ ବର୍ଷ ପରୀକ୍ଷାରେ ବାସୁଦେବ ଫେଲ୍ ହୋଇଗଲା । କାମଦେବ ପାଶ୍ କରି ଉପର କ୍ଲାସକୁ ଗଲା । ବାସୁଦେବର ବାପ ମଧ୍ୟ ବଡ଼ ଗରିବ । ସେ ଆଉ ବାସୁଦେବକୁ ପଢ଼ାଇବାକୁ ଚାହିଁଲା ନାହିଁ ।

ଦିନେ ପାଦ୍ରୀ ଆସିଥାଏ ଆମ ଗାଆଁକୁ । ପନ୍ଦର ଦିନ, ମାସକରେ ଥରେ ଲେଖାଏଁ ଆସି ସେ ଗାଆଁର ଖିରସ୍ତାନ ପଡ଼ା ଭିତରେ ବୁଲିଦେଇ ଯାଏ । କେବେ କମିତି ଗାଆଁର ଅନ୍ୟ ଲୋକମାନଙ୍କ ସହିତ ମଧ୍ୟ ମିଶେ, କଥାବାର୍ତ୍ତା କରେ । ସେଦିନ ଜୁଲିଆନା ଘରକୁ ଆସିଥିବାବେଳେ ବାସୁଦେବ ଆଉ ତା'ର ବାପା ମଧ୍ୟ ସେଇବାଟେ ଯାଉ ଯାଉ ଟିକିଏ ଅଟକି ଯାଇଥିଲେ । ପାଦ୍ରୀ ବାହାରିଆସି ବାସୁଦେବକୁ ଦେଖିଲା । ଗାଲରେ ଟିକିଏ ହାତ ମାରିଦେଇ ପଚାରିଲା, "ପାଠ ପଢ଼ୁଛୁ ?"

ବାସୁଦେବ ମୁଣ୍ଡ ତଳକୁ କରିଦେଲା ତା ବାପ ଚଟୁପାଖେ ଲୁଚିଲା । ବାସୁଦେବ ବାପା କହିଲେ "ପଢ଼ୁଥିଲା । ଫେଲ୍ ହୋଇଗଲା । ନାଆଁ କଟାଇ ଦେଲି ।"

ପାଦ୍ରୀ କହିଲା, "ଫେର ବର୍ଷେ ଚଢ଼ାଇଲ ନାହିଁ । ପାଶ୍ କରିଥାନ୍ତା ।"

ବାସୁଦେବର ବାପା କହିଲେ, "ଗରିବ ଲୋକ ଚଢ଼ାଇବାର ଶକ୍ତି ନାହିଁ । ନାଆଁ କଟାଇ ଦେଲି ।"

ପାଦ୍ରୀ କିଛିକ୍ଷଣ ବାସୁଦେବ ପ୍ରତି ଅନାଇରହି କହିଲେ, "ମୁଁ ସାଙ୍ଗରେ ନେଇଯିବି—ପାଠ ପଢ଼ାଇବ । ତୁମେ କ'ଣ କହୁଛ ?"

ବାସୁଦେବକୁ ତା ବାପା ପଚାରିଲେ, "ଯିବୁ । ପଢ଼ିବା ପାଇଁ ଯିବୁ ?"

ବାସୁଦେବ ତା ବାପାର ହାତ ଅଙ୍ଗୁଳିଟି ଧରି କଡ଼ ପଛରେ ବୁଲି ବୁଲି କହିଲା, "ତୁଇ ନେଇ ଛାଡ଼ିଲେ ଯିବି ।"

ପାଦ୍ରୀ କହିଲା, "ହଉ, ହଉ, ତୋର ବାପା କାଲି ନେଇ ଛାଡ଼ିବ ।"

ସବୁକଥା ସ୍ଥିର ହୋଇଗଲା । ତା ବାପ ଶୁକ୍ରବାର ଦିନ ବାସୁଦେବକୁ ପାଦ୍ରୀ ଘରକୁ ନେଇ ଛାଡ଼ିବ । ସେଇଠି ମିଶନ୍ ସ୍କୁଲରେ ସେ ପାଠ ପଢ଼ିବ । ବହୁତ ହିନ୍ଦୁ ପିଲା ମଧ୍ୟ ସେଇଠି ପଢ଼ନ୍ତି ବୋଲି ପାଦ୍ରୀ କହିଲା ।

ବାସୁଦେବ ଏଇ ସହରକୁ ଆସି ମିଶନ୍ ସ୍କୁଲରେ ସେଇ କ୍ଲାସରେ ନାଆଁ ଲେଖାଇଲା । କାମଦେବ ଗାଁରେ ଆଉ ବର୍ଷେ ପଢ଼ି ପଢ଼ା ଶେଷ କଲା । ଶୁଣିଲି, ପାଦ୍ରୀ ତାକୁ ମଧ୍ୟ ମିଶନ୍ ସ୍କୁଲକୁ ଆଣିବ ବୋଲି କହିଥିଲା । କିନ୍ତୁ କାମଦେବର ବାପା ରାଜି ହେଲାନାହିଁ । ସେ ମଧ୍ୟ ଗରିବ ଲୋକ । ମାତ୍ର ଦୁଇ ଏକର ଜମି । ବାପ ପୁଅ ଗୃହରେ ମନ ଦେଇ ଆଉ କିଛି ଜମିବାଡ଼ି କରିବା ଭଲ ବୋଲି ସେ ଭାବିଲା ।

ପାଠଛଡ଼ା ସରିଲାବେଳକୁ କାମଦେବର ବୟସ ପ୍ରାୟ ଚଉଦ କି ପନ୍ଦର ବର୍ଷ । ଜୁଲିଆନା ହୁଏତ ଗୋଟାଏ ବରଷର ସାନ ହୋଇପାରେ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ଜୁଲିଆନାର ସୌନ୍ଦର୍ଯ୍ୟ ମଧ୍ୟ ଅଧିକରୁ ଅଧିକ ଫୁଟି ଉଠୁଥାଏ । କାମଦେବର ଶରୀରରେ ମଧ୍ୟ ଯୌବନର ଶ୍ରୀମନ୍ତ ଲାବଣ୍ୟ ଭରି ଉଠୁଥାଏ । ପଢ଼ାପଢ଼ି ସରିଲା ପରେ କାମଦେବ ତା ବାପାକୁ କାମରେ ସବୁପ୍ରକାର ସାହାଯ୍ୟ କରୁଥାଏ । କେମିତି ପଢ଼ିବା ତାକୁ ଜଣାନାହିଁ । ସେ ଯେମିତି ଡେଙ୍ଗା ହେଉଥାଏ ସେମିତି ହୃଷ୍ଟପୁଷ୍ଟ ବି ହେଉଥାଏ । ଖାଲି କରିଆ (ଗ୍ରେଁଠ ଅଣ ଓପାରିଆ ଧୋତି) ଖଣ୍ଡେ ପିନ୍ଧି ବୁଲୁଥିଲେ ମଧ୍ୟ ସୁନ୍ଦର, ସୁସ୍ଥ ଶରୀର ହେତୁ ତାର ଏକ ଆକର୍ଷଣ ଥାଏ । ଜୁଲିଆନା ସାଙ୍ଗରେ ତାର ଅନେକ ଥର ଦେଖା ହୁଏ । କଥାବାର୍ତ୍ତା ବି ହୁଏ । ସ୍କୁଲରେ ପଢ଼ିଲାବେଳେ କେତେଥର ହାତ ଧରାଧରି ହୋଇ ଖେଳିଛନ୍ତି, କୁଦିଛନ୍ତି, ଦୋଳିରେ ବସି ଝୁଲିଛନ୍ତି, ପୋଖରୀ ପାଣି ଭିତରେ ପହଁରିଛନ୍ତି, ବୁଡ଼ବୁଡ଼ି ପରସ୍ପରକୁ ଖୋଜିଛନ୍ତି । ଏବେ ଦେଖାହେଲେ ବି ବ୍ୟବଧାନ ରଖି କଥାବାର୍ତ୍ତା କରିବାକୁ ପଡ଼େ । କିନ୍ତୁ ଏବେ ଦେଖାହେଲେ ଆନନ୍ଦ ତ ହୁଅନ୍ତି, ତେବେ କଣ୍ଟା ବାଡ଼େଇ ଦେଲା ପରି ଚିତ୍ତରେ କମିତି ଏକପ୍ରକାର ଦୁଃଖ ବି ଅନୁଭବ କରନ୍ତି ।

ଜୁଲିଆନା ଆମ ଘର ଗୁହାଳ ସଫା କରେ । ଆଉ ଅନ୍ୟାନ୍ୟ କାମ ବି ବରାଦ ମୁତାବକ କରେ । କାମଦେବ ମଧ୍ୟ କେବେ କମିତି ଭୂତି ନେଇ ଆମ କ୍ଷେତରେ କାମ କରେ । ସହରରୁ ଗାଁକୁ ଅନେକ ସମୟରେ ଛୁଟିରେ ଯେବେ ଆସେ ସେମାନେ କେବେ କେବେ ମୋ ପାଖକୁ ଆସି ବସନ୍ତି, ନାନାପ୍ରକାର କଥା ହୁଅନ୍ତି । ବାସୁଦେବ ବି ଅନେକ ସମୟରେ ଆସେ । ଏକାଠି ସମସ୍ତେ ବସୁ କଥାବାର୍ତ୍ତା ହେଉ । ମୁଁ ସେମାନଙ୍କୁ ଦେଶ ବିଦେଶ, ବିଜ୍ଞାନର ନାନା କଥା ଶୁଣାଏ । ବାସୁଦେବ ସହରରେ ପଢ଼ୁଥିଲେ ମଧ୍ୟ ଅଧ୍ୟୟନ ଅଭାବରୁ ମୋପରି ନାନା ପ୍ରକାର କଥା ଜାଣେ ନାହିଁ । ତେଣୁ କହିପାରେ ନାହିଁ । ତଥାପି ସେ ଅନେକ ଥର ଆସେ ଏବଂ ବସିରହେ । ମୁଁ କ୍ରମେ କ୍ରମେ ବୁଝି ପାରିଲି ତାର ଆସିବାର ଉଦ୍ଦେଶ୍ୟ ହେଉଛି, ଜୁଲିଆନାକୁ ଦେଖିବ, କଥା ହେବ ଇତ୍ୟାଦି । କେବେ କେବେ ଟିକିଏ ପାଖେଇ ବସିବାର ମଧ୍ୟ ଚେଷ୍ଟା କରେ । କିନ୍ତୁ ଜୁଲିଆନା ଦୂରେଇଯାଏ । କେବେ କେବେ କାମଦେବର

ଆଗି ଦୁଇଟା, ବାସୁଦେବର ଖସଗ ଖଦର ଜାମଟାକୁ ଏପରି ଲକ୍ଷ୍ୟ କରିହଏ ଯେ ବାସୁଦେବ ବାଡ଼ିଲ ମାଡ଼ରେ ଝଡ଼ଫଡ଼ଙ୍କ ପରି ଅଟକଯାଏ ନଇଁପଡ଼େ । ଜୁଲିଆନା କାମଦେବ ନାବ୍ରନ ହେବ କ କଣ ଭାବ ସେତେ-ବେଳେ ଉଠି ପଳାଏ । ମୁଁ କ୍ରମେ କ୍ରମେ ବୁଝିପାରିଲି, କାମଦେବ ଏବଂ ଜୁଲିଆନା ମଧ୍ୟରେ ଏକ ପ୍ରକାର ସଂବେଦନ ପ୍ରତିଷ୍ଠିତ ହୋଇ ସାରିଛି । ଉଭୟେ ପରସ୍ପରକୁ ଅନ୍ତରାଳରେ ନାନା ଉହାଡ଼ରେ ଦେଖାଭେଟା ହେଉଥିବାର ମଧ୍ୟ ମୁଁ ଲକ୍ଷ୍ୟକରି ପାରିଲି । ବାସୁଦେବ ମଧ୍ୟ କ୍ରମେ କ୍ରମେ ଜାଣିପାରିଲା ଯେ ଜୁଲିଆନା ପ୍ରାପ୍ତ ଅଧିକୃତ—ଉଭୟଙ୍କ ପାଇଁ ସେ ମାତ୍ର ତୃତୀୟ ବ୍ୟକ୍ତି ।"

ଶ୍ୟାମବାବୁ ବାଧା ଦେଇ କହିଲେ, "ତୁ ଯେପରି ଭାବରେ କହୁଛୁ ସେଥିରେ ନିଜକୁ ଏକେବାରେ ନିର୍ଲିପ୍ତ ରଖି କହିବାଟା ମୁଁ କିନ୍ତୁ ବିଶ୍ୱାସ କରି ପାରୁନାହିଁ ଚନ୍ଦ୍ର......।"

"ମୁଁ ଯେ ଜୁଲିଆନାର ଆକର୍ଷଣ ଅନୁଭବ କରି ନ ଥିଲି, ତା ନୁହେଁ ଶ୍ୟାମ—ମୁଁ ବି ଆକୃଷ୍ଟ ହୋଇଥିଲି ଏବଂ ହୃଦୟରେ ବେଦନା ଅନୁଭବ କରିଥିଲି । କିନ୍ତୁ ସମାଜରେ ଯେ ଯେତିକି ଉଚ୍ଚ ବା ସ୍ୱଚ୍ଛନ୍ଦ ଆସନରେ ଅଛି, ତା ପାଇଁ ଶୃଙ୍ଖଳା ମଧ୍ୟ ସେଇ ପରିମାଣରେ କଠିଣ ହୋଇପଡ଼େ ଏବଂ ଶୃଙ୍ଖଳା ଜ୍ଞାନ ଅନୁଭବ କରିପାରିଲେ ଅନେକଗୁଡ଼ିଏ ପ୍ରବୃତ୍ତି ଆପେ ଆପେ ଦମିତ ହୋଇଯାଏ । ମୋର ଅବସ୍ଥା ସେଇପରି ହୋଇଥିଲା । ଜୁଲିଆନା ପ୍ରତି ଆକୃଷ୍ଟ ହେବାର କୌଣସି ସୂଚନା ବା ଲକ୍ଷଣ ମୋ ପକ୍ଷରେ ଅନାଗ୍ରହ ବୋଲି ବିବେଚିତ ହେବ ଏ କଥା ମୁଁ ବୁଝି ପାରୁଥିଲି । ଗାଁରେ ଅପାଠୁଆ ଭିକ୍ତ ବୁଲୁଥିଲେ କ'ଣ ହୋଇଥାନ୍ତା ଅବଶ୍ୟ କହି ପାରିବି ନାହିଁ । ପୁଣି ଯେତେବେଳେ କାମଦେବ ଏବଂ ଜୁଲିଆନା ମଧ୍ୟରେ ପରସ୍ପର ପ୍ରତି ସଂବେଦନର ଆଭାସ ମୁଁ ପାଇ ପାରିଲି ସେମାନଙ୍କ ପ୍ରତି ମୋର ମନୋଭାବ ମଧ୍ୟ ଆହୁରି ପରିବର୍ତ୍ତିତ ହେବାକୁ ଲାଗିଲା । କାମଦେବ ଅଧପାଠୁଆ ରହିଥିଲେ ମଧ୍ୟ, ଆମରି କ୍ଷେତ କାମରେ ମୂଲ ଲାଗୁଥିଲେ ମଧ୍ୟ ତା ପାଇଁ ମୋ ହୃଦୟରେ ବନ୍ଧୁତା ଭାବ ଥିଲା

ଏବଂ ଜୁଲିଆନାର ଆକର୍ଷଣ ମଧ୍ୟ ଏକ ଅନ୍ୟ ପ୍ରକାର ମମତାର ରୂପ ନେଲା ।"

ନମିତା ଟେବୁଲ ଉପରେ ଗରମ ଗ୍ଲପଟ୍ ଚିନି, ଦୁଧ ଆଦି ଟ୍ରେରେ ଥୁଇଦେଇଗଲା ।

"ଅଚ୍ଛା, ତା ପରେ କ'ଣ ହେଲା କହ । ବାସୁଦେବଙ୍କର କି ଅବସ୍ଥା ।"

"ବାସୁଦେବ ଶାନ୍ତ କମ୍ବା ଦ୍ରଷ୍ଟ ରହି ପାରିଲା ନାହିଁ । ଜୁଲିଆନାର ପରିବାର ଖ୍ରୀଷ୍ଟିୟାନ ହୋଇ ଯାଇଥିଲେ ମଧ୍ୟ ଜାତିରେ କାମଦେବ, ବାସୁଦେବ ଏବଂ ଜୁଲିଆନା ଏକା—ସମସ୍ତେ ଓଡ଼ିଆ ସମ୍ପ୍ରଦାୟର । ତେଣୁ ଜୁଲିଆନାକୁ ଆକୃଷ୍ଟ କରିବାର ଅଧିକାର ବାସୁଦେବର ମଧ୍ୟ ଅଛି—ଏଇ ଚିନ୍ତା ବାସୁଦେବର ମନକୁ ଅଧିକାର କରି ବସିଲା । ସେ ବରାବର ଚିନ୍ତା କରୁଥାଏ ଜୁଲିଆନାର ମନୋଭାବ କପରି ତା ଆଡ଼କୁ ଫେରାଇବ । ମନେ ମନେ ଭାବିଲା ଜୁଲିଆନା କି ମୂର୍ଖତା ଆଚରଣ କରୁଛି । କାମଦେବର ଭବିଷ୍ୟତ କଣ । ସେ ପ୍ରାୟ ଅପାଠୁଆ । ତାର ସାରା ଜୀବନ କେତେ ଏକର ଜମିର ଆୟ ମଧ୍ୟରେ ଆବଦ୍ଧ ରହିବ । ଅନ୍ୟ ପକ୍ଷରେ ସେ ଆଜି ଗୋଟିଏ ବର୍ଷ ପଢ଼ିପାରିଲେ ପରେ ମାଟ୍ରିକୁଲେସନ୍ ପାଶ୍ କରିବ । ଭଲ ଭାବରେ ପାଶ୍ କରି ପାରିଲେ ପାଦ୍ରୀ କହୁଛି ଆହୁରି ଉପରକୁ ମଧ୍ୟ ପଢ଼ିବା ପାଇଁ ସାହାଯ୍ୟ କରିବ । ପଢ଼ି ପାରିଲେ ସେ ନିଶ୍ଚୟ ଭଲ ଚାକିରି ପାଇ ପାରିବ । ଜୁଲିଆନା ତା ସାଙ୍ଗରେ କେତେ ଜାଗା ବୁଲି ଆସିବ । ନା, ନା, ଜୁଲିଆନା ଏ ସବୁ ବୁଝି ପାରୁନାହିଁ । ତାକୁ ସେ ବୁଝାଇବା ପାଇଁ ଚେଷ୍ଟା କରିବ । ଏହିପରି ସେ କେତେ କ'ଣ ଭାବି ଯାଉଥାଏ ।

ଛୁଟି ସରିଗଲା । ବାସୁଦେବ ପୁଣି ସ୍କୁଲକୁ ଫେରି ଆସିଲା । ଦିନେ ସହର ଭିତରେ ତା ସହିତ ମୋର ଦେଖାହେଲା । ମୁଁ ତାକୁ ସାଙ୍ଗରେ ଡାକି ଆଣିଲି । ତା ସହିତ କଥାବାର୍ତ୍ତା ହେଉଁ ହେଉଁ ଜାଣି ପାରିଲି ଯେ ପାଦ୍ରୀ ସହିତ ଜୁଲିଆନା ସମ୍ପର୍କରେ ସେ କଥାବାର୍ତ୍ତା କରିଛି । ପାଦ୍ରୀ ତାକୁ କହିଛି ଯେ ଜୁଲିଆନା କୌଣସି ହିନ୍ଦୁ ଯୁବକକୁ ବାହା ହୋଇ

ପାରିବ ନାହିଁ । କେହି ବିଭାହେବାକୁ ଚାହିଁଲେ ପ୍ରଥମେ ଖ୍ରୀଷ୍ଟିଆନ ହେବାକୁ ପଡ଼ିବ । ତେଣୁ, ବାସୁଦେବ ଏବେ ଖ୍ରୀଷ୍ଟିୟାନ ହୋଇଯାଇଛି—ଏ କଥା ମଧ୍ୟ ମୋତେ ଜଣାଇଦେଲା । ମୁଁ ତାକୁ କହିଲି, "ବାହା ହେବାପାଇଁ ତୁମେ ଏତେ ସହଜରେ ଧର୍ମ ଛାଡ଼ିଦେଲ, ଜୁଲିଆନାକୁ କ'ଣ ହିନ୍ଦୁ କରି ପାରି ନ ଥା'ନ୍ତ ।"

ବାସୁଦେବ କହିଲା, "ତା ହେଲେ କ'ଣ ପାଦ୍ରୀ ମୋତେ ସାହାଯ୍ୟ କରନ୍ତା ? ପୁଣି ତାର ସାହାଯ୍ୟ ଉପରେ ନିର୍ଭର କରି ପାଠ ପଢ଼ୁଛି ।" ସେ କୈଫିୟତ ଦେବା ଉଦ୍ଦେଶ୍ୟରେ ଆହୁରି ମଧ୍ୟ ଅନେକ କଥା କହିଲା ଏବଂ ପରିଶେଷରେ ଜଣାଇ ଦେଲା ଯେ ତାର ବାପ ମା ସମଗ୍ର ପରିବାର ଖ୍ରୀଷ୍ଟିୟାନ ହୋଇ ଯାଇଛନ୍ତି । ତା ନିଜର ଖ୍ରୀଷ୍ଟିୟାନ୍ ନାଆଁ ହେଉଛି "ବାର୍ଣ୍ଣାବାସ" । ସବୁ ଶୁଣି ମୁଁ ଚୁପ୍ ରହିଲି । ମନେ ମନେ ଭାବିଲି, ସବୁ ତ ସରିଲାଣି—ଆଉ କହି କହି ଲାଭ କ'ଣ । ବାର୍ଣ୍ଣାବାସ ବିଦାୟ ନେଇ ଚାଲିଗଲା । ମୋ ମନ ଭିତରେ ଜୁଲିଆନା ଏବଂ କାମଦେବର କେତେ କଥା ଜାଗି ଉଠିଲା ।

ହାୟ, ବିଚରା କାମଦେବ............

ଇମିତି ଦୁଇବର୍ଷ ବିତିଗଲା । ମୁଁ ଆଇନ୍ ପାଶ୍ କରି ସାରି ଓକିଲାତି ଆରମ୍ଭ କଲି ଏଇଠି । ବର୍ଣ୍ଣାବାସ ତ ପ୍ରାୟ ପ୍ରତି କ୍ଲାସରେ ଫେଲ ହୋଇ ଆସୁଥାଏ । ମାଟ୍ରିକୁଲେଶନ ପରୀକ୍ଷାରେ ପାଶ୍ କରି ପାରିଲା ନାହିଁ ପାଦ୍ରୀ ତାକୁ ନେଇ ମିଶନ ସ୍କୁଲରେ ଟୋଟିଏ ମାଷ୍ଟର ଚାକିରି ଦେଇ ପ୍ରାଇଭେଟ ପରୀକ୍ଷା ଦେବା ପାଇଁ ନିର୍ଦ୍ଦେଶ ଦେଲା । ବାର୍ଣ୍ଣାବାସ୍ ସେଇଠି ଚାକିରି କରୁଥାଏ ।

ଜୁଲିଆନା ସେହି ସହରକୁ ଅନେକ ସମୟରେ ରେଜା କାମ କରିବା ପାଇଁ ଆସେ । ସହରରେ ଘର ତିଆରି କାମ ଜୋର ସୋରରେ ଚାଲିଥାଏ । କାରଣ ନୂଆ କରି ଏଇଟା ଗୋଟିଏ ସବ୍‌ଡିଭିଜନାଲ୍ ହେଡ୍‌କ୍ୱାଟରସ୍ ହେଲା । କାମଦେବ ମଧ୍ୟ କେବେ କେବେ ମଜୁରି କାମ

କରିବା ପାଇଁ ଆସେ । ଗାଁରେ ଜୁଲିଆନା ସହିତ ଏବେ ପ୍ରାୟ ଦେଖା ସାକ୍ଷାତ୍ ହୋଇପାରେ ନାହିଁ । ବାସୁଦେବ ପରିବାର ଖ୍ରୀଷ୍ଟିୟାନ ହେବା ପରେ ଜୁଲିଆନାର ଝିଆଦ୍ ବାଣ୍ଡୀବାସ୍ ସହିତ ହେବାକୁ ଯାଉଛି ଏ କଥା ପ୍ରାୟ ଗାଁରେ ପ୍ରଘଟ ହୋଇ ଯାଇଛି । ପାଦ୍ରୀ ମଧ୍ୟ ଏ ସମ୍ବନ୍ଧରେ ଜୁଲିଆନାର ବାପାକୁ ଥରେ ଅଧେ କହିଛି । ହେଲେ ଜୁଲିଆନା ବାହା ହେବା ପାଇଁ ପ୍ରସ୍ତାବରେ କେତେବେଳେ ତାର ମତ ଦେଇ ନାହିଁ । ପାଦ୍ରୀର ମଧ୍ୟ ଇଚ୍ଛା ବାଣ୍ଡୀବାସ୍ ମେଟ୍ରିକ ପାଶ୍ କରି ସାରିବା ପରେ ବାହା ହେବ । ସେ ଯାହାହେଉ, ଜୁଲିଆନାର ଚଳପ୍ରଚଳ ପ୍ରତି ବାଣ୍ଡୀବାସ ପରିବାର ବରାବର ନଜର ରଖିଥାନ୍ତି । କାମଦେବ କେବେ କେବେ ସହରକୁ ମଜୁରି କାମରେ ଆସିଲେ ସେଇଠି ଜୁଲିଆନା ସହିତ ଦେଖା ସାକ୍ଷାତ୍ ହୋଇଯାଏ ।”

ନମିତା ଆସି ଦେଖିଲା ଚା’ ସିମିତି ଥୁଆ ହୋଇଛି ଟ୍ରେ ଉପରେ । ଢାଙ୍କୁଣି ଖୋଲି ଦେଖିଲା ଚା’ ପାଣି ଥଣ୍ଡା ହୋଇ ଗଲାଣି । ସେ ପାଟି କରି କହିଲା, “ଏ କ’ଣ ! ଚା’ ସିମିତି ଥୁଆ ହୋଇଛି । ମୁଁ ଆଉ ଆଣି ପାରିବି ନାହିଁ । ଚନ୍ଦ୍ରବାବୁ କହିଲେ, ‘‘ଆରେ ସତେ ତ । ଆମେ ଏକେବାରେ ଭୁଲିଯାଇଛୁ । ଆଉ ଥରେ ଗରମ କରି ନେଇ ଆ ।” ନମିତା ବିରକ୍ତ ହୋଇ କହିଲା, ‘‘ନା, ମୁଁ ପାରିବି ନାହିଁ ।’’

ଶ୍ୟାମବାବୁ କଅଁଳେଇ କରି କହିଲେ, ‘‘ସୁନା ଭଉଣୀଟା ପରି । ଆମେ ଭୁଲି ଯାଇଥିଲୁ । ଯା, ଆଉ ଥରେ ଗରମ କରି ଆଣିବୁ ।’’

ନମିତା ଚା’ ପଟ୍ଟି ନେଇ ଚାଲିଗଲା ।

ଶ୍ୟାମ ବାବୁ କହିଲେ, “ହଁ, ତା’ ପରେ ।’’

“ହଁ, ତା’ପରେ କେତେ ମାସ ଇମିତି ବିତିଗଲା । ଦିନେ ହଠାତ୍ ଆସି କାମଦେବ ମୋ ପାଖରେ ପହଞ୍ଚିଲା । ହାତରେ କେତେ ଖଣ୍ଡ କାଗଜ ଧରିଥାଏ । ତାକୁ ପଚାରିଲି, ‘‘ହଠାତ୍ କମିତି ଆଜ ଆସି ପହଞ୍ଚିଛୁ ।’’

ସେ କହିଲା, ‘‘ପୋଲିସ୍ ମୋ ନାଆଁରେ ମୋକଦ୍ଦମା କରିଛି । ମୁଁ ଜମାନତରେ ଅଛି ।’’

“କି ମକଦ୍ଦମା ?”

ସେ ଙ୍କ୍ରୁ ଙ ଙ୍କ୍ନ ମୋ ହାତକୁ କାଗଜ ଗୁଡ଼ିକ ବଢ଼ାଇ ଦେଲେ । ସେ ସବୁ ପଢ଼ି ଦେଖିଲି ଯେ ଜୁଲିଆନା ପୋଲିସ୍ ଆଗରେ ରିପୋର୍ଟ କରିଛି କାମଦେବ ତାର ଇଜ୍ଜତହାନି କରିଛନ୍ତି ବୋଲି । ଅଭିଯୋଗର ବିବରଣୀ ହେଲା, ଜୁଲିଆନା ତା ସାଙ୍ଗସାଥୀଙ୍କ ସହିତ ସହରକୁ ମଜୁରି କାମ କରିବା ପାଇଁ ଆସିଥିଲା । ସକାଳବେଳା କାମସାରି ସେମାନଙ୍କ ସହିତ ସହର ପାଖରେ ଥିବା ନଈକୁ ଗାଧୋଇବା ପାଇଁ ଯାଇଥିଲା । ସେଇଠି ଗାଧୁଆ ଘାଟକୁ ଆସି କାମଦେବ ତା' ହାତ ଟଣାଟଣି କରି ତା ସହିତ ଉଧୁଡ଼ିଆ—elopement. ପଳାଇବା ପାଇଁ କହିଲେ । ସାଙ୍ଗସାଥୀମାନେ ଗାଳି ଦେବାରୁ ଓ ଅନ୍ୟଲୋକମାନେ ମଧ୍ୟ ହାଲି ଶୁଣି ଆସିବାର ଦେଖି ସେ ଛାଡ଼ି ପଳାଇଲେ ।

ପଢ଼ି ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ତାକୁ ପଚାରିଲି, “ଜୁଲିଆନା ତ ତୋତେ ଭଲପାଏ, ତୋ ନାଆଁରେ ରିପୋର୍ଟ କିମିତି କଲା ।”

କାମଦେବ କହିଲେ, “ବାର୍ଣ୍ଣାବାପ ଏ ସବୁ କରାଉଛି । ସେ ଜୁଲିଆନାର ବାପା ମାଙ୍କୁ ପ୍ରଭାବିତ କରି ଏବଂ ଜୁଲିଆନା ସାଙ୍ଗସାଥୀଙ୍କୁ ମଧ୍ୟ ନାନାପ୍ରକାର ପ୍ରବର୍ତ୍ତାଇ ଏ ସବୁ କରାଇଛି ।”

ପଚାରିଲି, “ଘଟଣା କ'ଣ ସତ୍ୟ ?”

କାମଦେବ କହିଲେ, “ନା, ମୁଁ ଗାଧୁଆ ଘାଟକୁ ଯାଇଥିଲି ସତ, କିନ୍ତୁ ତା ହାତ ଟଣାଟଣି କରିନାହିଁ । ଖାଲି ପାଖକୁ ଯାଇ କହିଲି, ଆଜି କେତେ ଦିନ ଇମିତି ଛଡ଼ାଛଡ଼ି ରହିଥିବା, ଚାଲ କୁଆଡ଼େ ପଳାଇବା ।” ମୁଁ ପଚାରିଲି —

“ତା ପରେ—”

ସେ କହିଲେ, “ତା ସାଙ୍ଗ ଜଣେ—ମେରି—ମୋ କଥାଟା ଶୁଣି ପକାଇଲା ଏବଂ ପାଖକୁ ଆସି ଗାଳିଦେବା ଆରମ୍ଭ କରିଦେଲା—ମୁଁ ସେ ଯାଗା ଛାଡ଼ି ପଳାଇଲି ।”

ମୁଁ ପଚାରିଲି, "ଜଳୁଆନା ଥାନାରେ ରିପୋର୍ଟ କରିବା ପାଇଁ କୁଣ୍ଠିତ ହେଲ କାହିଁ ?"

କାମଦେବ କହିଲା, "ବାଞ୍ଛାବାସ କେଉଁଠି ଥିଲା, କେଜାଣି— କିଛି ସମୟ ପରେ ଆସି ସେମାନଙ୍କୁ ସାଙ୍ଗରେ ନେଇ ଥାନାରେ ରିପୋର୍ଟ ଦିଆଇଲା ।"

କାଗଜ ପତ୍ର ପଢ଼ି ଦେଖିଲି ମୃଦେଇ ତରଫରୁ ସାକ୍ଷୀ ନିଆ ସରିଲଣି । ବୃଜ ମଧ୍ୟ ହୋଇଗଲଣି । ମୃଦେଇର ସାକ୍ଷ୍ୟମାନଙ୍କର ଜେରା ସକାଶେ ତାରିଖ ଧାର୍ଯ୍ୟ କରାଯାଇଛି । କାମଦେବକୁ କହିଲି, "ମୋକଦ୍ଦମା ତ ଅଧାଅଧି ସରିଲଣି—ଭାରି କଡ଼ା ସାକ୍ଷୀ ଦେଇଛନ୍ତି— ଆଗରୁ ଆସିଲ ନାହିଁ କାହିଁକି ?"

କାମଦେବ କହିଲା, "ଏଇ କଥାଟାକୁ ଆମି କ'ଣ କହିବ ବୋଲି ଭାବୁଥିଲି । କିନ୍ତୁ ଗତ ତାରିଖ ଦିନ ମାଜିଷ୍ଟ୍ରେଟ ମଧ୍ୟ କହିଲେ କାହାକୁ ଓକିଲ ଧର—ନ ହେଲେ କେମିତି ଜେରା କରିବ । ଆପଣଙ୍କ ପାଖକୁ ଆସିଛି ଯାହା କରିବେ ।"

ମୋର ଆଉ କିଛି କହିବାର ଉପାୟ ନ ଥିଲା । ମୁଁ କହିଲି ହଉ ଦେଖିବା । ମୃଦେଇର ସାକ୍ଷୀମାନେ ତ କଡ଼ା କଡ଼ା ସାକ୍ଷୀ ଦେଇଛନ୍ତି । ତୁମ ଉପରେ ସେମାନଙ୍କର କିଛି ରାଗ ଅଛି କି ?

କାମଦେବ କହିଲା, "ବାଞ୍ଛାବାସ ସେମାନଙ୍କୁ ସବୁବେଳେ ଶିଖାଉଛି—ଟଙ୍କା ପଇସା ମଧ୍ୟ ଦେଉଛି । କୋର୍ଟ ଇନ୍‌ସପେକ୍ଟରଙ୍କ ଘରକୁ କେତେଥର ଯାଉଛି—ସାକ୍ଷୀମାନଙ୍କୁ ମଧ୍ୟ ତାଙ୍କ ପାଖକୁ ଶିଖାଇବା ପାଇଁ ନେଇ ଯାଉଛି । ଗଲା ତାରିଖ ଦିନର ପୂର୍ବଦିନ ଆସି କୋର୍ଟ ଇନ୍‌ସପେକ୍ଟରର ଘର ବାରଣ୍ଡାରେ ଘଣ୍ଟା ମଧ୍ୟ ରହିଲେ ଶିଖିବା ପାଇଁ ।"

ମୋକଦ୍ଦମା ତାରିଖ ପ୍ରାୟ ପାଖ ହୋଇ ଆସିଥାଏ । ମୁଁ କାମଦେବକୁ ସେ ଦିନ ଶୀଘ୍ର ସକାଳୁ ଆସିବାକୁ କହି ବିଦା କରିଦେଲି ।

ନମିତା ପୁଣି ଚା' ନେଇ ଆସିଲା । କହିଲା, "ଏଥର ନ ପିଇଲେ ଆଉ କେବେ ଚା' ମିଳିବ ନାହିଁ ।" ଶ୍ୟାମସୁନ୍ଦର ବାବୁ କହିଲେ, "ଏତେ

ବଡ଼ ଶାସ୍ତି । ଏଇ ସାଙ୍ଗେ ସାଙ୍ଗେ ଆରମ୍ଭ କଲୁ ।" ଚା' ପିଇବା ଆରମ୍ଭ କଲେ ନମିତା ଉଭୟଙ୍କୁ ଗୁଲିଗଲା । ଶ୍ୟାମସୁନ୍ଦର ବାବୁ ପଚାରିଲେ "ମୋକଦ୍ଦମା ଫେର କ'ଣ ହେଲା ?"

ଚନ୍ଦ୍ର ବାବୁ କହିବାକୁ ଆରମ୍ଭ କଲେ, "ମୋକଦ୍ଦମା ତାରିଖ ଦିନ ଆସି ପହଞ୍ଚିଲା । ସାକ୍ଷୀମାନଙ୍କୁ ଜେରା କରିବା ଆରମ୍ଭ କଲି । ସେମାନଙ୍କୁ ଏପରି ଭାବରେ ଶିକ୍ଷା ଦିଆଯାଇଥାଏ ଯେ ଜେରାରେ ବିଶେଷ କିଛି ଫାଇଦା ହେଲା ନାହିଁ । ମୁଦେଇକୁ ପଛରେ ଜେରା କରିବା ପାଇଁ ରଖିଥାଏ । କାରଣ ଅନ୍ୟ ସାକ୍ଷୀମାନେ ଅତିରଞ୍ଜିତ କରି ଅନେକ କଥା କହିଥାନ୍ତି, ଏବଂ ମୋର ଉଦ୍ଦେଶ୍ୟ ଥିଲା ମୁଦେଇ ମୁହଁରୁ ଜେରାରେ ମୁଦାଲା ଅର୍ଥାତ୍ କାମଦେବ ସମ୍ବନ୍ଧ ଘର ଘନିଷ୍ଠତା ଆଦି ପ୍ରକାଶ କରାଇ ପାରିଲେ ଅନ୍ତତଃ ଅପରାଧର ମାତ୍ରା ଗୁରୁତର ଜଣାପଡ଼ିବ ନାହିଁ । ଅନ୍ୟ ସାକ୍ଷୀମାନେ ମୁଁ ଯେତେ ପ୍ରକାରରେ ପଚାରିଲେ ମଧ୍ୟ କହିଲେ ଯେ କାମଦେବ ଆସି ତାକୁ ବହୁତ ଟଣା ଓଟରା କଲା । ବାଁ ହାତକୁ ଟାଣି-ଦେଲା, ଡାହାଣ ହାତକୁ ଟାଣିଦେଲା, ଜୁଲିଆନା ବୁଲି ପଡ଼ିଲା, ତଳେ ପଡ଼ିଗଲା ଇତ୍ୟାଦି ଇତ୍ୟାଦି । ତା'ପରେ ଜୁଲିଆନାକୁ ଜେରା କରିବା ପାଳି ଆସିଲା । ତା' ଠାରୁ ସ୍କୁଲରେ ଏକ ସାଙ୍ଗରେ ପଢ଼ିବା, ଖୋଲା-ଖୋଲି ମିଶିବା, ଏକାଠି କାମ କରିବା ଇତ୍ୟାଦି ଅନେକ କଥା ପଚାରି ଉଭୟଙ୍କ ମଧ୍ୟରେ ମିଳାମିଶା କପରି ଥିଲା ତା ଉଲ୍ଲେଖ କରାଇ ନେଲି । କିନ୍ତୁ ସେଥିକରେ ବିଶେଷ କିଛି ଲାଭ ହେବାର ନୁହେଁ । କ'ଣ କରିବି— ଚିନ୍ତା କରିବାକୁ ଲାଗିଲି । ହଠାତ୍ ମୋ ମନରେ ଆସିଲା, ଗାଁ ମାଇପି ଲୋକେ ସାଧାରଣତଃ ଗାଧୁଆ ତୁଠକୁ ସାଙ୍ଗରେ ତେଲ, ହଳଦୀ, ଗରା, ମାଠିଆ ଆଦି ସାଙ୍ଗରେ ନେଇଥାନ୍ତି । ଜୁଲିଆନା ହୁଏତ ସେପରି କିଛି ନେଇଥିବ । ତେଣୁ ଆଉ ବିଳମ୍ବ ନ କରି ଜୁଲିଆନାକୁ ପଚାରିଲି, "ଆଚ୍ଛା ତୁମେ ଗାଧୁଆ ଘାଟକୁ ଇମିତି ଖାଲି ଖାଲି ଯାଇଥିଲ ନା ସାଙ୍ଗରେ ମାଠିଆ ଫାଠିଆ କିଛି ପାଣି ଆଣିବା ପାଇଁ ନେଇଥିଲ ।"

ଜୁଲିଆନା ଉତ୍ତର ଦେଲା, "ମୁଁ ଗୋଟାଏ ଟିଣ ସାଙ୍ଗରେ ନେଇଥିଲି ପାଣି ଆଣିବା ପାଇଁ ।"

ମୁଁ ପଚାରିଲି, "କାହିଁକି ପାଣି ଆଣ ।" . . .

ଜୁଲିଆନା କହିଲା, "ଗାଡ଼ଧୋଇ ଆସିଲା ପରେ ଆମେ ଗଛତଳେ ବସି ପଖାଳ ଖାଉଁ ଏବଂ ଖାଇସାରିବା ପରେ ଅଁଚୁଉ ।" (ମୁହଁ ଧୋଇବା)

ମୋ ପ୍ରଶ୍ନର ଭଙ୍ଗି ବଦଳାଇ କହିଲି, "ତା'ହେଲେ ତୁମେ ସେଦିନ ଗାଧୋଇସାରି ଟିଣରେ ପାଣି ଭର୍ତ୍ତି କଲ ଏବଂ ମୁଣ୍ଡରେ ବୋହି ତୁମ୍ଭମାନଙ୍କର ଖାଇବା ରହିବା ଯାଗା ଗଛ ତଳକୁ ଆସିଲ ।"

ଜୁଲିଆନା ଉତ୍ତର ଦେଲା—'ହଁ' ।

ଏତିକିବେଳେ କୋର୍ଟ ଇନ୍‌ସପେକ୍ଟର ଆତଙ୍କିତ ହୋଇ ନାନା-ପ୍ରକାର ଆପତ୍ତି କରିବାକୁ ଲାଗିଲେ । ମୁଁ ତାର ପ୍ରତିବାଦ କରି କହିଲି କୋର୍ଟ ଇନ୍‌ସପେକ୍ଟର ଅବାନ୍ତର କଥା ସବୁ ଉତ୍ଥାପନ କରି ସାକ୍ଷୀକୁ ଇଶାରା ଦେବାକୁ ଚେଷ୍ଟା କରୁଛନ୍ତି । ତେଣୁ ତାଙ୍କୁ ଚୁପ୍ କରାଯାଉ । ଅଦାଲତ ମଧ୍ୟ ଏ କଥା ମାନିଲେ ଏବଂ କୋର୍ଟ ଇନ୍‌ସପେକ୍ଟରଙ୍କୁ ଚୁପ୍ ରହିବା ପାଇଁ କଡ଼ା ନିର୍ଦ୍ଦେଶ ଦେଲେ । ମୁଁ ଜୁଲିଆନାକୁ ପଚାରିବା ଆରମ୍ଭ କଲି, "ତୁମେ ଯେଉଁ ଟିଣ ନେଇଥିଲ ସେଇଟା ଘର ବୋହିବା ପାଇଁ ବ୍ୟବହାର ହୁଏ ?"

ଜୁଲିଆନା କହିଲା, "ହଁ ।"

"ତେଣୁ ତା ମୁହଁ ପୂରା ଖୋଲାଥିଲା, ଆଉ ମଝିରେ କେବଳ ଖଣ୍ଡିଏ କାଠ ଥାଇ କଣ୍ଢା ପିଟାହୋଇ ଥିଲା ।"

"ହଁ ।"

"ତୁମେ ପାଣି ଟିଣଟି ମୁଣ୍ଡ ଉପରେ ରଖିସାରିବା ପରେ କାମଦେବ ତୁମ ପାଖକୁ ଆସିଲା ।"

"ହଁ"

ତୁମେ ଯେ କହୁଛ କାମଦେବ ତୁମ ହାତକୁ ଧରି ଟଣାଟଣି କଲା ସେଇଟା ତା'ପରେ—ମାନେ ତୁମେ ପାଣି ଟିଣଟି ବୋହିଥାଅ ଆଉ ସେ ଟଣାଟଣି କଲା ।"

"ହଁ ।" . .

"ତୁମେ ଯେଉଁ ପାଣି ଟିଣଟି ବୋହିଥିଲ ସେଇ ଟିଣ ପାଣି ପୂର୍ଣ୍ଣ ଥାଇ ତୁମ ଯାଗାକୁ ଫେରିଲ ?"

"ହଁ ।"

"ତୁମେ ଯେ ତୁମ ସାକ୍ଷ୍ୟରେ କହିଛ କାମଦେବ ତୁମ ଦୁଇହାତ ଟଣାଟଣି କଲା ଏ କଥା ଠିକ୍ ନୁହେଁ—ସେ ଖାଲି ସାଙ୍ଗରେ ଆସ ଯିବା-ବୋଲି କହିଲା ।"

"ସେଇଯା କହିଲା ଏବଂ ଟଣାଟଣି ମଧ୍ୟ କଲା ।" ତା'ପରେ ମୁଁ କେତେକ ପ୍ରଶ୍ନ ପଚାରି ବାର୍ମ୍ବାବାଯ ତାଙ୍କ ସାଙ୍ଗରେ ଆସୁଥିବା, କୋର୍ଟ ଇନ୍‌ସପେକ୍ଟରଙ୍କ ପାଖକୁ ନେଇ ଯାଉଥିବା ଇତ୍ୟାଦି କଥା ପଚାରି ଉତ୍ତର ଆଦାୟ କରିନେଲି ଏବଂ ପରିଶେଷରେ ଅନେକ କଥା ମିଛରେ କହିବା-ପାଇଁ ଏବଂ ମୋକଦ୍ଦମା କରିବା ପାଇଁ ବାର୍ମ୍ବାବାସ ପ୍ରବର୍ତ୍ତାଇ ଥିବା କଥା ପଚାରିଲି । ଜୁଲିଆନା କ୍ଷୀଣ ସ୍ୱରରେ ତାହା ଅସ୍ୱୀକାର କଲା; କିନ୍ତୁ ତା ଉତ୍ତରରେ ପ୍ରାଣ ନ ଥିବା ସୁସ୍ପଷ୍ଟ ହୋଇ ଯାଇଥିଲା ।"

ବହସରେ ମୁଁ ମୋଟାମୋଟି ଭାବରେ ସବୁକଥା ଅଦାଲତ ଆଗରେ ଥୋଇ ମିଛରେ ମୋକଦ୍ଦମା ହୋଇଛି ବୋଲି ସାବ୍ୟସ୍ତ କଲି । ଯେପରି ଭାବରେ ହାତ ଟଣାଟଣି କରିବା କଥା କୁହାଯାଇଛି, ପାଣି ଟିଣଟି ପୂର୍ଣ୍ଣ ଥାଇ ଫେରିବା ତାହା ସମ୍ପୂର୍ଣ୍ଣ ଅପ୍ରମାଣିତ କରୁଛି ବୋଲି ଯୁକ୍ତି କଲି । ଅଦାଲତ ମଧ୍ୟ ଏ ଯୁକ୍ତି ଗ୍ରହଣ କରି କାମଦେବକୁ ଖଲସ୍ କଲେ ।

ଶ୍ୟାମସୁନ୍ଦର ବାବୁ ପଚାରିଲେ, "ଅଚ୍ଛା, ତା ପରେ ପୁଣି କ'ଣ ହେଲା ?"

ନମିତା ଏତକବେଳେ ପଶି ଆସିଲା । ଦୁହେଁ ଚପ୍ ହୋଇ ବସିଥାନ୍ତି । ନମିତା ଖାଲି ଚା' କପ୍ ପିଆଲା ସବୁ ଟ୍ରେରେ ଥୋଇ ବାହାରି-ଯିବାକୁ ଉଦ୍ୟତ ହେଉଥାଏ । ଶ୍ୟାମସୁନ୍ଦର ବାବୁ କହିଲେ, "ନମିତା, କାହାଣୀ ସରିନାହିଁ, ଏଣେ ଚା' ପେଟ ଭିତରେ ଏକଦମ୍ ଥଣ୍ଡା ହୋଇ-

ଗଲଣି । ଆଉ ଥରେ ଯଦି ନେଇ ଆସନ୍ତୁ···ଆଜି କିଛି କହିବା ପୂର୍ବରୁ ନମିତା କହିଲା; "ଖାଲି ଗ୍ଲୁ' ଗୁଡ଼ିକ ପିଇଥିବେ ?"

"ଗ୍ଲୁ' ସାଙ୍ଗରେ ଆଉ କିଛି ଆସିବ, ଯଦି ଭଲ କଥା । ତୁମପାଇଁ ଭଲ ବରଫିଏ ଖୋଜିବା···।"

"ସେମିତି କହିଲେ ଆଦୌ ଆଣିବ ନାହିଁ ।"

"ଆରେ, ନା, ନା, ଭୁଲ ହୋଇଗଲା । ସେଇଟା କହିବା କଥା ନୁହେଁ । ଆଚ୍ଛା, ହଉ, ମୁଁ ସେ କଥା ଉଠାଇ ନେଲି । ଏବେ ଆଣିବ ତ ।"

ନମିତା କିଛି କହିଲା ନାହିଁ । କେବଳ ଶ୍ୟାମସୁନ୍ଦର ବାବୁଙ୍କୁ ଦେଖି ମୁଣ୍ଡଟି ହଲାଇ ଦେଇ ଗୁଲି ଯାଉ ଯାଉ କହିଲା, "ହଉ ।"

ଶ୍ୟାମସୁନ୍ଦର ବାବୁ ଶଙ୍କରଙ୍କୁ ପୁଣି ପଚାରିଲେ, "ତାପରେ ହେଲା କେଉଁ ?"

ଶଙ୍କର କହିବାକୁ ଆରମ୍ଭ କଲେ, "ଗାଁରେ ବୁଝିଲି ମୋକଦ୍ଦମାରେ ଖଲାସ ହୋଇଯିବା ପରେ କାମଦେବ ଜୁଲିଆନାକୁ ପାଇବା ସକାଶେ ଆତୁର ଉତ୍କଣ୍ଠିତ ହୋଇ ପଡ଼ିଲା ସେ । ଜୁଲିଆନାର ବାପକୁ ମଧ୍ୟ ବହୁତ ଅନୁନୟ ବିନୟ କରି କହିଲା ପ୍ରସ୍ତାବରେ ରାଜି ହେବା ପାଇଁ । ଲୁସି ଟ୍ରେଭର ଅନେକ ଥର ଜୁଲିଆନା ସହିତ ମଧ୍ୟ ସାକ୍ଷାତ କରି ତାକୁ ବରାବର ଅନୁରୋଧ କରୁଥାଏ ବିବାହ ସକାଶେ । ଜୁଲିଆନା ତାକୁ ଦିନେ କହିଲା ଯେ ପାଦ୍ରୀ ବୋଧହୁଏ ତା ବାପାକୁ ମନା କରିଛି ଏ ପ୍ରସ୍ତାବରେ ରାଜି ହେବାପାଇଁ । କାରଣ କାମଦେବ ଖ୍ରୀଷ୍ଟିୟାନ ନୁହେଁ । କାମଦେବ କହିଲା ସେଥିପାଇଁ ଯଦି କଥା ଅଟକୁଛି ତା ହେଲେ ସେ ଖ୍ରୀଷ୍ଟିୟାନ ହୋଇ ଯିବାକୁ ରାଜି ଅଛି । ଏ କଥା ସେ ଜୁଲିଆନାର ବାପକୁ ମଧ୍ୟ କହିଲା । କିନ୍ତୁ ଜୁଲିଆନାର ବାପ ବିଚାର କରି ପାଦ୍ରୀକୁ ପଚାରି କିଛି କହିବା ପୂର୍ବରୁ ବାର୍ଥୋଲିଓ ପୁଣି ଏଥିରେ ବାଧା ସୃଷ୍ଟି କଲା । ସେ ଆସି ଜୁଲିଆନାର ବାପକୁ ପ୍ରଭାବିତ କଲା । ଜୁଲିଆନାର ବାହା ତା ସହିତ

କରିବା ପାଇଁ । ଜୁଲିଆନା ପାଇଁ, ତା ବାପା ମା ପାଇଁ ଧୋତି, ଶାଢ଼ୀ ଆଉ ବାସନା ତେଲ୍ ଆଦି ଅନେକ ଜିନିଷ ମଧ୍ୟ ଥରକୁଥର ନେଇ ଆସେ । ହେଲେ ଜୁଲିଆନାର ତା ପ୍ରତି କୌଣସି ଅନୁରାଗ ଉପୁଜିବାର ସେ ଅନୁଭବ କରି ପାରିଲା ନାହିଁ । କ'ଣ କରିବ ସେ କିଛି ଠିକ୍ କରି ପାରୁ ନ ଥାଏ । ଗାଁରେ ମଧ୍ୟ ଏ ପ୍ରସଙ୍ଗରେ ନାନାପ୍ରକାର ଟୀକା ଟିପପଣୀ ଚାଲିଥାଏ । ମୋକଦ୍ଦମାରେ ବାର୍ଣ୍ଣୀବାସ ଯେଉଁ ପ୍ରକାର ମିଛ କାମ କରିଥିଲା—ଗାଁ ଲୋକେ ସେଥିରେ ତା ପ୍ରତି ରୁଷ୍ଟ ହୋଇ ପଡ଼ିଥିଲେ । ସବୁକଥା ବିଚାରକୁ ନେଇ ବାର୍ଣ୍ଣୀବାସ ମନେ ମନେ ଭାବିଲା ଜୁଲିଆନା ଗାଁରେ ଥିବା ପର୍ଯ୍ୟନ୍ତ ବୋଧହୁଏ ତାକୁ ପାଇବା ସହଜ ହେବ ନାହିଁ ।

ଗାଁରୁ ବହୁତ ଦୂର, ପ୍ରାୟ ସତୁରି ମାଇଲ ହେବ । ଚନ୍ଦ୍ରପୁର ଚୂନପଥର ଖଦାନ ଅଛି । ବାର୍ଣ୍ଣୀବାସ୍ କୌଣସି ପ୍ରକାରେ ଜୁଲିଆନାର ବାପାକୁ ପ୍ରଭାବିତ କରି ଜୁଲିଆନା ପାଇଁ ସେ ଖଦାନର ଡାକ୍ତରଖାନାରେ ଗୋଟିଏ ନର୍ସ କାମ ଯୋଗାଡ଼ କଲା । ସେ ନିଜେ ଖଦାନ ପାଖରେ ଥିବା ଏକ ମିଶନରି ସ୍କୁଲକୁ ନିଜର ବଦଳି କରାଇ ନେଲା । କଥାହେଲା, ଜୁଲିଆନାକୁ ଗୋଟିଏ ଘର ମଧ୍ୟ ମିଳିବ । ସମସ୍ତ ପରିବାର ସେଇଠି ରହିବେ । କେବେ କେବେ ଦରକାର ହେଲେ ଜୁଲିଆନାର ବାପା ଗାଁକୁ ଆସି ଘରଦ୍ୱାର ଦେଖି ଯାଉଥିବ ।

ଜୁଲିଆନା ଓ ତା ପରିବାର ସେଠାକୁ ଯିବା ପରେ ପ୍ରାୟ ଦୁଇମାସ ଚାଲିଗଲା । କାମଦେବ ଗାଁରେ ରହିଥାଏ । ତାକୁ କିଛି ଭଲ ଲାଗୁ ନ ଥାଏ । ଗୃହବାସ ପ୍ରତି ମଧ୍ୟ ମନ ଛୁଟି ଆସୁଥାଏ । ସେ ଆଉ ଅଧିକ ଦିନ ଗାଁରେ ରହି ପାରିଲା ନାହିଁ । ସେ ମଧ୍ୟ ଖଦାନକୁ ଚାଲିଗଲା ମଜୁରି କାମ କରିବା ପାଇଁ ।

ଅନେକ ଦିନ ବିତିଗଲା । ମୁଁ ଆଉ ସେମାନଙ୍କର କିଛି ଖବର ପାଇଲି ନାହିଁ । ତା'ପରେ ଦିନେ ହଠାତ୍ କାମଦେବ ସନ୍ଧ୍ୟା ସମୟ ମୋ ପାଖରେ ଆସି ପହଞ୍ଚିଲେ । ମୁଁ ତାକୁ ପଚାରିଲି, "କବେ, କୋଉଠୁ ଆସିଲୁ । ହଠାତ୍ କମିତି ?"

କାମଦେବ କହିଲା, "ଜବାନରୁ ଆସିଲି ବାବୁ—ମୋ ହାତକୁ ଗୁଡ଼ିଏ କାଗଜ ଦେଇ କହିଲା, "ଫେରି ମୋ ନାଆଁରେ ମୋକଦ୍ଦମା।' କଥା କହିଲା ବେଳକୁ ଦେଖିଲି ତାର ଉପର ପାଟିର ଗୋଟିଏ ଦାନ୍ତ ଭାଙ୍ଗି ଯାଇଛି।

ମୁଁ ତାକୁ ପଚାରିଲି, "କିରେ ତୋର କ'ଣ ଦାନ୍ତ ଭାଙ୍ଗିଗଲାଣି--ବୁଢ଼ା ହୋଇଗଲୁ କି ?"

"ନାଇଁ ବାବୁ, କାଗଜରେ ଦେଖ।"

ମୋକଦ୍ଦମାର ରାୟ ପଢ଼ି ସବୁକଥା ଜାଣି ପାରିଲି। ଜ୍ବଲିଆନା ରହୁଥିବା କୋଠରୀକୁ ରାତିରେ ମନ୍ଦ ଅଭିପ୍ରାୟରେ ପଶିଥିବା ହେତୁ ତାକୁ ଲୁଚିଛପି ଅନଧିକାର ଗୃହପ୍ରବେଶ ଅଭିଯୋଗରେ ଦଣ୍ଡାଦେଶ ହୋଇଛି—ଛଅମାସ ସଶ୍ରମ କାରାଦଣ୍ଡ। କାଗଜ ଗୁଡ଼ିକ ପଢ଼ି ପୁଣି ଦେଖିଲି ସେସନ୍ସ ଜଜ୍‌ଙ୍କ ପାଖରେ ଅପିଲ୍ ଦାଏର ହୋଇଯାଇଛି ଏବଂ ସେ ଜମାନତରେ ଅଛି। ମୁଁ ତାକୁ କହିଲି, "ଅପିଲ ତ ଦାଏର୍ ହୋଇଯାଇଛି—ଆଉ କ'ଣ ?"

ସେ କହିଲା, "ନାଇଁ ବାବୁ, ଜମାନତ ଲଗି ଅପିଲ୍‌ଟା କୌଣସି ପ୍ରକାରେ ଦାଏର କରାଇଦେଲା—ଆପଣ ବହସ୍ ନ କଲେ ମୁଇଁ ଭାସିଯିବି।" ତାକୁ ଆଶ୍ୱାସନା ଦେବାପାଇଁ କହିଲି, "ଆଚ୍ଛା, ହଉ, ଦେଖିବା।" କାଗଜପତ୍ର ପଢ଼ି ଦେଖିଲି, ସେ ମୋଟେ ସଫେଇ ସାକ୍ଷୀ ଦେଇନାହିଁ। ତା ନିଜର ଷ୍ଟେଟ୍‌ମେଣ୍ଟରେ ( ବକ୍ତବ୍ୟରେ ) କହିଛି, "ମୁଇଁ ଜ୍ବଲିଆନାର କୋଠରୀତ ଦୂରର କଥା ତାଙ୍କର ଘରକୁ ବି ଯାଇନାହିଁ—ମୁଇଁ ବାଟେ ବାଟେ ମୋର ଡେରାକୁ ଫେରୁଥିଲି। ମୋତେ ବାଟରୁ ଘର ପାଖକୁ ବାର୍ଣ୍ଣୋବାସ୍ ଆଉ କେତେ ଲୋକ ମିଶି ଟାଣି ନେଇଗଲେ ଆଉ ପିଟିଲେ। ମୋର ଦାନ୍ତ ଭାଙ୍ଗି ଯାଇଛି।" କିନ୍ତୁ ଏ ବାବଦରେ ଆଦୌ କୌଣସି ସାକ୍ଷୀ ଦିଆଯାଇ ନାହିଁ। ତାକୁ ପଚାରିଲି, "ତୋତେ ପିଟିବା ବାବଦରେ ପୋଲିସରେ ରିପୋର୍ଟ କରିଥିଲୁ ?"

ସେ କହିଲା, "ହଁ, କରିଥିଲି। ପୋଲିସ୍ କେସ୍ ଚାଲିବ ନାହିଁ

ବୋଲି କହୁଥିଲା, ଆଉ ଖଣ୍ଡେ କାଗଜ ଦେଇଥିଲା । "ସେଇଟା କେଉଁଠି ହଜିଗଲା ।"

ଅପିଲ୍ ମୋକଦ୍ଦମାଟି ବଡ଼ କଷ୍ଟ ମନେହେଲା । ତେବେ ତା ମନ ଖରାପ ହୋଇଯିବ ବୋଲି କିଛି କହିଲି ନାହିଁ । ତାକୁ ଶୋଇବାକୁ ଯିବା ପାଇଁ କହିଲି ଏବଂ ସାକ୍ଷୀ ଇଜାହାର ସବୁ ପଢ଼ିବାକୁ ଲାଗିଲି । ଦେଖିଲି ମୁଦେଇର ସାକ୍ଷୀମାନଙ୍କୁ ଜେରା ମଧ୍ୟ କରାଯାଇ ନାହିଁ । ଜଲିଆନାର ଏବଂ ବାର୍ଣ୍ଣାବାସ ଦୁଇଜଣ ମାତ୍ର ମୁଦେଇର ସାକ୍ଷୀ ଏବଂ ଜଲିଆନାର ବାପ ନିଜେ ମୁଦେଇ । ଜଲିଆନା ସାକ୍ଷ୍ୟ ଦେଇଛି ଯେ ହଠାତ୍ 'ମାର, ମାର,' ଶବ୍ଦ ଏବଂ ପିଟାପିଟି ଶୁଣି ସେ ଖଟରୁ ଉଠି ପଡ଼ିଲା ଏବଂ ଘର ବାହାରକୁ ଆସି ଦେଖିଲା ଯେ କାମଦେବଙ୍କୁ ତା ବାପା ଆଉ ବାର୍ଣ୍ଣାବାସ୍ ଦୁଆର ମୁହଁ ପାଖରେ ଧରିଛନ୍ତି । ତାକୁ ତା ବାପା ଗାଳିଦେବାରୁ ସେ ଘର ଭିତରକୁ ଫେରି ଆସିଲା । ବାର୍ଣ୍ଣବାସ୍ ଏବଂ ଜଲିଆନାର ବାପ କହିଛନ୍ତି ଯେ କାମଦେବ ଘରେ ପଶି ଜଲିଆନାର କୋଠରୀ ଭିତରକୁ ଯାଉଥିଲା, ହଠାତ୍ ସେମାନଙ୍କୁ ଦେଖି ଦଉଡ଼ି ପଳାଉଥିବା-ବେଳେ ସେମାନେ ତାକୁ ବାଣ୍ଡ ଦୁଆର ପାଖରେ ଧରିଲେ ।

ପୋଲିସ୍ ମୋକଦ୍ଦମା । ବହୁକଥା ସଜାଇ କୁହାଯାଇଥାଏ । ତେବେ ମୋଟାମୋଟି ଭାବରେ ଦେଖିଲି ଯେ କାମଦେବକୁ ଧରିବାଟା ଘର ବାହାରେ ବାଡ଼ ପାଖରେ ଏହା ସୁସ୍ପଷ୍ଟ ଏବଂ ଜଲିଆନା ତାକୁ ଘର-ଭିତରେ ଦେଖି ନାହିଁ—ଏହା ମଧ୍ୟ ସ୍ପଷ୍ଟ । ମୋଟ ଉପରେ ଘରଭିତରକୁ ପ୍ରବେଶର ଆଇନ୍ ସଙ୍ଗତ ସାକ୍ଷୀ ନାହିଁ । ତେଣୁ ସେଉଁ ଦଫାରେ ଅଭିଯୋଗ ହୋଇଥିଲା ତାହା ଅସଙ୍ଗତ ।

ସୌଭାଗ୍ୟକୁ ଅପିଲ୍ ଅଦାଲତ୍ ଏ ଯୁକ୍ତି ଗ୍ରହଣ କଲେ ଏବଂ କାମଦେବ ଖଲାସ ହୋଇଗଲା । ତାର ଆନନ୍ଦ ଆଉ କହିଲେ ନ ସରେ । ସେ ଯେ ମୋ ପ୍ରତି କେତେ କୃତଜ୍ଞତା ପ୍ରକାଶ କଲା ତାର ଆଉ ସୀମା ନ ଥାଏ । ମୁଁ ତାକୁ କହିଲି, "ଯା ଏବେ ଗାଁକୁ ଫେରି ଯା । ଆଉ ଝିଅମାନଙ୍କୁ ପିଟୁ ନାହିଁ ।"

କାମଦେବ କହିଲା, "ଖଦାନକୁ ଗଲେ ତ ମୋତେ ଏମାନେ ଜୀବନରେ ମାରଦେବେ । କ'ଣ କରିବ କିଛି ଠିକ୍ କରି ପାରୁ ନାହିଁ ।

ମୁଁ ତାକୁ ଟିକଏ ଧମକେଇ କହିଲି, "ଯା, ଗାଁକୁ ଫେରି ଯା । ନ ହେଲେ ମୋ ପାଖକୁ ଆଉ ଆସିବୁ ନାହିଁ । କାମଦେବ ଫେରିଗଲା । ପୁଣି ପ୍ରାୟ ଦୁଇ ଅଢେଇ ମାସ ପରେ ଦିନେ ସନ୍ଧ୍ୟାରେ ଆସି ହାଜର । ତାକୁ ପଚାରିଲି, "ଫେର୍ ଆସିଲୁ ଯେ—କଥା କ'ଣ ?"

କାମଦେବ କହିଲା, 'ନାଇଁ, ମୁଇଁ ଆଉ ଗାଁରେ ରହି ପାରିଲି ନାହିଁ ।'

"କ'ଣ ହେଲା ?"

"ମୁଇଁ ଆଜ ମୋର ମନ ଖୋଲି କରି କଥା କହିବି ।"

"କହ"

"ମତେ ଅପିଲରେ ଖଲାସ କରିଦେଲା । ଜେଲ୍ ଯାଇଥିଲେ ସେଠି ରହିଥାନ୍ତି । ଜଲିଆନା ବେଗର୍ ମୁଇଁ ଆଉ ରହି ନ ପାରିବାରୁ । ବାବୁ, ଦୟା କରି ମୋତେ ଜଲିଆନାକେ ମିଳାଇ ଦିଅ ।'

"କରେ, ମୁଁ କେମିତି ମିଳାଇ ଦେବି । ଜଲିଆନା ଯଦି ଆସିବାକୁ ରାଜିହେଲେ ହେବ ।"

"ଜଲିଆନା ଆସିବାକୁ ରାଜି କି ବାବୁ—ଆସିବ । ଟିକଏ ବୁଦ୍ଧି ବତେଇ ଦିଅ—କେମିତି କରି ଏକାଠି ରହି ପାରିମୁଁ । କେହି ଆମକୁ ହଇରାଣ କରି ନ ପାରିବେ । ଆଉ ଯଦି ଜଲିଆନାକେ ନ ମିଳାଇଦେବ ମତେ ଜେଲ୍‌କେ ପଠାଇଦିଅ—ସେଇଠେ ମରୁଥିବି—ନାଇଁ ତ ଯାଉଛେ ଝାର୍ ଜଙ୍ଗଲ ଭିତରେ ବାଘ ଭାଲୁ ହାବଡ଼େ ପଡ଼ିକରି ମରିଯିବି ।'

ମୁଁ ବୁଝିପାରିଲି—ତାକୁ ହତାଶ କରି କିଛି କହିବା ଅତ୍ୟନ୍ତ ଯନ୍ତ୍ରଣାଦାୟକ ହେବ । ଯଦି ସମ୍ଭବ ତାକୁ କୌଣସି ପ୍ରକାର ସାହାଯ୍ୟ କରିବା ପାଇଁ ମୋର କୌଣସି ଆପତ୍ତି ମଧ୍ୟ ନଥିଲା । ମୁଁ ତାକୁ କହିଲି,

"ଦେଖ, ଜଲିଆନାଠାରୁ ମୁଁ ନ ଶୁଣିବା ପର୍ଯ୍ୟନ୍ତ କିଛି କରି ପାରିବ ନାହିଁ । ଆଜି ସେ ଏଠିକି ଆସିବ କିମିତି ?"

କାମଦେବ ସାଙ୍ଗେ ସାଙ୍ଗେ କହିଲା, 'ମୁଇଁ ଯାଉଛି ବାବୁ କୌଣସି ପ୍ରକାରେ ହେଲେ ଜଲିଆନାକୁ ସାଙ୍ଗରେ ଆଣି ଏଠିକି ଆସିବି । ଆସିଲାପରେ ଆମକୁ ରକ୍ଷା କରିବ—ବୁଦ୍ଧି ବତାଇ ଦେବ । ନ ହେଲେ ଆମର ଜାନ୍ ମାରଦେବେ ।'

ମୁଁ ଆଉ ନାହିଁ କରିବାର କୌଣସି ବାଟ ନ ଥିଲା । ତଥାପି ତାକୁ ଥରେ କହି ଦେଖିଲି, "କାମଦେବ, ଆଜି କାହାକୁ ବାହା ହୋଇଗଲେ ହେବ ନାହିଁ—ଦେଖ୍, ଜଲିଆନାକୁ ବାହା ହେଲେ ଦୁଇଟା ପରିବାର ସାଙ୍ଗରେ ଦୁଷ୍‌ମନ ହୋଇଯିବ—କେତେ କ'ଣ ବି ଘଟିଯାଇ ପାରେ ।"

କାମଦେବ ଅଉ ଶୁଣିବା ଅବସ୍ଥାରେ ନ ଥିଲା । ସେ କହିଲା, "ନାଇଁ ବାବୁ, ଜଲିଆନା ବିନା ମୁଇଁ ରହି ନ ପାରେ—ଯାଉଛି । ଏହାକହି ଚାଲିଗଲା ।

ସେମାନେ ଆସିଲେ ମୁଁ କ'ଣ କରିବି ମନେ ମନେ ଭାବିବାକୁ ଲାଗିଲି । ଗାଁରେ ତ ରହିପାରିବେ ନାହିଁ । ଖଦାନ ପାଖରେ ବି ରହି-ପାରିବେ ନାହିଁ । କ'ଣ କରାଯିବ ଭାବିବାକୁ ଲାଗିଲି ।

ଘଣ୍ଟାକ ପରେ ଦ୍ୱିପ୍ରହର ସମୟରେ କାମଦେବ ଏବଂ ଜଲିଆନା ଆସି ପହଞ୍ଚିଲେ । ଏଇ ଅଫିସ କୋଠରୀ ଭିତରେ ତିନହେଁ ବସିଲୁ । ମୁଁ ଜଲିଆନାକୁ ପଚାରିଲି, "ତୁମେ କାମଦେବକୁ ବାହା ହେବାକୁ ଚାହୁଁଛ ? ତୁମ ବାପା ରାଜି ନାହାନ୍ତି—ବାଣ୍ଡୀବାସ ବି ତୁମକୁ ହରଣ କରିବ—କ'ଣ ଚାହୁଁଛ ?"

ଜଲିଆନା କହିଲା, "ମୁଇଁ ତ ଚାହୁଁଛି—ଲେକିନ୍ ଆମକୁ ତ ବାଣ୍ଡୀବାସ ରହିଦେବ ନାହିଁ—ଭାରି ବଦମାସ୍ ଲୋକ—ଜାନ୍‌କୁ ମଧ୍ୟ ଖତରା । କିଛି ବୁଦ୍ଧି ବତାଇ ଦିଅ ବାବୁ—ମୁଇଁ ଉଧ୍‌ଲିଆ ପଳାଇ ଯିବାକୁ ଭି ରାଜି ଅଛି ।"

କାମଦେବ କହିଲା, "ବାବୁ ଶୁନ୍‌ଲଛ । ଏବେ କିଛି ବୁଦ୍ଧି ବତାଅ । ଜଙ୍ଗଲିଆ ମାରିବାପା, ବାଣ୍ଡିଦାସ ଏମାନେ ଆସିଗଲେ ନାନା-ପ୍ରକାର ବାଧା ଦେବେ ।"

ଜଣପୁଙ୍କର ଦୃଢ଼ ସଙ୍କଳ୍ପ ଶବ୍ଦରେ ମୋର ଆଉ କିଛି ସନ୍ଦେହ ରହିଲା ନାହିଁ । ମୁଁ ସେମାନଙ୍କୁ କହିଲି, "ଦେଖ, ତୁମେ ଦୁହେଁ ଏଇଠି କି ଆଖ୍ ପାଖରେ ନିଗ୍ରାପଦରେ କି ସୁଖରେ ରହିପାରିବ ନାହିଁ । ତୁମେ କହୁତ ଦୂରକୁ ଚାଲିଯାଅ । ବାହାରେ ବର୍ଷେ ଦୁଇବର୍ଷ ରହି ପରେ ଫେରି ଆସିବ ।"

ଜଣପୁଏ ଜଙ୍ଗଣ୍ଠାର ସହିତ କହିଲେ, "ହଇବାବୁ, କେନ୍‌ସି ଜାଗାକେ ବତାଇ ଦଅ—ଆମେ ପଲାଇ ଯିବୁ ।"

ମୁଁ ସେମାନଙ୍କୁ କହିଲି, "ଦେଖ, ମଧ୍ୟପ୍ରଦେଶରେ ଝାରସୁଗୁଡ଼ା ବୋଲି ଗୋଟିଏ ଜାଗା ଅଛି—ସେଠି ମୋର ଜଣେ ବନ୍ଧୁ ଗୋଟିଏ ଖାଦାନ୍‌ର ମାଲିକ । ମୁଁ ତାଙ୍କର ପାଖକୁ ଖଣ୍ଡେ ଚିଠି ଲେଖି ଦେଉଛି—ଚିଠି ସାଙ୍ଗରେ ନେଇ ସେଠିକି ଯିବ—ସେ ତୁମ ଦୁଇଜଣଙ୍କୁ କାମରେ ରଖିଦେବେ—ସେଇଠି ରହିଯିବ

ସେମାନେ ହଁ କଲେ । ମୁଁ ଚାପରେ ଚିଠିଟି ଲେଖିଲି । ସେମାନଙ୍କ ହାତରେ ଦେଲି । କହିଲି, "ସେଠିକି ପହଞ୍ଚି ମୋ ପାଖକୁ ସାଙ୍ଗେ ସାଙ୍ଗେ ଚିଠି ଲେଖିବ । ସାତଦିନ ଭିତରେ ମୁଁ ଯେପରି ଖବର ପାଇ ପାରିବ "

ସେମାନେ ରାଜି ହେଲେ ଏବଂ ଯିବାପାଇଁ ଉଠିଲେ । ସମୟ ପ୍ରାୟ ୫ଟା ହୋଇଥାଏ । ବସ୍ ଯିବାକୁ ଆଉ ପ୍ରାୟ ଅଧଘଣ୍ଟା । ଷ୍ଟେସନକୁ ବାଟ ପ୍ରାୟ ୧୫ ମାଇଲି, ମୁଁ ଆମର ପିଅନଙ୍କୁ ଡାକି କହିଲି, "ଯାଅ ଏମାନଙ୍କ ସାଙ୍ଗରେ, ବସ୍‌ରେ ଚଢ଼ାଇ ଦେଇ ଆସିବ ।"

କାମଦେବ, ଜଲିଆନା ବହାପୁ ନେଇଗଲେ । ଚୂଝାରି ସାତଟା ପର୍ଯ୍ୟନ୍ତ ଫେରିଲା ନାହିଁ । ମୁଁ କଣ ହେଲା ବୋଲି ଆଶଙ୍କା କରି ବସ୍‌ଷ୍ଟାଣ୍ଡ ପାଖକୁ ବୁଲିବାକୁ ଗଲି । ଚୂଝାରି ସାଇକେଲରେ ଫେରୁଥାଏ । ଗାଡ଼ି ଠିଆ କରିବା ପାଇଁ ହାତ ଟେକିଲା । ମୁଁ ବ୍ରେକ୍ ଦେଇ ଗାଡ଼ି ଠିଆ କଲି । ସେ ସାଇକେଲରୁ ଓହ୍ଲାଇ ପାଖକୁ ଆସିଲା ଏବଂ କହିଲା, "ବାବୁ ସେମାନେ ବସ୍‌ରେ ଚଢ଼ିଯିବାର ପ୍ରାୟ ଅଧଘଣ୍ଟା ପରେ ବାଣ୍ଡୀବାସ୍, ଜଲିଆନାର ବାପ ବସ୍‌ରେ ଆସି ପହଞ୍ଚିଲେ । ସେମାନେ ତ ମୋତେ ଚିହ୍ନି ଛନ୍ତି । ସିଧା ମୋ ପାଖକୁ ଆସି କାମଦେବ ଜଲିଆନା ଆସିଛନ୍ତିକି ବୋଲି ପଚାରିଲେ । ମୁଁ କହିଲି, ଆସିଥିଲେ, ପ୍ରାୟ ଘଣ୍ଟାଏ ହେବ ବ୍ରଜରାଜ ନଗର ବସ୍‌ରେ ଚାଲିଗଲେ । ସେମାନେ ପଚାରିଲେ "କେଉଁଠିକି ଗଲେ ।" ମୁଁ କହିଲି, ସେ କଥା ମୁଁ ଜାଣେ ନାହିଁ । ତା ପରେ ବାଣ୍ଡୀବାସ୍ ହଠାତ୍ ରାଗିଯାଇ କହିଲା, "ଆଚ୍ଛା, ମୁଇଁ ବୁଝିଲି, ଚୋର ବାବୁ ସେମାନଙ୍କେ ଉଠାଇ ଦେଇଛେ । ଚୋର ବାବୁ-କ କହିଦେବୁ ମୁଇଁ ସାଙ୍ଗରେ ଆଉ ଷ ଲୋକ ନେଇକରି ଯାଉଛେ । ଜଲିଆନାକୁ ଜବର୍ ଛଡ଼ାଇ ଆଣିବି । ଯଦି ନ ଆସେ ଦୁଇଜଣଙ୍କୁ ଖତମ କରିଦେବି ଆଉ ତାର ବାଦ୍ ଚୋର ବାବୁକେ ଦେଖିବି ।"

ମୁଁ ତାକୁ କାହିଁକି ଭଡ଼ ଭଡ଼ ହେଉଛୁ ବୋଲି ଦୁଇପଦ ଶୁଣାଇ ଦେଇ ଆସୁଛେ । ସେମାନେ ବସ୍‌ଷ୍ଟାଣ୍ଡରେ ଏ ପର୍ଯ୍ୟନ୍ତ ଅଛନ୍ତି । ଆପଣ କାହିଁକି ଛୁଚ୍ଛାଟାରେ ଯିବେ ।

ମୁଁ ତାଠୁ ଏ କଥା ଶୁଣି, 'ଆଚ୍ଛା ହେଉ' କହି ଫେରି ଆସିଲି । ଘରେ ପହଞ୍ଚି ତାକୁ ପଚାରିଲି, "ଆଚ୍ଛା ବ୍ରଜରାଜନଗରକୁ ଆଉ ବସ୍ ଅଛି କି ?" ସେ କହିଲା, "ଆଉ ନାହିଁ, କାଲି ସକାଳ ଦଶଟାରେ ଅଛି ।" ମୁଁ ଟିକିଏ ଆଶ୍ୱସ୍ତ ହେଲି । ରେଲୱେ ଟାଇମ ଟେବୁଲ ଖୋଜି ଦେଖିଲି ବ୍ରଜରାଜନଗରରୁ ଗାଡ଼ି ରାତି ଆଠଟାରେ ଛୁଡ଼ିଏ—ଆଉ ଟିକିଏ ଆଶ୍ୱସ୍ତ ହେଲି । ସେମାନେ ପହଞ୍ଚି ନିଶ୍ଚୟ ରେଲ୍ ଗାଡ଼ିରେ ଚାଲି ଯାଇଥିବେ । ତା ପରେ ପରଦିନ ସକାଳେ ଖବର ପାଇଲି ବାଣ୍ଡୀବାସ୍

ଆଉ ଦୁଇଟି ଲୋକଙ୍କୁ ମାଙ୍କରେ ନେଇ ବଣବଟେ କୃଷ୍ଣଗଣ୍ଟ ନଗର ବସ୍ତରେ ଗଲୁ । . . .

କିଛି ସମୟ ପରେ ଜୁଲିଆନାର ବାପ ଆସି ମୋ ପାଖରେ ପହଞ୍ଚିଲେ । ସେ ବଡ଼ ଦାରୁଣ ଭାବରେ କହିଲ, "ବାବୁ, ମୋର ଜୁଲିଆନାକୁ ବଞ୍ଚାଅ । ମୁଁ କାମଦେବକୁ ଚିହ୍ନା ହେଉ ପରେ ମୁଁ ଗଲଅଛି । ବାଣ୍ଟୀବାସ ମୋର ଜୁଲିଆନାକୁ ମାର ପକାଇବ—କାମଦେବକୁ ମାର ପକାଇବ । ସାଙ୍ଗରେ ଦୁଇଟା ଗୁଣ୍ଡା ନେଇଛି । ଜୁଲିଆନାକୁ ନେଇକର ଆସିବ—ନ ହେଲେ ସେମାନଙ୍କୁ ମାରିକର ଆସିବ ବୋଲି କହୁଛି ।

ମୁଁ ତାକୁ ନିକଏ ଉତ୍ତେଜିତ ସ୍ୱରରେ କହିଲି, "ସେମାନେ କେଉଁଠିକି ଗଲେ ମୁଁ ଜାଣିନାହିଁ । ତୁମେ ଯାଅ ଖବର ନିଅ । କିଛି ହେଲେ ମୋତେ ଜଣାଇବ । ଏବେ ମୁଁ କିଛି ଜାଣିନାହିଁ । ସେ ଚାଲିଗଲା । ତାର ଆଉ କିଛି ଖବର ନାହିଁ ।

ଅନେକ ପ୍ରାୟ ଦୁଇମାସ ହୋଇଗଲା ଜୁଲିଆନା କି ବାଣ୍ଟୀବାସ୍ କାହାର କିଛି ଖବର ମିଳୁନାହିଁ । ଦଶ ବାରଦିନ ପରେ କିଛି ଖବର ନ ମିଳିବାରୁ ଗୃହଭଦ୍ରର ମୋର ବନ୍ଧୁଙ୍କ ପାଖକୁ ଚିଠି ଲେଖିଥିଲି । ସେ ଉତ୍ତର ପଠାଇଛନ୍ତି ଯେ ମୋର ଚିଠି ନେଇ କେହି ତାଙ୍କୁ ଦେଖା କରି ନାହାନ୍ତି । କାହାର କିଛି ଖବର ନାହିଁ—ମୁଁ ଚାଲି ବସି ଭାବୁଛି— ସେମାନେ ଏବେ କେଉଁଠି ।

—o—



୧୯୬୯ ସାଧାରଣତନ୍ତ୍ର ଦିବସରେ ଦିଲ୍ଲୀରେ ପ୍ରଦର୍ଶିତ ସଂବଲପୁରର ପ୍ରଖ୍ୟାତ 'ଡାଲ୍‌ଖାଇ' ନୃତ୍ୟ ।

# ସମ୍ବଲପୁରୀ ପଲ୍ଲୀ ସଂଗୀତ

**ଶ୍ରୀ ମୁରଲୀଧର ପ୍ରସାଦ ମିଶ୍ର**

ସମ୍ବଲପୁରୀ ପଲ୍ଲୀ ସଂଗୀତ ବିଗତ ପ୍ରାୟ ୩୦ ବର୍ଷ ମଧ୍ୟରେ ଶିକ୍ଷିତ ସମାଜରେ ବିଶେଷ ଆଦର ଲାଭ କରି ପାରିଛି । କିନ୍ତୁ ଏହାର ବିଶେଷତ୍ୱ କଣ, କେଉଁ ଗୁଣରେ ଏହା ଅନ୍ୟାନ୍ୟ ପଲ୍ଲୀ ସଂଗୀତ ଅପେକ୍ଷା ପୃଥକ୍, ଏହାର ସୃଷ୍ଟି ଓ କ୍ରମବିବର୍ତ୍ତନ, ଆଞ୍ଚଳିକ ପ୍ରାଧାନ୍ୟ, ଭାଷା, ଛନ୍ଦ, ସ୍ୱର ଓ ବାଦ୍ୟ ଆଦି ବିଭିନ୍ନ ବିଷୟରେ ଯଥେଷ୍ଟ ଅନୁଶୀଳନ ବା ଗବେଷଣା ଏଯାବତ୍ ହୋଇ ନାହିଁ । ଅଥଚ ସଭ୍ୟ ସମାଜରେ ଏହା ଯେ ଦିନୁଦିନ ବେଶୀ ଆଦୃତ ହେଉଛି ଏଥିରେ କୌଣସି ସନ୍ଦେହ ନାହିଁ ।

ସମ୍ବଲପୁରୀ ପଲ୍ଲୀ ସଙ୍ଗୀତ କହିଲେ ଯେ ଆଜିର ପ୍ରଶାସନିକ ସମ୍ବଲପୁର ଜିଲ୍ଲାର ପଲ୍ଲୀଗୀତ ତାହା ନୁହେଁ । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀର ବଳିୟାର ସିଂହ ଶାସିତ ଅଠର ଗଡ଼ଜାତ ସମ୍ବଳିତ ବିଶାଳ ସମ୍ବଲପୁର ବା ହୀରାଖଣ୍ଡ ସାମ୍ରାଜ୍ୟ ସମୟରୁ ଏହି ଅଞ୍ଚଳରେ ତତ୍କାଳୀନ ଓଡ଼ିଆ ଭାଷା ଓ ହିନ୍ଦୀ ଭାଷାର ସମ୍ମିଶ୍ରଣରେ ଏକ ନୂତନ ଧରଣର କଥିତ ଭାଷା ଗଢ଼ି ଆସୁଥିବା ବିଷୟ କବି ଗଙ୍ଗାଧର ମିଶ୍ରଙ୍କ 'କୋଶଲାନନ୍ଦ' କାବ୍ୟ, କବି ପ୍ରହ୍ଲାଦ ଦୁବେଙ୍କ 'ଜୟଚନ୍ଦ୍ରିକା' କାବ୍ୟ ତଥା 'ଚିକିତ୍ସାମଞ୍ଜରୀ' ପ୍ରଣୟିତା ରାଜବୈଦ୍ୟ ଗୋପୀନାଥ ଷଡ଼ଙ୍ଗୀଙ୍କ ରଚନାରୁ ଅନୁମିତ ହୁଏ । ଏହି ଅଠର ଗଡ଼ଜାତ ମଧ୍ୟରୁ, ସୁନ୍ଦରଗଡ଼, ବଲାଙ୍ଗୀର, କଳାହାଣ୍ଡି, ସୋନପୁର ବୌଦ, ରେଢ଼ାଖୋଲ, ବାମଣ୍ଡା, ବଣେଇ, ଆଠମଲ୍ଲିକ, ପାଲଲହଡ଼ା ପ୍ରଭୃତି ଓଡ଼ିଶା ଅନ୍ତର୍ଭୁକ୍ତ ଏବଂ ସୁରଗୁଜା, ରାଏଗଡ଼, ସାରଙ୍ଗଗଡ଼, ବସ୍ତର, ଫୁଲଝର, ବିନ୍ଦ୍ରା ନୂଆଗଡ଼, ଶକ୍ତି ପ୍ରଭୃତି ମଧ୍ୟପ୍ରଦେଶ ଅନ୍ତର୍ଗତ ଅଟେ । ଏହି ସମସ୍ତ ରାଜ୍ୟ ଏକଶାସନାଧୀନରେ ରହିଥିବା ସମୟରେ ଏ ସବୁର ଶିକ୍ଷା, ସଂସ୍କୃତି, ରୀତିନୀତି ଏବଂ ସର୍ବୋପରି ଏହାର କୃଷ୍ଟି ସମନ୍ୱୟ ଲାଭ କରି ପାରିଥିଲା । ଏଣୁ ଆଜିମଧ୍ୟ ଏସବୁ ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାର ପଲ୍ଲୀ ସଙ୍ଗୀତର ପ୍ରାଧାନ୍ୟ ଥିଲେ ମଧ୍ୟ ଏମାନଙ୍କ ମଧ୍ୟରେ ରଚନା ଶୈଳୀ, ଗାନ ପ୍ରଣାଳୀ ଓ ଛନ୍ଦ ପ୍ରଭୃତିରେ ଏକ ସମନ୍ୱୟ ବା ସାଦୃଶ୍ୟ ପରିଲକ୍ଷିତ ହୁଏ, ଯାହାକି ଅନ୍ୟାନ୍ୟ ସଙ୍ଗୀତ ଅପେକ୍ଷା ଅନେକାଂଶରେ ପୃଥକ୍ । ଏଣୁ ସ୍ଥୂଳତଃ ଏହିସବୁ ଅଞ୍ଚଳର ଗାଉଁଲିଗୀତ ସମ୍ବଲପୁରୀ ପଲ୍ଲୀ ସଙ୍ଗୀତରୂପେ ବିବେଚିତ । ଏହି ରାଜ୍ୟମାନଙ୍କ ମଧ୍ୟରୁ ଯେଉଁ ରାଜ୍ୟଗୁଡ଼ିକ ଆଜି ମଧ୍ୟପ୍ରଦେଶ ଅନ୍ତର୍ଭୁକ୍ତ ଅଛି ସେଠାରେ ହିନ୍ଦୀ ଓ ଓଡ଼ିଆ ସମିଶ୍ରଣରେ ଗଠିତ ଲରିଆ ବା ଛତିଶଗଡ଼ି ଭାଷା କଥିତ ହେଲେ ଧ୍ୟ ସମ୍ବଲପୁରୀ ଭାଷା ଅଧିକାଂଶ ଜାଣନ୍ତି ଓ ସମ୍ବଲପୁରୀ ଗୀତ ମଧ୍ୟ ଗାଆନ୍ତି । ନିକଟରେ ଭୋପାଲ ରେଡ଼ିଓ ଷ୍ଟେସନରୁ 'ସରଗୁଜାକେ ଲୋକ ଗୀତ' ବୋଲି ଗୋଟା

କେବେ ଗୀତ ଶୁଣିବାର ସୁଯୋଗ ମିଳିଥିଲା ସାହାଙ୍କ ଖାଣ୍ଟି ସମ୍ବଲପୁରୀ ପଲ୍ଲୀ ସଙ୍ଗୀତ । ଗୋଟିଏ ଗୀତର ପ୍ରଥମପଦ ହେଲା 'ବନ୍ଧେ ମାଡ଼ନେଲା ଝାଉଁ ଝୁଣ୍ଟବୋ ଦଦା' । ଏସବୁ ଗୀତର ପ୍ରତ୍ୟେକ ଶବ୍ଦ, ଅର୍ଥ ଏବଂ ସ୍ୱର ଯେ ସମ୍ବଲପୁରୀ ଏ କଥା ଶ୍ରୋତାମାନେ ହୃଦୟଙ୍ଗମ କରି ପାରିଥିଲେ । ଓଡ଼ିଶା ଅନ୍ତର୍ଭୁକ୍ତ ପ୍ରାକ୍-ସମ୍ବଲପୁର ଅଞ୍ଚଳରେ ଯେଉଁ କଥିତ ଭାଷା ପ୍ରଚଳିତ ଅଛି ତହିଁରେ ଓଡ଼ିଆ ଭାଷାର ପ୍ରାଧାନ୍ୟ ଥିଲେ ମଧ୍ୟ ତାର କ୍ରିୟାର ଉପଯୋଗ ଏବଂ ଶବ୍ଦର ଉଚ୍ଚାରଣରେ ହିନ୍ଦୀ ଭାଷାର ପ୍ରଭାବ ଯଥେଷ୍ଟ ପଡ଼ିଛି । ସମ୍ବଲପୁରୀ ପଲ୍ଲୀ ସଙ୍ଗୀତକୁ ଉପଭୋଗ କରିବାକୁ ହେଲେ ଏହିପରି ଭାବରେ ଗଠିତ ସମ୍ବଲପୁରୀ କଥିତ ଭାଷାକୁ ବୁଝିବାକୁ ହେବ ଏବଂ ତାର ଲାଳିତ୍ୟର କାରଣ ଖୋଜି ବାହାର କରିବାକୁ ହେବ, କାରଣ ସମ୍ବଲପୁରୀ ପଲ୍ଲୀ ସଙ୍ଗୀତ ସଙ୍ଗେ ସମ୍ବଲପୁରୀ କଥିତ ଭାଷା ଅଙ୍ଗାଙ୍ଗି ଭାବରେ ଜଡ଼ିତ ।

ଆଗେ ସମ୍ବଲପୁରୀ ପଲ୍ଲୀ ସଙ୍ଗୀତ କେବେ ରଚିତ ହୋଇ ପ୍ରକାଶିତ ହୋଇ ନ ଥିଲା । ଲୋକେ କେବଳ ଶୁଣି ଶୁଣି ଗାଉଥିଲେ ବା ଆଶୁ ରଚନା କରୁଥିଲେ । ଏ ରଚନାର ସାଧାରଣ ବିଷୟବସ୍ତୁ ହେଲା ପ୍ରକୃତି, ପ୍ରେମ, ରାଧାକୃଷ୍ଣ ଲୀଳା, ଜୀବନର ସୁଖ ଦୁଃଖ ଏବଂ ସ୍ଥଳବିଶେଷରେ ସାମାଜିକ ସମାଲୋଚନା ପ୍ରଭୃତି । ଗାଉଁଲି ଲୋକେ କିନ୍ତୁ ସହରମାନଙ୍କରେ ବା ସଭ୍ୟସମାଜ ଆଗରେ ଏସବୁ ଗୀତ ଗାଇବାକୁ ସାହସ କରୁ ନ ଥିଲେ । ସଞ୍ଚାର ଗାୟକମାନେ ସର୍ବପ୍ରଥମେ ଗାଁ ଗହଳରୁ କେବେ କେମିତି ଗୋଟିଏ ଗୋଟିଏ ପଲ୍ଲୀଗୀତ ଆଣି ନିଜ ନାଚ ମଝିରେ ମଝିରେ ପରିବେଷଣ କଲେ । ସଞ୍ଚାର କଣ ଟିକିଏ ବୁଝାଇ ଦେବା ଦରକାର । ଦାଶକାଠିଆରେ ଯେମିତି ଜଣେ ମୁଖ୍ୟଗାୟକ ଓ ଜଣେ ପାଲିଆ ଥାଆନ୍ତି ସଞ୍ଚାର ମଧ୍ୟ ସେମିତି ଜଣେ ମୁଖ୍ୟ ଗାୟକ ଓ ଜଣେ ପାଲିଆ ଦ୍ୱାରା ହୁଏ । ମୁଖ୍ୟ ଗାୟକ ନିଜେ ମୃଦଙ୍ଗ ବଜାନ୍ତି ଓ ପାଲିଆ ଝାଞ୍ଜ ବଜାନ୍ତି । ଏମାନେ ଓଡ଼ିଆ ଭାଷାରେ ପୌରାଣିକ ଆଖ୍ୟାୟିକାଗୁଡ଼ିକ ଗାୟନ କରନ୍ତି । ମଝିରେ ମଝିରେ ଗୁନ୍ଦ, ଚମ୍ପୁ, ଛଗଡ଼ମାଳି, ହାସ୍ୟରସ ମଧ୍ୟ ପରିବେଷଣ କରନ୍ତି । ଏଣୁ ସଭ୍ୟସମାଜରେ ପାଲା, ଦାଶକାଠିଆ ଭଳିଆ ଏମାନଙ୍କର ମଧ୍ୟ ବିଶେଷ ଆଦର ଥିଲା । ଗୁଣ୍ଡେର୍‌ପୁର୍‌ର ପ୍ରସିଦ୍ଧ ସଞ୍ଚାର ଗାୟକ ଗୋବିନ୍ଦ ବା ଖିଣ୍ଡାର ପ୍ରସିଦ୍ଧ ସଞ୍ଚାର ଗାୟକ ଭଞ୍ଜ ଯେତେବେଳେ ତାଙ୍କ ସଞ୍ଚାର ମଝିରେ ମଝିରେ 'ଏମାଁ ନାଇଁ କହବଗୋ ନାଇଁ କହବଗୋ, କଲା କାହ୍ନୁର ଗୁନର୍ କଥା' କିମ୍ବା "ଗୁଁଡ଼ାରେ ତମକେ ଛୁଁ ଦେଲେ ଯାଏସ ମରି' ଆଦି ସମ୍ବଲପୁରୀ ଗୀତ ପରିବେଷଣ କଲେ ସେତେବେଳେ ତାହା ବିଶେଷ ଆଦର ଲାଭ କଲା । କ୍ରମେ କ୍ରମେ କ୍ରମେ ଏ ଭଳିଆ ଗୀତ ସବୁ ସଂଗୃହୀତ ହୋଇ ପ୍ରକାଶିତ ହେବାକୁ ବସିଲା । ଅଚ୍ୟୁତାନନ୍ଦ ଦାସଙ୍କର 'ଝନ ଝନିଆ' ରହ୍‌ ରଛା ଖଦ୍ ଜବା ଡହକ ବକଲ୍, ଜେଠ୍ ମାସର ଝାଞ୍ଜି

ଝୀଉଁଥିଁ ସଭେଁ ଦେଖା କଲ୍ ଦଲ୍—ଜୀଏ ବାଗିର ଚଟ୍ କର୍‌ବା ଖେତ ବାଡ଼ି ସବୁଆଡ଼େ—ମୁନୁଷ୍‌ମାନେ ସଙ୍ଗ, ବୁଢ଼ା ଗୁଡ଼ି ବସ୍‌ବେ ଖବର ମାଡେ' ବିଶେଷ୍ ଆଦୃତ ହୋଇଥିଲା । ୧୯୪୦ରୁ ୧୯୫୬ ମଧ୍ୟରେ ସୋନ୍‌ପୁରରୁ ନାକଫୋଡ଼ି ପଣ୍ଡା ପ୍ରାଣ୍ଟଣା ଗଡ଼ରୁ ବିଧୁ-ଭୂଷଣ ଗୁରୁ, ବଲାଙ୍ଗୀରରୁ ସନ୍ନ୍ୟାସୀ ଦେବତା, ବରଗଡ଼ରୁ ଶଶିଭୂଷଣ ମିଶ୍ର, ସମ୍ବଲପୁରରୁ ଦୁର୍ଗାପ୍ରସାଦ ନାୟକ, ସତ୍ୟନାରାୟଣ ବହିଦାର ମୁରଲୀପ୍ରସାଦ ମିଶ୍ର ଆଦି ସମ୍ବଲପୁରୀ କଥିତ ଭାଷାରେ ଅନେକ ଗୀତ ରଚନା କଲେ । ସର୍ବୋପରି ଡକ୍ଟର ମାୟାଧର ମାନସିଂହଙ୍କ ସମ୍ପାଦନାରେ ପ୍ରକାଶିତ 'ଶଙ୍ଖ' ସାହିତ୍ୟ ପତ୍ରିକାରେ କେତେକ ସମ୍ବଲପୁରୀ ଗୀତ ପ୍ରକାଶିତ ହେବା ହେତୁ କ୍ରମେ କ୍ରମେ ସାହିତ୍ୟ ସମାଜର ମଧ୍ୟ ଏହା ଦୃଷ୍ଟି ଆକର୍ଷଣ କଲା । ଇତି ମଧ୍ୟରେ ଆଗରୁ ଲିଖିତ 'ସମ୍ବଲପୁରୀ ରାମାୟଣ'ର କିୟଦଂଶ ଏବଂ "ପର୍‌ଗୁସଙ୍ଗ" ନାମକ ଖଣ୍ଡକାବ୍ୟ ମଧ୍ୟ ପ୍ରକାଶିତ ହୋଇ ସାରିଥିଲା । ୧୯୫୦ରୁ ୧୯୬୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ମିତ୍ର ଭାଇମାନଙ୍କ ଦ୍ୱାରା ଲିଖିତ ଏବଂ ସମ୍ବଲପୁରର ଚନ୍ଦ୍ରୋଦୟ ପରିଷଦ ଦ୍ୱାରା ଅଭିନୀତ 'ପ୍ରଣୟ ବଲ୍ଲରୀ' 'ଅକବର ରାଏ' ଏବଂ "ଗୌନ୍ତିଆ ବାବୁ" ଏହି ୩ଟି ନାଟକରେ ସମ୍ବଲପୁରୀ କଥିତ ଭାଷା ଓ ସମ୍ବଲପୁରୀ ପଲ୍ଲୀ ସଙ୍ଗୀତର ଉପଯୋଗ ଏହାର ପ୍ରସାର ଦିଗରେ ବିଶେଷ ସହାୟକ ହୋଇଥିଲା । ଇତିମଧ୍ୟରେ ଅନେକ ସଙ୍ଗୀତଜ୍ଞ ଗାଁ ଗହଳକୁ ଯାଇ ପଲ୍ଲୀସ୍ୱର ଚର୍ଚ୍ଚା କରୁଥିଲେ ଓ ବିଭିନ୍ନ ଅଭିନୟ ଅନୁଷ୍ଠାନ ମାନଙ୍କରେ ପଲ୍ଲୀସ୍ୱର ସଂଯୋଜନା କରୁଥିଲେ । ଶୀତଳ ଷଷ୍ଠୀ ଯାତ୍ରା ସମୟକୁ ସମ୍ବଲପୁର ଆଡ଼େ ଆସୁଥିବା ଗଞ୍ଜାମ ଅଞ୍ଚଳର ଦାଣ୍ଡକାଠିଆ ଗାୟକ ଓ ଗୋଟିପୁଅ ନାଚ ଦଳ ମାନେ ସମ୍ବଲପୁରୀ ପଲ୍ଲୀ ସଙ୍ଗୀତ ଶୁଣି ଶିକ୍ଷାକରି ବିଭିନ୍ନ ଅଞ୍ଚଳରେ ତାହା ପ୍ରସାରିତ କରି ସୁନାମ ଅର୍ଜନ କଲେ । ଏହି ସମୟ ମଧ୍ୟରେ ଆକାଶବାଣୀ ମାଧ୍ୟମରେ ସମ୍ବଲପୁରୀ ପଲ୍ଲୀଗୀତ ପ୍ରସାରିତ ହେବା ଆଉ ଏକ ବିଶିଷ୍ଟ ପଦକ୍ଷେପ । ପ୍ରଥମେ ବରଗଡ଼ର ଶ୍ରୀ ଗୁଣନିଧି ଦାସଙ୍କ କଣ୍ଠରୁ 'କଏଗୋ କାନ୍ଦୁଛ ପୁରବନେ' ଏବଂ ସମ୍ବଲପୁର କଳାପରିଷଦ ଗ୍ରାମୀମାନଙ୍କ କଣ୍ଠରୁ 'ସାଇଫୁଲରେ କେଲକଦମ୍ ଜଳେ କଲ କାହ୍ନୁ ବସିକରି' ଏବଂ 'ଯମୁନାର୍ କୂଲେ କଲ କହ୍ନାଇ' ଆଦି କେତୋଟି ଗୀତ ଆକାଶବାଣୀ କେନ୍ଦ୍ର ଯୋଗେ ପ୍ରସାରିତ ହୋଇ ପରେ ବିବିଧ ଭାରତୀ କେନ୍ଦ୍ରରୁ ବହୁଦିନ ଧରି ପ୍ରସାରିତ ଓ ପ୍ରଶଂସିତ ହେଲା । ସାଧନା ଚଳଚ୍ଚିତ୍ରରେ ଗୋଟିଏ ସମ୍ବଲପୁରୀ ପଲ୍ଲୀଗୀତ 'ଝୁମ୍ ଝୁମ୍ ବାଜେ ମୋର ଝୁମ୍‌କା ପଇଁରି' ସନ୍ନିବେଶିତ ହୋଇଛି । ସମ୍ବଲପୁରୀ ବେଶଭୂଷା ହୋଇ ସମ୍ବଲପୁରୀ ନାଚର ଗନ୍ଧ ନ ଥିଲେ ବି ସମ୍ବଲପୁରୀ ପଲ୍ଲୀଗୀତ ଓ ସ୍ୱରକୁ ପ୍ରସାରିତ କରିବାରେ ଏହା ଯେ ଏକ ବଳିଷ୍ଠ ପଦକ୍ଷେପ ଏଥିରେ ସନ୍ଦେହ ନାହିଁ ।

ଏହିପରି ଭାବରେ ସମ୍ବଲପୁରୀ ପଲ୍ଲୀ ସଙ୍ଗୀତର ଆଦର କ୍ରମ ବର୍ଦ୍ଧିଷ୍ଣୁ ହୋଇ ଆସୁଥିବାବେଳେ ଆମର ଜାଣିବାର ଚେଷ୍ଟା କରିବା ଉଚିତ ଯେ ବିଭିନ୍ନ ପ୍ରକାର

ସମ୍ବଲପୁରୀ ପଲ୍ଲୀ-ସଙ୍ଗୀତ ଓ ପଲ୍ଲୀ ନୃତ୍ୟରେ ବେଶଭୂଷା, ବାଦ୍ୟଯନ୍ତ୍ର, ସ୍ୱର, ଛନ୍ଦ, ଯତି ଆଦିରେ କିଛି ସ୍ୱତନ୍ତ୍ର ମୌଳିକତା ବା ବିଶେଷତ୍ୱ ଅଛି ଯଦ୍ୱାରାକି ସମ୍ବଲପୁରୀ ପଲ୍ଲୀ ସଙ୍ଗୀତ ଆଜି ଏକ ବିଶିଷ୍ଟ ଧରଣର ପଲ୍ଲୀ ସଙ୍ଗୀତ ରୂପେ ସ୍ୱୀକୃତ ହେବାକୁ ବସିଲାଣି ।

ପ୍ରତ୍ୟେକ କଳାର ଉତ୍ପତ୍ତି ଯେପରି ଧର୍ମସମ୍ପର୍କୀୟ ବିଷୟରୁ ହୋଇ ଥିବାର ପ୍ରାମାଣିକ ତଥ୍ୟ ମିଳେ, ସମ୍ବଲପୁରୀ ପଲ୍ଲୀ ସଙ୍ଗୀତର ଉତ୍ପତ୍ତି ମଧ୍ୟ ଠିକ୍ ସେହିପରି ହୋଇଥିବାର ଅନୁମିତ ହୁଏ । 'କରମ୍‌ସାନି' ପୂଜାରୁ 'କରମା' ନାଚ ଏହାର ଏକ ଉଦାହରଣ । 'ଦଣ୍ଡ' ନାଚର ଉତ୍ପତ୍ତି ବିଷୟରେ ମଧ୍ୟ ଶୁଣିବାକୁ ମିଳେ ଯେ ବୌଦରେ ବୌଦ୍ଧ ଧର୍ମର ପ୍ରତିପତ୍ତି ବଢ଼ିଲବେଳେ ସୁବର୍ଣ୍ଣପୁର ବା ସୋନପୁରରେ ରାଜଧାନୀ କରିଥିବା ତତ୍‌କାଳୀନ ସୋମଗୁପ୍ତ ବଂଶୀୟ ଶୈବଧର୍ମାବଲମ୍ବୀ ରାଜାମାନେ ଶିବ ପୂଜା ଓ ଶକ୍ତି ପୂଜାର ମହାତ୍ମ୍ୟ ପ୍ରସାର କରିବା ସକାଶେ ଦଣ୍ଡ ନାଚକୁ ଉତ୍ସାହିତ କରିଥିଲେ । ଦଣ୍ଡନାଚରେ ଏବେ ମଧ୍ୟ ହେଉଥିବା ତାଣ୍ଡବ ଜାତୀୟ ନୃତ୍ୟ ଏହି ଉକ୍ତିର ସତ୍ୟତା ପ୍ରମାଣ କରେ । କୋଲ୍‌, କିଶାନ୍‌, ମୁଣ୍ଡା, ଓରାମ୍ ପ୍ରଭୃତି ପ୍ରାକ୍-ସମ୍ବଲପୁର ଅଞ୍ଚଳର ଆଦିମ ଅଧିବାସୀ, ବିଭିନ୍ନ ଐତିହାସିକ ଉତ୍‌ଥାନ ପତନ ଭିତର ଦେଇ ଆସିଲେ କୁଲ୍‌ତା, ଓମାଲ୍‌, ବିଂଝାଲ୍‌, ସହରା ଆଦି ଜାତି ଏବଂ ବ୍ରାହ୍ମଣ, କରଣ ଆଦି ଜାତି ରାଜାମାନଙ୍କ ଦ୍ୱାରା ବିଶେଷତଃ ପୁରୀ ଅଞ୍ଚଳରୁ ଆନୀତ ହୋଇଥିଲେ । ପ୍ରତ୍ୟେକ ଜାତି ନିଜ ନିଜର ପୂଜା, ବ୍ରତ, ଉପାସନା ଆଦି କୌଳିକ ପ୍ରଥା ରକ୍ଷା କରିବାକୁ ଚେଷ୍ଟା କରିଥିଲେ ମଧ୍ୟ କାଳକ୍ରମେ ଦେବ ଦେବୀ, ପର୍ବ ପର୍ବାଣୀ, ଭାଷା ସାହିତ୍ୟ, ଆଚାର ବ୍ୟବହାର ଆଦିରେ ଆଦିମ ପ୍ରଭାବ ସଙ୍ଗେ ଆର୍ଯ୍ୟ ପ୍ରଭାବର ଏକ ସୁନ୍ଦର ସମନ୍ୱୟ ଘଟିଛି ଏବଂ ପଲ୍ଲୀ ସଙ୍ଗୀତରେ ମଧ୍ୟ ସେହିପରି ଏକ ସମନ୍ୱୟ ଅନିବାର୍ଯ୍ୟ ହୋଇ ପଡ଼ିଛି । ଗୋଟିଏ ଉଦାହରଣ ଦିଆ ଯାଇପାରେ 'ରସର କେଲି' ଗୀତର ନାମ କରଣ ତଥା ଶବ୍ଦ ବିନ୍ୟାସ ଦୃଷ୍ଟିରୁ ଏହା ଓଡ଼ିଆ 'ରସକୁଲ୍ୟା' ରାଗରୁ ଉତ୍ପତ୍ତି ହୋଇଥିବାର ଅନୁମିତ ହୁଏ । କିନ୍ତୁ ଏହାର ଛନ୍ଦ ଓ ଯତି କ୍ରମରେ ମଧ୍ୟ ପ୍ରଦେଶର ମେଂକାଲ ସାବଂତାୟି ସ୍ୱରର ପ୍ରଭାବ ପାତ ହୋଇ ଥିବାରୁ ଏହା ରସକୁଲ୍ୟା ଅପେକ୍ଷା ସମ୍ପୂର୍ଣ୍ଣ ଭିନ୍ନ ହୋଇ ଯାଇଛି ଅଥଚ ଅଧିକ ସୁଶ୍ରାବ୍ୟ ମଧ୍ୟ ହୋଇଛି ।

ପଣ୍ଡିତ ନୀଳକଣ୍ଠ 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ'ରେ ଦାଣ୍ଡିବୃତ୍ତକୁ ମୁଖ୍ୟ ପଲ୍ଲୀବୃତ୍ତ ବୋଲି ଅଭିହିତ କରିଛନ୍ତି । ସଂବଲପୁର ଅଞ୍ଚଳରେ ଅବଶ୍ୟ ସମ୍ପର୍ଦାରେ ଗାୟନ ହେଉଥିବା କେତେକ ସ୍ୱରରେ ତଥା ହଲିଆ ଗୀତରେ ଦାଣ୍ଡି ବୃତ୍ତର ପ୍ରତିପତ୍ତି ଅଛି । କିନ୍ତୁ ରସର୍ କେଲି, ଡାଲ୍‌ଖାଇ, ରୁମ୍‌କୁଟ୍‌ମା, ବାଣ୍ଡିବୃତଲ, ମାଏଲ ଜଡ, ମଲୀଫୁଲକ ସାଇଫୁଲ, ଢିଣ୍ଡ୍‌, କର୍‌ମା, ଧୁମୁରା, ପତର ସହର ଆଦି ବିଭିନ୍ନ ପ୍ରକାର ସଂବଲପୁରୀ ପଲ୍ଲୀଗୀତ ଓ ନୃତ୍ୟରେ ଛନ୍ଦବିନ୍ୟାସ ଯେପରି ଧରଣର ହୋଇଛି ତାହା

ଅନ୍ୟାନ୍ୟ ପଲ୍ଲୀ ସଙ୍ଗୀତ ଅପେକ୍ଷା ଯଥେଷ୍ଟ ପୃଥକ୍ । ଅନ୍ୟାନ୍ୟ ପଲ୍ଲୀ ସଙ୍ଗୀତରେ ଭାଟିଆଲି, ଝୁମୈର୍ ପ୍ରଭୃତି ରାଗରେ ପାଦର ଶେଷ ଅକ୍ଷର ପରେ ସ୍ୱର ସାଧାରଣତଃ ପରିଲମ୍ବିତ ହୋଇଥାଏ । କିନ୍ତୁ ସମ୍ବଲପୁରୀ ପଲ୍ଲୀ ସଙ୍ଗୀତରେ ଶେଷାକ୍ଷରର ସ୍ୱର ସାଧାରଣତଃ ହଠାତ୍ ଛିଣ୍ଡିଯାଏ । କେବଳ ସେତିକି ନୁହେଁ ପାଦର ମଝିରେ ମଝିରେ ମଧ୍ୟ ଛନ୍ଦବିଶେଷରେ ହେତ୍ୱପରି ହୋଇଥାଏ । ଏହିପରି ଅନେକ ସ୍ଥଳରେ ହୋଇ ଯୁକ୍ତାକ୍ଷରର ଛନ୍ଦ ବା ଇଂରାଜୀ Sprung Rhythm ସଦୃଶ ଏହାର ଛନ୍ଦ ବନ୍ଧୁଧା ହଲ୍‌ଝୂଲୀ ଚରିକରେ । ସଜନୀ ଗୀତ ଗାଇବାର ଓଡ଼ିଆ ପ୍ରଣାଳୀ ଓ ସମ୍ବଲପୁରୀ ପ୍ରଣାଳୀରେ ଯେଉଁ ପାର୍ଥକ୍ୟ ପରିଲକ୍ଷିତ ହୁଏ ତହିଁରୁ ସମ୍ବଲପୁରୀ ପଲ୍ଲୀ ସଙ୍ଗୀତରେ ଛନ୍ଦର ବିଶେଷତ୍ୱ ପ୍ରତିପାଦିତ ହୁଏ । କର୍ମା ନାଚରେ ମଧ୍ୟ ମଝିରେ ମଝିରେ ଓଡ଼ିଆ ଗୃହ 'ଅରେ ବାବୁ ଶ୍ୟାମଘନ' କିମ୍ବା 'ହଠ ନାଗି ପାହିଲା ଏଥର ହେ ବଂଶୀଧର' ଯେପରି ଭାବରେ ଗାନ କରନ୍ତି ତହିଁରୁ ସମ୍ବଲପୁରୀ ପଲ୍ଲୀ ଗୀତରେ ଛନ୍ଦର ପାର୍ଥକ୍ୟ ପରିଲକ୍ଷିତ ହୁଏ । ଆଉ ଗୋଟିଏ ଉଦାହରଣ—ଓଡ଼ିଶୀ ଗୀତରେ ଯେପରି ପଡ଼ିଥାଏ, ସମ୍ବଲପୁରୀ ପଲ୍ଲୀ ଗୀତରେ ମଧ୍ୟ ଏକ ଲମ୍ବ ପାଦ ପରେ ଗ୍ରେଟ୍ ଗ୍ରେଟ୍ ଅନେକ ପଂକ୍ତି ପୁକ୍ତିଭୁକ୍ତ ହୋଇଥାଏ ଏବଂ ଶେଷରେ ପୁଣି ଏକ ଲମ୍ବ ପାଦ ଦେଇ ଘୋଷାକୁ ଗୀତ ଫେରି ଆସେ; କିନ୍ତୁ ଓଡ଼ିଶୀ ପଦ୍ଧତି ଓ ଏତାଦୃଶ ପଲ୍ଲୀ ପଦ୍ଧତି ମଧ୍ୟରେ ପାର୍ଥକ୍ୟ ଅନେକ । ଅବଶ୍ୟ ଓଡ଼ିଶୀର ପ୍ରଭାବ କିୟଦଂଶରେ ଏ ସବୁରେ ପଡ଼ିଛି—ଏକଥା ଅସ୍ୱୀକାର କରି ହେବନାହିଁ; କିନ୍ତୁ ସ୍ୱର ସମ୍ପର୍କରେ ସମ୍ବଲପୁରୀ ପଲ୍ଲୀ ସଙ୍ଗୀତରେ କେତେକ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ ଯାହାକି ଆମ୍ଭମାନଙ୍କର ବିଶେଷ ପ୍ରଣିଧାନ ଯୋଗ୍ୟ । ଗୋଟିଏ ଉଦାହରଣ ଦିଆଯାଇପାରେ । ରସର୍‌କେଲି ଗୀତରେ 'ରସର୍ କେଲିରେ' ଏ ଶେଷ 'ରେ' ଅକ୍ଷରଟି ପ୍ରଚଳିତ 'ପା' ବା ପଞ୍ଚମ ସ୍ୱର ଠାରୁ ଟିକିଏ ଉଚ୍ଚ ଅଥଚ 'ଧା' କୋମଳଠାରୁ ନିମ୍ନରେ ରହେ । ଏଣୁ ଏହା ହାର୍‌ମୋନିୟମ୍ ବା ଅନ୍ୟସ୍ୱର ଯନ୍ତ୍ର ସଙ୍ଗେ ମିଳେ ନାହିଁ । ଫଳରେ ଉକ୍ତ 'ରେ' ଟି ବେସୁରା ଗାଉଥିବା ଭଳିଆ ଜଣାପଡ଼େ ଏବଂ ସ୍ୱରଯନ୍ତ୍ର ସଙ୍ଗେ ଗାଇଲେ ଶ୍ରୁତିକଟୁ ଲାଗେ । କିନ୍ତୁ ଆମେ ସଙ୍ଗୀତର ଇତିହାସ ଭିତରକୁ ଗଲେ ଜଣାପଡ଼େ ଯେ ୨୨ଟି ଶ୍ରୁତି ମଧ୍ୟରୁ ୧୨ଟି ସ୍ୱରକୁ ପ୍ରକୃତ ସ୍ୱର ବୋଲି ଧରି ନିଆଯାଇଛି । ଆଗେ ଯାହା ସବୁ ଶୁଦ୍ଧ ସ୍ୱରରୂପେ ପୁରୁଣା 'କାଫି'ରେ ପରିଗଣିତ ହେଉଥିଲା ପରେ ସେଥିରେ ପରିବର୍ତ୍ତନ ହୋଇଯାଇଛି । ଏଣୁ ରସରକେଲି ଗୀତରେ ପଞ୍ଚମ ସ୍ଥାନରେ ବ୍ୟବହୃତ ହେଉଥିବା ଏହି ସ୍ୱର ସେହି ପୂର୍ବର ଶୁଦ୍ଧ ସ୍ୱର କି ? ଏ ବିଷୟ ଅବଶ୍ୟ ବିଶେଷ ଗବେଷଣା ଦରକାର କିନ୍ତୁ ଏତିକି କହିଲେ ଯଥେଷ୍ଟ ହେବ ଯେ ଏହି 'ରେ' ଟିକୁ ନିଜ ସ୍ଥାନରୁ ପରିବର୍ତ୍ତନ କରି ପ୍ରଚଳିତ ପଞ୍ଚମ ସ୍ଥାନରେ ରଖିଦେଲେ ରସର କେଲି ଗୀତ ତାର ସମସ୍ତ ଆକର୍ଷଣ ହରାଇ ଶ୍ରୁତି

କଷ୍ଟ ହୋଇଯାଏ । 'ଧା' କୋମଳ ଏବଂ 'ନି' କୋମଳର ପ୍ରାଧାନ୍ୟ ଉପର କେନ୍ଦ୍ର ଗୀତର ଅଛି ଗୋଟିଏ ବିଶେଷତ୍ୱ । ଏତଦ୍ୱ୍ୟତୀତ ପ୍ରତ୍ୟେକ ସମ୍ବଲପୁରୀ ପଲ୍ଲୀ ସ୍ୱରର ବିଶେଷତ୍ୱ ଜାଣିବାକୁ ହେଲେ ବିଶେଷ ଅନୁଶୀଳନ ଓ ଗବେଷଣା ଆବଶ୍ୟକ । ଆଉ ଗୋଟିଏ କଥା, ସମ୍ବଲପୁରୀ ପଲ୍ଲୀ ଗୀତରେ ସ୍ୱର ସବୁ କେବଳ ଆନନ୍ଦ ସୂଚକ ବୋଲି ଯେଉଁ ସାଧାରଣ ଧାରଣା ଅଛି ତାହା ଭ୍ରମାତ୍ମକ ଅଟେ । ତେବେ ଦୁଃଖ ସୂଚକ ସ୍ୱର-ଗୁଡ଼ିକର ସଂଖ୍ୟା କମ୍ ଏବଂ ପ୍ରାୟ ବେଶୀ ଶୁଣିବାକୁ ମିଳେ ନାହିଁ ।

ବାଦ୍ୟଯନ୍ତ୍ର ସମ୍ପର୍କରେ ମଧ୍ୟ କେତେକ ବିଶେଷତ୍ୱ ପରିଲକ୍ଷିତ ହୁଏ । ସମ୍ବଲପୁରୀ ପଲ୍ଲୀ ସଙ୍ଗୀତରେ ସ୍ୱର ଯନ୍ତ୍ର ଅପେକ୍ଷା ବାଦ୍ୟ ଯନ୍ତ୍ରର ପ୍ରାଧାନ୍ୟ ବେଶି । ଉଦାରାସ୍ୱର ବ୍ୟଞ୍ଜକ ଢୋଲର ବାମପଟ, ମୁଦାରା ସ୍ୱର ବ୍ୟଞ୍ଜକ ଡାହାଣ ପଟ, ଏବଂ ତାରାସ୍ୱର ବ୍ୟଞ୍ଜକ ଟିମିକି ଏ ସବୁର ଐକ୍ୟ ତାନକ ବାଦନ ହୋଇଥାଏ ତାଳଖାଇ ଆଦି ନାଚ ସଙ୍ଗେ—ଆଉ ଏଥିରୁ ଗୋଟିଏ ବାଦ୍ ଦେଲେ ଗୀତ ଓ ନାଚ ତାର ମାଧୁର୍ଯ୍ୟ ହରାଏ । ସ୍ୱର ଯନ୍ତ୍ର ମହୁରି ବା କାହାଳୀ ଗୀତ ଗାଇବା ସଙ୍ଗେ ପ୍ରାୟ ବାଜେନା । ଗୀତର ପଦ ଶେଷରେ ନାଚ ସକାଶେ ବାଦ୍ୟ ଯନ୍ତ୍ର ସଙ୍ଗେ ଐକ୍ୟତାନକ ବାଦନରେ ମୁହୁରି (ବା ମହୁରି) ବିଶେଷ ସହଯୋଗ କରିଥାଏ । ଅତଏବ ଗୀତ ଗାନ କଲାବେଳେ ଢୋଲ ଧୀରେ ଧୀରେ କେବଳ ଛନ୍ଦଟା ଦେଖାଇ ଦେଇଥାଏ । ଏଇ ଢୋଲର ଆକାର ପ୍ରକାର ଓ ସୁର ନୃତ୍ୟ ବିଶେଷରେ ବିଭିନ୍ନ ପ୍ରକାରର ହୋଇଥାଏ । ଦଣ୍ଡ ନାଚର ଢୋଲ୍ ଏବଂ ତାଲ୍‌ଖାଇ ନାଚର ଢୋଲରେ ଯଥେଷ୍ଟ ପାର୍ଥକ୍ୟ ପରିଲକ୍ଷିତ ହୁଏ । କରମା ନାଚରେ ମାଦଲ ଓ ଝାଞ୍ଜ ବ୍ୟବହୃତ ହୁଏ ଏବଂ ଘୁମ୍ରା ଆଦି ନାଚରେ ସ୍ୱତନ୍ତ୍ର ବାଦ୍ୟ ଯନ୍ତ୍ର ବ୍ୟବହୃତ ହୁଏ ।

ଆଜିକାଲି ସମ୍ବଲପୁରୀ ପଲ୍ଲୀ ସଙ୍ଗୀତ ନାମରେ କେତେକ ପଲ୍ଲୀ ସ୍ୱର ଗୀତ ମଧ୍ୟ ପରିବେଷଣ ହୋଇଯାଇଛି । ସୁଶ୍ରାବ୍ୟ ହେବ ବୋଲି କହି କେତେକ ଗୀତ ସଙ୍ଗେ ମେଣ୍ଡୋଲିନ୍, ତାର ସନାଇ ପ୍ରଭୃତି ବାଦନ କରାଯାଉଛି । ଏହା କେତେଦୂର ସଂଗତ ତାହା ସବିଶେଷ ବିଚାର ଯୋଗ୍ୟ । ସମ୍ବଲପୁରୀ ପଲ୍ଲୀ ସଙ୍ଗୀତ ନାମରେ ଯେତେବେଳେ ଗୋଟିଏ ସ୍ୱତନ୍ତ୍ର ଶୈଳୀ ଗଢ଼ି ଉଠିଛି, ସବୁ ଯେତେଦୂର ହୋଇପାରେ ମୌଳିକ ରଖିବା ମୋର ମତ । ଅବଶ୍ୟ ମାର୍ଜିତ ରୁଚିର ଅନୁକୂଳ କରିବା ସକାଶେ ବା ଆହୁରି ଶ୍ରୁତି ମଧୁର କରିବା ସକାଶେ କେତେକ ପରୀକ୍ଷା କରାଯାଇ ପାରେ—କିନ୍ତୁ ସେ ସବୁ ସ୍ଥଳେ ଏହାକୁ ସମ୍ବଲପୁରୀ ପଲ୍ଲୀ ସଙ୍ଗୀତ ନ କହି ସମ୍ବଲପୁରୀ ପଲ୍ଲୀ ସ୍ୱର ଗୀତ ରୂପେ ଅଭିହିତ କରିବା ଉଚିତ ହେବ । ( ଆକାଶବାଣୀ ସୌଜନ୍ୟରୁ ପ୍ରାପ୍ତ )

—※—

# ଆଦିବାସୀ ପିଲାଙ୍କ ଶିକ୍ଷାର ମୂଳକଥା

ଶ୍ରୀ ଚିନ୍ତାମଣି ମିଶ୍ର

ଆଦିବାସୀମାନେ ଯେ ଏ ଦେଶର ଆଦି ବାସୀ, ସେ ବିଷୟରେ ପଣ୍ଡିତମାନେ ଏକମତ ନୁହନ୍ତି ବୋଲି ମୁଁ ଜାଣେ । ଆଜିକାଲି ଲୋକଙ୍କୁ ଶୋଷକ ଓ ଶୋଷିତ ଏହି ଦୁଇ ଶ୍ରେଣୀରେ ବିଭକ୍ତ କରିଦେବାର ଯେଉଁ ସହଜିଆ ରୀତି ବାହାରିଛି, ତାକୁ ଧରି ଅନେକ ଅତୀତକୁ ଆବିଷ୍କାର କରି କହନ୍ତି—ଶୋଷକର ଦୌରାତ୍ମ୍ୟରେ ଠେଲିହୋଇ ଏମାନେ ଦେଶର ବନ-ଜଙ୍ଗଲରେ ଯାଇ ବାସ କରିବାକୁ ବାଧ୍ୟ ହୋଇଥିଲେ । ରାମାୟଣ ମହାଭାରତରେ ଗିରିଜନମାନଙ୍କର ଯେଉଁ ବର୍ଣ୍ଣନା ଅଛି, ତାହା ଏ ତତ୍ତ୍ୱକୁ ପ୍ରମାଣ କରୁଛି କି ଅପ୍ରମାଣ କରୁଛି, ସେ ବିଷୟରେ ବି ସନ୍ଦେହ ହୁଏ । ଅତୀତ ବିଷୟରେ ଗୁଡ଼ାଏ ଧାରଣା ହୋଇ କାଳର ପ୍ରତି ଫ୍ରେମରେ କସରତ୍ କରିବା ଯେଉଁମାନଙ୍କର ବିଳାସ ସେମାନଙ୍କୁ ନିଜ କାରସାଦିରେ ସନ୍ତୋଷ ଲାଭ କରିବାକୁ ଛାଡ଼ିଦେଇ ଆଧୁନିକ ସମାଜ ବିଜ୍ଞାନୀ କେବଳ ଦେଖେ ଦେଶର ଗୁଡ଼ାଏ ଲୋକ ବଣଜଙ୍ଗଲର ଅନ୍ତରାଳରେ ଅତୀତକୁ ଧରି ପଡ଼ିଛନ୍ତି ଏବଂ ଆଜି ଗୁଡ଼ାଏ ଲୋକ ଆଧୁନିକ ସଭ୍ୟତାର ଆସ୍ୱାଦ ପାଇଛନ୍ତି । ସ୍ୱତଃ ମନେ ହେବାର କଥା, ଆଧୁନିକତାହିଁ କାମ୍ୟ । ଓଡ଼ିଶା ସରକାର ଆଦିବାସୀଙ୍କ ଉନ୍ନତି ପାଇଁ ଯେଉଁ ଯୋଜନାମାନ କରିଥିଲେ ତାହାର ମୂଳରେ ଏହି ମନସ୍ତତ୍ତ୍ୱ ଥିଲାବୋଲି କହିବା ବାହୁଲ୍ୟ ମାତ୍ର ।

ଆଦିବାସୀଙ୍କ ଉନ୍ନୟନ ଯୋଜନାର ମୂଳ ପିଣ୍ଡ ଥିଲା ଆଶ୍ରମ ସ୍କୁଲ୍; ଆଜି ମଧ୍ୟ ତାହାହିଁ ଅଛି ବୋଲି କାଗଜପତ୍ରରୁ ଜଣା ଯାଉଛି ।

କଳ୍ପନା କରାଯାଇଥିଲା, ଆଶ୍ରମସ୍କୁଲମାନଙ୍କର ଉତ୍ତୀର୍ଣ୍ଣ ଛାତ୍ର-ଛାତ୍ରୀମାନେ ଆଦିବାସୀ ଅଞ୍ଚଳରେ ଗୋଟିଏ ନୂଆ ଭାବ ଓ ନୂଆ ମାନସର ପ୍ରସାର କରିବେ । ଏ କଳ୍ପନା କେତେଦୂର କାର୍ଯ୍ୟରେ ହୋଇଛି ତାହାର ଯଥାଯଥ ପରୀକ୍ଷା ଏ ପର୍ଯ୍ୟନ୍ତ ହୋଇଥିବାର ମନେ ହେଉନାହିଁ ।

ଯେଉଁମାନେ ଆଦିବାସୀ କଲ୍ୟାଣର ଯୋଜନା ପ୍ରଣୟନ କରିଥିଲେ ଓ ଯାହାଙ୍କ ଉପରେ ଏ ଯୋଜନା କାର୍ଯ୍ୟକାରୀ କରିବାର ଦାୟିତ୍ୱ ଥିଲା, ସେମାନେ ସବୁବେଳେ ସଚେତ ଥିଲେ ଯେ ଆଧୁନିକ ସଭ୍ୟତାର ସମସ୍ତ ଉପାଦାନ , ସମସ୍ତଙ୍କର—ବିଶେଷ କରି ସଭ୍ୟତାର ନୂତନ ଆଲୋକ ଯେଉଁମାନଙ୍କ ଉପରେ ପକାଇବାକୁ ଯାଉଥାଇଁ ସେମାନଙ୍କର—ଉପକାରର ହେବନାହିଁ; ପୁଣି, ଆଜି ଯାହା ଉପକାରୀ ଜଣାପାଉଛି ତାହା ଆଉ ପୁରୁଷକ ପରେ ଘୋର ଅପକାରୀ ହୋଇପାରେ । ସେହିପରି ଗୋଟିଏ ବିଷୟ ଆଧୁନିକ ଶିକ୍ଷା । ଏହା ଯେଉଁମାନେ ପାଉଛନ୍ତି ସେମାନେ ଅତ୍ମ ସର୍ବସ୍ୱ ହୋଇ ଯାଉଛନ୍ତି ଏବଂ ଶିକ୍ଷା ପାଇବା ପରେ ନିଜ ସ୍ୱାର୍ଥରେ ଏତେ ମାତି ଯାଉଛନ୍ତି ଯେ ନିଜ ଗୋଷ୍ଠୀ ତ ଅଲଗା କଥା, ନିଜର ବାପ ମା ଓ ଭାଇ ଭଉଣୀଙ୍କ ପ୍ରତି ମଧ୍ୟ ବିମୁଖ ହୋଇ ପଡୁଛନ୍ତି । ଦୃଷ୍ଟାନ୍ତତଃ, ଆଧୁନିକ ଶିକ୍ଷିତ, ଏଭଳି ଶ୍ରମବିମୁଖ ହୋଇ ପଡୁଛନ୍ତି ଯେ ମାଇନର୍ କ୍ଲାସରୁ ଉତ୍ତୀର୍ଣ୍ଣ ବାଳକବାଳିକା ପିତାମାତାଙ୍କ କୌଳିକ ବୃତ୍ତିରେ ଭାଗ ନେବାକୁ ଇଚ୍ଛା କରୁ ନାହାନ୍ତି । ସମତଳ ଅଞ୍ଚଳର ଆଧୁନିକ ଶିକ୍ଷା ସମାଜର ଯେଉଁ ବିଭ୍ରାଟ ଆରମ୍ଭ କରିଛି ସେ ପ୍ରତି ଜାଗ୍ରତ ରହି ଆଶ୍ରମ-ସ୍କୁଲର କାର୍ଯ୍ୟକ୍ରମ ଓ ଶିକ୍ଷା ପ୍ରଣାଳୀର ପ୍ରୟୋଗ ହୋଇଥିଲା ।

ସ୍କୁଲଗୁଡ଼ିକ ପ୍ରଥମତଃ ହୋଇଥିଲା ଆଶ୍ରମ ବା ଆବାସିକ ସ୍କୁଲ । ପ୍ରତି ସ୍କୁଲରେ ଏକାଧିକ ଆଦିବାସୀ ଗୋଷ୍ଠୀର ପିଲାମାନେ ଏକାଠି ରହିବା ଦ୍ୱାରା ସେମାନଙ୍କ ଭିତରେ ଥିବା ଚାଲିଚଳଣ ଓ ଖାଦ୍ୟପେୟର ବିଭେଦ ମାଜହୋଇ ଯିବ ଏବଂ ସେମାନେ ଗୋଟିଏ ଗୋଷ୍ଠୀ ବୋଲି ନିଜକୁ ଧାରଣା କରିବେ ବୋଲି କଳ୍ପନା କରା ହୋଇଥିଲା । ପ୍ରତିବର୍ଷ ଆଦିବାସୀ ପ୍ରଦର୍ଶନୀ ପଡ଼ିଆରେ ସମସ୍ତେ ଏକାଠି ହୋଇ ୭।୮ ଦିନ ରହିବା

ଫଳରେ ସେମାନଙ୍କ ଏକତା ସୃଷ୍ଟି ହେବ ବୋଲି ଆରମ୍ଭରୁ ପ୍ରତର୍ଶନାର ଆରମ୍ଭ ହୋଇଥିଲା । ଏହାଦ୍ୱାରା ଆଦ୍ଧର ଗୋଟିଏ ନୂଆ ଉପସ୍ଥିତ ସୃଷ୍ଟି ମିଳିଥିଲା । ଆଦିବାସୀ ପିଲାମାନେ ସେମାନଙ୍କ ହସ୍ତକର୍ମ, ନୃତ୍ୟଗୀତାଦି ଓ ସଙ୍ଗୀତର ସେମାନଙ୍କ ଶୃଙ୍ଖଳା ଓ ସଂଯମ ଦ୍ୱାରା ହଜାର ହଜାର ଆଧୁନିକ ଲୋକଙ୍କ ମନପଟରେ ଯେଉଁ ମନ୍ତ୍ରମୁଗ୍ଧ କରି ରଖିବା ଫଳରେ ସେମାନଙ୍କର ଯେଉଁ ମନସ୍ତାତ୍ତ୍ୱିକ ଉତ୍କର୍ଷ ହୋଇଥିଲା, ତାହା ସେମାନଙ୍କର ବର୍ଷତମାମର କାର୍ଯ୍ୟ ପଦ୍ଧତିରେ ପ୍ରତିଫଳିତ ହେବାକୁ ଲାଗିଲା ।

ଦ୍ୱିତୀୟତଃ, ପ୍ରତି ଆଶ୍ରମରେ ବର୍ଷର ଗୋଟିଏ ବା ଦୁଇଟି ଦିନ ଅଭିଭାବକ ଦିବସ ରୂପେ ପାଳିତ ହେଲା । ଏ ଦିନମାନଙ୍କରେ ପ୍ରତି ପିଲାର ବାପ ମା ଓ ଭାଇ ବନ୍ଧୁଙ୍କୁ ଆଶ୍ରମରେ ଅତିଥିରୂପେ ସମ୍ବର୍ଦ୍ଧନା କରିବା ଫଳରେ ଆଧୁନିକ ସ୍କୁଲମାନଙ୍କରେ ପିତାମାତାଙ୍କ ପ୍ରତି ଯେଉଁ ଅବଜ୍ଞାର ସୂତ୍ରପାତ ହୁଏ, ତାହାର ନିବାରଣ ସମ୍ଭବ ହୋଇଥିଲା ।

ସବୁଠାରୁ ବଡ଼ ପରିବର୍ତ୍ତନ ପ୍ରବର୍ତ୍ତିତ ହୋଇଥିଲା ଦୈନିକ କାର୍ଯ୍ୟସୂଚୀରେ । ସାଧାରଣତଃ ପୁସ୍ତକ ଅଧ୍ୟୟନରେ ଇତର ସ୍କୁଲ-ମାନଙ୍କରେ ପୂରା ନଜର ଦିଆଯାଏ । ଛାତ୍ରାବାସର କୋଠରୀଗୁଡ଼ିକର ପରିଷ୍କାର ପରିଚ୍ଛନ୍ନତାର ଦାୟିତ୍ୱ ମଧ୍ୟ ଛାତ୍ରମାନଙ୍କ ଉପରେ ରହେନାହିଁ । ଆଶ୍ରମମାନଙ୍କରେ ପାଠ ଉପରେ ଯେତିକି ଦୃଷ୍ଟି ଦିଆହେଲା, ସେତିକି ବା ତହିଁରୁ ଟିକିଏ ଅଧିକ ଦୃଷ୍ଟି ରହିଲା, କୃଷି, ଗୋପାଳନ, ବଢ଼େଇ, କମାର ଓ ତନ୍ତୀର କାମରେ । ପରୀକ୍ଷାରେ ଦେଖାଗଲା, ଏ କାର୍ଯ୍ୟକ୍ରମ ଦ୍ୱାରା ଛାତ୍ରମାନଙ୍କର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟର ଯେ ଖାଲି ପୋଷଣ ହେଲା ତାହା ନୁହେଁ, ବରଂ ପାଠରେ ମଧ୍ୟ ସେମାନେ ସାଧାରଣତଃ ଇତର ସ୍କୁଲର ଛାତ୍ରମାନଙ୍କ ଠାରୁ ଭଲ କଲେ । ନିଜର ଖାଦ୍ୟପେୟର ବହୁ ଭାଗ ନିଜର ପରିଶ୍ରମରେ ଉତ୍ପାଦନ କରିବା ଫଳରେ ସେମାନଙ୍କ ଚରିତ୍ରରେ ସ୍ୱାବଲମ୍ବନଶୀଳତାର ଯେଉଁ ମୂଳଦୁଆ ପଡ଼ିଥିଲା, ତାହା ସେମାନଙ୍କୁ ଭବିଷ୍ୟତ ଜୀବନରେ ସହାୟ ହେବ ବୋଲି କଳ୍ପନା କରାଯାଇଥିଲା । ଆଜି ସରକାର ଯୋଜନା କରୁଛନ୍ତି, ଶିକ୍ଷିତ ବେକାରମାନଙ୍କ କର୍ମସଂସ୍ଥାନ ପାଇଁ ସେମାନଙ୍କୁ ଋଣ ଦେଇ ଓ ଜମିଦେଇ ଥଇଥାନ କରାଯିବ । ସେଇ

ଆଶାରେ ସେଣ୍ଟିକବେନ୍ତୁ ପିଲାଙ୍କୁ ତାଲିମ କରାଯାଉଥିଲା । ଉପରୁ ଥିଲା ଆଗରୁ ତାଲିମ ନିକର ଆଧୁନିକ ସ୍କୁଲମାନଙ୍କର ଉତ୍ତୀର୍ଣ୍ଣ ପିଲାଙ୍କ ହାତରେ ତ୍ରିଶ ଟଙ୍କା ବଢ଼ାଇ ଦେଲେ ତାହା ଅସଲ କାମରେ ଲାଗିବା ପୂର୍ବରୁ ବାନ୍ଧ ହୋଇଯିବ ।

ମୋଟ ଉପରେ ଆଦିବାସୀ ଉନ୍ନୟନର ମୂଳଦୁଆ ଆଶ୍ରମ ସ୍କୁଲର ଏଇ ତିନୋଟି ଥିଲା ପ୍ରଧାନ ଲକ୍ଷଣ । ଅନ୍ୟାନ୍ୟ ବିଷୟରେ ଏଠାରେ ଲେଖିବା ନିଷ୍ପ୍ରୟୋଜନ । ପ୍ରଥମାବସ୍ଥାରେ ଏ କାର୍ଯ୍ୟକ୍ରମ ଚଳାଇବାରେ ବହୁ ବାଧା ପଡ଼ୁଥିଲା । କିଏ କହିଲା, 'ଆଶ୍ରମ' ନାଶ ସାଂପ୍ରଦାୟିକତା ଦ୍ୟୋତକ', ଆଉ ଦଳେ କହିଲେ, ନାମ ଯେତେବେଳେ ଆଶ୍ରମ ରହୁଛି, ସେଠାରେ ମାଂସ ନିଷିଦ୍ଧ ହେବା ଉଚିତ । ଶିକ୍ଷାଧିକାରୀମାନେ କହିଲେ, ହସ୍ତକର୍ମ ଉପରେ ଜୋର ଦେବାଦ୍ୱାରା ପିଲାମାନଙ୍କ ମାନସିକ ବିକାଶ ବାଧାପ୍ରାପ୍ତ ହେବ । ଆଦିବାସୀ ଲୋକପ୍ରତିନିଧିମାନେ ଦାବି କଲେ ଅନ୍ୟ ସଂପ୍ରଦାୟର ଛାତ୍ରମାନେ କୃଷି ଗୋପାଳନାଦି ନ କରିବା ସ୍ଥଳେ, ଆଦିବାସୀ ପିଲାଙ୍କୁ ଏଥିରେ ଖଟାଇବା ଦ୍ୱାରା ପାର୍ଥାନ୍ତର ହେଉଛି, ଏସବୁ ଆପତ୍ତି ଅଭିଯୋଗ ଭିତରେ ସେ କାଳର ଆଶ୍ରମ ସ୍କୁଲ ଗଢ଼ି ଉଠିଥିଲା । ସେଗୁଡ଼ିକର ଅବସ୍ଥା ବର୍ତ୍ତମାନ କ'ଣ ହୋଇଛି ସେ ବିଷୟରେ ସମ୍ୟକ ଜ୍ଞାନ ଆମର ଏବେ ନାହିଁ । କିନ୍ତୁ ଆଶା ହେଉଛି, ବର୍ତ୍ତମାନ ସରକାର ବାସ୍ତବବାଦୀ ମନୋବୃତ୍ତିରେ ଆଶ୍ରମ ବିଦ୍ୟାଳୟର ମୌଳିକ କାର୍ଯ୍ୟସୂଚୀ ପ୍ରତି ଅଧିକ ଦୃଷ୍ଟି ପଡ଼ିବ ।



# ଆଦିବାସୀ ସମାଜ ଓ ସଂସ୍କୃତି— ନୃତତ୍ତ୍ୱ ଦୃଷ୍ଟିକୋଣରୁ

ଡକ୍ଟର ଲକ୍ଷ୍ମଣ କୁମାର ମହାପାତ୍ର
ବାଣୀବିହାର

ଅଫ୍ରିକା, ଆମେରିକା ଓ ଅଷ୍ଟ୍ରେଲିଆ ମହାଦେଶମାନଙ୍କରେ 'ଆଦିବାସୀ' କହିଲେ, ୟୁରୋପୀୟମାନଙ୍କ ଆସିବା ପୂର୍ବରୁ ସେ ଅଞ୍ଚଳରେ ଯେଉଁମାନେ ବସବାସ କରି ରହିଥିଲେ, ସେହିମାନଙ୍କୁହିଁ ବୁଝାଯାଏ । କିନ୍ତୁ ଭାରତରେ 'ଆଦିବାସୀ' ଶବ୍ଦ ସେହି ଅର୍ଥରେ ପ୍ରୟୋଗ କରାଯାଇ ନ ଥାଏ । ଭାରତର ଆଦିବାସୀମାନେ ହେଲେ ଆର୍ଯ୍ୟ ଓ ଦ୍ରାବିଡ଼ ସଭ୍ୟତାର ବାହାରେ ରହିଥିବା 'ଜନଜାତି' ସମୂହ । ପର୍ବତ ଶିଖରରେ ବା ଅରଣ୍ୟ ପ୍ରାନ୍ତରେ ରହିଥିଲେ ମଧ୍ୟ ବିଭିନ୍ନ ଭାବରେ ସେମାନେ ସଭ୍ୟତା ସହିତ ବହୁକାଳ ହେଲା ଜଡ଼ିତ ହୋଇ ଆସିଛନ୍ତି । ଐତିହାସିକ ଦୃଷ୍ଟି-କୋଣରୁ ବିଚାର କଲେ ଏବଂ ବିଭିନ୍ନ ଜନଜାତିଙ୍କ ପରଂପରା ଓ ଭ୍ରମଣଗାଥା ଅନୁଧ୍ୟାନ କଲେ, ସମସ୍ତ ଆଦିବାସୀ ଜନଜାତି ଯେ ଦ୍ରାବିଡ଼ ବା ଆର୍ଯ୍ୟ ସଭ୍ୟତାର ଉତ୍ଥାନ ପୂର୍ବରୁ ଭାରତରେ ଥିଲେ ତାହା ପ୍ରତିପାଦିତ ହୁଏ ନାହିଁ । ଏପରିକି ଉତ୍ତରପୂର୍ବ ସୀମାନ୍ତ ଭାରତରେ ଅବା ହିମାଳୟ ସୀମାନ୍ତରେ ନିକଟ ଅତୀତରେ ମଧ୍ୟ ଅନେକ ଜନଜାତି ଭାରତ ବାହାରୁ ଆସି ବସବାସ କରିଅଛନ୍ତି । ପ୍ରାଗୈତିହାସିକ ଗବେଷଣା ଫଳରେ ଭାରତରେ ସର୍ବପ୍ରଥମ ମାନବକୃତ ପ୍ରସ୍ତର ସଂସ୍କୃତିର ଅବସ୍ଥିତି ୪ ଲକ୍ଷ ବର୍ଷ ତଳର ପ୍ରମାଣିତ ହେଲେ ହେଁ, ତାହା ଅଧୁନାତନ କୌଣସି ବିଶିଷ୍ଟ

ଭାରତୀୟ ଜନଜାତିଙ୍କ ପୂର୍ବପୁରୁଷଙ୍କ ଐତିହ୍ୟ ବୋଲି ପ୍ରମାଣ କରିବା ବୈଜ୍ଞାନିକ ଦୃଷ୍ଟିରୁ ଅସମ୍ଭବ ।

ଇତର ଜାତି ବା ଜନଜାତିଙ୍କ ପ୍ରତି ଯେଉଁ ଅବହେଳା, ଅବଜ୍ଞା ବା ତାଚ୍ଛଲ୍ୟ ମାନବ ସମାଜରେ ଦେଖା ଯାଇଥାଏ, ତାହା ମାନବିକତା ଦୃଷ୍ଟିଭଙ୍ଗିରୁ ଯେତେ ଘୃଣ୍ୟ ଏବଂ ବୈଜ୍ଞାନିକ ଦୃଷ୍ଟିକୋଣରୁ ଅଯୌକ୍ତିକ ହେଲେ ହେଁ, ତାହା ମାନବ ଗୋଷ୍ଠିର ଏକ ଆଦିବ୍ୟାଧି । ପ୍ରାୟ ପ୍ରତ୍ୟେକ ଜନଜାତି ନିଜକୁ "ମାନବ ଆଖ୍ୟା ଦେଇ ପ୍ରତିବେଶୀ ଜନଜାତିଙ୍କୁ ନିଜଠୁଁ ଇତର ବୋଲି ହେୟଜ୍ଞାନ କରିଥାଏ । ହିନ୍ଦୁ ସମାଜରେ ଏହିଭଳି ମନୋଭାବ 'ଯବନ' 'ମ୍ଳେଚ୍ଛ' ବା 'ଅନ୍ତେବାସୀ'ଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ ଥିଲା । ଖ୍ରୀଷ୍ଟଧର୍ମାବଲମ୍ବୀ ୟୁରୋପୀୟ ବିଜେତାମାନେ ଏହି ସଂକୀର୍ଣ୍ଣ-ମନୋଭାବାପନ୍ନ ହୋଇ ଆମେରିକା, ଅଫ୍ରିକା, ଅଷ୍ଟ୍ରେଲିଆ ବା ପ୍ରଶାନ୍ତ ମହାସାଗରୀୟ ଦ୍ୱୀପପୁଞ୍ଜର ଅଧିବାସୀମାନଙ୍କୁ ଆଡମ ଓ ଇଭଙ୍କର ବଂଶୋଦ୍ଭୂତ ମାନବଠୁଁ ଭିନ୍ନ ବିବେଚନା କରି ତାଙ୍କର ଧନଜୀବନ ନଷ୍ଟ କରିବାରେ ପାପ ବା କଳଙ୍କ ଅଛି ବୋଲି ଭାବୁ ନ ଥିଲେ । ଷୋଡ଼ଶ ଶତାବ୍ଦିର ଶେଷ ଭାଗରେ ଖ୍ରୀଷ୍ଟଜଗତର ଧର୍ମାଧିକାରୀ ପୋପ୍‌ଙ୍କ ନିର୍ଦ୍ଦେଶ ବଳରେ ୟୁରୋପ ବାହାରର ଆଦିବାସୀମାନେ ମାନବର ପୂର୍ଣ୍ଣ ଗୌରବ ଏବଂ ଅଧିକାର ସମ୍ପନ୍ନ ବୋଲି ବିବେଚିତ ହେଲେ । ଏହା ମାନବିକତାର ଇତିହାସରେ ଏକ ଅବିସ୍ମରଣୀୟ ଘଟଣା । ବୁଦ୍ଧ—ଜୈନ୍ୟଙ୍କ ବିଶ୍ୱଧର୍ମ ପ୍ରସ୍ତରଠୁଁ ଆରମ୍ଭକରି ଜଗତ ପ୍ରସାରୀ ମାନବିକତା, (world humanity) ବହୁ ଘାତପ୍ରତିଘାତ ସହି ଊନବିଂଶ ଶତାବ୍ଦିର ମଧ୍ୟଭାଗରେ ବୈଜ୍ଞାନିକ ନୃତତ୍ତ୍ୱରେ ବିକାଶ ଲାଭ କରିଛି ।

ପ୍ରତ୍ୟେକ ଜନଜାତିର ଯେ ନିଜସ୍ୱ ସମାଜ ସଂସ୍ଥା ଓ ସଂସ୍କୃତି ଅଛି, ତାହା ଯେ କାଳାନୁକ୍ରମେ ପରିବର୍ତ୍ତିତ ଓ ବିବର୍ଦ୍ଧିତ ହୋଇ ଅଧୁନାତନ ଅବସ୍ଥାରେ ଆସି ପହଞ୍ଚିଛି, ଏହା ସାମାଜିକ ଓ ପ୍ରାଗୈତିହାସିକ ନୃତତ୍ତ୍ୱବିତ୍‌ମାନେ ପ୍ରମାଣ କରିଅଛନ୍ତି । ପ୍ରତ୍ୟେକ ଜନଜାତିର ଚରମ ବିକାଶ ଯେ ସମ୍ଭବ, ଏହା ସାମାଜିକ ବିବର୍ତ୍ତନବାଦ ପ୍ରସ୍ତାବରେ

ପ୍ରତିପାଦନ କରିଛି । ନୃତାତ୍ତ୍ୱିକ ଗବେଷଣା ଫଳରେ ପ୍ରାପ୍ତ ପ୍ରତ୍ୟେକ ସଂସ୍କୃତିର ସ୍ୱରୂପ ଓ ସ୍ୱକୀୟ ପ୍ରକାଶ ପାଇଛି । ଯେ କୌଣସି ମାନବଜାତି ବିଭିନ୍ନ ସାମାଜିକ ଅନୁଷ୍ଠାନ ଓ ସଂସ୍ଥା ମାଧ୍ୟମରେ ଏବଂ ପରଂପରାଗତ ସଂସ୍କୃତିର ପରିବେଶରେ ଗଠିତ ହୋଇଥାଏ ଏବଂ ବିଶ୍ୱ ପ୍ରତି, ଇତର ଶ୍ରେଣୀ ବା ଜନଜାତି ପ୍ରତି ବା ମାନବେତର ନୈସର୍ଗିକ ସତ୍ତା ପ୍ରତି ବିଶେଷ ବିଶେଷ ଦୃଷ୍ଟିଭଙ୍ଗି ଆହରଣ କରିଥାଏ । ଏହି ଦିଗରୁ ବିଚାର କଲେ ପ୍ରତ୍ୟେକ ମାନବଜାତି ନିଜ ସଂସ୍କୃତିରେ ଆବଦ୍ଧ (culture-found) ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କେଉଁ ସଂସ୍କୃତି କାହାଠୁଁ ଉନ୍ନତତର ବା ଉନ୍ନତର ମାନଦଣ୍ଡ କଅଣ, ଏହା ବୈଜ୍ଞାନିକ ଆଲୋଚନାରେ ସ୍ଥିର ହୋଇ ନ ପାରେ । ସାଧାରଣତଃ ସଂସ୍କୃତିବଦ୍ଧ ମୂଲ୍ୟବୋଧ ( culture-found value-judgement ) ଫଳରେ ଉଚ୍ଚ ନୀଚ, ଉନ୍ନତ ଅନୁନ୍ନତ, ଉତ୍ତମ ଅଧମର ବିଚାର କରାଯାଇଥାଏ । ସମାଜ ବ୍ୟବସ୍ଥା ଓ ସଂସ୍କୃତିରେ ଦେଶ ଦେଶ ମଧ୍ୟରେ ବା ଜାତି ଜାତି ମଧ୍ୟରେ ଯେଉଁ ପାର୍ଥକ୍ୟ ପରିଲକ୍ଷିତ ହୁଏ ତାହା ମାନବ ପ୍ରକୃତିର ଏକ ବିଶେଷତ୍ୱ ବୋଲି ଗ୍ରହଣ ନ କରି କିମ୍ବା ଏକ ବା ସମ-ସମସ୍ୟାର ବିଭିନ୍ନ ପରିବେଶରେ ଭିନ୍ନ ଭିନ୍ନ ବିକଳ୍ପ ସମାଧାନ ବୋଲି ବିଚାର ନ କରି, ଏହି ଭିନ୍ନତାକୁ ହୀନତାର ଅବା ଅନୁନ୍ନତିର ପରିଚାୟକ ବୋଲି ଏକ ଭ୍ରମ ଧାରଣା ମାନବ ଇତିହାସରେ ଦେଖା ଯାଇଥାଏ । ଅନ୍ୟ ଜାତିର ଆଚାର ବ୍ୟବହାର ଓ ଆନୁଷ୍ଠାନିକ ରୀତିନୀତି କୌତୂହଳ ଉଦ୍ଦୀପକ, ଲଜ୍ଜାକର ବା ହାସ୍ୟାସ୍ପଦ ବୋଲି ବିଚାର କରିବା ଏହି ଦୃଷ୍ଟିଭଙ୍ଗିରୁ ଅତି ସ୍ୱାଭାବିକ । କିନ୍ତୁ ଏଭଳି କୌଣସି ମାନବ ସମାଜ ନାହିଁ ବା ନଥିଲା, ଯେଉଁଥିରେ ପରଂପରାଗତ ବିଧିବଦ୍ଧ ପ୍ରଥାରେ ବିବାହ, ପରିବାର ସଂସ୍ଥା, ଧର୍ମାଚାର, ଆର୍ଥନୈତିକ ଓ ଶିକ୍ଷା ବ୍ୟବସ୍ଥା, ସୌନ୍ଦର୍ଯ୍ୟବୋଧ, କଳା ଓ ଶିଳ୍ପକୁଶଳତା, ନୈତିକତା ଓ ଚରିତ୍ରବତ୍ତା, ଏକ ବିଶେଷ ଭାଷା ଓ ସାହିତ୍ୟ, ତଥା ଶାସନ ଓ ସଂହତିରକ୍ଷା ବ୍ୟବସ୍ଥାର ଅଭାବ ଦେଖା ଦେଇଥାଏ । ଯେ କୌଣସି ରୂପରେ ହେଉନା କାହିଁକି, ଏହିସବୁ ପଦ୍ଧତି, ବିଧି, ସଂସ୍ଥା, ବ୍ୟବସ୍ଥା ଓ ମୂଲ୍ୟବୋଧର ସାମୂହିକ ପ୍ରକାଶ—'ସଂସ୍କୃତି'—ମାଧ୍ୟମରେ ହିଁ ମାନବତ୍ୱର ଅଭିବିକାଶ ସମ୍ଭବ । ଏହି ବିଶେଷାର୍ଥରେ ନୃତତ୍ତ୍ୱରେ

'ସଂସ୍କୃତି' ଶବ୍ଦର ପ୍ରୟୋଗ ହୋଇଥାଏ ଏବଂ ଏହା ମନୁଷ୍ୟେତର ପ୍ରାଣୀଙ୍କଠାରୁ ସମଗ୍ର ମାନବ ଗୋଷ୍ଠୀର ଚରମ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥାଏ । ଏହି ଦୃଷ୍ଟିକୋଣରୁ ଆଦିବାସୀ ଜନଜାତିଙ୍କ ସଂସ୍କୃତି ଭିନ୍ନ ହେଲେହେଁ ପୃଥ୍ୱୀଙ୍କ ଓ ସୃଷ୍ଟି ଏବଂ ନିଜର ମୂଲ୍ୟବୋଧ ଶବ୍ଦ ପ୍ରୟୋଗ କରି ବିକାଶ ପଥରେ ଅଗ୍ରସର ହୋଇଥାଏ ।

କେତେକ ଆଦିବାସୀ ଜନଜାତି ଯେ ବହୁ ପ୍ରାଚୀନ କାଳରୁ ଭାରତରେ ରହି ଆସିଛନ୍ତି, ସେଥିରେ ସନ୍ଦେହ ନାହିଁ । ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ ସିନ୍ଧୁ ଉପତ୍ୟକାରେ ଯେଉଁ ସଭ୍ୟତା ବିକାଶଲାଭ କରିଥିଲା, ସେଥିରେ ସେ କାଳର ଆଦିବାସୀଙ୍କର ନିଶ୍ଚୟ ଯେ କିଛି ଅବଦାନ ଥିଲା, ତାହାର ପ୍ରମାଣ କେତେକାଂଶରେ ମିଳୁଛି । ସେହିଭଳି ପରବର୍ତ୍ତୀ କାଳର ହିନ୍ଦୁଧର୍ମ ଓ ହିନ୍ଦୁ ସଭ୍ୟତାରେ ଭାରତୀୟ ଆଦିବାସୀଙ୍କର ଅବଦାନ ସୁସ୍ପଷ୍ଟ । ଏପରି କି କେତେକ ପାଶ୍ଚାତ୍ୟ ଭାଷାତତ୍ତ୍ୱବିତ୍‌ମାନଙ୍କ ମତରେ ସଂସ୍କୃତ, ଓ ପ୍ରାକୃତ ଓ ଆଧୁନିକ ଆଞ୍ଚଳିକ ଭାଷାମାନଙ୍କରେ ଆଦିବାସୀଙ୍କ ଭାଷାଗୁଡ଼ିକର ପ୍ରଭାବ ଲକ୍ଷ କରାଯାଏ । ହୁଏତ ଅଣଆଦିବାସୀଙ୍କ ଲୋକସଙ୍ଗୀତ ଓ ଲୋକ ନୃତ୍ୟରେ ମଧ୍ୟ ଆଦିବାସୀ ବୈଚିତ୍ର୍ୟର ସନ୍ଧାନ ମିଳି ପାରିବ । ଭାରତୀୟ ସଭ୍ୟତାରେ ଆଦିବାସୀଙ୍କର ଅବଦାନ ମାତ୍ର ଅଳ୍ପ କେତେ ବର୍ଷ ହେଲା ଭାଷାତତ୍ତ୍ୱବିତ୍ ଓ ନୃତତ୍ତ୍ୱବିତ୍‌ମାନଙ୍କର ଦୃଷ୍ଟି ଆକର୍ଷଣ କରିଛି । ସଭ୍ୟତାର ଉନ୍ମେଷ-ପ୍ରକ୍ରିୟା ଅନୁଧ୍ୟାନ କରି ନୃତତ୍ତ୍ୱବିତ୍‌ମାନେ ସ୍ଥିର କରିଛନ୍ତି ଯେ, ମେସୋପଟାମିଆ, ମିଶର ବା ସିନ୍ଧୁ ଓ ଗଙ୍ଗା ଉପତ୍ୟକାରେ ହେଉନା କାହିଁକି, ବସ୍ତୁତଃ ମାନବ ସଭ୍ୟତା ସ୍ଥାନୀୟ ବିଭିନ୍ନ ଜନସଂସ୍କୃତି ଗୁଡ଼ିକର ସମନ୍ୱୟ (Synthesis), ବିଶଦୀକରଣ (elaboration), ସମଷ୍ଟିକରଣ (Systematization), ବିଶୁଦ୍ଧିକରଣ (refinement) ତଥା ବିଧିବଦ୍ଧୀକରଣ (ordering) ଆଦି ପ୍ରକ୍ରିୟାର ଶେଷ ପରିଣତି ।

ବିଶେଷକରି ଓଡ଼ିଶାରେ ଆଦିବାସୀ ଓ ଅଣଆଦିବାସୀମାନଙ୍କ ମଧ୍ୟରେ ସାଂସ୍କୃତିକ ଆଦାନ ପ୍ରଦାନ ଓ ସାମାଜିକ ପ୍ରଥାରେ ସାଦୃଶ୍ୟ ଏତେ

ଗଣ୍ଡାର ଓ ବନ୍ଧୁମୂର୍ତ୍ତି ଯେ, ଆଦିବାସୀ ଐତିହ୍ୟକୁ ଉପେକ୍ଷା କଲେ ଓଡ଼ିଆଭୁର ବୈଶିଷ୍ଟ୍ୟ ଦୁର୍ବୋଧ୍ୟ ହୋଇ ଉଠିବ । ଓଡ଼ିଆ ସଭ୍ୟତାର ପ୍ରାଣକେନ୍ଦ୍ର ଜଗନ୍ନାଥ ଓ ଲିଙ୍ଗରାଜ ତୀର୍ଥକ୍ଷେତ୍ରରେ ଆଦିବାସୀ ଶବରର ସ୍ଥାନ ଉଚ୍ଚ ଅଧିକେ ସମସ୍ତଙ୍କୁ ଜଣା । ଗ୍ରାମଦେବତୀ ଓ ଅନ୍ୟାନ୍ୟ ଦେବାଦେବୀଙ୍କୁ ରକ୍ତବଳି ଦେଇ ପୂଜା ଆଦିବାସୀଙ୍କ ଅସୁର ଓ ପୂଜାପଦ୍ଧତିର ରୂପାନ୍ତର ମାତ୍ର । ଯେଉଁ ଓଡ଼ିଆମାନେ ଗଞ୍ଜାମ, କୋରାପୁଟ, ଫୁଲବାଣୀ, କେଉଁଝର ବା ବଡ଼ାଇ ତଫସିଲଭୁକ୍ତ ଆଦିବାସୀ ଅଞ୍ଚଳରେ ବହୁକାଳ ହେଲା ବସବାସ କରୁଛନ୍ତି, ଆଦିବାସୀ ଭାଷା ବୋଲୁଛନ୍ତି ଓ ତାଙ୍କ ପୂଜା ପାର୍ବଣ ପାଳନ କରୁଛନ୍ତି, ସେମାନେ ସେଠାକାର ଆଦିବାସୀଙ୍କଠୁଁ ବିଶେଷ ଭିନ୍ନ ବୋଲି ପ୍ରଥମ ଦର୍ଶନରେ ସ୍ଥିର କରିବା କଷ୍ଟ ମନେହୁଏ ।

ଅନ୍ୟ ପକ୍ଷରେ ଓଡ଼ିଶାର, ବିହାର ଛୋଟନାଗପୁର ଅଞ୍ଚଳର, ମଧ୍ୟପ୍ରଦେଶର, ଗୁଜରାଟ ଓ ରାଜସ୍ଥାନର ଆଦିବାସୀ ଜନଜାତିମାନେ କେଉଁଠି ନିଜେ ରାଜ୍ୟଶାସନ କରି ବା ହିନ୍ଦୁ ରାଜାମାନଙ୍କ ନିର୍ଭର ଯୋଗ୍ୟ ସହାୟକଭାବେ କ୍ଷତ୍ରିୟ ସ୍ୱୀକାର କରି ରାଜନୈତିକ ଜୀବନରେ ଗୁରୁତ୍ୱ ଉପଭୋଗ କରୁଥିଲେ । ଏହିଭଳି ଘନିଷ୍ଠ ସମ୍ବନ୍ଧ ଫଳରେ ସାମାଜିକ ଓ ସାଂସ୍କୃତିକ ଆଦାନ ପ୍ରଦାନର ପଥ ଅଧିକ ସୁଗମ ହୋଇଥିଲା । ଆଦିବାସୀ ଭାଷା, ବେଶଭୂଷା, ଅର୍ଥନୀତି, ଶ୍ରେଣୀ ବିଭାଗ ଓ ଧର୍ମ କର୍ମରେ ଏହାର ପ୍ରଭାବ ବିଶେଷ ଲକ୍ଷ କରାଯାଏ । କେତେକ ସ୍ଥଳରେ ରାଜାମାନେ ଆଦିବାସୀ ସଂପ୍ରଦାୟକୁ ସ୍ୱାମାପ୍ତ ଜାତିପ୍ରଥାରେ ଉଚ୍ଚସ୍ଥାନ ପ୍ରଦାନ କରି ହିନ୍ଦୁ ସମାଜରେ ଅନୁପ୍ରବେଶର ଦ୍ୱାର ଉନ୍ମୁକ୍ତ କରି ଦେଇଥିଲେ । ରାଜସ୍ଥାନର ଭୀଲ ଜାତି, ଓଡ଼ିଶାର ଭୂୟାଁ, ବାଥୁଡ଼ି ଓ ଗଣ୍ଡ ଜାତିମାନଙ୍କ ଉଦାହରଣ ଏଠାରେ ଯଥେଷ୍ଟ । ସେହିଭଳି ବଙ୍ଗଦେଶର ଭୂମିଜ, ବିହାରର ମୁଣ୍ଡା ଓ ମଧ୍ୟପ୍ରଦେଶର ଗଣ୍ଡମାନଙ୍କର ହିନ୍ଦୁ ସମାଜର ଉଚ୍ଚ କ୍ଷତ୍ରିୟ ବର୍ଣ୍ଣରେ ଗୃହୀତ ହେବାର ପ୍ରୟାସ ଓ ସେ ଦିଗରେ କେତେକ ସଫଳ ପଦକ୍ଷେପ ଅନେକ ଜାଣିଥିବେ । ଯୁଗଯୁଗାନ୍ତର ଆଦାନ ପ୍ରଦାନ ଫଳରେ ଗବେଷକମାନେ ନିର୍ଦ୍ଧାରଣ କରିଅଛନ୍ତି ଯେ, ଓଡ଼ିଶା ସମେତ

ମଧ୍ୟଭାରତରେ ତଥା ଦକ୍ଷିଣ ଭାରତରେ ଥିବା ଆଦିବାସୀ ଜନଜାତି ଓ ହିନ୍ଦୁ ସମାଜର ଅନୁଚ୍ଚ ଜାତିମାନଙ୍କର ପରଂପରାଗତ ଆଚାର ବ୍ୟବହାର, ଧର୍ମାନୁଷ୍ଠାନ, ଜଗତ୍ ଦର୍ଶନ (world-view ବା weltanschauung)ରେ ପରସ୍ପର ଭିତରେ ସାଦୃଶ୍ୟ କ୍ରମପର୍ଯ୍ୟାୟଭୁକ୍ତ (graded) ହେଲେହେଁ ନିରବଚ୍ଛିନ୍ନ (in a continuum)

ବିଖ୍ୟାତ ନୃତତ୍ତ୍ୱବିତ୍ ଡକ୍ଟର ଭେରିଏର୍ ଏଲ୍ୱିନ୍ (Verrier Elwin), ଯେ କି ଓଡ଼ିଶା, ମଧ୍ୟପ୍ରଦେଶ ଓ ଭାରତର ଉତ୍ତରପୂର୍ବ ସୀମାନ୍ତଭାରତରେ ଆଦିବାସୀ ଗବେଷଣା କରିଥିଲେ, ୧୯୪୪ରେ ମତ ଦେଇଥିଲେ ଯେ ଭାରତର ଆଦିବାସୀମାନେ ହିନ୍ଦୁ ସମାଜର ନୀଚତମ ଶ୍ରେଣୀ ବା ଅସ୍ପୃଶ୍ୟ ଜାତିରେ ପରିଣତ ହେବାର ଆଶଙ୍କା ରହିଛି । କିନ୍ତୁ ବସ୍ତୁତଃ ଅଧିକାଂଶ ସ୍ଥଳରେ ଆଦିବାସୀ ଜନଜାତି ବା ସେମାନଙ୍କର ବିଶିଷ୍ଟ ସମ୍ପ୍ରଦାୟ ହିନ୍ଦୁ ସମାଜରେ ଅନ୍ତତଃ ଅନୁଚ୍ଚ ଜାତିଙ୍କ ସଙ୍ଗେ ସମାନ୍ତରାଳ ଭାବେ ଚଳପ୍ରଚଳ କରି ଆସି ଅଛନ୍ତି ଏବଂ କେତେକ ସ୍ଥାନରେ ଉଚ୍ଚ କ୍ଷତ୍ରିୟ ବର୍ଣ୍ଣର ଗୌରବ ମଧ୍ୟ ଲାଭ କରି ପାରିଛନ୍ତି । ଆଧୁନିକ ଭାରତର ଏହା ଆଦର୍ଶ ବା କାର୍ଯ୍ୟପନ୍ଥା ନୁହେଁ ଯେ ଆଦିବାସୀ ଜନଜାତିମାନେ ହିନ୍ଦୁ ସମାଜର ଅଙ୍ଗୀଭୂତ ହୁଅନ୍ତୁ । ସେମାନେ ସ୍ୱେଚ୍ଛାରେ ନିଜର ଭଲମନ୍ଦ ବିଚାର କରି ଯେଉଁ ଧର୍ମାଚାର ଓ ସାମାଜିକ ବ୍ୟବସ୍ଥା ଗ୍ରହଣ କରିବେ, ତାହା କୌଣସି ଆଲୋଡ଼ନ ସୃଷ୍ଟି କରିବା ଉଚିତ ନୁହେଁ । ବରଂ କୁହାଯାଇପାରେ ଯେ, ଭିନ୍ନ ଭିନ୍ନ ଆଚାର ପଦ୍ଧତି ଓ ସମାଜ ବ୍ୟବସ୍ଥା ସହ ସହାବସ୍ଥାନ କରି ହିନ୍ଦୁ ସମାଜ ଓ ସଂସ୍କୃତି—ଧର୍ମପ୍ରଚାରକ ଓ ଧର୍ମଯାଜକ ନ ଥାଇ ମଧ୍ୟ—ଭାରତର ଆଦିବାସୀ ଜନଜାତିଙ୍କୁ କାଳକ୍ରମେ ପ୍ରଭାବିତ କରି ପାରିଥିଲା । ଏହି ପାରଂପାରିକ ବିଚାରଧାରା ଓ ବ୍ୟବହାରବିଧି ତଥା ସହିଷ୍ଣୁ ମନୋଭାବର ଗୁରୁତ୍ୱ ଆଜି ମଧ୍ୟ ଅତୁଟ ରହିଛି ।

—୦—

# ଆଦିବାସୀ—
# ଏକ ଦୃଷ୍ଟିକ୍ଷେପ

**ଗୋପୀନାଥ ମହାନ୍ତି**

ଆମେ ନିଜ ଗୋଷ୍ଠୀର ନାଁ ଦେଇଛୁଁ—'ଓଡ଼ିଆ' { ଅର୍ଥାତ୍ (ସୂର୍ଯ୍ୟ) ଉଦୟର ଦେଶର ଲୋକ, 'ଉଦୟସ୍ଥାନ', ପାଲି 'ଓଡ୍ଡିଆନ', ଶେଷରେ, —ଓଡ଼ିଆ } ।

ଯେ ଆମ ଗୋଷ୍ଠୀର ନୁହଁନ୍ତି, ତାଙ୍କୁ—ଚିହ୍ନାଇବାକୁ ହେଲେ ଆମେ ତାଙ୍କୁ କହୁଁ "ଅଣଓଡ଼ିଆ" । ଠିକ୍ ସେମିତି, ବଙ୍ଗାଳୀମାନେ ଅନ୍ୟମାନଙ୍କୁ କହିବେ—"ଅ-ବାଂଆଁଲି ।" ବଙ୍ଗାଳମାନେ ନିଜକୁ 'ଅଣଓଡ଼ିଆ' ବୋଲି ଚିହ୍ନାଇ ହେବେ ନାହିଁ କି ଆମେ ନିଜକୁ 'ଅ-ବାଂଆଁଲି' ବୋଲି ଚିହ୍ନାଇ ହେବୁ ନାହିଁ । ଆମେ ନିଜକୁ ସ୍ୱତନ୍ତ୍ର ନାଁ ଦେଇଛୁଁ—'ଓଡ଼ିଆ' ।

ଆର୍ଯ୍ୟମାନେ ଯେତେବେଳେ ଭାରତକୁ ଆସିଲେ ସେତେବେଳେ ଭାରତରେ ଲୋକଥିଲେ, ନାନା ଜାତିର ଲୋକ । ତାଙ୍କର ସୁପ୍ରତିଷ୍ଠ ସଭ୍ୟତା ସଂସ୍କୃତି ଥିଲା, ଭାଷା ବି ସହଜେ । { ସେମାନେ କୋନ୍ଧ, କୋହ୍ଲ, ମହ୍ଲାର, କିରାତ, ଶବର, ବେଣ୍ଟକାର ଆଦି (ଓଡ଼ିଆ ସାରଳାଦାସଙ୍କ ମହାଭାରତ, ଦଶମ ଶତାବ୍ଦୀ) । ସେମାନେ ଶବର, କିରାତ, ପିଶାଚ, ଦାନବ, ଦୈତ୍ୟ, ଋକ୍ଷ, ରାକ୍ଷସ, ବାନର, ଯକ୍ଷ, ଗନ୍ଧର୍ବ, କିନ୍ନର ଆଦି (ସଂସ୍କୃତ ରାମାୟଣ ମହାଭାରତ, ବିଷ୍ଣୁ ପୁରାଣ, ବାୟୁ ପୁରାଣ ଆଦି)

ସଂସ୍କୃତ ବାୟୁ ପୁରାଣର ପଞ୍ଚାଶଃ ଅଧ୍ୟାୟଃ ଦେଖାଯାଉ । ସେଠି ବର୍ଣ୍ଣିତ ହୋଇଛି, ସାତଟି ଭୁବନେ ଭୁବନେ 'ରସାତଳ' ବା ଅଂଚକାଳ ଆମେ ଯାହାକୁ 'ଦେଶ' କହିଲେ ସହଜରେ ବୁଝି ପାରିବା । ପ୍ରତି ରସାତଳର ବିସ୍ତୃତି ଅଛି, ସେଠି ଅଛି ପାଣି, ତା ଉପରେ ସ୍ଥଳଭାଗ, ତା ଉପରେ ଆକାଶ ।

ସାତଟି ପାତ୍ରର ନାଁ, ଯଥାକ୍ରମେ:—

(୧) ଅତଳ (୨) ସୁତଳ (୩) ବିତଳ (୪) ଗଭସ୍ତଲ (୫) ମହାତଳ (୬) ଶ୍ରୀତଳ (୭) ପାତାଳ ।

ବାୟୁ ପୁରାଣର ବର୍ଣ୍ଣନା ଅନୁସାରେ ଯେଉଁ ସାତଟିପାତ ମହାଦେଶରେ ଭର୍ତ୍ତି ହୋଇଥିଲା ସେଥିରୁ ଲୋକମାନଙ୍କର ହଜାର ହଜାର ସହର, ହଜାର ହଜାର ଗାଁ, ଲୋକ ଗହଳରେ ହସଖୁସିରେ ଫାଟି ପଡ଼ୁଥିଲା ସେସବୁ ଦେଶ ।

ଯଥା:—ସପ୍ତମେ ତୁ ତଳେ ଜ୍ଞେୟଂ ପାତାଳେ ସର୍ବାନ୍ତିମେ
ପୁରଂ ବଳେଃ ପ୍ରମୁଦିତଂ ନରନାରୀ ସମାକୁଳମ୍ ।୫୦।୪୧

ଅସୁରାଶୀବିଷୈଃ ପୂର୍ଣ୍ଣମ୍ ଉଦ୍ଧୃତୈଃ ଦେବଶତ୍ରୁଭିଃ ।
ମୁଚୁକୁନ୍ଦସ୍ୟ ଦୈତ୍ୟସ୍ୟ ତତ୍ର ବୈ ନଗରଂ ମହତ୍ ।୫୦।୪୨
ଅନେକ ବିଡ଼ପୁରାଣାଂ ସନ୍ନିଧାର୍ଣ୍ଣୈଃ ମହାପୁରୈଃ ।
ତଥୈବ ନାଗନଗରେ ଋଦ୍ଧିମଦ୍‌ଭିଃ ସହସ୍ରଶଃ ।୫୦।୪୩
ଦୈତ୍ୟାନାଂ ଦାନବାନାଞ୍ଚ ସମୃଦ୍ଧୈଃ ମହାପୁରୈଃ ।
ଉଦାର୍ଣ୍ଣୈ ରାକ୍ଷସାବାସୈଃ ଅନେକୈଃ ଚ ସମାକୁଳମ୍ ।୫୦।୪୪

ଖାଲି Towns ନୁହେଁ Cities.

ସେମାନେ ଆର୍ଯ୍ୟ ନୁହଁନ୍ତି, ଆର୍ଯ୍ୟ ନିଜକୁ କହୁଥିଲେ ସୁର । ତେଣୁ ସେମାନଙ୍କୁ ଆର୍ଯ୍ୟ ଲୋକେ କହୁଥିଲେ 'ଅ-ସୁର' । ଅତୀତରେ ହିନ୍ଦୁ ଭାରତ 'ହିନ୍ଦୁସ୍ତାନ୍' ଦେଶ ଉପରେ ଭୁହାକୁ ଭୁହା ପଠାଣ, ମୋଗଲ, ମୁସଲମାନ ଆକ୍ରମଣକାରୀ ଦଳଂକ ପରି, ସମୃଦ୍ଧ, ଶିକ୍ଷିତ, ସୁସଭ୍ୟ, ଯନ୍ତ୍ର କୌଶଳ ବିଶାରଦ, ବିଜ୍ଞାନ ପଣ୍ଡିତ, ଅ-ସୁର ଦେଶ ଭାରତ ଉପରକୁ ଡେଇଁ ପଡ଼ିଲେ ମାରଣା ଖୁଣି ଲୁଟିଆର 'ସୁର' ଦଳ ।

କବି ଇକ୍‌ବାଲ୍ ଠିକ୍ ଇ ଲେଖିଥିଲେ

"ଇଆଦ୍ ହୟ ତେଗ ଗଂଗା,
ଯବ୍ ଆୟେ କାରୱାଁ ହମାରା !"

ସେଇ ଗଂଗା ପାଣିରେ ଧୋଇଥିବେ ରକ୍ତ ଜୁଡ଼୍‌ବୁଡ଼୍‌ ହାତଆର । ଗଂଗା କୂଳରେ ପାଟିଂଆଁ କରି ମୁହଁ ଉପରେ ଅଜାଡ଼ି ଦେଇଥିବେ. ଭକ୍‌ ଭକ୍‌ ଗନ୍ଧଉଥିବା 'ସୁରା' ମାଟିଆ, ଆଦିବାସୀ ସ୍ତ୍ରୀଲୋକ ପରି ଗଂଗା ତେଗା ତେଗା ଅ.ଖିରେ ଦେଖିଥିବ, ନୂଆ ଆଗନ୍ତୁକକୁ ।

ସେ ସୁର ।

ତା ପ ଭିର ଚନ୍ଦ୍ର—ସୁରା, ସୋମ ଆଉ ଅପ୍‌ସରାଗଣ, ସେଇ ହେଲା 'ଦେବ' । ଅସୁର ସବୁହିଁ 'ଅସୁର' ବୋଲି ଅଭିହିତ ।

ଲଢ଼େଇ—ଲଢ଼େଇ— ଲଢ଼େଇ । ଓଃ ! ଅସୁମାରି ।

ଅସୁର ଯେ ପ୍ରଥମ, ତା ଉତ୍ତାରୁ 'ସୁର', ସେ କଥା ବିଷ୍ଣୁ ପୁରାଣରେ କୁହା ହୋଇଛି । ପ୍ରଜାପତିଙ୍କର ଥରେ ଇଚ୍ଛା ହେଲା ସେ ସୃଷ୍ଟି କରନ୍ତେ କି ! ସେ ସୃଷ୍ଟି କରିବାକୁ ଇଚ୍ଛୁକ ଅର୍ଥାତ୍ ସିସୃକ୍ଷୁ ହେଲେ । ସେ ସିସୃକ୍ଷୁଙ୍କ ଜଂଘରୁ ଅସୁର ଜନ୍ମ ହୋଇ ପଡ଼ିଲେ । ସେ ସେହିଦେହ ଛାଡ଼ିଲେ, ଅନ୍ୟ ଦେହ ଧରିଲେ (ମରି ପୁଣି ଜନ୍ମ ହେବାଠୁଁ ଭିନ୍ନ ନୁହେଁ) ସେ ଦ୍ୱିତୀୟ ଥର ଯେଉଁ ଦେହ ଧରି ଉଭା ହେଲେ ତାଙ୍କ ମୁହଁରୁ 'ସୁର' ଜନ୍ମ ହେଲେ ।

"ଯୁକ୍ତାତ୍ମନଃ ତମୋ ମାତ୍ରା ଉଦ୍ରିକ୍ତାଭୂତ୍ ପ୍ରଜାପତେଃ
ସିସୃକ୍ଷୋଃ ଜଘନାତ୍ ପୂର୍ବମ୍ ଅସୁରା ଜଜ୍ଞିରେ ତତଃ । ୧।୫।୨୯
ସିସୃକ୍ଷୁଃ ଅନ୍ୟଦେହସ୍ଥ ପ୍ରୀତିମ ଅପ ତତଃ ସୁରାଃ
ସତ୍ତ୍ୱୋଦ୍ରିକ୍ତାଃ ସମୁଦ୍‌ଭୁତା ମୁଖତୋ ବ୍ରହ୍ମଣୋ ଦ୍ୱିଜ ।୧।୫।୩୧

(ପରାଶର ଋଷି ମୈତ୍ରେୟ ଦ୍ୱିଜଙ୍କୁ ଏକଥା କହିଛନ୍ତି, ବିଷ୍ଣୁ ପୁରାଣ ପ୍ରଥମ ଅଂଶ, ପଞ୍ଚମ ଅଧ୍ୟାୟ)

ଇତିହାସରୁ ଆମେ ଜାଣୁ, ଆରବ ଦେଶରେ ଓମର୍‌ ଯେତେବେଳେ ଖଲିଫ୍‌ ହୋଇଥିଲେ ସେତେବେଳେ ୬୩୬ ଖ୍ରୀ: ଅ: ରୁ ୬୩୭ ଖ୍ରୀ: ଅ: ଭିତରେ ଥରେ ସେ ଭାରତ ଉପକୂଳରୁ ଧନ ଲୁଟି ନେଇଯିବାକୁ ଆଦେଶ ଦେଇ ଜାହାଜରେ ଫଉଜ

ପଠେଇ ଥିଲେ । ହିନ୍ଦୁ ଭାରତ ଉପରେ ସେ ମୁସଲମାନର ପ୍ରଥମ ଅଭିଯାନ ୭୧୨ ଖ୍ରୀ: ଅ: ରେ ମହମଦ୍ ବିନ୍ କାସିମଙ୍କ କର୍ତ୍ତୃକ ସିନ୍ଧୁ ବିଜୟ । ଆସିଲେ ଗଜନିର ସୁବୁକ୍ତାଗିନ୍, ୯୮୬-୮୭, ଖ୍ରୀ.ଅ: ଭାରତର ଉତ୍ତରାଞ୍ଚଳ ରାଜା ଜୟପାଳଙ୍କ ରାଜ୍ୟ ଆକ୍ରମଣ କଲେ, ଆଉଥରେ ୯୯୧ରେ, ତା ପରେ ଗଜନିର ସୁଲତାନ୍ ମାମୁଦ, ଭାରତ ଉପରେ ତାଙ୍କର ପ୍ରଥମ ଅଭିଯାନ ଆଜକୁ ୯୭୦ ବର୍ଷ ତଳେ ଠିକ୍ ୧୦୦୦ ଖ୍ରୀ· ଅ. ରେ, ସ୍ବଳ୍ପ ଅଭିଯାନ ଉତ୍ତାରୁ ଅଭିଯାନ ୨୬ ବର୍ଷ କାଳ । ପ୍ରାୟ ୨୦୦ ବର୍ଷ ପରେ ଇରାନ୍‌ର ଆଧିପତ୍ୟ ଶେଷ ହେଲା, ଅର୍ଥାତ୍ ଗଜନି ସାମ୍ରାଜ୍ୟ ଲୋପ ହେଲା, ଆସିଲା 'ଘୋର' ରାଜ୍ୟର ଅଧିପତ୍ୟ । 'ଘୋର' ଦେଶର ରଜାପୁଅ ସୁଇଜ୍ ଉଦ୍ଦିନ୍ ଓରଫ (ସୁଲତାନ) ମାମୁଦ ୧୧୮୧ରେ ଲାହୋର ଆକ୍ରମଣ କଲେ । ୧୧୯୨ ଖ୍ରୀ. ଅ.ରେ ତରୋରର ପୃଥ୍ୱୀରାଜ ହାରିଲେ । ଘୋର୍ ଦେଶର ମାମୁଦ୍ ଲେଉଟି ଗଲେ, ଭାରତ ଗାଦିରେ ବସେଇ ଦେଇ ଗଲେ ତାଙ୍କ କର୍ମଚାରୀ କୁତବ୍ ଉଦ୍ଦିନକୁ । ୧୨୧୦ରେ କ୍ରୀତଦାସ ଇଲ୍-ତୁତ୍-ମିସ୍ ରଜା ହେଲେ, ଖିଲଜି ପଠାଣ ରାଜତ୍ୱ, ତା ପରେ ଅପ୍ରେଲ୍ ୨୧, ୧୫୨୬ ଖ୍ରୀ· ଅ· ରେ ପାନିପଥ ଯୁଦ୍ଧରେ ଜିତି ବାବର ମୋଗଲ ସାମ୍ରାଜ୍ୟର ମୂଳଦୁଆ ପକାଇଲେ, ସେ ଖିଲଜି ବକ୍‌ସାର ଯୁଦ୍ଧ ଯାକେ ୨୨-୧୦-୧୭୬୪ ପାକେ, ଇଂରେଜ୍ ଜିତିଲେ ।

ହିନ୍ଦୁ ଭାରତ ଉପରେ ଆଂଶିକ ଭାବେ ଓ ସଂପୂର୍ଣ୍ଣ ଭାବେ ବାହାରର ଆକ୍ରମଣକାରୀ ମୁସ୍‌ଲିମ୍ ଜାତି ଏହିପରି ପ୍ରାୟ ହଜାର ବର୍ଷ ଯାଏ ରାଜତ୍ୱ କଲେ । କିନ୍ତୁ ହିନ୍ଦୁ ହାରି ସୁଦ୍ଧା ନିଶ୍ଚିହ୍ନ ହେଲେ ନାହିଁ । କେତେଟି ତ ସାନ ସାନ ରାଜ୍ୟରେ ହିନ୍ଦୁ ସ୍ୱାଧୀନହିଁ ରହିଥିଲେ ଅନ୍ୟଠି ରାଜନୈତିକ ପରାଧୀନତାରେ ଥିଲେ ସୁଦ୍ଧା ତାଙ୍କର ସବୁ ଜମି ବାଡ଼ି ଘରଦ୍ୱାର ଧନ ସମ୍ପତ୍ତି ଯାଇ ନ ଥିଲା, ଶାସକଙ୍କୁ ତା ଫରମାସି ଅନୁସାରେ ପାଉଣା ଯୋଗାଇ ସେମାନେ ଅଧିକାଂଶ ସ୍ଥଳରେ ଆପଣା ସମ୍ପତ୍ତିର ଅଧିକାରୀ ରହିଥିଲେ । ଆପଣା ଧର୍ମ ଆପଣା ସଂସ୍କୃତି ସଂରକ୍ଷଣ ଓ ବୃଦ୍ଧି କରୁଥିଲେ । ପାଖ ପାଖ ବା ଏକାଠି ଚଳିବାକୁ ବାଧ୍ୟ ହେବାରୁ ସେମାନଙ୍କ ଭିତରେ ଅନେକ କିସମର ମିଶାମିଶି ଓ ଦେଣନେଣ ହେଉଥିଲା ।

କିନ୍ତୁ ସୁର—ଅସୁର ଯୁଦ୍ଧମାନଙ୍କର ପରିଣତି ସେମିତି ନ ଥିଲା । ଏବେବି କେତେକାଳ ସେସବୁ ଯୁଦ୍ଧ ଲାଗି ରହିଲା କହି ହେବ ନାହିଁ, ଶହ ଶହ କି ହଜାର ହଜାର ବର୍ଷ ନିଶ୍ଚୟ, କାରଣ ଜଣାଶୁଣା ଇତିହାସ ବେଳରୁ ଅର୍ଥାତ୍ ୨୦୦୦ ବର୍ଷ ହେଲା ଯେଉଁ ସବୁ ଅଞ୍ଚଳ ଖାଣ୍ଟି ଆର୍ଯ୍ୟ ଅଧ୍ୟୁଷିତ ଅଞ୍ଚଳ ହୋଇ ରହିଛି ବୋଲି ଲାଗୁଛି, ସେଠି ବି ମାଟି ତଳେ ହଜାର ହଜାର ବର୍ଷ ତଳର ନରକଂକାଳ ମିଳୁଛି ଓ ସଭ୍ୟତାର ଅନ୍ୟାନ୍ୟ ଚିହ୍ନବସ୍ତୁ ମିଳୁଛି ଯାହା ଆର୍ଯ୍ୟ ଆସି ଘର କରିବାର ବହୁତ ଆଗର ମଣିଷଙ୍କର ।

ବିଷୟରେ, ସେ ସଂଘର୍ଷର ପ୍ରଧାନ ଆଖି ଦୁରୁଶା ପରିଣତି ହେଲା—ବିଜିତ ଅଣ ଆର୍ଯ୍ୟମାନଙ୍କର ସେ ବିଜିତ ଅଞ୍ଚଳର ମାଳ ପର୍ବତ ଛଡ଼ା ଅନ୍ୟସବୁ ଜାଗାରୁ ସଂପୂର୍ଣ୍ଣ ନିଶ୍ଚିହ୍ନତା ।

ଗୋଟାଏ ଜାତି ଗୋଟାଏ ଠା'ରୁ ନିଶ୍ଚିହ୍ନ ହୁଏ କାହିଁକି ? କଣ ଏକାଥରେ ସବୁ ଜାଗାରେ ତା ଉପରେ ମଡ଼କ ପଡ଼ିଗଲା ? ନା, ମଡ଼କ ନୁହେଁ, ଘଉଡ଼ା । ତା ଜମି ଛଡ଼େଇ ନେଇ ଘର ଛଡ଼େଇ ନେଇ ତାକୁ କଲବଲ କରି ତଡ଼ିଦେଲେ ସେ ତା ବାପ ଅଜାଙ୍କ ମଶାଣି ପାଉଁଶ ପଡ଼ିଥିବା ସ୍ଥାନ ଛାଡ଼ି, ତା ପବିତ୍ର ଦେବା ଦେବୀଙ୍କ ଛାଡ଼ି, ପ୍ରାଣ ଘେନି ପଳାଇ ଯାଏ ।

ଓଡ଼ିଶା କଥାକୁ ଦେଖାଯାଉ । ଖୋଦ୍ ପୁରୀରେ ଅଛନ୍ତି ବଡ଼ ଠାକୁରେ, ସେ ଆମ ଜଗନ୍ନାଥ, ସେ ସଓରାର ବଡ଼ ଠାକୁର 'ଜନାଂଲେ' । ସମସ୍ତେ ଜାଣନ୍ତି ସେ ଶବରର ଦେବତା, ହିନ୍ଦୁ ତାଙ୍କୁ ପୂଜା କରୁଛନ୍ତି । ହିନ୍ଦୁ ତାଙ୍କର ନବକଳେବର କଲେ, କେଇଟା ଶବର ଜାଣିଲେ କି ବରଣି ହେଲେ ? ପାରଳା ମାଳରେ, ଗୁଣୁପୁରର ଧୂଷାସିଂ ମାଳରେ, କେଉଁ ଲଞ୍ଜିଆ ସଓରା ଖବର ପାଇଲା ତା'ର ଜନାଂଲେ ଦେବତାଙ୍କର ଏବେ ବଡ଼ ପର୍ବ ହେଲା ! ସାରଳ ଦାସ ଲେଖିଗଲେ ଭୁବନେଶ୍ୱରଠୁଁ ସମୁଦ୍ରପାକେ ସବୁ ହୋଇଥିଲା ଶବର ରାଜ୍ୟ । କାହାନ୍ତି ସେଠି ଆଜି ସେମାନେ ? ନାହାନ୍ତି ।

ତା' କାରଣ ବୁଝିବା କଷ୍ଟ ନୁହେଁ । ପ୍ରାଚୀନ କନ୍ଧ ଗୀତ କହେ "ଭିନ୍ନରେ ବନ୍ଧୁ କଣନ୍ତ (ଉଗ୍ରା ଲୁହା କଣକୁ ଯୋଡ଼ା ହୁଏ ) କାକୁଲ ଗାଂଠା ଜାତ୍ତାନ୍ତ ( ଦୁଃଖୀ ଦୁସ୍ତ ଲୋକ ପଣେ କଣରେ )?"

•

ଯୁଦ୍ଧ, ହାଣକାଟରେ ଯା' ଚଞ୍ଚଳ ସମ୍ଭବ ହୁଏ, ମଣିଷ ହଠାତ୍ ଦଳ ଦଳ ହୋଇ ବାହାର ପଡ଼ନ୍ତି ଶରଣାର୍ଥୀ ହୋଇ । ଆଜ 'ପଳାତକ' କହିଲେ ଯେତେ ସହଜରେ ବୁଝି ହୁଏ ନାହିଁ 'ଶରଣାର୍ଥୀ' କହିଲେ ବୁଝି ହୁଏ । ପୌରାଣିକ ଯୁଦ୍ଧ ତ ପୁରାଣରେ ବହୁତ ଲେଖା ଅଛି ।

ସେ ପୁରାଣ, ସେ କମ୍ବଦନ୍ତୀ ଲେଖିଛନ୍ତି 'ସୁର' ଅର୍ଥାତ୍ ଆର୍ଯ୍ୟ-ମାନେ, 'ଅ-ସୁର' ଲେଖି ନାହାନ୍ତି । ଜିତିବା ଲୋକର ସବୁଥିରେ ଜିତା ପଟ, ଇତିହାସ ରେକର୍ଡ଼ର ବି ସେ ସ୍ରଷ୍ଟା, ଜିତିବା ଲୋକେ ଜିତିବା ତଳମାନେ କେମିତି କଳାକୁ ଧଳା କରି ଅତୀତର ଇତିହାସକୁ ନୂଆ ରୂପ ଦିଅନ୍ତି ତା'ତ ଦେଶ ଦେଶ କେ ଆଜବି ବାରି ହୋଇ ପଡ଼ୁଛି ।

ଜିତିବା ଲୋକ ନିଜେ ଠିକ୍ ହାରିବା ଲୋକ ଭୁଲ୍ ବୋଲି ଧରିନେଇ ହେବା ମଣିଷର ସାଧାରଣ ଦୁର୍ବଳତା । ତେଣୁ କୁହାଯାଉ ଅ-ସୁରଙ୍କୁ ଯେତେ ଯାହା, ସବୁ ଚଳିଛି, ସବୁ ଚଳିବ, କେହି ଆପତ୍ତି କରିବେ ନାହିଁ । ସେମାନେ ବଦ୍‌ମାସ୍, ଡକାଏତ୍, ମଣିଷଙ୍କୁ କଞ୍ଚା ଖାଆନ୍ତି, ତାଙ୍କର ଜଣ ଜଣକେ ଅସଂଖ୍ୟ ମୁଣ୍ଡ, ଅସଂଖ୍ୟ ଗୋଡ଼, ହାତ, ଇତ୍ୟାଦି—ଇତ୍ୟାଦି କଳ୍ପନାରେ ଯେତେକ ଭୟଙ୍କର କାହାଣୀ ସୃଷ୍ଟି କରାଯାଇ ପାରେ ଅ-ସଂସ୍କୃତ ଭାଷାମାନଙ୍କର ନାନା ଯୁଗର ନାନା ସୃଷ୍ଟିରେ ସବୁ ଅଛି । ଅଥଚ ସଂସ୍କୃତ ମହାଭାରତରେ, ପୁରାଣମାନଙ୍କରେ ରାମାୟଣରେ ବି ପଢ଼ି ଅ-ସୁର ବି ଥିଲେ ନାନା ସଦ୍‌ଗୁଣ ନାନା ଶ୍ରୀ ନାନା ପାଣ୍ଡିତ୍ୟରେ ବିମଣ୍ଡିତ, ଯଶସ୍ୱୀ, ଧାର୍ମିକ, ନିଷ୍ଠାପର, ପ୍ରଖ୍ୟାତ କୀର୍ତ୍ତି । ଶ୍ରୀ ରାବଣକୃତ ଶିବ ତାଣ୍ଡବ ସ୍ତୋତ୍ର ପଢ଼ନ୍ତୁ ।

"ଜଟାଟବୀ ଗଳଜ୍ଜଳ ପ୍ରବାହ ପାବିତ ସ୍ଥଳେ
ଗଳେଽବ ଲମ୍ବ୍ୟ ଲମ୍ବିତାଂ ଭୁଜଙ୍ଗ ତୁଙ୍ଗ ମାଳିକାଂ ।
ଡମଡ୍ ଡମଡ୍ ଡମଡ୍ ଡମଡ୍ ନିନାଦବଡ୍ ଡମ ର୍ବୟଂ !

ଚକାର ଚଣ୍ଡ ତାଣ୍ଡବଂ ତନୋତୁ ନଂ ଶିବଃ ଶିବଂ ..

× × ×

'ପୂଜାବସାନ ସମୟେ ଦଶବକ୍ତ୍ର ଗୀତଂ
ଯଃ ଶମ୍ଭୁ ପୂଜନମିଦଂ ପଠତି ପ୍ରଦୋଷେ
ତସ୍ୟ ସ୍ଥିରାଂ ରଥ ଗଜେନ୍ଦ୍ର ତୁରଙ୍ଗ ଯୁକ୍ତାଂ
ଲକ୍ଷ୍ମୀଂ ସଦୈବ ସୁମୁଖୀଂ ପ୍ରଦଦାତି ଶମ୍ଭୁଃ ।"

ଯାହାକୁ ବଳରେ ନ ପାରୁଁ କହୁଁ ତାର କୋଡ଼ିଏଟା ହାତ, ଯାହାଠୁଁ ବୁଦ୍ଧିରେ ହାରୁଁ କହେ ତାର ଦଶଟା ମୁଣ୍ଡ । ସଂସ୍କୃତ ମହାଭାରତ ଶାନ୍ତି ପର୍ବରେ ଇନ୍ଦ୍ର-ବଳୀ କଥୋପକଥନରେ ଅ-ସୁରମାନଙ୍କର ଯେଉଁ ଗୌରବମୟ ଇତିହାସ ବର୍ଣ୍ଣନା କରାଯାଇଛି ଆମ 'ପ୍ରାକୃତ' ଭାଷାମାନଙ୍କ କିମ୍ବଦନ୍ତୀରେ ବି ତାର ଗନ୍ଧ ପଡ଼ୁନାହିଁ ।

ଏତେ ଦିନକେ ଯୁକ୍ତିଯୁକ୍ତ ବୁଦ୍ଧିକୁ ଛୁଇଁଲା ପରି ରାମାୟଣର କାହାଣୀ ଲେଖିଛନ୍ତି ବର୍ଷୀୟାନ୍ ହିନ୍ଦୀ ଔପନ୍ୟାସିକ ଆଚାର୍ଯ୍ୟ ଚତୁରସେନ ତାଙ୍କ ଉପନ୍ୟାସ "ବୟଂ ରକ୍ଷାମଃ"ରେ ।

ଦେବ—ଅସୁର ପ୍ରଳୟଙ୍କର ଯୁଦ୍ଧର ଅବସାନ ହେଲା, ବଳୀ ହାରିଲେ, ଅସୁର ପଶିଲେ ପାତାଳରେ । କୁଆଡ଼େ ସେ ପାତାଳ ? ମାଟିତଳେ ? ବିଜ୍ଞାନ ତା କହୁନାହିଁ । ବଞ୍ଚନ୍ତ ଲୁଚି ଲୁଚି ବଞ୍ଚିଲେ ।

ଏକା ଭାରତ ବର୍ଷ ନୁହେଁ ତ, ଭାରତଠୁଁ ଆଫ୍ରିକା, ଭାରତଠୁଁ ଅଷ୍ଟ୍ରେଲିଆ ଥିଲା ଲାଗିଲା ମାଟି, ଦକ୍ଷିଣ ମେରୁ ଆଡ଼କୁ ବିରାଟ ମହାଦେଶ 'ଆଣ୍ଟାର୍କଟିକା' ବୋଲି ନାଁ ଦିଆ ହୋଇଥିବା ଅଞ୍ଚଳ ଥିଲା, ସମୁଦ୍ର ତଳେ ବୁଡ଼ିଲା । ସେମାନେ ଖାଲି ହାରିଲେ ମୁହଁ ଲୁଚେଇ ବଞ୍ଚିଲେ ସେତିକି ନୁହେଁ, ଗୋଠଖଣ୍ଡିଆ ହୋଇ ସମୁଦ୍ର ଏକରେ ସେକରେ ପଡ଼ି ରହିଲେ ।

ତା'ପରେ ଶକ୍ତ, ନିଃସ୍ୱ, ପଳାତକ, ଦରିଦ୍ର, ଅନ୍ଧାରରେ ଲୁଚି ଲୁଚି ବଞ୍ଚିଥିବା ପ୍ରାଣୀର କି ସଭ୍ୟତା ରହେ ? ଲୁଗା ଚିରିଗଲେ ଓ ତା'ପରେ ଲୁଗା ନଥିଲେ ମଣିଷ ଆତ୍ମହତ୍ୟା କରେ ନାହିଁ, ତଥାପି ସେ

ବଞ୍ଚେ । ଅଭ୍ୟସ୍ତ ଖାଦ୍ୟ ଚାଲିଗଲେ ବି ତଥାପି ସେ ବଂଚେ । ଦଶଜଣ ଏକା କଥା କଲେ କେହି ତାହାଙ୍କ ବାନ୍ଧିବାକୁ ନଥାନ୍ତି । ଅତ୍ୟାଚାରର ଦୁଃଖ ଦାରିଦ୍ର୍ୟ କବଳରେ କେତେ ସଭ୍ୟତା ଅନ୍ଧାରରେ ବୁଡ଼େ । ମଣିଷ ପୁଣି 'ଅସଭ୍ୟ' ହୁଏ, 'ପ୍ରକୃତି'ରେ ମିଶି ରହି ନୂଆ କରି ଆବିଷ୍କାର କରି କରି 'ଅଭିଜ୍ଞତା' ଅର୍ଜନ କରି କରି ପୁରୁଷ ପୁରୁଷର ଚେଷ୍ଟାରେ 'ସଭ୍ୟ' ହୋଇ ହୋଇ ଆସୁଥାଏ । ଯେତେବେଳେ ବାହାରର 'ସଭ୍ୟ' ଲୋକଙ୍କ ସମସର ହୋଇଯାଏ ସେ ଖାପିଯାଏ, ଆଉ ଅନାଏ ନାହିଁ ପଛକୁ ।

ଏଇ ଓଡ଼ିଶା ଭୂଇଁରେ ବି, କେତେ ସେମିତି ଖାପି ଗଲେଣି । ଆଉ ଚିହ୍ନି ହେଉ ନାହିଁ । କେତେ ରାଜା, ଜମିଦାର, 'ଉଚ୍ଚ ଜାତି', 'ଉଚ୍ଚ ଶ୍ରେଣୀ' । ସେମାନେ ବି କେବେ 'ଆଦିବାସୀ ହୋଇଥିଲେ, ତାଙ୍କ ପୂର୍ବ ପୁରୁଷ ବି ପତ୍ର ପିନ୍ଧୁଥିଲେ, ଗୁମ୍ଫାରେ କି ଗୁମ୍ଫାପରି ଘରେ ରହୁଥିଲେ ।

ଏବେ ବି ପାହାଡ଼ରେ ଯେ ଯେଉଁ ବିଚିତ୍ର ପ୍ରକାରେ ରହୁଛି ଚଳୁଛି ତା ଖାଲି ମନଗଢ଼ା ଖିଆଲ୍ ନୁହେଁ, ପ୍ରତ୍ୟେକ ବିଶିଷ୍ଟତାର କାରଣ ଅଛି, ଅବସ୍ଥା ଅନୁସାରେ ବ୍ୟବସ୍ଥା ହୋଇଛି, କହୁଛି ମଣିଷର ସହଜାତ ବୁଦ୍ଧି ଓ ଜୀବନ-ଅଭିଜ୍ଞତା । ସେ ପାରିପାର୍ଶ୍ୱିକ ଅବସ୍ଥା ବଦଳି ଯାଉ, ସେ ଚଳଣି ବି ଯିବ ଚାଲି ।

ସଡ଼କ ପିଟିଲେ, ଆଧୁନିକ ଶିଳ୍ପ ବ୍ୟବସାୟ ପ୍ରସରିଲେ, ଶିକ୍ଷାର ନିଆଁ ଧାସ ଲାଗିଲେ, ଆଦିବାସୀର ଚଳଣିରେ ତଥାକଥିତ 'ବିଶେଷତ୍ୱ' କାହିଁ ଉଭେଇ ଯାଏ ।

ଆଦିବାସୀର ଜଡ଼ିତ ସମ୍ପୃକ୍ତ ବିବିଧ ସଦ୍‌ଗୁଣର । ମଣିଷପଣିଆର । ସତ କହିବ । ସତରେ ଚଳିବ । ଗୋଷ୍ଠୀର ହିତ ପାଇଁ ବଞ୍ଚିବ । ବାଣ୍ଟି ଖାଇବ । ଗାଁ ଯାକ ଏକ ପରିବାର । ଋଣ ଫାଙ୍କିବ ନାହିଁ । ଠକିବ ନାହିଁ । ପରର ଜମିକୁ ପରର ସ୍ତ୍ରୀକୁ ତାର ଅନୁମତି ନ ଥିଲେ ଛଡ଼େଇ ନେବ ନାହିଁ । ଗୋଷ୍ଠୀର ଅନିଷ୍ଟ ନ କଲାଯାକେ ସମସ୍ତେ ସ୍ୱାଧୀନ ବିଚାର କରିବାକୁ ଅଧିକାରୀ, କି ସ୍ତ୍ରୀ ଲୋକ, କି ପିଲା । ନାରୀ ବହୁତ ସମ୍ମାନର ପାତ୍ରୀ । ନାରୀ ଓ ଶିଶୁ ବହୁତ ସ୍ନେହ ଆଦର ପାଇବାକୁ ହକ୍‌ଦାର୍ । ବିବାହ ବା ବିବାହ ଭାଙ୍ଗିବା ନିଜ ଇଚ୍ଛାରେ । ଜୀବନ ଆନନ୍ଦ କରିବା ପାଇଁ ଓ ପରିଶ୍ରମ କରିବା ପାଇଁ, ବ୍ୟକ୍ତିର ସ୍ୱାଧୀନତା ଓ ମର୍ଯ୍ୟାଦା ତା ଜୀବନଠୁଁ ବଳି ।

ସେ ସଂସ୍କୃତି ନାହିଁ ତାର ଛିଣ୍ଡା ଲେଙ୍ଗୋଟାରେ । ଅନ୍ୟ ଉପାୟ ନ ଥିବାରୁ କେମିତି ସେ କାଠିରେ କାଠି ଘଷି ନିଆଁ କାଢ଼େ ତହିଁରେ । ବାସନ କୁସନ ନ ଥିବାରୁ କେମିତି ସେ ଲାଉ ତୁମ୍ବାରେ କାମ ଚଳାଏ ତହିଁରେ । ଦେହ ସଜାଇବାକୁ ଗହଣା ନ ଥିବାରୁ କେମିତି ସେ ରଙ୍ଗ ରଙ୍ଗର ମାଳ ଗୁନ୍ଥି ଦେହରେ, ନାକରେ, କାନରେ ଓହଳାଏ ତହିଁରେ । ପାଣି ନ ଥିବା ପର୍ବତ ଉପରେ ଧାନମାନ ଚାଷ କରେ ବୋଲି ଝାଡ଼ା ଫେରି ସାରି କେମିତି ସେ ଘାସ ପତ୍ରରେ ପୋଛି ହୋଇ ସଫା ହୁଏ ତହିଁରେ, ପଥର କଂକଡ଼ ଉପରେ ଯଥେଷ୍ଟ ଫସଲ ହୁଏ ନାହିଁ । ଯାହା ହୁଏ ତହିଁରୁ ବାରଗଣ ନାନା ପ୍ରକାର ସାହୁକାର, ଠକ, ଶୋଷକ, ସାନ କର୍ମଚାରୀ ନାନା ଉପାୟରେ ଠକିଠାକି କି ଜୁଲୁମ କରି ନେଇ ପଳାନ୍ତି ବୋଲି କେମିତି ସେ ଆମ୍ବ ଟାକୁଆ, ତେନ୍ତୁଳି ମଞ୍ଜି, ମହୁଲ ଛେଲ୍ପ, ସଲପ କାଠର ଧଳ, ବଣୁଆ ଘାସର ମଞ୍ଜି ପରି ସୁଆଁ, କୋଶଲା, ଉଣ୍ଟ ଟାଙ୍କୁ, ( ପରଜା ଖାଦ୍ୟ ) ଡମଣା ସାପ, ( କନ୍ଧ ଖାଦ୍ୟ ) ମାଙ୍କଡ଼, ( ସନ୍ତାଳିଂକ ଖାଦ୍ୟ ) କାଇପୋକ ଭଜା କାଇ ଉମ୍ବ, ମହୁଜିମ୍ବ, ଝିରିପୋକ, ବଣର ନାନା ଜାତି ପତର, ଫଳ, ମୂଳ ଖାଇ ଜୀବନ ରଖେ । ଯୌବନ ପାଇଚି ସେଥିରେ । ତଳ ଦେଶରୁ ତ ସେ ତଡ଼ା ଖାଇଛି, ପାହାଡ଼ ଉପରେ ବହୁତ ଶୀତ, ବହୁତ ପବନ, ଚେଣ୍ଡୁ (ଡଂଗ୍ରିଆ ପରି) କେମିତି ସେ ଭୂଇଁ ତଳକୁ ଧ ହାତ ଖୋଳି କାନ୍ଥକୁ ମୋଟେ ଚାରିହାତ ଟେକ ଝରକା ନ ଥିବା ଘାସ ଛାଉଣି ଗୁମ୍ଫାଟିମାନ ଗଢ଼ି ତା ଭିତରେ ନିଆଁ ଜାଳି ରଖି ରହୁଥାଏ,—ତା ସଂସ୍କୃତି ନାହିଁ ସେଠି ଆଉବି । ତା ସଂସ୍କୃତି ନାହିଁ ବସ୍ତ୍ର ଅଭାବରୁ ଲଂଗଳା ରହିବାରେ, ଅଣ୍ଟାକୁ ଖଣ୍ଡେ କୌପୁନୀ, ସେତିକ ।

ସେ ବିଚରା ତ ବାଧ୍ୟରେ ପଡ଼ି ହୋଇଛି ରବିନ୍‌ସନ୍ କ୍ରୁସୋ, ଆମେ ବି ହୋଇଥାନ୍ତୁ । ପୃଥିବୀଯାକର ସମସ୍ତେ ହୁଅନ୍ତେ ।

ଆଜି, ଯେ କବଡ଼ ବଣ ପାହାଡ଼ ମୁଲୁକରେ ବୁଲି ଦେଖିଛନ୍ତି ସେମାନେ ଦେଖିଥିବେ । କେତେ ଅଣ-ଆଦିବାସୀ, ବ୍ରାହ୍ମଣ, ପାଇକ,

ରଣା, ଖଣ୍ଡାଏତ, କମ୍ମାର, ଗଉଡ଼, ପାଣ ବି ଅବ୍ଜଳ ସେମିତି ରହନ୍ତି ସେଠି, କିଏ ଅବା ଅଳ୍ପ 'ଉଚ୍ଚଶ୍ରେଣୀ ବସ୍ତି' । ଚଳଣିରେ ତଥାପି ବଡ଼ଲୋକର ଭୂତର ଛାଇ ଜଣାଏ । ସେ 'ପାଇକ' ଜାତିର ଲୋକ ଭିତରେ ଅନନ୍ତ ପୂର୍ବକାଳର 'ରଜା'— କୋଠଗଡ଼ 'ରଜା' ଭୁମୁଡ଼ବନ୍ଧ 'ରଜା'ଙ୍କୁ ଏବେ ବି ସେ କେହି ଦେଖି ଆସି ପାରନ୍ତି, ଆଜି —ନରବଳି ପ୍ରଥାର ପ୍ରଧାନ ପୀଠ, କୋରାପୁଟ୍ ଜିଲ୍ଲା ଗୁଣୁପୁର ସବ୍-ଡିଭିଜନ୍‌ର ଚନ୍ଦ୍ରପୁର ବ୍ଲକରେ ଅଛି ସେ ଜାଗା । ହରିଦାସ କଲୋନୀ "ନେହେରୁ— ପାଙ୍ଗା" ଇଲାକାକୁ ଲାଗି, ସାନବଙ୍କ ଗାଁ ଏବେ ଶାଳବଣ, କିନ୍ତୁ ଯେ ନେହ୍ନି ନରବଳି କରୋଉଥିଲେ ଅତୀତର ସେହି 'ରଜା' ବଂଶ ଏବେ ବି 'ପାତ୍ର', 'ବନଆର ସିଂ' ହୋଇ ହନୁମନ୍ତପୁର ଗାଁରେ କେମିତି ରହନ୍ତି କେମିତି ଚଳନ୍ତି । ଆଦିବାସୀଙ୍କଠୁଁ କେତେ ଅବା ତଫାତ୍ ଯେତେବେଳେ ଦେଖି ଆସିବ ଗଲେ । ବୃଦ୍ଧ ଘନ ବନଓ୍ୱର୍ ସିଂ,-ଜୀବନପ୍ରିୟ, ଗୁଣୀ, ସ୍ନେହୀ, କବିରାଜ, ଶିକାରୀ, ବନ୍ଧ ସଙ୍ଗୀତଜ୍ଞ ଓ ନର୍ତ୍ତକ—ତାଙ୍କର କନ୍ଧଭୁ ଦେଖି ଶରଧାରେ ତାଙ୍କ ନାଁ ଦେଇଥିଲି ଗୋସେଇଁଙ୍ଗା ( ଗୋଷ୍ଠ ବିଶେଷ, ନାଁ ଆଗରେ ଲଗାଏ ଚୋଟିଆ କନ୍ଧ) ମୋହନ । ସେ ଶରଧାରେ ସ୍ୱୀକାର କରିଥିଲେ ସେଇ ନାଁ ରହିଗଲା ।

ଦାରିଦ୍ର୍ୟ ଓ ପ୍ରତିକୂଳ ଅବସ୍ଥାରେ ପଡ଼ି ଉଦ୍‌ଭାବିକା ଶକ୍ତି ବହୁତ ବଢ଼ିଯାଏ । ଆଜିର ଜଣାଶୁଣା ଲୋକେ ନିଜ ନିଜ ଅତୀତରୁ ଅତି ଗର୍ବ ଆନନ୍ଦରେ ଅନେକ କଥା ସ୍ମରଣ କରି ପାରନ୍ତି । କୁଣ୍ଡାପିଠା ଖାଇବା, କୋଳଥ ପଇତି ପିଇ ଜୀବନ ରଖିବା, ପରିବା ଅଭାବରୁ ଅଗସ୍ତି ଗଛର କାଣ୍ଡକୁ 'ଉଲ୍‌କୋବି' କରିବା, ଦୁବ ଘାସରେ 'ଚଡ଼ଚଡ଼ି' କରିବା, କୁକୁଡ଼ା ନ ପାଇ ଘରଚଟିଆ ଚଢ଼େଇ ଭାଜି ଖାଇବା ( କୁଆଡ଼େ ଚଢ଼ିଁରେ କାମଶକ୍ତି ବଢ଼େ ବୋଲି ଅନେକ ବୁଢ଼ା ଲୁଚେଇ ଲୁଚେଇ— ) ।

ଅବସ୍ଥା ନ ବଦଳିଲେ,— ଗୋଟାଏ ପୁରୁଷର ବାପ ମା'ଙ୍କ ଚଳଣି ହୁଏ ଆର ପୁରୁଷକୁ 'ସଂସ୍କୃତି' । ସତେ ଅବା

'ଖପରା-ଡିଆଁ ଗଦାଧର ପଣ୍ଡିତ' । ସେମିତି ଆମର ପୂର୍ବଜ (ମାଇପେ) 'ଶଗୀ' କୁଟିଗା, ଅନ୍ଧାର ଘରେ ପଶି ହାତେ ଓଡ଼ଣା ପକାଇ ଝାଳରା ଫୁଟାଇ ଚ୍' ଚ୍' ହୋଇ ଠାରରେ ପରକୁ କଥା କହିବା 'ପଣ୍ଡିତ'; (ନ ହେଲେ 'ଧର୍ମ ବୁଡ଼ିଲା ଯେ !') ଦେଉଳ କାନ୍ଥ ଛବି କହୁଚି ଓଡ଼ିଆଣୀ ଗୁଡ଼ି ଫୁଲେଇ ଘୋଡ଼ାଚଢ଼ି ଲଢ଼େଇକି ଯାଉଥିଲେ (କୋଣାର୍କ ମାୟାଦେବୀ ଦେଉଳ କାନ୍ଥରେ ବହୁତ ସେପରି) । ଇତିହାସ କହୁଚି, ବେଶି ଦିନର କଥା ନୁହେଁ । ମୋଟେ ଦୁଇଶହ ଛତିଶି ବର୍ଷ ତଳେ, ଅର୍ଥାତ୍ ଅଠରଶ ଛନ ଅକ୍ଟୋବର ୧୪, ଦିନ ଏଗାରଟା (ଯେତେବେଳେ ଇଂରେଜ୍ ବାରବାଟି ଗଡ଼ରେ ପଶିଲେ) ବେଳୁ ଆରମ୍ଭ ଇଂରେଜ ଯୁଗର ଆରମ୍ଭ କାଳର ସତଷଠି ବର୍ଷ ଆଗରୁ ୧୭୩୩-୩୪ ରେ ବଙ୍ଗଳା ନବାବ୍ ମୁର୍ସିଦ୍ କୁଲି ଖାଁଙ୍କ ଝିଅଙ୍କ ସଉତୁଣୀ ପୁଅ ମହମ୍ମଦ ତକି ଖାଁ (୧୭୨୪ ରେ ତାଙ୍କ ବାପା ସୁଜା ଉଦ୍ଦିନ ବଙ୍ଗଳାର ନବାବ ହେଲେ ଓ ସେ ମୁସଲମାନ ଅଧିକୃତ ଓଡ଼ିଶା ଭାଗର ନାଏବ ନାଜିମ୍ ହେଲେ) ଭୁବନେଶ୍ୱର ଆକ୍ରମଣ କଲେ । ଶିଶୁପାଳ ଗଡ଼ ଆକ୍ରମଣ କରି ଧ୍ୱଂସ କଲେ । ସେତେବେଳେ ଖୋର୍ଦ୍ଧା ରାଜା ରାମଚନ୍ଦ୍ର ଦେବ ଓ ତାଙ୍କ ମନ୍ତ୍ରୀ-ସେନାପତି ପଦ୍ମଲକ୍ଷ୍ମୀ ରାଜ-ଗୁରୁ ମହାପାତ୍ର (ଶ୍ରୀବତ୍ସ ଗୋତ୍ର, ପୁରୀର ଚନ୍ଦନପୁରର ମହାପାତ୍ରମାନଙ୍କ ପୂର୍ବପୁରୁଷ) ଘୋଡ଼ାଚଢ଼ି ଗାଁ ଗାଁ ବୁଲି ଲଢ଼େଇକି ବାହାରିବାକୁ ଲୋକଙ୍କୁ ମତାଉଥିଲାବେଳେ ରାଜାଙ୍କର ଦ୍ୱିତୀୟା ରାଣୀ ଲଳିତା ଦେବୀ ଏବଂ ରାଜଗୁରୁ ପତ୍ନୀ ଲୀଳାବତୀ ଦେବୀ ଗ୍ରାମେ ଗ୍ରାମେ ଅଶ୍ୱପୃଷ୍ଠରେ ବୁଲି ନାରୀ ସମାଜରେ ଉତ୍ତେଜନା ସୃଷ୍ଟି କରି ଏ ଦେଶର ନାରୀ ଜାତିର କର୍ତ୍ତବ୍ୟ ବଖାଣୁଥିଲେ ।"

('ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ'
ଚକ୍ରଧର ମହାପାତ୍ର, ୧୯୬୯)

କାର୍ତ୍ତିକ ପକ୍ଷେ ଓଡ଼ିଆଣୀ ଦେହରେ ମୁହଁରେ ଶଗା କୁଟିଲେ, ଭଗବାନ ଦେଇଥିବା ଦେହ ସୌନ୍ଦର୍ଯ୍ୟକୁ ଆପଣା ହାତରେ କୁତ୍ସିତ କଲେ, ଅନ୍ଧାର କଣରେ 'ଲୁଚି' ଝାଳରା ଫୁଟାଇଲେ, ସେ ପୁଣି ହେଲା

ତାଙ୍କ ସଣୁଣା ? କୋଣାର୍କ ଭୁବନେଶ୍ୱର ନିର୍ମାତାମାନେ କାହିଁକି ତୋଳିଲେ ଅନ୍ଧାର ଖଲଖଲ ଖଞ୍ଜା, ତା ଭିତରେ ଲେଖିଛନ୍ତି ପର ଅନ୍ଧାର ଖଲଖଲ କଢ଼ବାଟ ଖୋଲ ( ଅତି ପ୍ରାଚୀନ ସଂଭ୍ରାନ୍ତ ଭଙ୍ଗାରପୁର ଚୌଧୁରୀ ଘରର ପୁରୁଣା ଉଆସ ଭିତର ପରି ) ? କନ୍ଧୁଣୀ ବି ତ ଅବିକଳ ସେହିପରି କଲେ ଫୁଲବାଣୀ ଜିଲ୍ଲା'ଯାକ । ତାର ଗୋଟିଏ ମାତ୍ର କାରଣ,—ବନୁଆ ବଦମାସ୍‌ମାନଙ୍କ ଦାଉରୁ ଆପଣା ଇଜତ୍ ରକ୍ଷା । ତାପରେ,—ଅନ୍ଧ ଅମଳରେ ଯାହା ଆସିଥିଲା ସାମାଜିକ ଆବଶ୍ୟକ ସକାଶେ, ନାନ୍ତି ଅମଳକୁ ତା ପରମ୍ପରା, ଆଖି ବୁଜି ମାନିବା ପବିତ୍ର କର୍ତ୍ତବ୍ୟ । ପ୍ରବୃତ୍ତି ଘଟେ ।

ପଚ୍ଛେ କିଏ ଆସି ହୃଦ୍‌ବୋଧ କରାଏ ଆଉ ସେ ଆବଶ୍ୟକ ନାହିଁ । ମାଳରେ ଖ୍ରୀଷ୍ଟଧର୍ମ ପ୍ରଚାରକ ମିସନେରି, କେଉଁଠି କେଉଁ ପ୍ରଭାବଶାଳୀ, ସମାଜ ସଂସ୍କାରକ, ମାଳର ଅନ୍ଧାରକୁ ନୂଆ ଆଲୁଅର ଜଳା ଫିଟା ରାସ୍ତା, ଯେଉଁବାଟେ ଆସେ ଡାକ୍ତର ଔଷଧ, ଆସନ୍ତି ଆଧୁନିକ ବିଜ୍ଞାନର ଉପଯୋଗ । ପବ୍ଲିକ୍ ହେଲ୍‌ଥ ବିଭାଗର ବସନ୍ତ ବାତଜର ମ୍ୟାଲେରିଆ ତଡ଼ା ଦୁର୍ଦ୍ଧର୍ଷ କର୍ମୀମାନେ, ମାଳର ଅନ୍ଧ ସନ୍ଧି ବୁଲି ମଶାତେଲ ଓ ଉଡ଼ଟି ପକାନ୍ତି ।

ସେତେବେଳେ ସମ୍ଭବ ହୁଏ ଏଭଳି ଅନ୍ଧବିଶ୍ୱାସ ଛୁଟାଇବା, ଯେ—

(୧) ବସନ୍ତ 'ଠାକୁରାଣୀ ମା' କରିଥିବା ରୋଗ, ତା ଟୀ ମାତୃଜ୍ୱର (ଆପ୍ୱା-ନୋମେରି), ତାକୁ ଉପାସ୍ୟ ଦେବୀ-ଉପଚାର

(ଆଗ ହିନ୍ଦୁ ରଟେଇଥିବା ବିଶ୍ୱାସ, ପଛେ ସବୁ ଆଦିବାସୀଙ୍କର)

(୨) ସବୁ ରୋଗର କର୍ତ୍ତା ନାନା ଦେବାଦେବୀ (କନ୍ଧବିଶ୍ୱାସ) ବିଶେଷତଃ ବିଲର ଗଂଗି ଦେବତାମାନେ, ଗଛର ବୁଇ ଦେବତାମାନେ (କୋଟିଆ କନ୍ଧ ବିଶ୍ୱାସ) ଝାଙ୍କରି, ଜୋମରି, ଠାକୁରାଣୀ ଆଦି (ଡଂଗ୍ରିଆ କନ୍ଧର ବିଶ୍ୱାସ) ନାନା ବଳିଦେଲେ ସେମାନେ ମଣିଷକୁ ଛାଡ଼ି ଚାଲିଯାନ୍ତି । ମଣିଷ ବଞ୍ଚିଯାଏ; ତେଣୁ ସାମାନ୍ୟ ସର୍ଦ୍ଦିଜ୍ୱର ହେଲେ ବି ବିଅ କୁକୁଡ଼ା ବଳି (ସେଥିଲାଗି ପାଣ ଉମ୍ବୁଠ୍ଠି ଚରଣ, ଟଂକାଏ ମୂଳ ବର୍ଷେ ଗଲେ ହୁଏ ଛ ଟଂକା, ଅଥବା ଛ ଟଂକାର ଫସଲ)

(୩) ସବୁ ରୋଗର କର୍ତ୍ତା ଆପଣାର ପୂର୍ବ ପୁରୁଷଂକ ପ୍ରେତାତ୍ମା-ମାନେ । ସେଇଥିରୁ ଗୋଟାଏ ଯନ୍ତ୍ର କାହାକୁ 'ଧରିବ' ସେ ବେମାର ପଡ଼ିବ, ତଥା ତାକୁ ଗୋଟାଏ ମଇଁଷି ବଳି (ସଓତାଙ୍କ ବିଶ୍ୱାସ, ସେଥିପାଇଁ ଲାଗିଥିବ ବର୍ଷଯାକ ବଳି, ଋଣ ଦେବାକୁ ସାହୁକାର ଠିକ୍ କରିଦେବ ଗାଁର ପାଣ, ଉଭୟ ଆଡ଼୍ ତାର କମିସନ୍, ସାହୁକାରର ଖଲୁଟଶୋଷା ସୁଧ, ଗୁଣୁପୁରର ପୂଷ୍ଠା ସିଂ ମାନଙ୍କରେ ଯେପରି ଦେଖାଯାଏ,—କଏ କେବେ ଆଠଣା କରଜ ଦେଇଥିଲା ତ ତିରିଶି ଟଂକାର ଶସ୍ୟ ବୋହି ନେଇ ସାରିଛି, ଆହୁରି ବାକି)

(୪) ହୁଏତ ରୋଗ କରିଛି କେଉଁ ଗୁଣିଆଁ (ହିନ୍ଦୁ ବିଶ୍ୱାସ), ପାଂଣିଆ (ସବୁ ଆଦିବାସୀଙ୍କ ବିଶ୍ୱାସ, ବିଶେଷତଃ କନ୍ଧ ଜାତିମାନଂକର), କି ପାଂଣିଆଣୀ (ସ୍ତ୍ରୀଲିଂ), କି ଡାଆଣୀ (ହିନ୍ଦୁ ବିଶ୍ୱାସ, ସାନ୍ତାଳ, ମୁଣ୍ଡାଙ୍କ ବିଶ୍ୱାସ) ସ୍ୱାର୍ଥହାନିକୁ ଅଜଣା ଡର ଯେତେବେଳଯାକେ ଥାଏ ସେତେ-ବେଳଯାକେ ବାବାଜି, ଗୁଣିଆ, କାଳସୀ, ଗଣକ, ହାତଦେଖାଳି, 'ଓକ୍‌କଲ୍‌ଟିଷ୍ଟ' ଦେବତା ଏମାନଂକୁ ଆସୁଣୁ ଯାଉଣୁ "ଜେ ଜେ" । ଚାକିରିରେ ଅଡୁଆ, ବେପାରରେ ଅଡୁଆ, ରାଜନୈତିକ କୋପଦୃଷ୍ଟି, ଆଣ୍ଟିକରପ୍‌ସନ୍, ପୁଲିସ ମକଦ୍ଦମା, ଅସୁକର,— ଉପୁର କାରଣ ଏସବୁ ବି ହୋଇପାରେ । ନାନା ଶ୍ରେଣୀର ନାନା ସମ୍ପ୍ରଦାୟର ନାନା ସ୍ତରର ଉପୁ ହାତାମାନଂକୁ ବେଶୀ ଆମେ ଦେଖୁ ରାଜଧାନୀମାନଂକରେ, ବାଛି ବାଛି ଡିପାର୍ଟମେଣ୍ଟ ଓ ଗଦି ପାଇଲେ କଏ ଦି ତିନି ବର୍ଷରେ ଦି ତିନି ଲକ୍ଷ ଟଂକାର ସଂପତ୍ତି, ଟେଲିଫୋନ୍ ଲଗା ବଡ଼ ପ୍ରାସାଦ, ଧନ-ଜନ-ଗୋପଲକ୍ଷ୍ମୀ ଝଞ୍ଜା ବୈଠକଖାନା ବି କରିବା ବିଚିତ୍ର ନୁହେଁ । ସଡ଼କ-କଡ଼ରେ ଗଛମୂଳେ ଯେଉଁ ଉପୁହାତା ବସି ତୁଠର ଉଣ୍ଡାବାଲି ପରି ଉଭୟଙ୍କୁ ସଫା କରେ ତା ଫିସ୍ ହୁଏତ ବିଅଣା ଚାରଣା, ସେଲୁନ୍‌ବାଲା ବଡ଼ ଲୋକ, ଖଞ୍ଜି ବସିଛନ୍ତି ଆଛା, ଇଂରେଜି ବି ଶୁଣେଇବାକୁ ହୁଏ, ଆପଣା ପୋଷାକ, ଆଧିବ୍ୟାଧି, ଅତିଥି ଚର୍ଚ୍ଚା ଆଦିରେ ତ ଖରଚ କରିବାକୁ ପଡ଼େ (ପୁଣି ସେ ଯେଉଁ ମହଙ୍ଗା କାଳ !) ଫିସ୍ ବେଶୀ ହେବା କଥା, ମେମ୍ବର ହେବା

ସମ୍ଭବ ସେଟେଲମେଣ୍ଟ, ଡେପୁଟି, ଜଏଣ୍ଟ, ସଚିବ, ଏ' କ୍ଲାସ୍ କଣ୍ଟ୍ରାକ୍ଟର ଆଦି । କୌପୁଣ୍ଣ ପିଢ଼ା ଗଢ଼କ, ପୁଣି ପଥରମୟ ପାହାଡ଼ି ଦେଶରେ,— ତାର ଏ ଅଭାବ ପୂରଣ ହୁଏ ବେଜୁଣୀ (ମାଙ୍କ କାଳସୀ) ନଚେଇ, ବେଜୁ (ପୁଂ) ନଚେଇ, ଜାନି, ଦିଶାରି, ଚଲ୍ମ୍ବା ଦେହୁରି (ବିଭିନ୍ନ ପୁରୋହିତାଙ୍କ ଦ୍ୱାରା । ଟୋପିଏ ସଲପ ମଦ କି ମହୁଲି ମଦ ପିଇ (ସୋମରସ ଓ ସୁରା ତ ରହିଲା ସୁରଂକଙ୍କ ଠେଇଁ), ଶାଳ ଗଛରୁ ଛଡ଼େଇ ଆଣିଥିବା ଝୁଣାକୁ ଧୂଆଁ କରି ସେ ଧୂଆଁରୁ ଦିକିଛି ପିଇ, ଲମ୍ବା ଲମ୍ବା ଝାମ୍ପରା ବାଳକୁ ଝାଂକ ଦେଇ ମୁଣ୍ଡକୁ ଦି ଭୂଈଥର ବାଲ ଲାଗିଲା ପରି ହଲେଇ ଦେଲେ ତା ଉପରେ ଚଢ଼ି ବସିଲା ଦେବାତ୍ମା କି ପ୍ରେତାତ୍ମା; ବଟେ ସେ କହିବ ସେ କିଏ, କାହିଁକି 'ଅସୁଖ' ଧରିଛି, କଣ ଖାଇବାକୁ ଦେଲେ ସେ ବିଦେଇ ହୋଇଯିବ, ତା ଶିକାର ସାଂଗକୁ ହର୍ଷରେ ଉନ୍ମତ୍ତ ହୋଇ ପିଟି ଲାଗିଥିବା, ଫୁଙ୍କି ଲାଗିଥିବା ଡମ୍ବର ବାଇଦ ବାଜଣା ('ପୂଜା' ହେଲେ ତାର ଭାଗ ଅଛି, ସେ ବି ପୁରୋହିତ ପରି ପୁଟୁଳା ବାନ୍ଧି ଘରକୁ ନେବ, ମଇଁଷି ହଣା ହେଲେ ତା ମୁଣ୍ଡ, ଗୁଲି ଆଉ କିଛି ମାଂସ), ଗୁଳିଲା ଗୋଟାଏ ଆନୁଷ୍ଠାନିକ ପୂଜା ।

ସେ ତ ସେମିତି କିଛି 'ସଂସ୍କୃତି' ନୁହେଁ, କାରଣ ସତ୍ତ୍ୱ ଲୁପ୍ତ ହେଲେ ଫଳ-ସତ୍ତ୍ୱ ଲୋପ ହେବ, ବରଂ ଏ ଜାତିଆ କିଛି 'ଷ୍ଟଡ଼ି' କରିବା ଉଦ୍ଦେଶ୍ୟ ଥିଲେ 'ନୃତତ୍ତ୍ୱବିଦ୍ ଗବେଷକ' ରାଜଧାନୀମାନଂକରେ (ଯଥା ଭୁବନେଶ୍ୱରରେ, ଦିଲ୍ଲୀରେ) ବେଶି ତଥ୍ୟ ବେଶି ଉପାଦାନ ପାଇବେ ।

ଆମର ତାଙ୍କର ଧର୍ମ ବିଶ୍ୱାସରେ ନାନା ପାର୍ଥକ୍ୟ ଅଛି, ଦେଣ ନେଣ ସୂତ୍ରରେ ଆର୍ଯ୍ୟଙ୍କଠୁଁ ଅଣ-ଆର୍ଯ୍ୟ ନେଇଥିବାର, ଅଣ-ଆର୍ଯ୍ୟଙ୍କଠୁଁ ଆର୍ଯ୍ୟ ନେଇଥିବାର ଅନେକ ସାମଞ୍ଜସ୍ୟ ବି ଅଛି । ଆଗ ଦେଖାଯାଉ ସୃଷ୍ଟିର ଆଦି ଉତ୍ପତ୍ତି; ସାନ୍ତାଳ, ମୁଣ୍ଡାଙ୍କୁ ମିଶାଇ ଶାବର (ଅର୍ଥାତ୍ ମୁଣ୍ଡାରି, ମେଲାନଡ଼୍) ଗୋଷ୍ଠୀ ବିଶ୍ୱାସ କରେ ଗୋଟାଏ ଡିମ୍ବରୁ ଆଦି ପିତା (ପିଲ୍ଚୁ ହାରାମ୍) ଆଦି ମାତା (ପିଲ୍ଚୁ ବୁଢ଼ି) ଏ ଦୁହିଂକ ଜନ୍ମ, ତାଙ୍କଠୁଁ ମଣିଷ ଜାତି । ହୁଏତ ଏଇ ଡିମ୍ବକୁ ଆପଣାର କରିନେଲେ

ଆର୍ଯ୍ୟ ଗୋଷ୍ଠୀର ଲୋକେ ନିଜର ଅଜ୍ଞାତରେ ପରମ୍ପରା ଗଢ଼ି ନେଲେ ଅଥବା ଏ ହିନ୍ଦୁ ଦାର୍ଶନିକମାନେ ଧ୍ୟାନରେ ଦେଖି ପ୍ରକଟ କରିବା କାହାଣୀ—

ସୃଷ୍ଟିର ଆରମ୍ଭରୁ ଆଗ ହେଲା ଗୋଟିଏ ଡିମ୍ବ (ବ୍ରହ୍ମାଣ୍ଡ)
"ପ୍ରକୃତ ଧିଷ୍ଠିତତ୍ୱାତ୍ ଚ ପ୍ରାଧାନାନୁଗ୍ରହେଣ ଚ
ମହତ୍ ଆଦ୍ୟା ବିଶେଷାନ୍ତା ହି ଅଣ୍ଡମ୍ ଉତ୍ପାଦୟନ୍ତି ତେ ।"
(ବିଷ୍ଣୁପୁରାଣର ପ୍ରଥମାଂଶ, ୨ୟ ଅଧ୍ୟାୟ ୫୦ ଶ୍ଳୋକ)

ଡିମ୍ବଟି ବଢ଼ିଲା, ପ୍ରକାଣ୍ଡ ହେଲା । ଜଗତ୍‌ପତି ଯେଉଁ ବିଷ୍ଣୁଙ୍କ ସ୍ୱରୂପ ଅବ୍ୟକ୍ତ ହିଁ, ତାଙ୍କ ରୂପ ବ୍ୟକ୍ତ ଅର୍ଥାତ୍ ପ୍ରକାଶ ହେଲା, ନିଜେ ସେ ବ୍ରହ୍ମ ହୋଇ ରୂପ ପରିଗ୍ରହ କରି ସେ ଡିମ୍ବରେ ବ୍ୟବସ୍ଥିତ ହେଲେ, ଅର୍ଥାତ୍ ସେ ଡିମ୍ବଟିଯାକ ହିଁ ହେଲା ବ୍ରହ୍ମ । ମେରୁ ହେଲା ତା ଖୋଳପା, (ଉଲ୍ୱମ୍)ଅନ୍ୟାନ୍ୟ ପାହାଡ଼ ତାର ଜରାୟୁ ହେଲେ, ସମୁଦ୍ରମାନେ ହୋଇଲେ ସେ ଡିମ୍ବ ଭିତର ପାଣି । ତାର ଭିତର ସାରା ସୃଷ୍ଟି ସୃଷ୍ଟହେଲା ।

"ମେରୁଃ ଉଲ୍ୱମ୍ ଅଭୂତ୍ ତସ୍ୟ ଜରାୟୁଶ୍ଚ ମହୀଧରାଃ
ଗର୍ଭୋଦକଂ ସମୁଦ୍ରାଶ୍ଚ ତସ୍ୟ ଆସନ୍ ସୁମହାତ୍ମନଃ"
ବିଷ୍ଣୁ । ପ୍ରଥମ । ୨ । ୫୧

ସେ ଡିମ୍ବ ବିଷୟରେ ମହାଭାରତର ଖିଲହରିବଂଶ ପର୍ବରେ ବି ଲେଖାଅଛି—

"ହିରଣ୍ୟ ବର୍ଣ୍ଣମ୍ ଅଭବତ୍ ତତ୍ ଅଣ୍ଡମ୍ ଉଦକେଶୟମ୍
ତତ୍ର ଜଜ୍ଞେ ସ୍ୱୟଂ ବ୍ରହ୍ମା ସ୍ୱୟମ୍ଭୁଃ ଇତି ନଃ ଶ୍ରୁତମ୍"
(ପ୍ରଥମ ଅଧ୍ୟାୟ । ୨୯)

ଆର୍ଯ୍ୟଙ୍କଠୁଁ ଅଣ-ଆର୍ଯ୍ୟ ନେଇଥିବେ ଦୁର୍ଗା ପୂଜା ଓ ତା ଉତ୍ସରୁ ନରବଳି । ଆର୍ଯ୍ୟମାନେ ଜନ୍ତୁ ଓ ମଣିଂଷକୁ ବଳି ଦେଇ ତାଙ୍କ ଦେବତାମାନଙ୍କୁ ସନ୍ତୁଷ୍ଟ କରୁଥିଲେ, ସେ କାମ ନାଁ 'ଯଜ୍ଞ' । ଅବଶ୍ୟ ଯଜ୍ଞ ଶବ୍ଦର ତାତ୍ତ୍ୱିକ ଆଧ୍ୟାତ୍ମିକ ଅର୍ଥମାନ କରାଯାଏ ।

କୁହାଯାଏ ଯଜ୍ଞରେ ପଶୁ ବଧ ଷଧାନ ପ୍ରକୃତରେ ପଶୁ ବଧ ନୁହେଁ; ତା ଅର୍ଥ ନିଜର ପାଶବିକ ପ୍ରବୃତ୍ତିମାନଙ୍କୁ ହନନ୍‌। କିନ୍ତୁ ଯେଉଁମାନେ ଯଜ୍ଞ କୁଣ୍ଡ ଗଢ଼ୁଥିଲେ, ଜନ୍ତୁ ହାଣୁଥିଲେ, କେବେ କେବେ ମଣିଷ ବି, କହୁଥିଲେ ସେମାନେ କୌଣସି ପାପ କରୁ ନାହାନ୍ତି (କିଛି ମନ୍ତ୍ର ବି କହେ—ଆମେ ପାପ କରୁନାହୁଁ, ଦୋଷ କରୁନାହୁଁ, ମାଂସ ଏକ ପାପ୍‌ ହୁଅନ୍ତେ, ମାଂସ ଏକ ଦୋଷ ହୁଅନ୍ତେ।") ସେମାନେ ଏଭଳି 'ମେଟାଫିଜିକାଲ୍‌' ଅର୍ଥରେ ତା କରୁ ନ ଥିଲେ। ଦୋଷ ଛଡ଼େଇ କହି ବୁଲୁଥିଲେ "ଯଜ୍ଞରେ କତଲ୍‌ ହବା ପ୍ରାଣୀର ଆତ୍ମା ସ୍ୱର୍ଗକୁ ଯାଏ।" ବୁଦ୍ଧି ବିଭ୍ରଷ୍ଟ ଯାଜକମାନେ ତାଙ୍କୁ ଥଟ୍ଟାରେ ଉଡ଼େଇ କହୁଥିଲେ "ସେହି ଉପାୟରେ ଆଗ ଆପଣା ଆପଣା ବାପ ମା'ଙ୍କ ଆତ୍ମାମାନଙ୍କୁ ସ୍ୱର୍ଗକୁ ନ ପଠେଇ ପଶୁଗୁଡ଼ାଙ୍କୁ ଉଦ୍ଧାର କରିବାକୁ ସ୍ୱାଂକ ପେଟ ଏତେ ବଥେଉଛି କାହିଁକି ହୋ? ଆଗ ବାପ ମା'ଙ୍କୁ ବଳି ପକେଇ ତାଂକ ଆତ୍ମାର ସ୍ୱର୍ଗ ଗତି କରି ସୁପୁତ୍ରର କର୍ତ୍ତବ୍ୟ କରନ୍ତୁ।" ସେହି ଯଜ୍ଞରେ ପ୍ରାଣୀବଧ ପ୍ରଥାର ବିରୋଧ କରି ଠିଆହେଲେ ଭଗବାନ ବୁଦ୍ଧ, କବି ଜୟଦେବ ଲେଖିଗଲେ—

"ନିନ୍ଦସି ଯଜ୍ଞ ବିଧେଃ ଆହହ ଶ୍ରୁତି ଜାତଂ
ସଦୟ ହୃଦୟ ଦର୍ଶିତ ପଶୁ ଘାତଂ।
କେଶବ ଧୃତ ବୁଦ୍ଧ ଶରୀର, ଜୟ ଜଗଦୀଶ ହରେ।"

ଲାଭ ପାଇଁ, ମୋକ୍ଷ ପାଇଁ, ଯଜ୍ଞ ନାଁରେ ହାଣକାଟ କରି ରକ୍ତ ଢାଳିବା ପ୍ରଥା ଥିଲା। ରକ୍ତରେ ଜୁଡ଼ୁବୁଡ଼ୁ ହେଉଥିଲା ଏଇ ଭାରତର ମାଟି, ଆମରି ପୂର୍ବ ପୁରୁଷମାନେ ଥିଲେ ତାର କର୍ତ୍ତା।

ସେହି ଯଜ୍ଞ ବିଧିର ଗ୍ରନ୍ଥ—କୃଷ୍ଣ ଯଜୁର୍ବେଦ। ତାରି ବେଦର ନାଁ ତୈତ୍ତିରୀୟ ସଂହିତା।

ସେଇଥିରେ ଅଛି, ଯଜ୍ଞ କୁଣ୍ଡ ହେଲା, ମାଟିରେ କଣା ହୋଇଥିବା ଇଟାମାନ ଲଦା ହେଲା। ନିଆଁ ଜଳିବା ଆଗରୁ କରେଇରେ ଥୁଆ ହେଉଛି (୧) ଗୋଟିଏ କଟା ମଣିଷ ମୁଣ୍ଡ, ଥୋଡ଼ ସାମ୍ନାକୁ ଝୁଙ୍କିଛି।

ମୁହଁ ପବଂକୁ । (୨) ତା ସାମ୍ନାରେ ଗୋଟିଏ କଟା ଘୋଡ଼ା ମୁଣ୍ଡ, ମୁହଁ ପଶ୍ଚିମକୁ । (୩) ମଣିଷ ମୁଣ୍ଡ ପଛଆଡ଼େ ଗୋଟିଏ କଟା ଷଣ୍ଢ ମୁଣ୍ଡ, ମୁହଁ ପୂର୍ବକୁ । (୪) ତା ଡାହାଣକୁ ଗୋଟିଏ କଟା ମେଣ୍ଢା ମୁଣ୍ଡ, ମୁହଁ ଉତ୍ତରକୁ । (୫) ଷଣ୍ଢ ମୁଣ୍ଡ ବାଁକୁ ଗୋଟିଏ କଟା ଛେଳି ମୁଣ୍ଡ । ମୁହଁ ଦକ୍ଷିଣକୁ ।

(ଦ୍ରଷ୍ଟବ୍ୟ—ଯୂଜୁର୍ବେଦର ତୈତ୍ତିରୀୟ ସଂହିତାର ୪—୨୩ । ୧୦
କାଠକ ସଂହିତାର ୧୬.୧୭
କପିଷ୍ଠଳ ସଂହିତାର ୨୫.୮
ମୈତ୍ରାୟଣୀ ସଂହିତାର ୨.୭.୧୭
ବାଜସନେୟୀ ସଂହିତା (ଅର୍ଥାତ୍
ଶତପଥ ବ୍ରାହ୍ମଣ)ର ୧୩.୪୧.୫୧
ଏଥିପାଇଁ 'ବ୍ରାହ୍ମଣ'—ତୈତ୍ତିରୀୟ
ସଂହିତାର ୫.୨.୯)

ପ୍ରତି ମୁଣ୍ଡକୁ ଥୋଇ ତାକୁ ପୂଜା କରା ଯାଉଥିଲା !
ଅଗ୍ନିର ମନ୍ତ୍ର ବୋଲି ବୋଲି ଡାକ ହାକ କରୁଥିଲେ ।
ମଣିଷର କଟା ମୁଣ୍ଡକୁ ଉପଲକ୍ଷ୍ୟ କରି—
(ମୁଣ୍ଡ ଥୋଇଲା ବେଳେ)

"ତାକୁ ରକ୍ଷା କର, ତୁମ ତାତରେ ତା ଅନିଷ୍ଟ କରନାହିଁ, ତମକୁ ଆମେ ପୂଜି ସଜାଡ଼ିଲା ପାଛେ ଯା ଅୟୁଷ ହେବ ଦଶ ଶହେ ବର୍ଷ ।

(ସେଉଠୁଁ କଟା ମଣିଷ ମୁଣ୍ଡକୁ ପୂଜା କରି)

ପ୍ରାଣୀଙ୍କ ଭିତରେ ଏଇଟି ହିଁ ଗୋଡ଼ଆ, ଯା ଅନିଷ୍ଟ କର ନାହିଁ ।

ହେ ଶହେ ଆଖିଆ ଅଗ୍ନି, ତୁମ ପାଇଁ ପୂଜି ସଜଡ଼ା ହେଉଛି ।

ଆପଣା ଗୋଷ୍ଠୀ ବିପତ୍ତିରୁ ରକ୍ଷା ହେଉ, ଆପଣା ଦଳ ମଣିଷଙ୍କର ଶହେ ଶହେ ବର୍ଷ ଆୟୁଷ ହେଉ, ଅଗ୍ନିଙ୍କ ଆଗ ଏହି ବର ମାଗି ଯଜ୍ଞ କୁଣ୍ଡର କରେଇ ଥୋଉ ଥୋଉ ପ୍ରତି ଯଜ୍ଞକୁଣ୍ଡ ।

ପ୍ରତିଷ୍ଠା କଲାବେଳେ ଅନ୍ତତଃ ଜଣେ ଲେଖାଁ ମଣିଷର ମୁଣ୍ଡ କାଟୁଥିଲେ ଯଜ୍ଞକାରୀଆ ଆର୍ଯ୍ୟ ।

ସେଇ ଯଜ୍ଞକୁ ଧ୍ୱଂସ କରୁଥିଲେ ଅଣଆର୍ଯ୍ୟ; କଣ୍ଟସ୍ତ ତାଂକ ଆଖିରେ ତା ଯାହା ନ ଥିଲା ଆଗ ଆଗ । ସେଥିପାଇଁ—ନରକୁଣ୍ଡ ହୋଇ ତଳା ବାଧାରେ ଆର୍ଯ୍ୟମାନେ ଏମିତି ଗୋଟିଏ ଗୋଟିଏ ଯଜ୍ଞ କୁଣ୍ଡ ପ୍ରତିଷ୍ଠା କରିବେ ବୋଲି ଆର୍ଯ୍ୟ ଅଣଆର୍ଯ୍ୟଙ୍କ ଭିତରେ କେତେ ପ୍ରାଣ ଗଲା !

ଯଜ୍ଞ କୁଣ୍ଡ ପ୍ରତିଷ୍ଠା ହେଲ, ସ୍ୱଳଲ ତାପରେ ପଶୁ ହଣା, ଅସଂଖ୍ୟ ବଳି । ବଶିଷ୍ଟ ବଳମାନ ବି ଅଛି । ଯଥା—ଅଶ୍ୱମେଧ ଯଜ୍ଞ, ଘୋଡ଼ା ହଣା ଯଜ୍ଞ ସେ ।

ସେମିତି ଆଉ ଗୋଟିଏ ପସିଦ୍ଧ ବୈଦିକ ଯଜ୍ଞର ନାଁ 'ପୁରୁଷ ମେଧ ଯଜ୍ଞ ।' 'ଶତପଥ ବ୍ରାହ୍ମଣ'ରେ 'ଆପସ୍ତମ୍ବ' (୨୦)ରେ, ଶାଂଖା-ୟନରେ (୧୬.୧୦—୧୪), ବୈତାନ ସୂତ୍ରରେ (୩୭.୧୦—୩୮), ହିରଣ୍ୟ କେଶିନ୍‌ରେ (୧୪.୬) ଓ କାତ୍ୟାୟନରେ (୨୧.୧)ରେ ତାର ବର୍ଣ୍ଣନା ଅଛି । ଶାଂଖାୟନ ଓ ବୈତାୟନରେ ଅଶ୍ୱମେଧ ଯଜ୍ଞର ଘୋଡାକୁ ହାଣିବା ପର ଜଣେ ମଣିଷକୁ ହାଣିବା ଓ ବଳି ଦେବାର ବର୍ଣ୍ଣନା ଅଛି, ଆଉ ଅଛି ଯେ ସେହି ଯଜ୍ଞ କରେ ସେ ନିଜ ଦୈହିକ ବିପତ୍ତିରୁ ଉଦ୍ଧାର ପାଇବା ପାଇଁ ତା କରେ, ମୋକ୍ଷ ପାଇଁ ନୁହେଁ । ତାର ସ୍ତୋତ୍ର ଗୁଡ଼ାକ ଋଗ୍‌ବେଦ ଓ ଅଥର୍ବ ବେଦରୁ ନିଆ ହୋଇଛି । ଶତପଥରେ (୬.୨.୧.୩୭) ଅଛି ଯେ ଶେଷ ଥରକ ସେ ଯଜ୍ଞ କରି ମଣିଷ ବଳି ଦେଇଥିଲେ ଶ୍ୟାପର୍ଣ୍ଣ ସାୟକାୟନ ।

କହ ସ୍ତବ୍ଧତାରେ ଯେମିତି ଥିଲା, ମଣିଷ ବଳିକୁ ପଇସା ଦେଇ କିଣିବାର ପ୍ରଥା, ସେ ପଚ୍ଛେ ଧରି ଅଣା ହୋଇଥିବା ମଣିଷ ହେଉ, ଯେମିତି ତୈତ୍ତିରୀୟ ସଂହିତାରେ ଆପସ୍ତମ୍ବ ସୂତ୍ରରେ ଅଛି ଯେ ଜଣେ କ୍ଷତ୍ରିୟକୁ ବା ଜଣେ ବୈଶ୍ୟକୁ ଧନୁଶର ମାରି ହତ୍ୟା କରାଯାଇଥିବ ବା ସେ ବଜ୍ର ପଡ଼ି ମରିଥିବ, ତେବେ ତା ମୁଣ୍ଡକୁ ୨୧ଟା ଶିମ୍ବ ଦାମ ଦେଇ କିଣିକାଟି ଆଣି-ବାକୁ ପଡ଼ିବ । ସେଇ ମୁଣ୍ଡକୁ ନେଇ ସାତଟା ଗାତ ଫୁଟିଥିବା ଗୋଟାଏ

ଉଚ୍ଚଦ୍ୱଙ୍କା ଉପରେ ଥୋଇବେ, ତାକୁ ଶାବନ୍ୟାସ ଦେବେ, ଉତ୍ସୋଷ୍ଟି ମନ୍ତ୍ର ବୋଲି ପଠନ୍ତି ତାକୁ ଛଡ଼ାଇ ରଖିବେ, ସେଉଠୁ ଗୋଟାଏ ଗାଈ ଦାଣି ପ୍ରଜାପତିଙ୍କୁ ଦେଲେ ଯଜ୍ଞ ସରିବ । ୨୧ଟା ଶୀମ୍ବ ଦେଇ ମୁଣ୍ଡଟା କିଣିବା କଥା 'ଜାତକ'ରେ (୨୮.୮) ବି ଅଛି, ଏମିତି କଟାମୁଣ୍ଡ ଥୋଇବା ତ ମାମୁଲି ବୋଲି ପୈଷ୍ଣାପୁଣୀ (୩.୨୧୯)ରେ କୁହାଯାଇଛି ।

ବଳି ପଡ଼ୁନଥିଲେ ଦେଶ ଧାଖେ ବି ବଳି ପଡ଼ୁଥିଲା, ସେ ପ୍ରଥା ଅତି ସାଧାରଣ ହେଲା । ମଣିଷ ହଣା ହେବେ, ତାଙ୍କ ମୁଣ୍ଡ ଉପରେ ଦେଶ ପ୍ରତିଷ୍ଠା କରାହେବ । ତାନ୍ତ୍ରିକ ପଦ୍ଧତିରେ ଏସବୁ ତ ଖୁବ ଚଳିଲା । କାଣପୁର ଯାଉ ଯାଉ ହାତୁଆଡ ଠାକୁରାଣୀଙ୍କ କିମ୍ବଦନ୍ତୀ (ଗାଁ ନାଁ ବି ଅନୁରୂପ, ହତୁଆଳଃ (ହାଣିବା ଉଦ୍ଦେଶ୍ୟରେ ଗୋଟାଏ ପଡିଆରି,—ରାଜା ଏଇ ପଡିଆରି ଦେଖାଇ ବ୍ରାହ୍ମଣଙ୍କୁ ହାଣିବେ ବୋଲି ପ୍ରଲୁବ୍ଧ କରି ଗୁପ୍ତ ଡିଆଡ଼ ଭିତରକୁ ଡାକି ଆଣୁଥିଲେ ଯେ ସେମାନଙ୍କ ପାଇଁ ସେଠି ଭୋଜି-ଭାତ ବ୍ୟବସ୍ଥା କରା ହୋଇଛି । ତାପରେ, ଜଣକା ଜଣେ ପଦଞ୍ଚୁ ପଦଞ୍ଚୁ ହେ ବେକ ଉପରେ ଖେଣ୍ଟ) ଏ ପ୍ରଥାର ଉଦାହରଣ । ତାନ୍ତ୍ରିକ ସିଦ୍ଧି ମିଳିବ ବୋଲି ମଣିଷ ବଳି ଦଉଥିଲେ, ରାଜା 'ପାକାର' (କ୍ଷମତା) ପାଇଁ, ନାନାପ୍ରକାର କଳ୍ପିତ ଲାଭ ପାଇଁ ସବୁଠି 'ଚଣ୍ଡୀ' ଆଗରେ ଛେଦ ।

୧୯୪୧—୪୨ ପୂର୍ବରୁ କନ୍ଧମାନଙ୍କ 'ମେରିଆ' (ଅର୍ଥାତ୍ ବଳି) ପ୍ରକାର ସ୍ରୋତ ଅନ୍ୟ କାହାରିଦ୍ୱାରା ସଂଗୃହୀତ ହୋଇ ନଥିଲା । ଇଂରେଜ ସରକାରଙ୍କର ଯେଉଁ କର୍ମଚାରୀ ଜଣକ ସର୍ବପ୍ରଥମେ କନ୍ଧମାଳ ଭିତରକୁ ଫଉଜ ଧରି ପଶିଗଲେ ତାଙ୍କ ନାଁ ଶ୍ରୀଯୁକ୍ତ ରସେଲ । ସେ ମାନ୍ଦ୍ରାଜରୁ ପଠା ହୋଇଥିଲେ ଓ ସେ କଲେକ୍ଟରର ପାହ୍ୟାର ଲୋକ । ୧୮୩୭ ଫେବ୍ରୁୟାରୀରେ ଘୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କୁ ଗୋଡ଼େଇ ଗୋଡ଼େଇ ଇଂରେଜ ସୈନ୍ୟ ପର୍ବଳ ପ୍ରଥମ ଘାଟି ନଡ଼ିଲେ ଓ ଫଉଜର କ୍ୟାପ୍ଟେନ ଶ୍ରୀଯୁକ୍ତ ବଟ୍ଲର୍ ଆଗ କନ୍ଧ ଲୋକଙ୍କୁ ଦେଖିଲେ । ତା ଆଗରୁ କୌଣସି ଇଂରେଜ କନ୍ଧ-ଟିଏ ବି ଦେଖି ନଥିଲେ । ସେତିକିବେଳେ ରସେଲଙ୍କୁ ଖବର ମିଳିଲା ଯେ କେତେଠି କନ୍ଧମାନେ ମେରିଆ ବଳି ପକାଇ ମଣିଷ ହାଣୁଛନ୍ତି ଓ ସେକଥା

ମେ ୧୮୩୬ ଅଗଷ୍ଟ ମାସରେ ଇଂରେଜ ସରକାରଙ୍କୁ ଲେଖି ଜଣାଇଲେ । ପୁଣି ଘୁମସୁର ଜିଲ୍ଲା କଲେକ୍ଟର ଶ୍ରୀଯୁକ୍ତ ଷ୍ଟିଭେନ୍‌ସନ୍ ମେରିଆ ବଳି ବିଷୟ ବର୍ଣ୍ଣନା କରି ରସେଲଙ୍କ ପାଖକୁ ଲେଖନ୍ତେ ତା ୧୧-୫-୧୮୩୭ରେ ରସେଲ ସେହିକଥା ଇଂରେଜ ସରକାରଂକୁ ଲେଖିଲେ । କେଉଁଠି କେଉଁଠି ନରବଳି ଚାଲିଥିଲା, ସେସବୁ ଅଞ୍ଚଳ ବିଷୟରେ ରସେଲ ଲେଖିଥିଲେ ।

"କଟକ ଦେଶର କେତେ ଜିଲ୍ଲାମାନଂକରେ ଓ ମାନ୍ଦ୍ରାଜ ପ୍ରେସି-ଡେନ୍‌ସିର କେତେ ଜିଲ୍ଲାମାନଂକରେ ଦକ୍ଷିଣରୁ ଧରି ଜୟପୁରଠାରୁ ମହାନଦୀ ଯେଉଁ ସମୁଦାୟ ଅଞ୍ଚଳ ଯାକରେ ତ ନରବଳି ପଡ଼େ, ତାଛଡ଼ା ନାଗପୁର ଦେଶର ଅନେକ ଜିଲ୍ଲାରେ ସେପ୍ରୁ ଚାଲେ ଓ ଏପର୍ଯ୍ୟନ୍ତ ସ୍ୱାଧୀନ ଥିବା ଅନେକ ଅଞ୍ଚଳରେ ବି ଚାଲେ ।

ସେତେବେଳକା ଭିଶାଖାପାଟଣା ଜିଲ୍ଲାର କଲେକ୍ଟର ଶ୍ରୀଯୁକ୍ତ ଆର୍ବୁଥ୍‌ନଟ୍ ୨୪-୧୧-୧୮୩୭ରେ ସରକାରଂକୁ ଲେଖିଲେ—

"ଯେଉଁ ପର୍ବତଶ୍ରେଣୀ ଇଷ୍ଟଇଣ୍ଡିଆ କଂପାନୀଙ୍କ ଅଧିକୃତ ଅଞ୍ଚଳକୁ ନାଗପୁର ଓ ହାଇଦରାବାଦର ରଜାମାନଂକ ଦେଶଠାରୁ ବିଚ୍ଛିନ୍ନ କରି ରଖିଛି ସେ ସମୁଦାୟ ପର୍ବତଶ୍ରେଣୀଯାକ ଯେଉଁଠି ଅତି ଦୁର୍ଭେଦ୍ୟ ସ୍ଥାନ ସବୁ ଅଛି ସେଠି ନରବଳି ଚାଲିଛି ।"

୧୮୩୮ ଜାନୁଆରି ଆରମ୍ଭରୁ ରସେଲଙ୍କ ସହକର୍ମୀ କ୍ୟାପ୍‌ଟେନ୍ କ୍ୟାମ୍ପବେଲ୍ ନିଜେ ଚାହିଁଲେ ଯେ ସେ ମାଳକୁ ଯାଇ କନ୍ଧଙ୍କ କବଳରୁ 'ବଳି'ମାନଂକୁ ଉଦ୍ଧାର କରିବେ । ସରକାର ତାଙ୍କ ଅନୁରୋଧ ମଞ୍ଜୁର କଲେ, ୫୦ଟି ସୈନିକ ଓ ଥୋଡ଼ାଏ ପାଇକ ଧରି ସେ ଘୁମୁସର ମାଳକୁ ଗଲେ । କନ୍ଧ ସର୍ଦ୍ଦାରଙ୍କୁ ଏକାଠି ଡକାଇ କନ୍ଧପୋଡ଼ି ଉପରେଇ ଶତେକଜଣ 'ବଳି'ଙ୍କୁ ଉଦ୍ଧାର କରି ନେଇ ଆସିଲେ । ସେଗୁଡ଼ିକ ଖାଲି ପିଲାଗୁଡ଼ାଏ ।

୨-୭-୧୮୩୮ରେ ରସେଲଙ୍କ ଅନୁଚର ଲେଫ୍‌ଟ୍‌ନେଣ୍ଟ ହିଲ୍ ମେରିଆ ଚାଲୁଥିବା ଅଞ୍ଚଳ ବିଷୟରେ ରିପୋର୍ଟ ଦେଲେ—

"ଯେତେ ଯେତେ ଅଞ୍ଚଳରେ ମଣିଷ ବଳି ଚାଲୁଛି, ମୋର ଧାରଣା ଯେ ଘୁମୁସରର ମାଳ ତ ତାର କାହିଁ କାଣିଚାଏ ବୋଲି । ମହା-

ନଦୀ ଉତ୍ତରକୁ ଯେଉଁ କନ୍ଧ ଜିଲ୍ଲାମାନ ଅଛି ସେଠିକା ବିଷୟରେ ମୋର ଠିକ୍ ଠିକ୍ ଖବର ଅନ୍ତର ନାହିଁ ସତ, କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ତାକୁ ଲଗି ଯେଉଁ ଯେତେ ପାହାଡ଼ ଅଞ୍ଚଳ, ଯଥା ଦଶପଲ୍ଲା, ବଉଦ ଓ ସୋନପୁର ସେଠି ବି ତା ଚାଲେ ଓ ଘୁମୁସରମାନଙ୍କ ଦକ୍ଷିଣ ଆଡକୁ, ସାନ ଖେମୁଣ୍ଡି ବଡ ଖେମୁଣ୍ଡି ଜଇପୁର ରାଜ୍ୟମାନ ଲଗାଏତ୍ ବସ୍ତରଯାକେ ନରବଳି ଚାଲୁଛି, ବସ୍ତରରେ ୬ ବହୁତ ବେଶୀ, ଏବଂ ସାନଖେମୁଣ୍ଡିର ବାଲିଗୁଡ଼ା ମୁଠାରେ ଅନ୍ତତଃ ଦ'ଶ ପିଲାଙ୍କୁ ବଳି ଦେବାକୁ ରଖା ହୋଇଛି ବୋଲି ମୋ ପାଖରେ ପହଞ୍ଚିଥିବା ସମ୍ବାଦ ଉପରେ ନିର୍ଭର କରି ମୋର ବିଶ୍ୱାସ ହୋଇଛି, ଏଥିରେ ଆଉ ସନ୍ଦେହ ନାହିଁ । ପାଟଣା ରାଜ୍ୟରେ ଓ କଳାହାଣ୍ଡି ରାଜ୍ୟରେ ପାହାଡ଼ ଇଲାକାମାନଙ୍କରେ ଯେ ନରବଳି ଚାଲୁଛି ଏଥିରେ ଆଦୌ ସନ୍ଦେହ ନାହିଁ । ଖଡ଼ିଆଳ ଓ ନୂଆପଡ଼ା ବିଷୟରେ ବି ସେହି କଥା । ସନ୍ଦେହ କରାଯାଉଛି ଯେ ଶାରଙ୍ଗଗଡ଼ ରାଜ୍ୟର କନ୍ଧମାନେ ଅନ୍ୟ ଅଞ୍ଚଳର ନରବଳି ଉତ୍ସବକୁ ଯାଆନ୍ତି ।

୧୮୩୭ରେ କଟକର କମିସନର ଶ୍ରୀଯୁକ୍ତ ରିକେଟ୍ସ୍ ରସେଲ ସାହେବଙ୍କଠୁଁ ଖବର ପାଇ ବଉଦ ଓ ଦଶପଲ୍ଲା ଯାଇ ବଳି ପାଇଁ ଅଟକାଇ ରଖାହୋଇଥିବା ୧୭ଟି ପୁଅ ଓ ୮ଟି ଝିଅ ପିଲାଙ୍କୁ ନେଇ ଫେରି ଆସିଥିଲେ ।

୧୮୪୪ ଜାନୁଆରିରେ ଇଂରେଜ ସରକାରଙ୍କ "ଏଜେଣ୍ଟ ଟୁ ଦି ଗଭର୍ଣ୍ଣର ଜେନେରେଲ, ସାଉଥ୍ ୱେଷ୍ଟ ଫ୍ରଣ୍ଟିଅର ଏଜେନ୍ସି", କର୍ଣ୍ଣେଲ ଉସ୍‌ଲି (ବନାନ ଓ, ୟୁ, ଏସ୍, ଇ, ଏଲ୍, ଇ, ୱାଇ) ରିପୋର୍ଟ ଦେଲେ ଯେ ସୋନପୁରରେ, ଖଡ଼ିଆଳରେ, ବିନ୍ଦ୍ରା ନୂଆଗଡ଼ରେ ଓ ବାମଣ୍ଡାରେ କନ୍ଧମାନେ ମଣିଷ ବଳି କରି ଷାଣି ଦେବାକୁ ବହୁତ ମଣିଷଙ୍କୁ ରଖିଛନ୍ତି ।

୧୮୫୭ ଅଗଷ୍ଟ ମାସରେ ସିଂହଭୂମି ଡିଭିଜନ୍‌ର ଆସିଷ୍ଟାଣ୍ଟ କମିସନର ଛୋଟନାଗପୁରର କମିସନରଙ୍କୁ ରିପୋର୍ଟ ଦେଲେ ଯେ କେନ୍ଦୁଝରର ରାଜା ମଣିଷ ବଳି ଦେଉଛନ୍ତି ବୋଲି ସମସ୍ତିଙ୍କର ବିଶ୍ୱାସ ଓ ସିଂହଭୂମରୁ କେତେ ଲୋକଙ୍କୁ ଚୋରେଇ ନେଇ ବଳି ପକାଇବାକୁ କେନ୍ଦୁଝରକୁ ନିଆଯାଇଛି ।

୧୮୩୮ ଡିସେମ୍ବରରେ ଗଞ୍ଜାମ ଜିଲ୍ଲା ମ୍ୟାଜିଷ୍ଟ୍ରେଟ୍ ବ୍ୟାନର୍‌ମାନ ସାହେବ ଏଥର ଗୁଣୁପୁର ଆଉର ଗୁଡ଼ାରି ସଦରର ୪° ମାଇଲ୍ ପୂର୍ବରେ ଥିବା ପିକରଗୁଡ଼ା ଗାଁରୁ ଜଣେ ଯୁବକ 'ବଳି'କୁ ଉଦ୍ଧାର କରି ଆଣିଲେ ଓ ସମୁଦାୟ ୯ ଜଣଂକୁ ଉଦ୍ଧାର କରି ଫେରି ଆସିଲେ ।

ତାପରେ ୩-୫-୧୮୪୧ରେ ଇଂରେଜ ସରକାର ମାନ୍ଦ୍ରାଜର କମିସନରଙ୍କ ଅଧୀନରେ ଜଣେ ଅଫିସର ନିଯୁକ୍ତ କଲେ । ସେ ହେଲେ "ଆସିଷ୍ଟାଣ୍ଟ ଟୁ ଦି କମିସନର ଅଫ୍ ଗଭର୍ଣ୍ଣର୍ସ୍ ଏଜେଣ୍ଟ ଇନ ଗଞ୍ଜାମ ।" ମେରିଆ ନିବାରଣରେ ଏହି ଇଂରେଜ ସରକାରଂକର ପ୍ରଥମ ପଦକ୍ଷେପ । ସଂପୃକ୍ତ କର୍ମଚାରୀ ନିଯୁକ୍ତ ହେଲେ କ୍ୟାପ୍‌ଟେନ ମ୍ୟାକ୍‌ଫରସନ । ୧୮୪୧ ଡିସେମ୍ବର ୧୫ରେ ସେ କନ୍ଧ ଦେଶ ଭିତରକୁ ତାଂକର ଐତିହାସିକ ମାର୍ଚ୍ଚ ଆରମ୍ଭ କଲେ । ଫୁଲବାଣୀ ସବ୍‌ଡ଼ିଭିଜନର ପାଣ୍ଡ୍ରାଖୋଲ ବାଟ ଦେଇ ବାଲିଗୁଡ଼ା କୋଟଗଡ ଦେଇ ସୁବର୍ଣ୍ଣଗିରି ମାଳ ଚଢ଼ି ଶ୍ରୀରାମପୁର ଟପି ଭୟଂକର ଆଜ୍‌ଦାମ୍ ପର୍ବତଶ୍ରେଣୀ (କୋରାପୁଟ ଜିଲ୍ଲା ଚନ୍ଦ୍ରପୁରର ଉତ୍ତର ସୀମାନ୍ତ, ଚନ୍ଦ୍ରପୁରରୁ ବାହାରି ୮ ମାଇଲ, ସେଠୁ ଆଜ୍‌ଦାମ୍ ପର୍ବତଶ୍ରେଣୀ ୨ ମାଇଲ୍, ତା ସେପଟେ ଗଦାପୁର) ଆଡ଼କୁ ଗଦାପୁର ଗଲେ ।

ଏବେ ବି କୃଚିତ୍ ଅଫିସର ଯାଆନ୍ତି ସୁବର୍ଣ୍ଣଗିରି ମାଳ ଡେଇଁ ଗଦାପୁର ଯାକେ, ବଡ ବଡ଼ ପର୍ବତ, ବାଘ, ହାତୀ, ସାପଙ୍କ ଘର ସେ ଏବେ ବି । ସେତେବେଳେ କି ଭୟଙ୍କର ନ ହୋଇଥିବ !

ସେ ଅପ୍ରେଲ ୧୮୪୨ରେ ରିପୋର୍ଟ ଦେଲେ । ପୁଣି ଫୁଲବାଣୀ ଜିଲ୍ଲାର ମାଳଯାକ ବୁଲିଲେ ଅଗଷ୍ଟ ୧୮୪୨ରେ ଦ୍ୱିତୀୟ ରିପୋର୍ଟ ଦେଲେ ।

୧୮୪୫ ସାଲର ଏକୋଇଶ ନମ୍ବର ଆକ୍ଟ୍ ଡ୍ରଣସୃନ କରାଗଲା, ସେ ଆକ୍ଟ ଅନୁସାରେ ଇଂରେଜ ସରକାରଙ୍କର ସମୁଦାୟ ବଙ୍ଗଳା ଓ ମାନ୍ଦ୍ରାଜ ଇଲାକାମାନଂକରୁ ନରବଳି ନିର୍ମୂଳ କରିବା ପାଇଁ 'ସ୍ପେସାଲ୍ ମେରିଆ ଏଜେଣ୍ଟ୍' ଦପ୍ତର ଖୋଲାଗଲା । ସେଥିରେ ପ୍ରଥମେ ୧୮୪୫ରେ କି ନିଯୁକ୍ତ ହେଲେ ଶ୍ରୀ ମ୍ୟାକ୍‌ଫରସନ୍ ।

୧୮୪୭ରେ ସେ ବନ୍ଧଚରେ ରହିଲେ କର୍ଣ୍ଣେଲ୍ କ୍ୟାମ୍ପ୍‌ବେଲ୍ । ୧୮୫୧ରେ ଗସ୍ତରେ ବାହାରି ସେ ଭଞ୍ଜନଗରରୁ ବାଲିଗୁଡ଼ା, ସେଠୁ ଉତ୍ତମ କଟକ ଏପଟୁ ଇଲାକା ଗସ୍ତରେ ବୁଲିଦେଲେ । ଅର୍ଥାତ୍ ଗଦାପୁର ଆଡୁ ଆହୁରି ଦକ୍ଷିଣକୁ ଏବର ଗୁଣୁପୁର ସବଡ଼ିଭିଜନ୍‌ରେ ଥିବା ଚନ୍ଦ୍ରପୁର ଗଡ଼, ରାୟଗଡ଼ (ଏବର ନେହେରୁ ପାଂଗା ମାଖ) ହନୁମନ୍ତପୁର, ଡାଂସୁରୁଡ଼ା, ମୁନିଗୁଡ଼ା, ସବୁ ଭେଦ ଦେଇ କଟକରେ ଉଠିଲେ । କି ଭୀଷଣ ସେ ଅଞ୍ଚଳ । ଘାଟି ପାହାଡ଼ ଚଢ଼ି ଅରଣ୍ୟାଣି ଶାଳବଣ ଓ ବାଉଁଶ ଲୁଚିଲା ଭଳି ଜଙ୍ଗଲ ଘଞ୍ଚ ବାଉଁଶ ଘାସର ବଣ ଭିତରର ପାଦରେ ଚାଲି ଚାଲି ବୁଲି ଅନୁଭବ ନକଲେ ରାଜଧାନୀରେ ସେକ୍ରେଟେରିଏଟ୍ କୋଠାରେ ବସି କି ପଢ଼ିକି କରିର ଡାକବଙ୍ଗଳାରେ ଆରାମ୍ କରି କାର୍‌ରେ ଥାଇ ଦୂରରୁ ଦୂର୍‌ବୀଣ୍ ନେଇ ସେ ଅବସ୍ଥା ଅନୁମାନ କରି ହେବନାହିଁ । ପର୍ବତ ଚଢ଼ି ଚଢ଼ି ହଂସା ଉଡ଼ୁଥିବ, ଜଂଘ ଫାଟି ପଡ଼ୁଥିବ, ପାଣି ନାହିଁ । ଦି କୋଶ ଚାରି କୋଶ ଗଲେ ଗୋଟିଏ ଗୋଟିଏ ସାନ ସାନ ପଲ୍ଲୀ, ଦଶ ଘର ବାସ ହେଲେ ହେଲା, କେଉଁଠି ଅବା ଘରେ ଦି ଘର । ସେ ଘରେ ବି କୁଷ୍ଠ ରୋଗ, ଯକ୍ଷ୍ମା ରୋଗ । ଲୁଣ ଟିକିଏ ନାହିଁ ତ କେବେ କେଉଁ ଗାଁରେ ମିଳିବ ଜଣାନାହିଁ । ହାତୀ ପଲ ଗାଁ ଭାଙ୍ଗନ୍ତି, ଫସଲ ଖାଆନ୍ତି, ମଣିଷ ମାରନ୍ତି । ମଣିଷ ଖିଆ ବାଘ ଦିନ ଦିପହରେ ବି ଗାଁ ଓଲଟନ୍ତି ମଣିଷ ଓଟାରି ନିଏ । ସ୍ଥାନେ ସ୍ଥାନେ ଗମ୍ଭୀର ଉଚ୍ଚ ପାହାଡ଼ ଝରଣା, ପାତାଳରେ ପାଣି, ଚକଚକ ଅନ୍ଧାର ବଣ ତଳେ ଦୁଇ କୂଳ ଲୁଚିଛି, ପାଣିରେ ସାପ । 'ଗ୍ରାହ୍ମ' ସାପ ଟିକି ପକାଏ, ଧାଠ ସାପ ଗୋଡ଼ରେ ଗୁଡ଼େଇ ହୋଇଯାଏ । ଦାଣ୍ଡ ଦୁଆରେ ନିର୍ଭୟରେ ବୁଲନ୍ତି ହରିଣ, କାର୍‌ହା, ବଣ କୁକୁଡ଼ା, ବାଘ । ଶୀତଦିନେ ଗୁଣ୍ଡା ବରଫ ପଡ଼େ, ଥାଳି ଥାଳି ପାଣି ବରଫ ପାଲଟେ ।

ଏବେ ବି ଏପରି ୧୮୫୧ରେ କି ଭୟଙ୍କର ସେ ହୋଇ ନଥିବ !

ସେହି ଅବସ୍ଥାରେ ଗସ୍ତରେ ବୁଲୁଥିଲେ ବିଦେଶୀ ଇଂରେଜ କ୍ୟାମ୍ପ୍‌ବେଲ୍ । ସ୍ଥାନେ ସ୍ଥାନେ କନ୍ଧମାନଙ୍କ ସଙ୍ଗେ ଲଢ଼େଇ ହେଉଥାଏ ।

ସେ ଇତିହାସ, କନ୍ଧର ବୀରତ୍ବ—କମ୍ବଦନ୍ତୀ ହୋଇ ଗାଁ ଗାଁରେ ରହିଯାଇଛି । ମୁଁ ସେହି ସ୍ଥାନ ଉପରେ ଅନୁସନ୍ଧାନ କରି ବୁଝିଛି ସେହି କୋଟିଆ କନ୍ଧ ମାଳରେ ପ୍ରଥମ ନାଁ ଡାକ୍ ଯୁଦ୍ଧ ହେଲା ସଂପାରୁ ଗାଁରେ ନେତା ଥାଇଲା ଘୋଷର ନୂଆ ମାଝି ଓ ଟାଙ୍ଗ୍ରା ମାଝି । ଖାଦ୍ରର ଓ ବନ୍ଧେର୍ ଗାଁରେ ବଳଟ ଯୁଦ୍ଧ ହେଲା । ବନ୍ଧେର ଗୋଟିଏ ଖୁବ ବଡ଼ କନ୍ଧ ଗାଁ, ଯୁଦ୍ଧରେ ନେତା ଥିଲେ ବୀର ଗେନ୍ଦାମାଝି ଓ ଡୁଡ଼ା ମାଝି । ଇଂରେଜ୍ ବାରମ୍ବାର ବନ୍ଧେର ଗାଁକୁ ପୋଡ଼ିଲେ, ବାରମ୍ବାର ବୀର କନ୍ଧମାନେ ସେଠି ସତେ କ ଷ୍ଟାଲିନ୍‌ଗ୍ରାଡ୍ ଯୁଦ୍ଧ ଲଢ଼ିଲେ ।

ସ୍ୱାଧୀନତା ! ସେ ତ କନ୍ଧ ଆଖିରେ ଜୀବନଠୁଁ ବଳି ପ୍ରିୟ, ସେ ତ ନିଜକୁ କହେ 'କୁଇ' ବା 'କୁଇ', ଯାହା ଅର୍ଥ, "ସ୍ୱାଧୀନ" (ବ୍ୟୁତ୍ପତ୍ତି —'କୁ' ଧାତୁ ଅର୍ଥ 'ନମାନିବା', ମାଁବୁ କୁ'ନାବୁ – ଆମେ ମାନିବୁ ନାହିଁ) । ତେଣୁ ତ ଭାରତ ମାଟିରେ ଇଂରେଜ୍ ଶକ୍ତି ବିରୁଦ୍ଧରେ ପ୍ରଥମ ସଶସ୍ତ୍ର ସ୍ୱାଧୀନତା ସମର ଆରମ୍ଭ କରିଥିଲେ ଆମରି ଏଇ ଓଡ଼ିଶାର କନ୍ଧ ଭାଇମାନେ; ଐତିହାସିକ ଓ'ମାଲି ସାହେବ ସେ ଯୁଗରେ ଲେଖିଥିବା "ବଙ୍ଗଳାର ଜିଲ୍ଲା ଗେଜେଟିଅର—ପୁରୀ" ଖଣ୍ଡର ପଚିଶ ପୃଷ୍ଠାରେ ଆପଣ ପଢ଼ିବେ (ପ୍ରକାଶନ ୧୯୦୮ ସାଲ ବଂଗଦେଶ ସେକ୍ରେଟରିଏଟ୍ ପୁସ୍ତକ ଭଣ୍ଡାର କର୍ତ୍ତୃକ, ଆଜି ମିଳୁନାହିଁ । )

(ଆଜି ସ୍ୱାଧୀନ ଭାରତରେ ଓଡ଼ିଶା ସେକ୍ରେଟେରିଏଟ୍ ଏମିତି କେତେଟା ବହି ଛାପିଛି ?!!!)

ଯେତେବେଳେ ଜଗବନ୍ଧୁଙ୍କର ଏଇ ଅବସ୍ଥା ହୋଇଥିଲା (ଅର୍ଥାତ୍ ରୋଡ଼ଂ ବକ୍‌ସିଙ୍କ ଜମିଦାରୀରୁ "ଖଡ଼ାଂଓଗେର୍"କୁ ପଛେ କଲିକତା-ବାସୀ ଚନ୍ଦ୍ର ପ୍ରସାଦ ସିଂ ଯେ ପୁରୀ କଲେକ୍ଟରଙ୍କ ସିରସ୍ତଦାର ଥାଇ ଦୁର୍ନୀତି ଲାଗି ୧୮୧୧ରେ ବରଖାସ୍ତ ହୋଇଥିଲେ ଓ ଯାହାଂକ ଭାଇ ଗୌରହରି ୧୮୦୪ରୁ ୧୮୧୦ ଯାଏ ପୁରୀ ତହସିଲଦାର ଥାଇ ବଡ଼ ଭାଇଂକ ସଂଗେ ସାଲ ହୋଇଥିଲେ । ସେଇ ଚନ୍ଦ୍ର ପ୍ରସାଦ ବେନାମିରେ କିଣି ନେଲେ । ତାଂକ ନିଜ ଲୋକ ଲକ୍ଷ୍ମୀ ନାରାୟଣଙ୍କ ଜରିଆରେ, ସେଇଠୁ ତାଙ୍କ ବନ୍ଧୁ ବାନ୍ଧବ କପନ୍ ଚନ୍ଦ୍ର ସିଂ ତାକୁ କିଣି ନେଲେ । କଶନ୍ ଚନ୍ଦ୍ର ସିଂ ପୁରୀରେ

ପ୍ରଥମ କଲେକ୍ଟର ଗ୍ରୀସ ସାହାବଂକ ଦେଓ୍ୱାନ ହୋଇଥିଲେ । ଯେମିତ ଗ୍ରୀସ୍ ଯାଇ ଓ୍ୱେବ୍ କଲେକ୍ଟର ହୋଇ ଆସିଲେ ସେମିତ କଶନ୍ ଚନ୍ଦ୍ର ଇସ୍ତଫା ଦେଲେ । କଶନ୍ ଚନ୍ଦ୍ର ଥରେ ୧୮୧୧ରେ ଥରେ ୧୮୧୩ରେ କଲଗେଡ଼ଂର ଦଖଲ ନେବାକୁ ଚେଷ୍ଟା କରିଥିଲେ । ଦରଖାସ୍ତ କରାଗଲା, କଶନ୍ ଚନ୍ଦ୍ର ବ ମକଦ୍ଦମା କଲେ । ଜଗବନ୍ଧୁ ମକଦ୍ଦମା କରିବାକୁ ରାଜି ହେଲେ ନାହିଁ, କହିଲେ ଜଣେ ବଙ୍ଗାଳୀଙ୍କ ବିରୁଦ୍ଧରେ ମକଦ୍ଦମା କଲେ ଲାଭ ହେବ ନାହିଁ । ବଳ୍‌କି ଜଗବନ୍ଧୁ ଗରିବ ହୋଇ ପୋଷାକ ପିନ୍ଧି ଛିଣ୍ଡା ମଇଲା ପିନ୍ଧା ଅନୁଚରମାନଂକୁ ସଙ୍ଗରେ ନେଇ ପୁରୀର ଦାଣ୍ଡେ ଦାଣ୍ଡେ ବୁଲିଲେ ।)

ସେତେବେଳେ ମାର୍ଚ୍ଚ ୧୮୧୭ରେ ବୁଡ଼ିଶହ କନ୍ଧ ଗୋଟିଏ ଦଳ ହୋଇ ଘୁମୁସର ରାଜ୍ୟରୁ ବାହାରି ପଡ଼ିଲେ, ଖୋର୍ଦ୍ଧା ଇଲାକା ଭିତରୁ ପଶିଗଲେ ଓ ପ୍ରକାଶ୍ୟରେ ବିଦ୍ରୋହର ବାନା ମେଲି ଦେଲେ (ଏଣ୍ଡ୍ରୁ ଓପନ୍‌ଲି ଅନ୍‌ଫୋଲ୍‌ଡ ଦ ବ୍ୟାନର୍ ଅଫ୍ ରିଭୋଲ୍‌ଟ । ସେଇଠୁ ପାଇକ-ମାନେ ଏକଜୋଟ ହୋଇ ଉଠି ପଡ଼ିଲେ ଓ ତାଙ୍କର ପୂର୍ବତନ ନେତା ଜଗବନ୍ଧୁଙ୍କ ଅଧିନାୟକତ୍ୱରେ ଯାଇ ସେହି (ଶାର) କନ୍ଧମାନଂକ ସଙ୍ଗେ ମିଳିତ ହେଲେ । ସେମାନେ (ଅର୍ଥାତ୍ ଶାର କନ୍ଧମାନେ ଓ ଶାର ପାଇକ-ମାନେ ଏକାଠି) ବାଣପୁରର ଥାନା ଓ ଅନ୍ୟାନ୍ୟ ସରକାରୀ କୋଠାବାଡ଼ି ଆକ୍ରମଣ କରିବାକୁ ଗଲେ, ସେମାନେ ଶହେ ଜଣରୁ ବେଶି ମଣିଷଂକୁ ମାରି ପକାଇଲେ ଓ ପ୍ରାୟ ପନ୍ଦର ହଜାର ଟଂକାର ସମ୍ପତ୍ତି ଲୁଟି ନେଲେ । ବିଦ୍ରୋହୀମାନେ (ଅର୍ଥାତ୍ ଘୁମୁସରର କନ୍ଧ ଶାରମାନେ ଓ ତଳର ପାଇକମାନେ) ସେଇଠୁ ଖୋର୍ଦ୍ଧା ଖୋର୍ଦ୍ଧା ଆଡ଼କୁ ମାଡ଼ି ଗଲେ, ଯେତିକି ଯେତିକି ଆଗେଇଥାନ୍ତି ସେତିକି ସେତିକି ତାଂକ ସଂଖ୍ୟା ବଢ଼ୁଥାଏ, ବାଣ-ପୁରରେ ତାଂକର ଜିତା ଫଳରେ ସାରା ଦେଶଟା ଯାକ ଆମ ବିରୁଦ୍ଧରେ (ଅର୍ଥାତ୍ ଇଂରେଜ ବିରୁଦ୍ଧରେ) ଅସ୍ତ୍ର ଧରି ଉଠି ପଡ଼ିଥାନ୍ତି ଓ ତାଂକୁ ଆଗୁଳିବା ବୃଥା ହେବ ଦେଖି ଖୋର୍ଦ୍ଧାରେ ରଖା ହୋଇଥିବା ସବୁ ସରକାରୀ କର୍ମଚାରୀ ପ୍ରାଣ ଭୟରେ ପଳାଇ ଯାଇ ଜୀବନ ବଞ୍ଚାଇଲେ । ବିଦ୍ରୋହୀମାନେ (ଅର୍ଥାତ୍ ଘୁମୁସରରୁ ଆସିଥିବା କନ୍ଧ ଶାରମାନେ ଓ

ତଳର ପାଇକମାନେ ଏକାଠି ମିଶି) ଖୋର୍ଦ୍ଧାର ସବୁ ସରକାରୀ କୋଠା-ବାଡ଼ିକୁ ଜାଳି ପୋଡ଼ି ମାଟିରେ ମିଶାଇ ଦେଲେ ।"

ତାପରେ ସେମାନେ କଣ କଲେ, ଇଂରେଜ ବିରୁଦ୍ଧରେ କେତେ ବଡ଼ ସାନ ଲଢ଼େଇ ଜିଣିଲେ, କେମିତି ଗଙ୍ଗପଡ଼ା ଲଢ଼େଇ ଜିଣିଲେ ଓ ୧୮୦୩ ଅପ୍ରେଲ ୨ ତାରିଖରେ ସେଠି ଇଂରେଜ ସେନାପତି ୱାର ଲେଫ୍ଟେନେଣ୍ଟ ଫେରିସ୍ ସାହେବ ତାଂକ ଗୁଳିରେ ଟଳି ପଡ଼ିଲେ । କେମିତି ଅପ୍ରେଲ ୯ରେ ସଞ୍ଜବୁଡ଼େ ଜଗନ୍ନାଥ ଘାଟ ବାଟେ ପୁରୀ ଭିତରକୁ ପଶିଗଲେ । ୧୩ ତାରିଖରେ ଓ ତାପରେ ପ୍ରଚଣ୍ଡ ଲଢ଼େଇ କଲେ ଓ ପୁରୀ ଗଜପତି ମହାରାଜାଂକ ରାଜୁତି ଫେରି ଆସିଲା ବୋଲି ଘୋଷଣା କଲେ ଓ ସଲ୍ଟ ଏଜେଣ୍ଟ, ପିଲ୍‌ଗ୍ରୀମ୍ ଟିକସ କଲେକ୍ଟର ସମେତ ସବୁ କର୍ମଚାରୀ ଅପ୍ରେଲ ୧୮ ଦିନ ପ୍ରାଣ ଘେନି କଟକ ପଳେଇଲେ ଓ ମାଲ ସାହେବ ତା ବି କହିଛନ୍ତି । ଏବା ସେ ନୂଆକଥା, ୧୮୧୮ ମଇ ୧୩ ତାରିଖର କମିଶନର ଇର୍ଥ୍ୱରଙ୍କର ବଂଗଳା ଚିଫ୍ ସେକ୍ରେଟରୀଂକ ପାଖକୁ ଲିଖିତ ବିସ୍ତୃତ ରିପୋର୍ଟ । ପୁଣି ସରକାରଙ୍କ ପାଖକୁ ଜଜ୍ ଓ୍ୱାଟ୍‌ସନ୍ ସାହେବଙ୍କ ରିପୋର୍ଟ, ମେଜର ଜେନେରେଲ ସାର୍ ଗାବ୍ରିଏଲ ମାଟିନ୍‌ଡେଲ୍‌ଙ୍କ ରିପୋର୍ଟ । ୧୮୧୭ ଅପ୍ରେଲ ୧୦ ତାରିଖର କଲିକତା ଗେଜେଟ୍ (ସିଲେକ୍‌ସନ, ପଞ୍ଚମ ଖଣ୍ଡ, ପୃଷ୍ଠା ୧୮୯-୯୦ ଦେଖନ୍ତୁ)—ଇଂରେଜ ଏଥିରେ ବି ରଖିଯାଇଛନ୍ତି ସେ କୀର୍ତ୍ତିର କାହାଣୀ ।

ଆମେ କେତେକ ବିପ୍ଳବୀଙ୍କ ସ୍ମୃତିକୁ ପୂଜା କରୁଁ, ଯଥା ବାଘା ଯତୀନ୍, ସେ ବୃଥା ଗୁନଆ ହୋଇ ତାଂକୁ କୁତୂହଳରେ ଦେଖିଥିବା ନିର୍ଦୋଷ ସାନ୍ତାଳଙ୍କ ଭିତରୁ କେତେଜଣଂକୁ ଗୁଳିକରି ମାରିଦେଲେ, ସେଇଠୁ ପୁଲିସ୍ ପହଞ୍ଚିଗଲେ, ଗୁଳି ବିନିମୟ ହେଲା, ବଂଗଭଂଗ ଆମଳର ପ୍ରସିଦ୍ଧ ବିପ୍ଳବୀ ଯତୀନ୍ ରୁପ୍‌ସା ପାଖେ ଟଳି ପଡ଼ିଲେ । ପବିତ୍ର ତାଙ୍କର ସ୍ମୃତି ।

କିନ୍ତୁ ତା ସନ୍ତତି ଓଡ଼ିଶାର, ଭାରତର ଜାତୀୟ ଚେତନାର ଅତୀତର ସ୍ମୃତି ଭିତ୍ତିରେ ସ୍ଥାନ ପାଇବା ଉଚିତ ଥିଲା ଭାରତୀୟ ସ୍ୱାଧୀନତା ଅଭିଯାନ ପରିକଳ୍ପନାର ସେହି ସର୍ବପ୍ରଥମ କାରିଗରମାନଙ୍କ ସ୍ମୃତି ।

୧୮୧୭, ଘୁମୁସର ମାଳର ସେହି ଝୁଟେହେ କନ୍ଧ ବୀର, କେଉଁ ଅନ୍ଧାର ଖୋଲ ଭିତରୁ ବାଲିଗୁଡ଼ାର ବୋଲଘର ଗୁମାମାନ ଭିତରୁ ସୁବର୍ଣ୍ଣଗିରି ମାଳ ଭିତରୁ କୋରାପୁଟ୍‌ର ବନ୍ଧର ଗଇଢଙ୍ଗ ମାଳ ଭିତରୁ ବାହାରି, ଫୁଲବାଣୀର କାଳିଙ୍ଗା (କଳିଙ୍ଗା) ଘାଟି ଡେଇଁ, ବିଷମ କଟକର ପାଞ୍ଚ ହଜାର ଫୁଟିଆ ନିୟମଗିରି ପର୍ବତରୁ ଓହ୍ଲାଇ ଅପି ପୂର୍ବଘାଟ ପର୍ବତ-ମାଳାର ଅଣ୍ଟା ଡେଇଁ ଅମଡ଼ାମାଡ଼ି ସମୁଦ୍ର ବେଳାଭୂଇଁ ଆଡ଼କୁ ପଡ଼ି ଦଉଡ଼ି ଯାଇଥିଲା ଯେଉଁ ଆଠଶହଟି ପାଦ ଜୀବନ ମୂର୍ଚ୍ଛା ହୋଇ ଗୋଟିଏ ଚେତନାରେ ।

ଏ ଦେଶକୁ ସ୍ୱାଧୀନ କରିବୁଁ, ମାଡ଼ି ଚାଲିଯାଇଥିଲା ଅଜଳନ୍ତ ସମସ୍ତ ଉପରେ ବୀରତ୍ୱ ଓ ଆତ୍ମୋତ୍ସର୍ଗର ଜଳନ୍ତା ଚିହ୍ନ ଥୋଇ ଥୋଇ—

ଲଂକାଗଡ଼—ରାଂପାରୁ—ବେଲ୍‌ଘର୍‌ ଶିରାମ୍‌ପୁର—ଚନ୍ଦ୍ରପୁର—ନିୟମ୍ ରଜା—ସେଠୁ ପୂର୍ବର ବେଳାଭୂମି ।

ଓଃ ! କେତେ ଦୂର ! କେତେ ଦୂର !

ଆର୍ଯ୍ୟର ହାତଲେଖା ଗାଥା ଅନାର୍ଯ୍ୟଂକୁ ତାର ମର୍ଯ୍ୟାଦା କ ସ୍ଥାନ ଦେଇନାହିଁ, ବର୍ଣ୍ଣନା କରି କଳଂକିତ ବିଭତ୍ସ କରି, ଅଣ-ଆଦିବାସୀର ହାତ ଲେଖା ଇତିହାସ ସ୍ଥାନ ଦେଇନାହିଁ ୧୮୧୭ ସ୍ୱାଧୀନତା ସମରର ପ୍ରଥମ ଉଦ୍ୟୋକ୍ତାମାନେ, ପ୍ରଥମ ନେତାମାନେ, ଶୋଇଥିବା ଓଡ଼ିଶାରେ ଯୋଦ୍ଧା ପାଇକ ଆଉ ବକ୍‌ସି ଜଗବନ୍ଧୁଙ୍କୁ ନିଦରୁ ଉଠାଇ ଭାରତର ଏହି ଖଣ୍ଡକରୁ ଦୁର୍ଦ୍ଧର୍ଷ ଇଂରେଜ ସରକାରକୁ ତଡ଼ି ସ୍ୱାଧୀନତା ପ୍ରତିଷ୍ଠା କରିବାର ଆଦ୍ୟ ଚେତନାର ମଶାଲଧାରୀ ସେହି ଝୁରଟେହେ କନ୍ଧଂକୁ ! କିଏ ଆଜି କହିବ କଣ କଣ ସେମାନଂକ ନାଁ ।

ସେ ମଶାଲ୍ ଆଉ ଜ୍ଵଳୁଥିଲା ନାହିଁ, ସେ ପାଦ ଶବ୍ଦ ପଡ଼ୁନଥାଏ ଘର ମୁହାଁ, ସତେ ଯେମିତି ଆଜ କନ୍ଧର ଅଲେଖା ପୁରାଣରେ ଅଛୁ, ଅତ ପବିତ୍ର ଗୁଞ୍ଜିନାଲ୍ ନଣ୍ଡ ବେଲଘର-ଗୁମ୍ଫା ମାଳ ଭିତରୁ ମାଡ଼ି ଚାଲିଗଲା ସମୁଦ୍ରକୁ । କେତେ ଝରଣା ଦେଶ ଦେଇ, ସ୍ଥଳ ସରଗଲା, ବନ ସରଗଲା, ସେଉଠୁ ଦେବତାମାନେ ତାକୁ ସ୍ୱର୍ଗକୁ ଉଠାଇନେଲେ ।

"ଏନ୍ଦୁ ଧାଜନେ—କୁଡ଼ୁ ସାଜନେ (ପାଣି ଯାଉଛୁ)

ଗ୍ରାଚୁ ତନେଞ୍ଜା ଗିକେ (ସାପ ଖାଉଥିବା ଲୋକେ ଯେଉଁ ଦେଶରେ ରହନ୍ତି ସେହି ବାଟକୁ)

ଗୋମ୍ବିତନେଞ୍ଜା ଗିଶକ (ଗୋଧିଖିଆ ମଣିଷଂକ ଦେଶ ଆଡ଼କୁ)

ପା'ନା ତନେଞ୍ଜା ଗିଶକ (ବେଙ୍ଗଖିଆ ମଣିଷଂକ ଦେଶ ଆଡ଼କୁ)

ଡୋନ ତନେଞ୍ଜା ଗିଶକ (ଏଣ୍ଡୁଅ ଖିଆ ମଣିଷଂକ ଦେଶ ଆଡ଼କୁ)

ଏସୁ ସାଜନେ କୁଡ଼ୁ ମାଜନେ
ଟା'ଣା ଓ୍ଵିହ୍ଵାତେ (ଭୂଇଁ ସରଗଲା)
ମାଟା ଓ୍ଵିହ୍ଵାତେ (ଭୂଇଁ ସରଗଲା)
ବନା ଓ୍ଵିହ୍ଵାତେ (ବନ ସରଗଲା)
କୋସା ଓ୍ଵିହ୍ଵାତେ (ବନ ସରଗଲା)

ସେଠିକି ହିଁ ନୁହେଁ ଆଦିବାସୀର ଖାଉଛୁ ଇତିହାସ । ହିନ୍ଦୁ ପୁରାଣପାଳ ଯେ କାହାଣୀ ଭରି, ଇତିହାସରେ ବି । 'ମହାକାନ୍ତାର' ର 'ବ୍ୟାଘ୍ରରାଜ' ବନେ ସମୁଦ୍ରଗୁପ୍ତଙ୍କ ବାହିନୀକୁ ଧକ୍କା ଦେଇଥିଲେ । ତାପରେ ଗଡ଼ମଣ୍ଡଳ ରାଜ୍ୟର ରୋମାଞ୍ଚକର ଇତିହାସ । ଭାରତ ଦେଶରେ ଇତିହାସର ପ୍ରସିଦ୍ଧ ହେଲା ଖାର ଗଣ୍ଡ ଜାତି । ସେ ସେହି କନ୍ଧ ଜାତିର ହିନ୍ଦୁ ସଂସ୍କୃତି ପ୍ରଭାବିତ ଶାଖା, ପଛେ ନାନା ସ୍ଥାନରେ ହେଲା କ୍ଷତିଗ୍ରସ୍ତ, ପ୍ରକୃତିରେ, ବୃତ୍ତିରେ କ୍ଷତିଗ୍ରସ୍ତ ହିଁ ତ । ତା କାହାଣୀ

ଓଡ଼ିଶାର ଅଠରଗଡ଼ ଛତିଶି ଗଡ଼ଜାତର । ବୀର ସୁରେନ୍ଦ୍ର ସାଇଙ୍କ ବିପ୍ଳବୀଙ୍କୁ ସମ୍ବଲପୁରବାସୀମାନେ ଏବେ ବି ଜାଣନ୍ତି, 'ଗଣ୍ଡ-ମାରୁ' ବୋଲି । ସେହି କଣ୍ଠୀପୁ ଜାତିର ସ୍ୱାଧୀନତାପ୍ରେମୀ ବୀର ଜାତି ଉତ୍ତର-ଓଡ଼ିଶାର ଭୂୟାଁ । ଯହିଁରେ ଯେ ରାଜା ଜମିଦାର ହେଉନା ସେ ହେଲେ ରାଜକୁଳ ଭୂୟାଁ।" । ସେହି ଭୂୟାଁ ଜାତିର ଜାତୀୟ ବୀର ଥିଲେ ଧରଣୀ-ଧର ଭୂୟାଁ । କେନ୍ଦୁଝରରେ ସ୍ୱାଧୀନତା ଘୋଷଣା କରୁଥିଲେ । ସବୁ-ବେଳେ ରାଜାଭକ୍ତ କର୍ମଚାରୀ ଫକୀରମୋହନ ସେନାପତି ଧରଣୀଧରଙ୍କୁ "ମହାରାଣୀ ପୁତ୍ର" ଆଦି କଥା ଥଟ୍ଟା କରି ଲେଖିଗଲେ ସୁଦ୍ଧା ପ୍ରଜାନେତା ଇଂରେଜ ବିଦ୍ରୋହୀ ଧରଣୀଧର, କେତେ ମହତ୍, କେତେ ସ୍ୱାଧୀନତା ପ୍ରେମୀ ଓ ସନ୍ଥ ତା ଇତିହାସ ଏବେ ବି ସେ ମାଟିରୁ ଓ ତାଙ୍କ ଶେଷ ଜୀବନ କଟିଥିବା କଟକ ଜିଲ୍ଲା ଆଳି ଗାଁରୁ ଲିଭିନାହିଁ । ସେମିତି ଇଂରେଜ ଅମଳରେ କନ୍ଧମାଳ ଜିଲ୍ଲାର ଗମଗଡ଼ର ଦୋରା ବିଶୋଇ, ଚକ୍ର ବିଶୋଇ ଇଂରେଜ ତାଙ୍କୁ ଡରୁଥିଲେ ହାଇଦର ଅଲିଙ୍କୁ ଡରିଲା ପରି । ସେତେବେଳର ଇଂରେଜ ସୈନ୍ୟଙ୍କର ନା ନିଜ ଘରକୁ ଚିଠିରେ ଅଛି ତାର ଉଲ୍ଲେଖ । କୋରାପୁଟରେ । ଫୁଲବାଣୀରେ । ଇଂରେଜ ଅମଳରେ କେଜାଣି କେତେ 'ଫିତୁରି' ( ସଶସ୍ତ୍ର ବିଦ୍ରୋହ ) । ଉତ୍ତରରେ ମୁଣ୍ଡା ସାନ୍ତାଳ ଅଞ୍ଚଳରେ ବହୁତ ସେପରି । ସିଂହଭୂମିର "ବିର୍ସା" ଭଗବାନଙ୍କ ନାଁ ଏବେ ବି "ଲିଜେଣ୍ଡ୍" ପରି ।

ନା, ଜାତୀୟ ମୁକ୍ତି ଆନ୍ଦୋଳନକାରୀ ବାଛାବଛା ପୃଥିବୀରାଜମାନଙ୍କ ତାଲିକାରେ ଲେଖାହୋଇ ନାହିଁ ତାଙ୍କ ନା । କିନ୍ତୁ ସମୟ ଅନନ୍ତ । ସ୍ୱାଧୀନତା ଆସି ତ ମୋଟେ ଚାଳିଶିଟି ବର୍ଷ । ମାଟିରେ ଭେଦ ନାହିଁ ସେ ସମ୍ବାଦ ।

ଇଂରେଜ ମାଳରେ ପଶିଥିଲେ ନରବଳି ବନ୍ଦ କରିବାକୁ । କିନ୍ତୁ ତା ସଙ୍ଗେ ସଙ୍ଗେ ଥିଲା ଆଉ ଗୋଟାଏ କାମ । ଅରଣ୍ୟ, ସ୍ୱାଧୀନ ହାତ ଉପରେ ଶିଂକୁଳ ଲଗାଇବା । ଯୁଦ୍ଧମାନ ତ ସେଇଥିପାଇଁ ।

ମେରିଆ ବନ୍ଦ କରିବାକୁ ବାରମ୍ବାର ମାଳରେ ବୁଲିଲେ କ୍ୟାମ୍ବେଲ୍, ୧୮୫୧ରୁ ୧୮୫୩ ଭିତରେ ସେ ୨୨ ଜଣ ପୁରୁଷ ଓ ୧୧୫ ଜଣ ସ୍ତ୍ରୀ ଲୋକଙ୍କୁ ଉଦ୍ଧାର କରି ଆଣିଲେ । ୧୮୫୪ ରେ ତାଙ୍କ ଜାଗାରେ ରହିଲେ ମ୍ୟାକ୍.ଭିକାର, ୧୮୫୬ରେ ଆସିଲେ କ୍ୟାପ୍‌ଟେନ୍ ମ୍ୟାକ୍‌ନାଲ୍ । କ୍ୟାମ୍ବେଲ୍‌ଙ୍କ ପରି ମ୍ୟାକ୍‌ନାଲ୍ ବି ଖୁବ୍ ବୁଲିଲେ । ୪-୧-୧୮୫୬ରେ ବାହାରି ସେ ସମଗ୍ର କଳାହାଣ୍ଡି ରାଜ୍ୟ ଓ ଜୟପୁର ନଓରଂପୁର ସବ୍‌ଡିଭିଜନ୍ ଅଞ୍ଚଳ ବୁଲିଦେଲେ । ୧୮୫୭ ରେ ପୁଣି ସେହି ସେହି ଅଞ୍ଚଳକୁ ଗଲେ ଆଉ ଥରେ । ୧୮୬୨ରେ ତାଙ୍କର ଶେଷ ଗସ୍ତ ଓ ଫେର୍ଦ୍ଧତମ ଗସ୍ତ ।

କିନ୍ତୁ ତାଙ୍କ ଜାଣିବାରେ ମେରିଆ ବଳି ବନ୍ଦ ହୋଇଥିଲା ୧୮୪୫ରୁ । ସେହି ବର୍ଷ ସେ ଡଙ୍ଗୁମା ପାଖ ରାମଗିରି ଅଞ୍ଚଳରେ ମେରିଆ ପଡ଼ିଥିବାର ଶେଷ ଥରକ ସମ୍ବାଦ ପାଇଥିଲେ ।

ଗୁଞ୍ଜିନାମା ନଣ୍ଡି ବିଷୟରେ ଯେଉଁ ଅଲେଖା କାହିଆ କନ୍ଧ ପୁରାଣରୁ ଅଳ୍ପ ଉଦ୍ଧୃତ କରାହୋଇଛି, ସେଇ ପୁରାଣରେ ବୋଲାହୁଏ ଏ ପୃଥିବୀ ଉତ୍ପତ୍ତି କାହାଣୀ ଓ ମଣିଷ, ଗଛ ବୃରୁଛ, ଜୀବଜନ୍ତୁଙ୍କ ସୃଷ୍ଟିର କାହାଣୀ । ଯେ ମନ୍ତ୍ର ନ ଶୁଣିଥିବା ଓ କନ୍ଧଭାଷା ନ ଜାଣିଥିବା ଲୋକେ ସେ ବିଷୟରେ ଯେ ଭୁଲ୍ ଓ ବିକୃତ ସମ୍ବାଦ ଦେବେ ଏଥିରେ ଅସ୍ୱାଭାବିକ କିଛି ନାହିଁ । ଆଗ ଥିଲା ପାଣି, ତା ପରେ ହେଲା ମାଟି, ତା ପରେ ମହାପ୍ରଭୁ ସୃଷ୍ଟି କଲେ ସେହି ପାଣି ଭିତରେ, ଅନ୍ଧାର ଭିତରେ ଖୁବ୍ ସାନ ମଞ୍ଜି ଟିଏ ପରି,—

ବଣବୁଢାର ମଞ୍ଜି ଟିଏ ପରି (ଓ୍ୱତେ ପେଡ଼୍‌ନୁ ଲେକା—
ପୋଜେ ପେଡ଼୍‌ନୁ ଲେକା—
ଓ୍ୱତେ, ପୋଦେ=ବଣବୁଢା
ପେଡ଼୍‌ନୁ=ମଞ୍ଜି, ହାଡ଼
ଲେକା=ପରି )

ମହାପ୍ରଭୁ ଆଉ ସୃଷ୍ଟିକଲେ ଗୋଟିଏ ନାରୀ । ସେ ଆଦ୍ୟା, ସୃଷ୍ଟି, ଆଦିମାତା । ସେ ସୃଷ୍ଟିପାଳର ରାଣୀ, ସେ କୁମାରୀ (ବେଣ୍ତିଆ) ତାଙ୍କ ନାଁ । 'ରାଣୀ-ଆଡ୍ରୁ'

ଅପରନାମ 'ବେଣ୍ଡି-ଆଡ୍ରୁ'
କନ୍ଧ ସ୍ତୋତ୍ର କହୁଯାଉଛି—
ଡାଏ ଏଜ୍ରୁ ରାଏ ( ଭିତରେ, ପାଣି ଭିତରେ )
ଡାଏ କୁଡ୍ରୁ ରାଏ ( ,, ,, )
ଇନାଲି ଜୁଡ୍ଡେ କାନେ ( କଣ ଜନ୍ମ ହେବ ? )
ଇନାଲି ଆଲେ କାନେ ( ,, ,, )
ଇନାଲି ଓ୍ୱେଡେଲଂଗା ( କଣ ଆଗ ଜନ୍ମ ? )
ଇନାଲି ଓ୍ୱେଡେ ଜାର୍ଣ୍ଣା ( ,, ,, ) .

× × ×

ତାନୁ ରାଣୀ ଆଡ୍ରୁ ( ସେହି ରାଣୀ ଠାକୁରାଣୀ )
ତାନୁ ବେଣ୍ଡି ଆଡ୍ରୁ ( ସେହି ଯୁବତୀ ଠାକୁରାଣୀ )

ତାପରେ, ବଂଶର ସାଂଗୀ ହେବା ପାଇଁ ଆହୁରି ସ୍ତ୍ରୀଲୋକ ଦରକାର ବୋଲି ଦେଖି ରାଣୀଆଡ୍ରୁ ଆଉ କୋଡିଏଟି ଦେବୀଙ୍କୁ ସୃଷ୍ଟି କଲେ । ତେଣୁ ଗୋଟିକା ଗୋଟି ସେମାନେ ବି ଜନ୍ମ ହେଲେ, ଯଥା—

"କଲାହାଲି ଲାଙ୍ଗା— ପାକାହାଲି ଲାଙ୍ଗା,

( ଲାଙ୍ଗା=ଜନ୍ମହେଲେ । ଆଉ ଦୁଇଟି ଶବ୍ଦ ଯୋଡ଼ିଏ ନାଁ । ) ଇତ୍ୟାଦି । ସମସ୍ତିଙ୍କ ନା ଅଛି । ଏପରିକି ସୃଷ୍ଟି ହୋଇଥିବା ପ୍ରତ୍ୟେକ ସ୍ଥାନର, ପ୍ରତି ବୃତ୍ତିଧାରୀ ଜାତିର ଆଦି ପୁରୁଷଙ୍କର । ପ୍ରତ୍ୟେକ ପ୍ରକାରର ପ୍ରତି ଜନ୍ତୁର । ପ୍ରତ୍ୟେକ ପ୍ରକାର ଗଛ ବୃକ୍ଷର ।

ତାନୁ ରାମାଆଡ୍ରୁ ତାନୁ ବେଣ୍ଡି ଆଡ୍ରୁ ( ସେହି ଦେବୀ )

ରାଣୀ ଆଡ୍ରୁ

ତାନୁ ଜଲଦେଲ୍ଲା—ତାନୁ ପାକାଦାଲ୍ଲା (ସେହି ଦେବୀ ଜଲଦେଲ୍ଲା, ସେହି ଦେବୀ ପାକଦେଲ୍ଲା )

ଇମ୍ବାଙ୍ଗା ଲିଙ୍ଗା ଅବେଙ୍ଗେ ( କାହାକୁ ସବୁ ଜନ୍ମ କଲେ ? )

ଇମ୍ବାଙ୍ଗା ଜର୍ଣ୍ଣା ଅବେଙ୍ଗା ( ,, ,, )

ଜଙ୍ଗରେଙ୍ଗା ଲିଙ୍ଗା ( ଜଙ୍ଗରେଙ୍ଗା ଜନ୍ମ ହେଲେ )

ପେନାରେଙ୍ଗା ଲିଙ୍ଗା ( ପେନାରେଙ୍ଗା ,, ) ଇତ୍ୟାଦି । କନ୍ଧଜାତିର ଆଦିପିତା ଜଙ୍ଗରେଙ୍ଗା । ମଣିଷ, ଜନ୍ତୁ, ଗଛ, ଶସ୍ୟ, ମାଟି ଭିତରୁ ଯେଉଁ ବାଟେ ବାହାରିଲେ ସେ ସ୍ଥାନର ନାଁ—

"ସୋପାଂ ଅର୍ଥାତ୍ (ଚନ୍ଦ୍ର)—ଗାଡ଼ା (ଗାତ)"ସେ କନ୍ଧ ଜାତିର ଉଦ୍ଭବ ସ୍ଥାନ ( ଆଜି ସେଠି ଗାତ ନାହିଁ ) ସ୍ଥାନଟି ବେଲଘରର ଗୁମ୍ମା ପାଖେ । ସେହି ପାଖରେ ଅଛି ଅଦ୍ୟତମ ନରବଳିର ସ୍ମରଣ ପଥର । ଥିଲା ହିଁ ଅଛି ଏ; ତା ନାଁ ନଙ୍ଗୁଲି ।

ଚନ୍ଦ୍ରପୁର (ଗୁଣୁପୁର ମ. ଡ଼.) ବ୍ଲକରେ ସରକାରୀ କଲୋନୀ ନେହେରୁ ପାଙ୍ଗାଠ୍ ଅଳ୍ପ ଦୂରରେ ଜଂଗଲ ଭିତରେ ହଜାର ହଜାର ନରବଳିର ପେଣ୍ଠ—'ଦଶେଗ-କ୍ଷୁପା' ପଥର ଗଦା । ସେଇଠି ସ୍ୟ ଢ଼କା ବେଷ ବଳ, ବୈଦିକ ବଳି ଦେଖ ମଣିଷ ଓ ପଶୁ ଏକଷ 'ଗଛ' ପାଉଁ ମାଟି କନ୍ଧ ଓ 'ବଜନା' ନାମକ ପୋଡ଼ । ତେଣୁ ସ୍ଥାନର ନାଁ ହୋଇଥିଲା ଗାଇ-ବଜ ।

ଏକ 'ମାହାଦ୍ରୁ' ମେଇ କନ୍ଧର ଧର୍ମ । ମୁଣ୍ଡାରି-ସାନ୍ତାଳଙ୍କ ସିଂ ବୋଂଆ (ପଛିଁରୁ 'ସିଂଭୁମ') ସର୍ବୋଚ୍ଚ, ଜନାଂ-ଲେ (ହାଡ଼ ଜଗନ୍ନାଥ) । ସେ ତ ଅବ୍ୟକ୍ତ ବ୍ୟକ୍ତ ସୃଷ୍ଟିର ପ୍ରଥମରେ ସ୍ତ୍ରୀ ନାଃସ୍ଥ ଆଦିମାତା । ଠିକ୍ ଯେପରି ଶ୍ରୀ ଚଣ୍ଡୀରେ ।

"ଏକସ୍ଥଂ ତଦଭୂତ୍ ନାସ୍ତି ବ୍ୟାପ୍ତ ଲୋକତ୍ରୟଂ ତ୍ୱିଷା ।"

(ଚଣ୍ଡୀ । ମଧ୍ୟମ । ୨ୟ । ୧୩)

ଯେପରି ଜଲଦେଲ୍ଲା କାପାଦାଲ୍ଲା ଆଦି ଦେବୀମାନେ ସମସ୍ତେ ସେହି ଏକ ଦେବୀଙ୍କର ଅଂଶ ।

ଶ୍ରୀ ଚଣ୍ଡୀ ପୁରାଣେ—

(ଶୁମ୍ଭଂ) ଦେବ୍ୟୁବାଚ--
"ଏକୈବାହଂ ଜଗତ୍ୟତ୍ର ଦ୍ୱିତୀୟା କା ମମାପରା,
ପଶ୍ୟୈତା ଦୁଷ୍ଟ ! ମୟ୍ୟେବ ବିଶନ୍ତ୍ୟୋ ମଦ୍‌ବିଭୂତୟଃ ।"

ଏବେ ବି କନ୍ଧ ମୂଲକରେ ଦେବୀଙ୍କର ନାନା ପୀଠ, ନେଟ୍ରେରୁ ପାଂଗା କଳେଇ ପାଖେ "ଟଣ୍ଡ୍ରାମ-ନାଳା" ନଈ ଉପରେ ପୀଠ, ଥୁଆମୂଲ୍ ରାମପୁରରେ, କାଶୀପୁରରେ, ଗଦାପୁରରେ, ନାନା ସ୍ଥାନରେ । ସତୀଙ୍କର ଶରୀରର ନାନା ଅଂଶ ନାନା ସ୍ଥାନରେ ପଡ଼ି କାମରୂପର କାମାକ୍ଷା ପୀଠରୁ ବେଲୁଚିସ୍ଥାନର ହିଂଲଜ୍‌ପାକେ ନାନା ପୀଠ ସଜା ହୋଇ ରହିଲି ପରି ଅବିକଳ କମ୍ୱଦନ୍ତୀ ଥାଇ ସେ ପୀଠ ଗୁଡ଼ିକ, କାଶୀପୁରରେ ଯୋନୀପୀଠ, ଥୁଆମୂଲ୍ ରାମପୁରରେ ମସ୍ତକ ପୀଠ । ସେଠି ସେ ଦେବୀ 'ମାଣିକେଶ୍ୱରୀ', ଗଂଗ ବଂଶୀୟ ମାନଙ୍କର ଇଷ୍ଟ ଦେବୀ । ନିୟମ ଗିରିର ଡଂଗ୍ରିଆ କନ୍ଧଂକ 'ଜ଼ାକେରି' ପର୍ବ (ମୂଳତଃ ମେରିଆ ହିଁ) ଦଶମ ଜଟକରେ ମାର୍କମା ଦେବଙ୍କ ମନ୍ଦିରରେ ହେଉ-ଥିଲା । ପ୍ରତି ମେରିଆ ପୂଜା ଦେବୀଙ୍କ ଉଦ୍ଦେଶ୍ୟରେ ।

କନ୍ଧ ଭାଷା ନ ଜାଣିଥିବା କ୍ୟାମ୍ପେଲ 'ମାଣିକେଶ୍ୱରୀ । ଏ ପଦ-ଟିକୁ "ମାଣିକ-ସୋରେ" ବୋଲି କେଉଁ ଗୋଟାଏ ଠାକୁର ବୋଲି ଲେଖିଗଲେ ।

ଅନ୍ୟାନ୍ୟ 'ଟବେଷକ' ତାକୁ ଧ୍ରୁବ ସତ୍ୟ ବୋଲି ନେଲେ । ମେରିଆ ବଳିର ସ୍ତୋତ୍ର ନ ଶୁଣି ନ ବୁଝି ସେମାନେ ଧରିନେଲେ ଯେ ମୂର୍ଖ କନ୍ଧ ହଳଦୀ କଅଁଳରେ ବଳି ଦେଉଥିଲା ଓ ଏହି ଉଦ୍ଦେଶ୍ୟରେ ଯେ ମଣିଷ ରକ୍ତ ତ ନାଲି, ତେଣୁ ନାଲି ରକ୍ତ ଦେବୀକୁ ଦେଲେ ହଳଦୀ ପଟଳଟା ରଙ୍ଗ ପିଟିବ । ଏହିରୁ ଭ୍ରାନ୍ତ ଓ ମୂର୍ଖତାକୁ ଦୂର କରି ଦେଇ ଆମ ଆଗରେ ବର୍ତ୍ତମାନ ଅଛି କନ୍ଧ ଭାଷାରେ ଗୋଟାକ ପାକ ମେରିଆ ବଳି ସ୍ତୋତ୍ର ଅଛି ।

"ସିଣ ଡାମ୍ଭେସି କେପିଣ୍ଡ ଇ ଦୋଡ କାଡ୍‌ଲ .. ..
(କମ୍ଡାର କଳ ସ୍ପେ ଲୁହା ଟାଂଗିଆ)
ଟଣ୍ଡି ମ୍‌ଜାନେ ଦୁର୍ଗା.
(ଖାଇବେ ଦୁର୍ଗା)

କୌଣସି ସନ୍ଦେହ ନାହିଁ ଯେ କନ୍ଧର ନରବଳି ଚାନ୍ଦିକ ଦେବୀ ପୂଜାରୁ ହିଁ ଆସିଥିଲା, ଉଦ୍ଦେଶ୍ୟ—ଜଗତର ସର୍ବବିଧ ମଙ୍ଗଳ ।

"ରାଜ ଉଜୋ ଆଡାଇ ବଶି ଉଜୋ ଆଡାଇ"—(ରାଜ୍ୟ ଉଜ୍ଜ୍ୱଳ ହେବ ଦେଶ ଉଜ୍ଜ୍ୱଳ ହେବ )
ଟଣ୍ଡି ମ୍‌ଜାନେ
(ଯନ୍ତ୍ର ସେ ଖାଇବେ)
ଆଗ ଚାର ଅରମ୍ଭ ଆର୍ଯ୍ୟଙ୍କ ପୂଜାପଦ୍ଧତିରୁ ।

ପୃଥିବୀର ଅନେକ ଲୋକ ନରବଳି ଦେଉଥିଲେ, ଏକା ବୈଦିକ ଆର୍ଯ୍ୟ ନୁହନ୍ତି । କନ୍ଧ ବି ଆଉ ଦେଉନାହିଁ । ଅନ୍ୟଠୁଁ ଶିଖି ଅନୁକରଣ କରି ଭୁଲ୍ ରଖିଥିବା ବାଭତ୍ସ ପ୍ରଥାରେ ଆଦିବାସୀର ନିଜସ୍ୱ ସଂସ୍କୃତି କିଛି ନ ଥିଲା । ବୈଦିକ ଆର୍ଯ୍ୟ ପରି ସେ ବି କରେଇ ସ୍ଥାପନା କରୁଥିଲା । ଢୁଷି ଆଉ ଖଣ୍ଡା ପକୋଉଥିଲା, ଦେବତାଙ୍କୁ ତା ନିଜ ପାମାପ୍ସ ମଦ୍ୟ ଦେଉଥିଲା ଭୂଇଁରେ ଢାଳି ଢାଳି (ଏବେ ବି ଦିଏ) ।

ଏକ ଈଶ୍ୱରଂକ ସନ୍ତାନ ସମଗ୍ର ମଣିଷ ଜାତି । ସେଥିରେ ଆଦିବାସୀ, ଅଣ-ଆଦିବାସୀ ଭେଦ ନାହିଁ । 'ଆଦିବାସୀ' ଶବ୍ଦଟି ବି ନୂଆ ଆମଦାନୀ । ଇଂରେଜ ଅମଳରୁ, ପାଖେ 'ଆଦିବାସୀ' ମନରେ ଆଣେ ହୀନମାନିଆ ଭାବ, ପ୍ରତିହିଂସା ପ୍ରବୃତ୍ତି, ଏକଘରିକିଆ ମନୋଭାବ, ଆର ପାଖେ 'ଅଣ ଆଦିବାସୀ ମନରେ ବି ପ୍ରତିକ୍ରିୟା ଯେ 'ଉଲ୍‌ଟେ କି କଥା ହେଲା । ବ୍ରାହ୍ମଣଟିଏ ଯେତେ ଗରିବ ହେଉ ପଛେ ତା ପାଇଁ ସ୍ୱତନ୍ତ୍ର ନିଆର ବନ୍ଦୋବସ୍ତ ନାହିଁ । ଆଦିବାସୀଟିଏ ଯେତେ ଥିଲାବାଲା ହେଲେ ବି ତା ପାଇଁ ସ୍ୱତନ୍ତ୍ର ସୁବିଧା ବିଦ୍ୟମାନ !"

ଅଶାନ୍ତର ଫାଡ ଲମ୍ବି ଯାଏ ପୁରାଣ ଯୁଗକୁ, ଯେତେବେଳେ ସମୁଦ୍ର ମନ୍ଥନ ବେଳେ ଜାଣି ଜାଣି ଅସୁର ମାଂନଙ୍କୁ ଦୁର୍ବଳ କରିଦେବା ଉଦ୍ଦେଶ୍ୟରେ ତାଙ୍କୁ କୁହାଗଲା "ତୁମେ ବାସୁକୀର ମୁଣ୍ଡ ପାଖରୁ ଧରି ଉଠାଅ ।" ଫଳରେ ବାସୁକୀର ତତଲା ନିଃଶ୍ୱାସ ବାଜି ବାଜି ସେମାନେ ଦୁର୍ବଳ ହୋଇ ପଡ଼ିଲେ । ତଥାପି ଅମୃତ ଖଣ୍ଡିଟିଏ ତାଂକ ହାତରେ ପଡ଼ିଗଲା ଯେ ନାଗ ପେଶି ତାଙ୍କୁ ଭୁଲାଇ ତାଙ୍କ ହାତରୁ ତା ଛଡ଼େଇ ନିଆଗଲା । ଏ ପୁରାଣର କାହାଣୀ । ସ୍ପାର ମୋଟାମୋଟି ତାତ୍ପର୍ଯ୍ୟ— ଆଦିବାସୀଙ୍କୁ ସବୁବେଳେ ସବୁ ଉପାୟରେ ଠକା ଯାଉଟିବା କାହାଣୀର ପାରମ୍ପରିକ ଶିଂକୁଳ ।

ସେ କାହାଣୀ ଏବେ ବି ଚାଲିଛି, ଏବେ ବି ଶାସନ ପ୍ରତି ଆଦିବାସୀର ସେହି ପୁରୁଣା ଆକ୍ଷେପ— "ତୁମେ ଆମ କଥା ବୁଝ୍ ନାହିଁ, ଜାଣ ନାହିଁ, ଦେଖିବ ବା କାହିଁ ? ଆମେ ଥାଉଁ ବଣ ପାହାଡ଼ରେ, ତୁମେ ରହ କାର୍‌ରେ, କାର୍ କାହିଁ ପାହାଡ଼ ଚଢ଼ି ଆମ ଗାଁକୁ ଆସିବ ? ସାହୁକାର ଶୋଷି ଖାଉଛି ଜମାନ ମାନେ, ସାନ ଅଧିକାରୀମାନେ, ଯେତେ ଧୋବଧାଉଳିଆ ସମସ୍ତେ ଖାଉଚନ୍ତି, ଖାଇ ଯାଉଚନ୍ତି ହାଟରେ, ବାଟରେ, ଘରେ, ଗାଦାନ୍‌ରେ, ସହରରେ ଭୂମି ନାଇଁ । ମଣିଷ ମଲେ ପୋଡ଼ିବାକୁ ବି ଭୂମି ନାଇଁ, ଯାହା ଭୂମି କାଢ଼ିଥିଲୁଁ ସବୁ ନେଲେ । ଯାହାର ଟିକେ ଭୂମି ଅଛି ତାକୁ ଅଲ୍ ନାଇଁ, ବଳଦ ନାଇଁ, ଭୂମିକୁ ପାଣି ନାଇଁ । ଫସଲ୍ କଲେ କେତେ ଛଳରେ ବୋହିନେବେ, ଲୁଟିନେବେ, ସକାଳୁ ଗାଡ଼ିଯାକେ ଡଂଗର ଉପରେ ପଥର ଫଟା କାମ, ଯାହା ପାଣ ଆସିବ,—ଗ୍ଲେର, ଖଙ୍ଗାର୍, ହାଣ୍ଡି, କୋଡ଼ା ଜିଆଦି ଭୁଣ୍ଡରୁ ବର୍ଗି କରି, ଡଂଗର ପାନୁ, ସ୍ପା ମାମୁଲ୍ ତା ମାମୁଲ୍‌ଠୁ ବର୍ଗି କରି, ତାକୁ ବୋହିନେବ ସାହୁକାର ତାର କଳନ୍ତର ବାବଦକୁ ଟଂକାଏ ଦେଇଥିଲେ ବର୍ଷକ ପରେ ୪ ଟଙ୍କା ୭ ଟଙ୍କା, ଦି ବର୍ଷ ପରେ ଷୋଳଟଙ୍କା କି ଛତିଶ୍ ଟଙ୍କା, ଗୁଲିଲା ଯେ ଛିଣ୍ଡେ ନାହିଁ । ଆମ୍ଭେ ଲେଖା ବୁଝେ ନାଇଁ । ବାଘ ଖାଉଚି, ହାଣ୍ଡି ପିପି ମାରୁଚି । ରୋଗ ଖାଇଯାଉଚି, ଡାକ୍ତର ନାଇଁ, ଡାକ୍ତରଖାନା କଲେ ଡାକ୍ତର ଆସେ ନାଇଁ । କୋ' ନାଇଁ, ବନ୍ଧା ନାଇଁ । ବଲକ୍ କହେଚି ହିଁ,

କୋମ୍ପିଟି ବଲରେ ଜବର ବନ୍ଧ ! ପେଟ ଜଳୁଚ, ନ ପାଠ୍ ପଢ଼ବେ ପିଲାଏ, ପଢ଼ିଲେ ମହୁଲ କେ ବେଟି ପିବ, କେ ସାନ୍ ଚିଲକୁ ରଖିଲେ ଆମେ ମାଇଜ ଅଣ୍ଡା ପିବୁ କହା ଖୋଲ ? ଯେ ଆଇଲା ଖାଲ କହିଲା "ଦେ—" ଆମର ସମସ୍ତଙ୍କ ଡର, ଭୁଛାକୁ କ ? ବଡ଼ ପାଟି କଲେ ନୈକ ଦବ୍ଡ଼ ଆସନ୍ତି, ତେଲିଆ ମୁଣ୍ଡରେ ତେଲ ଅଜାଡ଼ ହୁଏ, ହେଲେ ଆମର ଚୋଣ୍ଡ୍ ଅଛୁ ନା ମୁଣ୍ଡ ଅଛୁ ? ଆମର କେହି ନାହିଁ ।"

ଭଗବାନ୍ ଭରସା ।

ହେଲେ ଜାଣିଥା, ଦୁନିଆଁ ଜାଣିଥା, ଭୁମ୍‌କେ ଆମ୍‌କେ ଧରମ୍ ଅଛି, ସେ ଦେଖୁଛି, ସେ ବୁଝିବ ।

ନା, 'ଗବେଷଣା' ଲାଗି ଗବେଷଣା' ଦରକାର ନାହିଁ ସେମାନଙ୍କର ପ୍ରକୃତରେ ହିତ କରିବାକୁ ଇଚ୍ଛାଥିଲେ, ମୋଟାମୋଟି ଭାବରେ ଅଭାବ, ଅସୁବିଧା, ଦୋଷ ତ୍ରୁଟି କଥା ସମସ୍ତେ ଜାଣନ୍ତି ।

ସବୁଠିଁ ଯୋଡ଼ାଏ ଶ୍ରେଣୀ, ଯାହାଙ୍କର ଚଳେ, ଯାହାଙ୍କର ଚଳେ ନାହିଁ । ଥିଲାବାଲା, ନଥିଲା ବାଲା । ଆର୍ଯ୍ୟ ଓ ବିଭିନ୍ନ ପ୍ରକାର ଅନାର୍ଯ୍ୟ ଜାତି ବହୁ ଯୁଗରୁ ବହୁତ ପରିସ୍ଥିତିରେ ରକ୍ତ ମିଶାମିଶି ହୋଇଛନ୍ତି । ତଥାପି ମୋଟାମୋଟିରେ ଆଗର ଅନାର୍ଯ୍ୟ ଜାତି ପର୍ଯ୍ୟାୟର ମଣିଷ ବି ଅଛନ୍ତି । କେତେଠିଁ ଅନ୍ୟମାନଂକ ସଂଗେ ମିଶିଗଲେଣି, ଜାତି ନୀତି, ଭାଷା ସବୁଥିରେ, କେତେଠିଁ ଅଣ-ଆଦିବାସୀ ତାଲିକାରେ ଲେଖା ହେଲେଣି । କେତେଠି ମିଶି ନାହାନ୍ତି । ମିଶନ୍ତୁ ନ ମିଶନ୍ତୁ ଅଧିକାଂଶହିଁ ଗରିବ, ତାଙ୍କ ସମସ୍ୟା ଗରିବ ଓ ଅଶିକ୍ଷିତମାନଂକର ସାଧାରଣ ସମସ୍ୟା । ସେହି ପୂର୍ବେ ଆର୍ଯ୍ୟ ନ ହୋଇଥିବା ଲୋକଂକ ଭିତରୁ କେତେଟା ଜାତିଂକୁ ଗୋଟାଏ ସ୍ୱତନ୍ତ୍ର ତାଲିକାରେ ରଖାଯାଇଛି, ସରକାର ଯାହାକୁ ଭାବିଲେ ଯେ ସେ ତାଲିକାରେ ସେ ରହୁ ତାକୁ ରଖିଲେ । ସେହିମାନେ 'ଆଦିବାସୀ' ବୋଲି ଅଭିହିତ, ଅନ୍ୟ ସଂଜ୍ଞା ନାହିଁ । ସେପରି 'ଆଦିବାସୀ' ହୋଇଛନ୍ତି ବାଷଠିଟି ଜାତି, ୧୯୭୧ର ଜନସଂଖ୍ୟା ଅନୁସାରେ ଓଡ଼ିଶାରେ ତାଂକ ସଂଖ୍ୟା ଓ ଅନୁପାତରେ ସେମାନେ ସମୁଦାୟ ଜନସଂଖ୍ୟାର ୨୪-୦୭%ର । ଅର୍ଥାତ୍ ୪ ଜଣ ଓଡ଼ିଶାବାସୀ ଭିତରୁ ଜଣେ ସେମିତିଆ ତାଲିକାଭୁକ୍ତ

'ଆଦିବାସୀ' ଥୋକେ ବଣରେ ରହନ୍ତି, ଥୋକେ ସମତଳ ଅଞ୍ଚଳରେ ସାଧାରଣ ହିନ୍ଦୁ ଗୃହୀ ଭଳି । ଥୋକେ ନିଜ ନିଜ ଭାଷା କହନ୍ତି ଆଉ ଥୋକେ ଓଡ଼ିଆ । ଥୋକେ ଅତି ଦୁର୍ଦ୍ଦଶାଗ୍ରସ୍ତ, ଅଶିକ୍ଷିତ, ଗରିବ, ତେଣୁ ରାଜନୈତିକ ନେତୃତ୍ୱ ନେବା ସ୍ଥାନରେ ସେମାନେ ଶୂନ୍, ଯେଉଁମାନେ କୃଷିଜୀବୀ ସେମାନେ ତାଂକଠାରୁ ଅଶିକ୍ଷିତ, ଗରିବ, ଦୁର୍ଦ୍ଦଶାଗ୍ରସ୍ତ ନୁହନ୍ତି । ତାଙ୍କ ହାଲ୍‌ଚାଲ୍ କେମିତି ସେକଥା ଆଗେ କହିଛି ଥିଲି ଭଳି କେନ୍ଦ୍ର ପ୍ରତିନିଧି ଭୁବନେଶ୍ୱରରେ ବିଧାନ ସଭାରେ କହିବ ଏଭଳି ଖୁବ୍ ବିରଳ । ଗ୍ରାମପଞ୍ଚାଏତ୍‌ମାନଂକରେ ଓ ବ୍ଲକ୍ ସ୍ତରରେ ମଧ୍ୟ ତାଙ୍କ ତରଫରୁ ପ୍ରତିନିଧିତ୍ୱ କ୍ଷୀଣ, ଅଥବା ଦୁର୍ବଳ । ତାଙ୍କ ସଂଖ୍ୟା ପ୍ରାୟ ସମୁଦାୟ ଆଦିବାସୀ ସଂଖ୍ୟାର ତିନି ଭାଗରୁ ଭାଗେ । ସ୍ୱାଧୀନତା ପରେ ୧୯୬୭ ଯାକେ ତାଂକ ଉପରେ ବିଶେଷ ନିଘା ଦିଆ ହୋଇ ନଥିଲା, ୧୯୬୭ରୁ ଆରମ୍ଭ କରି ଏକା ଉପାୟରେ ତାଂକ ଶୋଷଣ ବନ୍ଦ କରିବା ପୁଣି ଚଞ୍ଚଳ ଚଞ୍ଚଳ ତାଙ୍କ ହାତରେ ପଇସା କରାଇଦେବା ଏ ଯୋଡ଼ିଏ ଉଦ୍ଦେଶ୍ୟ ରଖି କେତୋଟି ସ୍ଥାନରେ ଗୋଟିଏ ଯୋଜନା କରା ହୋଇଥିଲା । ସେ ଯୋଜନା ପ୍ରକାରେ ତାଙ୍କର ସବୁ ଦରକାରି ଜିନିଷ ସରକାରୀ ଦୋକାନ ଖୋଲି ଶସ୍ତାରେ ତାଙ୍କୁ ବିକାଯାଏ । ସେ ଯାହା ଆମଦାନୀ କରନ୍ତି ସରକାର ତାକୁ କଣି ନିଅନ୍ତି, ତେଣୁ ସେ ଭଲ ମୂଲ୍ୟ ପାଆନ୍ତି, ଠକେଇରେ ପଡ଼ନ୍ତି ନାହିଁ ତାଂକ ଭିତରେ ସରକାରୀ ଲୋକ ରହି ତାଂକୁ ଶୋଷଣ ହାତରୁ ରକ୍ଷା କରନ୍ତି ଓ ତାଂକୁ ଭଲ ବୁଦ୍ଧି ଦିଅନ୍ତି । ଗୋଟିଏ ଗୋଟିଏ ଯୋଜନାରେ ଟଂକା ଦି ଲକ୍ଷ ସରିକି ଖଟାଇବା ଦରକାର ପଡ଼େ, ତେଣୁ ଅଳ୍ପ କେତୋଟି ହେଲା—

(୧) କୋରାପୁଟ୍ ନିୟମଗିରି ପର୍ବତ ଉପରେ ଡଂଗ୍ରିଆ କନ୍ଧ ଥିବା ଅଞ୍ଚଳରେ ।

(୨) କାଶୀପୁରରେ, ସେଠି ଫେଗୋ କନ୍ଧ, ଝୋଡ଼ିଆ ପରଜା ଓ ଅନ୍ୟାନ୍ୟ ଅନୁନ୍ନତ କନ୍ଧ ।

(୩) ଫୁଲବାଣୀ ଜିଲ୍ଲା ବେଲଘର, ଗୁମ୍ମାରେ ଓ

(୪) ଫୁଲବାଣୀ ଜିଲ୍ଲା ସୁବର୍ଣ୍ଣଗିରି ଶ୍ରୀରାମପୁର ଅଞ୍ଚଳରେ

(୫) ଗଞ୍ଜାମ ଜିଲ୍ଲା ପାରଳା ଖେମୁଣ୍ଡିରେ ବିଶେଷତଃ ଚେନ୍ଦୁଲି କଣା ।

(୬) କେନ୍ଦୁଝର ଜିଲ୍ଲାରେ ମୁଖ୍ୟତଃ ପୋଶଷ, ଅଳସି କଣା, ସେଠି ଜୁଆଂ ଓ ଭୂୟାଁ ଆଦିବାସୀ ବେଶି ।

ଯା ପରେ କାଶୀପୁରର ଥୁଆମୁଳ ରାମପୁର । କୋରାପୁଟର ରାମ୍ନାଗୁଡ଼ା, କୋରାପୁଟର ଚନ୍ଦ୍ରପୁର, ସୁନ୍ଦର ଗଡ଼ରେ ବଣେଇ ଓ ମୟୂରଭଞ୍ଜର ଶିମିଳିପାଳ ତଳକୁ ବିଶେଷ ଆଡେ (ବିଶେଷତଃ ଟୋଲି, ମହୁଲ, ମହୁ ,ପାଳୁଅ ଆଦି କଣିବାପାଇଁ ଯୋଜନା ତିଆରି କରାଗଲା ସେଥିରୁ କେତୋଟି ଏ ବର୍ଷ ଚାଲୁ କରାଯାଉଛି ।

ଏଇ ଅତି ଅନୁନ୍ନତ 'ଆଦିବାସୀ'ଙ୍କ ଭିତରେ ଡଂଗ୍ରିଆ କନ୍ଧ, କୋଟିଆ କନ୍ଧ, ଫେଗ କନ୍ଧ, ମାଲକାନଗିରି ମାଳ ଭିତରର ବୋଣ୍ଡା, ପାହାଡ଼ଭୂୟାଁ, ଜୁଆଂ, ବଣ୍ଡା, ଲାଞ୍ଜିଆ ସଉରା, କୋରାପୁଟ ଜିଲ୍ଲାର ପରୁ କନ୍ଧ ପରଜା, ଗଦବା, ସବେ । ପାରଳାର ସବେ ଅନ୍ତର୍ଗତ ।

ଅର୍ଥାତ୍ ଦେଶରେ ଆଦିବାସୀ ତାଲିକାରେ ଯାହାଂକ ନାଁ ଅଛି ତନ୍ମିଁରୁ ପ୍ରକୃତରେ ଯେଉଁମାନେ ଅତି ଅନୁନ୍ନତ, ଯେ ପଶୁ ତଳଲା ପରି ଚଳନ୍ତି, ଖୁବ୍ ଗରିବ, ଖୁବ୍ ପଛୁଆ , ଖୁବ୍ ବେଶି ଶୋଷିତ, ସେମାନେ ତଉଦ ପଣ ଥାଆନ୍ତି ଦକ୍ଷିଣ ଓଡ଼ିଶାରେ । ତାଂକ ଇଲାକାରେ ହରିଜନ ଓ ଆଦିବାସୀ ଏ ଦୁହିଁଙ୍କ ସ୍ୱାର୍ଥ ପରସ୍ପର ବିରୋଧୀ, କାରଣ ହରିଜନର ସେଠି ବୃତ୍ତିହିଁ ହେଲା ଆଦିବାସୀ ଉପୁଜାଉଥିବା ଜିନିଷକୁ ହାତ କରି ତହିଁରୁ ଲାଭ ଉଠେଇବା । ଅନ୍ୟଠି ଏ ବିରୋଧ ସଂପର୍କ ନାହିଁ ।

ସେ ଅତି ଅନୁନ୍ନତ ୧୫।୨୦ ଲକ୍ଷ ଲୋକଂକ ଭିତରୁ କେହି କେବେ ଆଖି ଦରଶିଆ ଲୋକପ୍ରତିନିଧି ହୋଇନାହିଁ, ମନ୍ତ୍ରୀ ହେବା ତ ଦୂରର କଥା । ଆଗେ ଆଦିବାସୀ ବିଭାଗ ମନ୍ତ୍ରୀ ଥିଲେ ଶ୍ରୀଯୁକ୍ତ ଡୋମ୍ବୁକା ଧଂଗାଡ଼ା ମହାଶୟ, ବି. ଏ. । ସେ କୋରାପୁଟ ଜିଲ୍ଲାର ଲୋକ ସିନା, କିନ୍ତୁ

ଜାତିରେ ଜାତପ୍ରିୟ ହୋଇ, ସେମାନେ ହିନ୍ଦୁ ଆଶ୍ରମର ପ୍ରଭାବିତ, ଅଧିକାଂଶ ତେଲୁଗୁରେ କହନ୍ତି, କିନ୍ତୁ ଭାଷା ବୁଝନ୍ତି ନାହିଁ, ଅଥଚ ପ୍ରାଚୀନ କାଳ ସଂପ୍ରଦାୟର । ଏବର ଆଦିବାସୀ ମନ୍ତ୍ରୀମାନେ ଉତ୍ତରର ଶିକ୍ଷିତ ଆଲୋକ-ପ୍ରାପ୍ତ ଅଗ୍ରସର ସାନ୍ତାଳ ଓ ମୁଣ୍ଡା ସଂପ୍ରଦାୟର ସାନ୍ତାଳ ମୁଣ୍ଡାଙ୍କ ଶିକ୍ଷାଦୀକ୍ଷା ଘରକରଣା ଚାଲିଚଳଣି ରୁଚି ସଙ୍ଗୁଣ ଓ କଳା-ପ୍ରୀତି କଟକ ପୁରୀ ସମ୍ବଲପୁର ଯେ କୌଣସି ଚାଷୀ ଘରଠୁଁ ଖୁବ୍ ଉଚ୍ଚରେ, ମୟୂରଭଞ୍ଜରେ, ସୁନ୍ଦରଗଡ଼ରେ ଗାଁ ଗାଁ ବୁଲି ନ ଦେଖିଲେ ବିଶ୍ୱାସ ହେବ ନାହିଁ ।

ଉତ୍ତର ଜିଲ୍ଲାମାନଙ୍କର ସେହି ଶିକ୍ଷିତ ମୁଣ୍ଡାରି ଶ୍ରେଣୀର ଲୋକ । (ମୁଣ୍ଡା, ହ, କୋହ୍ନ, ସାନ୍ତାଳ, ମୁଣ୍ଡାରି)

ଏ ଜାତିର ଲୋକଙ୍କର ବହୁ କାଳରୁ ଗୋଟିଏ ରାଜନୈତିକ ସମସ୍ୟା ଅଛି । ହ, ମୁଣ୍ଡା, ମୁଣ୍ଡାରିଙ୍କ ସଂଖ୍ୟା ବିହାରରେ ୧୦, ୮୩, ୬୭୭, ଏଣେ ତାକୁ ଲଗି ମୟୂରଭଞ୍ଜରେ ୧, ୫୯, ୨୯୫ (ସାରା ଓଡ଼ିଶାରେ ୩, ୨୮, ୮୦୭) ସେମିତି ସାନ୍ତାଳଂକ ସଂଖ୍ୟା ବିହାରରେ ୧୫, ୪୧, ୩୪୫ ଓ ପ୍ରାୟ ତାକୁ ଲଗି ବଙ୍ଗ ଦେଶରେ ୧୧, ୨୧, ୪୪୬ ମୋଟ ୨୬, ୬୨, ୭୯୨ ଅଥଚ ତାକୁ ଲଗି ଓଡ଼ିଶାରେ ତ ୪, ୧୧, ୧୮୧, ସେଥିରୁ ଏକା ମୟୂରଭଞ୍ଜରେ ୩, ୪୦, ୩୩୨ । ତାତ୍ପର୍ଯ୍ୟ ଏଇଆ ଯେ—

ଗୋଟିଏ ବିଶାଳ ଅଖଣ୍ଡ ଅଞ୍ଚଳ ମାଡ଼ ମୁଣ୍ଡା ଓ ସାନ୍ତାଳ ଅଛନ୍ତି, ତାଙ୍କ ଜନସଂଖ୍ୟାର କାଣିଚାଏ ରହିଛନ୍ତି ଓଡ଼ିଶାରେ ବିଶେଷତଃ ମୟୂରଭଞ୍ଜରେ, ସେମାନେ ଅଣ-ଆଦିବାସୀଙ୍କଠୁଁ ଶିକ୍ଷା ଓ ଆଲୋକରେ କମ୍ ନୁହନ୍ତି ଅଥଚ ତାଙ୍କର ନିଜର ସ୍ୱତନ୍ତ୍ର ପ୍ରଦେଶ ନାହିଁ, ସେମାନେ ତିନି ଖଣ୍ଡ ହୋଇ ତିନୋଟି ପ୍ରଦେଶରେ ରହିଛନ୍ତି । ଯା ସାଙ୍ଗକୁ ଭାବିବାକୁ ପଡ଼ିବ ଆଉ ଯୋଡ଼ିଏ କଥା ।

ସେହି ଏକ ଅଖଣ୍ଡ ପ୍ରାକୃତିକ ଭୌଗୋଳିକ ବିଭାଗ ଖଣିଜ ସମ୍ପଦରେ ପରିପୂର୍ଣ୍ଣ । ରାଉରକେଲ, ଟାଟା, ଯୋଡ଼ା, ହେନ୍ସା,

କଟେବ୍ରୁ, ଗନ୍ଧମାଦନ, ଦୁର୍ଗାପୁର ସବୁ ତା ଭିତରେ । ସେଠି ଅସରନ୍ତି ସମ୍ପଦ ଓ ତାର ଅତି ଉଜ୍ଜ୍ୱଳ ଭବିଷ୍ୟତ । ସେଠିକାର ସ୍ଥାନୀୟ ବାସିନ୍ଦା ମୁଖ୍ୟତଃ ସେଇ ମୁଣ୍ଡାରି ଜାତିର ଲୋକ । ଦିର୍ଘସ୍ଥରେ ବହୁ ଯୁଗର ତିକ୍ତ ଅଭିଜ୍ଞତାରୁ ଆଦିବାସୀଙ୍କର ଧାରଣା ରହିଯାଇଛି ଯେ ଅଣ-ଆଦିବାସୀ ତାଙ୍କର ଶୋଷକ, ତାଙ୍କର ମିତ୍ର ନୁହନ୍ତି । ଝାଡ଼ଖଣ୍ଡ ଆନ୍ଦୋଳନର ମୂଳଦୁଆ ବୁଝି ହୁଏ । ସେ ସମସ୍ୟା ଗୋଟାଏ ବାରୁଦ ଖଣି ପରି । ବଙ୍ଗ ଦେଶରୁ ଟୁଭିଲ୍ ନକ୍ସଲବାଡ଼ି ଆନ୍ଦୋଳନର ଢେଣ୍ଢାଳ । ତାର ବହୁତ ନେତା ସାନ୍ୟାଲ, ଏକା "ଜଙ୍ଗଲ ସାନ୍ୟାଲ" ହିଁ ଜଣେ ନୁହନ୍ତି ।

ଦକ୍ଷିଣ ପଟେ ଅନ୍ଧ୍ର ଓଡ଼ିଆ ସୀମାନ୍ତରୁ ସେହି ନକ୍ସଲ ଝାଡ଼ କୁହାଟ, ସେଠି ସମସ୍ୟା ଜମିରୁ ଉଚ୍ଛେଦ ହୋଇ ଥିବାର, ଜମି ଅନଟନ ସବୁ ପ୍ରକାର ଦାରିଦ୍ର୍ୟ, ଶୋଷଣ ଅନ୍ୟାୟ ।

ମଝିରେ ମଝିରେ ଢେଉଢଙ୍କ ମାରେ । ମାଡ଼ିଥିଲା ଗୁଣୁପୁରରେ ବଂଶଧାରା ଉପତ୍ୟକାରେ ୧୯୬୨ରେ ।

ମନରେ ପ୍ରଶ୍ନ ଉଠେ, ଏ କଣ ଶୁଖିଲା ଘଡ଼ଘଡ଼ି ନା ନକ୍ଷମୁଣ୍ଡ ଡାକୁଛି ? ସଙ୍ଗେ ସଙ୍ଗେ ବୋଧହୁଏ ଆପଣା ମନ ଉତ୍ତର ଦିଏ "ସରକାର ଅଛନ୍ତି ।" ଯେମିତି କବି ବ୍ରାଉନିଂ ଲେଖିଥିଲେ—

ଗଡ଼୍ ଇଜ୍ ଇନ୍ ହିଜ୍ ହେଭେନ୍ ଏଣ୍ଡ ଅଲ୍ ଇଜ୍ ରାଇଟ୍ ଉଇଥ ଦ ଓ୍ୱାର୍ଲ୍ଡ ।



